# ମାନସିଂହ ପରିକ୍ରମା



ଓଡ଼ିଶା ପୂଜ୍ୟପୂଜା ସଂସଦ

୧୯୭୯

# ମାନସିଂହ ପରିକ୍ରମା

ପୂଜ୍ୟପୂଜା ସଂସଦ, ଓଡ଼ିଶା ଆନୁକୂଲ୍ୟରେ ପ୍ରକାଶିତ

୧୯୭୯

ସଭାପତି

ଲୋକରତ୍ନ ଡକ୍ଟର **କୁଞ୍ଜ ବିହାରୀ ଦାଶ**

ସଂପାଦକ

ଡକ୍ଟର **ନିତ୍ୟାନନ୍ଦ ଶତପଥୀ**

ରିଡ଼ର, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

# ସୂଚୀପତ୍ର

---

# ପୂଜ୍ୟପୂଜା ସଂସଦର କର୍ମକର୍ତ୍ତାବୃନ୍ଦ

ସଭାପତି : ଡକ୍ଟର କୁଞ୍ଜବିହାରୀ ଦାଶ

ଉପସଭାପତି : ଡକ୍ଟର ଶ୍ରୀନିବାସ ମିଶ୍ର

ସମ୍ପାଦକ : ଡକ୍ଟର ନିତ୍ୟାନନ୍ଦ ଶତପଥୀ

ସଭ୍ୟ : ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି
ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ
ଶ୍ରୀମତୀ ପ୍ରେମଲତା ଦାଶ
ଅଧ୍ୟାପକ ଚିନ୍ତାମଣି ମିଶ୍ର
ଶ୍ରୀ କୃଷ୍ଣମୋହନ ନନ୍ଦୀ
ଡକ୍ଟର କୃଷ୍ଣଚରଣ ବେହେରା
ଶ୍ରୀ ପ୍ରତାପଚନ୍ଦ୍ର ପରିଡ଼ା
ଅଧ୍ୟାପକ କୁମୁଦଚନ୍ଦ୍ର ଦାଶ

ମୁଖ୍ୟ କାର୍ଯ୍ୟାଳୟ
ସୁହଳଆଗଷ୍ଟ
କଟକ-୭୫୩୦୦୪

## ସଂପାଦକୀୟ—

'ମାନସିଂହ ପରିକ୍ରମା' ପୂଜ୍ୟପୂଜା ସଂସଦର ସପ୍ତମ ସଂକଳନ । ଓଡ଼ିଶାର କୃତି ସନ୍ତାନମାନଙ୍କ ସ୍ମୃତିରେ ସଂଗଠିତ ସଂସଦର 'ପରିକ୍ରମା'ଗୁଡ଼ିକ ଓଡ଼ିଆ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଗୋଟିଏ ଗୋଟିଏ ବଳିଷ୍ଠ ପଦକ୍ଷେପ ଭାବେ ବୁଦ୍ଧିଜୀବୀ ମହଲରେ ଅତୀତରେ ଆଦୃତ ହୋଇଛି; ବିଶ୍ୱାସ 'ମାନସିଂହ ପରିକ୍ରମା' ମଧ୍ୟ ସେହିପରି ଆଦୃତ ହେବ ଓ ସାହିତ୍ୟ-ଗବେଷଣା କ୍ଷେତ୍ରରେ କିଛି ନୂତନ ଆଲୋକ ସଂପାତ କରିବ । ମାନସିଂହଙ୍କ ଜୀବନ ଯେପରି ଘଟଣା ବହୁଳ, ଘାତପ୍ରତିଘାତରେ ବିବ୍ରତ ଓ ବିପର୍ଯ୍ୟସ୍ତ ତାଙ୍କ ସାହିତ୍ୟ ସାଧନା ମଧ୍ୟ ସେହିପରି ଖଣ୍ଡିତ ଓ ବିଶୃଙ୍ଖଳିତ । ସବୁଜ ସମସାମୟିକ ଭାବେ ସବୁଜର ପଳାୟନବାଦୀ କାବ୍ୟସ୍ୱରଠାରୁ ନିଶ୍ଚିତ ଦୂରତାରେ ରହି ମାନସିଂ ଯେଉଁପରି ନିଜକୁ ଜଣେ ଏକକ କବିଭାବେ ପ୍ରତିଷ୍ଠିତ କରିପାରିଛନ୍ତି ଖୁବ୍ ଶୀଘ୍ର ନିଜସ୍ୱ କାବ୍ୟସ୍ୱରକୁ ପରିହାର କରି ରବୀନ୍ଦ୍ର ପ୍ରଭାବରେ ଏକ ଇନ୍ଦ୍ରିୟୋତ୍ତର କାବ୍ୟକବିତାକୁ ଆବୋରି ବସି ତାଙ୍କ କାବ୍ୟ-ଆବେଗର ବହୁବାଞ୍ଛିତ କେନ୍ଦ୍ରବିନ୍ଦୁରୁ ମଧ୍ୟ ସେହିପରି ବିଚ୍ୟୁତ ହୋଇପଡ଼ିଛନ୍ତି । 'କୋଣାର୍କ', 'ସାଧବଝିଅ' ଓ ମାଟିବାଣୀ'ର 'ବାରବାଟୀ', 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ଆଦି ରୋମାଣ୍ଟିକ କବିତାର ସ୍ରଷ୍ଟାଭାବେ ସେ ଯେପରି ସତ୍ୟବାଦୀ ଯୁଗର ଉଗ୍ର ଜାତୀୟଭାବନା ସହିତ ନିଜର ପ୍ରାଥମିକ କାବ୍ୟପ୍ରୟାସରେ ଯୋଗସୂତ୍ର ରକ୍ଷା କରିଛନ୍ତି 'ଧୂପ'ର ଉଗ୍ର ଦେହବାଦୀ କବିତା ରଚନା କରି ରୋମାଣ୍ଟିକ୍ କାବ୍ୟଚେତନାଠାରୁ କ୍ରମେ ଅପସରି ମଧ୍ୟ ଯାଇଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ମାନସିଂହଙ୍କ କଳନା କାଳରେ ସମାଲୋଚକମାନେ ଏହି ବହୁବ୍ୟାପ୍ତ ପ୍ରତିଭାର ଦୃଷ୍ଟିମାନସକୁ ଅନୁଧ୍ୟାନ କରିବା ଦିଗରେ ନିଶ୍ଚିତଭାବେ ଦ୍ୱିଧାଗ୍ରସ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ବହୁ ପରସ୍ପର ବିରୋଧୀ ଦ୍ୱୈତ ଚେତନାରେ ଶବଳିତ ତାଙ୍କ କାବ୍ୟ ଭାବନାର ପୌନଃପୌନିକ ପରିବର୍ତ୍ତନର ମୂଳ ସୂତ୍ରଟିକୁ ଧରି ନ ପାରିଲେ ମାନସିଂହଙ୍କୁ ବୁଝିବା କଠିନ ହେବ । ଏପରିକି 'ଜେମା'ର ଆନ୍ତରିକ ଗ୍ରାମ୍ୟାନୁଭୂତିରୁ 'କମଳାୟନ'ର ନଗରୀୟ ଓ ଆନ୍ତର୍ଜାତୀୟ ପରିବେଶ ମଧ୍ୟକୁ ମାନସିଂହ ଚିନ୍ତାମାନସର କ୍ଷିପ୍ର ଗତି ସହିତ ମାନସିକ ଯୋଗାଯୋଗ ସ୍ଥାପିତ ନ ହେଲେ କବି ମାନସିଂହଙ୍କ ବହୁ ବ୍ୟାପୀ ପ୍ରତିଭାକୁ ସଠିକ୍ ଉପଲବ୍ଧ କରାଯାଇ ପାରିବ ନାହିଁ । ସେ ଯେତିକି ଈଶ୍ୱରବାଦୀ, ସେତିକି ନିରୀଶ୍ୱରବାଦୀ, ଯେତିକି ଦେଶୀୟ ସେତିକି ବୈଦେଶିକ; ଯେତିକି ଗ୍ରାମ୍ୟ ସେତିକି ନାଗରିକ, ଯେତିକି ସ୍ୱକୀୟା ପ୍ରଣୟ-ଆସକ୍ତ କାବ୍ୟ ଭାବନାରେ ଉଚାଟିତ ସେତିକି ପରକୀୟା ପ୍ରୀତିରସ ମୁଗ୍ଧ କାବ୍ୟ ଚେତନାରେ ଉତ୍ପ୍ଳୁତ—ସବୁ ବିରୋଧସତ୍ତ୍ୱ ଓ ଓ ଦ୍ୱୈତାନୁଭୂତିର ସେ ଏକ ଅଦ୍ଭୁତ ସମାହାର ।

ପୁଣି ଗଦ୍ୟ ଜଗତକୁ ଦୃଷ୍ଟି ପକାନ୍ତୁ । ସମାଲୋଚନାର ସ୍ୱକୀୟ ଶୈଳୀ ଓ ପାଣ୍ଡିତ୍ୟରେ ତାଙ୍କ ଆଲୋଚନା ଯେତିକି ହୃଦ୍ୟ ସେତିକି କଠୋର । 'ମାଟିର ମହାକବି ସାରଳା ଦାସ'ର ବିଶ୍ଲେଷଣାତ୍ମକ ଦିଗ୍ ଦର୍ଶନ ମାନସିଂହଙ୍କ ପ୍ରତିଭାର ଏକ ବିପୁଳ ସ୍ୱୀକୃତି ଲୋଡ଼ିଥିଲା ବେଳେ ତାଙ୍କ ସମାଲୋଚନା ଶାସ୍ତ୍ରରେ ଭରି ରହିଥିବା ଅନପେକ୍ଷ ଅସୂୟା ଓ ନିରପେକ୍ଷତା ଶୂନ୍ୟ କଳନା ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'କୁ ଏକ ବିବଦମାନ ଗ୍ରନ୍ଥରେ ପରିଣତ କରି ଦେଇଛି । 'ପଶ୍ଚିମ ପଥିକ'ର ସରସ ସୁନ୍ଦର ଗଦ୍ୟ ଶୈଳୀ 'ଓଡ଼ିଆ ସମାଜ ଓ ସାହିତ୍ୟରେ' ତିରୋହିତ । ନଦୀ ଶଯ୍ୟା ପରି ତାଙ୍କ ଗଦ୍ୟର ଶୈଳୀ କେଉଁଠି ମୁକ୍ତ ଓ ସମତଳ ତ କେଉଁଠି କଠିନ ଓ କଙ୍କରିଳ । 'ଶିଖ ବିପ୍ଳବର ଗାଥା' ପରି ପ୍ରଜାବନୀ ଗ୍ରନ୍ଥରେ ସେ ଯେତେ ସାହିତ୍ୟିକ ସିଦ୍ଧି ହାସଲ କରିପାରି ନାହାନ୍ତି 'ସରସ୍ୱତୀ ଫକୀରମୋହନ' ପରି ଏକ ଜୀବନୀ ସାହିତ୍ୟ ରଚନାରେ ତାଙ୍କ ସିଦ୍ଧିର ମାତ୍ରା ବହୁ ଅଧିକ । ଆତ୍ମ-ଜୀବନୀରେ କବି ଯେତେ ସଂଯମୀ ନୁହନ୍ତି ଫକୀରମୋହନଙ୍କ ଜୀବନୀ ରଚନାରେ ବରଂ ଅଧିକ ସଂଯତ ଓ ପରିମିତ । 'କାଳିଦାସ ଓ ସେକ୍ସପିଅର'ଙ୍କ ସମ୍ପର୍କୀୟ ତୁଳନାତ୍ମକ ଗ୍ରନ୍ଥ ପିଏଚ୍. ଡି ନିବନ୍ଧ ଭାବେ ତାଙ୍କୁ ଯେପରି ଆନ୍ତର୍ଜାତିକ ସ୍ୱୀକୃତି ଦେଇଛି 'Saga of the land of Jagannath' ଗ୍ରନ୍ଥ ରଚନାରେ ତାଙ୍କ ସ୍ୱଦେଶ ଓ ସଂସ୍କୃତି ପ୍ରୀତିର ନିଦର୍ଶନ ଓ ଅଭିନବ ବିଶ୍ଲେଷଣ ସେହିପରି ସମସ୍ତଙ୍କୁ ବିସ୍ମିତ କରିଛି । ପୁଣି 'ଗୀତା'ଠାରୁ ଆରମ୍ଭ କରି 'ଧମ୍ମପଦ' ବାଟ ଦେଇ 'ଗୁରୁ ନାନକ ବାଣୀ' ରଚନା ପର୍ଯ୍ୟନ୍ତ ତାଙ୍କ ଆନ୍ତରିକ ଅନ୍ୱେଷାର ଶେଷ ନାହିଁ । ଶୁଣିଛି ଜୀବନର ଶେଷ ଭାଗରେ ସେ ସବୁ ଧର୍ମସଂସ୍ଥା ଓ ଭାରତର ସବୁ ଧର୍ମଗୁରୁ ( spiritual leaders ) ଙ୍କ ପାଖକୁ ଅନେକାଂଶରେ ହୋଇ ଧାଇଁ ଯାଇଛନ୍ତି । ପଣ୍ଡିଚେରୀରୁ ଦେଓଘର ପର୍ଯ୍ୟନ୍ତ କୁଟପାର୍ତ୍ତିଠାରୁ ଋଷିକେଶ ପର୍ଯ୍ୟନ୍ତ ଏହି ଅନବଦମିତ ଅନ୍ୱେଷା ସତ୍ତ୍ୱେ କେଉଁଠି ସେ ନିଜକୁ ଆଶ୍ୱସ୍ତ କରିପାରି ନାହାନ୍ତି । ତେଣୁ କୌଣସି ନିର୍ଦ୍ଦିଷ୍ଟ ଧର୍ମ ସମ୍ପ୍ରଦାୟ ପାଖରେ ସେ ନିଜକୁ ସମର୍ପଣ କରି ଦେଇ ନାହାନ୍ତି । ବରଂ ଚିନ୍ତାଧାରାରେ ସେ ଥିଲେ ସର୍ବଧର୍ମ ସମନ୍ୱୟବାଦୀ ପରମ ପ୍ରେମିକ । ଜ୍ଞାନ ଓ ଦର୍ଶନର ବ୍ୟାପକ ସନ୍ଧାନରେ ସେ ଯଥାର୍ଥରେ ଥିଲେ ଯତି ଓ ଅନୁବ୍ରତୀ; ଅଥଚ କାବ୍ୟ କବିତାର ରଚନାରେ କେତେ ସୁକୁମାର ଓ ସରସ ଅନୁଭୂତିର ସେ ଉଜ୍ଜ୍ୱଳ ରୂପକାର । ମାନସିଂହଙ୍କୁ ପ୍ରକୃତରେ କଳନା କରିବାକୁ କେହି ଏ ପର୍ଯ୍ୟନ୍ତ ଆଗେଇ ଆସିଛନ୍ତି ବୋଲି ମନେହୁଏ ନାହିଁ । ସ୍ପଷ୍ଟ କହିବାକୁ ଗଲେ ଆମର ଏ 'ପରିକ୍ରମା' ମଧ୍ୟ ମାନସିଂହ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଆଲୋଚନା ନୁହେଁ । ଏ ଦିଗରେ ଗୋଟିଏ ସାଂସ୍କୃତିକ ସଂସ୍ଥାର ଯେଉଁ ସୀମିତତା ରହିଛି । ତାହାରି ମଧ୍ୟରେ ପୂର୍ବାପର ସଂସଦର ଏହି ସପ୍ତମ ସଂକଳନ ଆଜି ସୁଧୀ ପାଠକଗୋଷ୍ଠୀଙ୍କ ଉଦ୍ଦେଶ୍ୟରେ ନିବେଦିତ ହେବାକୁ ଯାଉଛି । ମୋର ବିଶ୍ୱାସ ଏ ପୁସ୍ତକଟି ମାନସିଂହ ସାହିତ୍ୟର ବହୁମୁଖୀ ଦିଗକୁ ସ୍ପର୍ଶ କରୁଥିବାରୁ ସମସ୍ତଙ୍କ ଦ୍ୱାରା ନିଶ୍ଚିତ ଆଦୃତ ହେବ ।

ଏହି ପରିପ୍ରେକ୍ଷୀରେ ମୁଁ ଓଡ଼ିଶା ସରକାରଙ୍କ ଶିକ୍ଷ ବିଭାଗୀୟ ପୁସ୍ତକ ନିର୍ବାଚନ ସଂସ୍ଥାର ବିଚାର ବିମର୍ଷ ସମ୍ପର୍କରେ ପଦେ ଅଧେ କହିବାକୁ ଉଚିତ ମନେ କରୁଛି । ପୁସ୍ତକ ନିର୍ବାଚନ ପାଇଁ ସରକାରୀ ସ୍ତରରେ ଗଠିତ ଏହି ସଂସ୍ଥା ଯେଉଁ ମନମୁଖୀ କାରବାର ପ୍ରଦର୍ଶନ କରୁଛନ୍ତି ତାହା ଅନୁଷ୍ଠାନମାନଙ୍କ ବିକାଶ କ୍ଷେତ୍ରରେ ଘୋର ବାଧକ ହେଉଅଛି । ପୂଜ୍ୟପୂଜା ସଂସଦ ପରି ଯେଉଁ ଅନୁଷ୍ଠାନଗୁଡ଼ିକ ଉଚ୍ଚକୋଟୀର ପୁସ୍ତକ ପ୍ରକାଶନ ଓ ଏ ଦେଶର ସଂସ୍କୃତିର ପୁନର୍ଜାଗରଣ କ୍ଷେତ୍ରରେ ସଂକଳ୍ପବଦ୍ଧ ଭାବରେ କାମ କରି ଆସିଛନ୍ତି ନାନା ଅଳକ ଆଳରେ ସେମାନଙ୍କ ପୁସ୍ତକ କିଣା ହେବା ଦିଗରେ ଏହି ସଂସ୍ଥା ଅନ୍ତରାୟ ଭାବେ ଠିଆହୋଇଛନ୍ତି । ଉଦାହରଣ ସ୍ୱରୂପ ଗୋପବନ୍ଧୁ ଶତବାର୍ଷିକ ଉତ୍ସବ କାଳରେ ପୂଜ୍ୟପୂଜା ସଂସଦ ପ୍ରକାଶିତ 'ଗୋପବନ୍ଧୁ ପରିକ୍ରମା' ସବୁଠାରୁ ଶ୍ରେଷ୍ଠ ସଂକଳନ ଭାବରେ ସୁଧୀସମାଜ ଦ୍ୱାରା ଆଦୃତ ହୋଇଥିବା ବେଳେ କୌଣସି ଏକ ଅର୍ଥହୀନ କାରଣରେ ଏହାକୁ ପୁସ୍ତକ ସଙ୍ଖ୍ୟା ଭିତରେ ନ ନେଇ ପତ୍ରିକା ବୋଲି କୁହାଯାଇଛି, ତେଣୁ ସ୍କୁଲ କଲେଜ ଛାତ୍ରମାନଙ୍କୁ ଏ ପୁସ୍ତକ ପ୍ରାପ୍ତିରୁ ସମ୍ପୂର୍ଣ୍ଣ ବଞ୍ଚିତ କରାଯାଇଛି । ସେଥିପାଇଁ ଆମେ 'ମାନସିଂହ ପରିକ୍ରମା'ର ବ୍ୟାପକ ବହୁଳ ପ୍ରକାଶନ ନିମନ୍ତେ ବାଧ ହୋଇ ଗୋଟିଏ ହେଲେ ବିଜ୍ଞାପନ ସଂଗ୍ରହ କରିନାହୁଁ । ଏଣେ ଏହିପରି ପୁସ୍ତକ ପ୍ରକାଶନ ନିମନ୍ତେ ସରକାରୀ ଅନୁଦାନ ମଧ୍ୟ ପର୍ଯ୍ୟାପ୍ତ ନୁହେଁ । ଏହା ଫଳରେ ଅନୁଷ୍ଠାନର କାର୍ଯ୍ୟକ୍ରମରେ ଯେଉଁ ବାଧା ସୃଷ୍ଟି ହୋଇଛି ତାହା ଏଠାରେ କହିବା ସମ୍ଭବ ନୁହେଁ । ଶିକ୍ଷା ବିଭାଗ ପୁସ୍ତକ ମନୋନୟନ ସଂସ୍ଥାର ସଭ୍ୟମାନେ ସେମାନଙ୍କ ଅସାଂସ୍କୃତିକ ମନୋବୃତ୍ତି ପରିବର୍ତ୍ତନ କରିବାକୁ ଚେଷ୍ଟା କରିବେ ଓ ସ୍ୱେଚ୍ଛାସେବୀ ସାଂସ୍କୃତିକ ସଂସ୍ଥାମାନଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକଗୁଡ଼ିକୁ ମନୋନୟନ କରିବାରେ ଏଣିକି ଅଗ୍ରାଧିକାର ଦେବେ, ଏହା ଆଶା କରିବା କଥା । ପୁସ୍ତକ ଯଦି ତାର ଗୁଣାତ୍ମକ ମୂଲ୍ୟରୁ ଉଚ୍ଚକୋଟୀର ହୋଇଥିବ ତେବେ ତାହା ସ୍ମାରକ ଗ୍ରନ୍ଥ ହେଲେ ମଧ୍ୟ କିଣାଯିବା ଉଚିତ । ପୁସ୍ତକ ପ୍ରକାଶକ ସଂସ୍ଥାର ସଭ୍ୟମାନେ ନିଜ ନିଜର ଓ ନିଜ ସମ୍ପର୍କୀୟ ସମ୍ପର୍କୀୟମାନଙ୍କର ନିମ୍ନାଧିକ ପୁସ୍ତକ ପ୍ରଚଳିତ ଭାବେ ମନୋନୀତ କରୁଥିବାବେଳେ ଦେଶର ସାଂସ୍କୃତିକ ସଂସ୍ଥାମାନଙ୍କ ପୁସ୍ତକଗୁଡ଼ିକୁ ପତ୍ରିକା ବା ସ୍ମାରକ ଗ୍ରନ୍ଥ କହି ଉପେକ୍ଷା କରିବା ପରିତାପର ବିଷୟ ।

ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ 'ମାନସିଂହ ପରିକ୍ରମା' ପ୍ରକାଶନ ନିମନ୍ତେ ଆମକୁ ବିଶେଷ ଉତ୍ସାହିତ କରିଥିବାରୁ ଏହି ସଂସ୍ଥାର ନିର୍ଦ୍ଦେଶକ ଶ୍ରୀଯୁକ୍ତ ଧୀରେନ୍ଦ୍ର କୁମାର ପାଢ଼ୀଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଯେଉଁ ବିଶିଷ୍ଟ ସମାଲୋଚକମାନେ ସେମାନଙ୍କ ମୂଲ୍ୟବାନ ଅବଦାନରେ ଏହି ପୁସ୍ତକର ଶ୍ରୀ ବୃଦ୍ଧି କରିଛନ୍ତି ମୁଁ ସେମାନଙ୍କୁ ମଧ୍ୟ କୃତଜ୍ଞତା ଜଣାଉଛି । ସ୍ୱର୍ଗତ ମାନସିଂହଙ୍କ

ସହଧର୍ମିଣୀ ଶ୍ରୀମତୀ ହେମଲତା ମାନସିଂ ମୋର ଅନୁରୋଧକ୍ରମେ ମାନସିଂଙ୍କ ସମ୍ପର୍କରେ ବହୁ ବିରଳ ତଥ୍ୟ ତାଙ୍କ ସ୍ମୃତିଚାରଣରେ ପ୍ରକାଶ କରି ମୋର ବିଶେଷ କୃତଜ୍ଞତା ଭାଜନ ହୋଇଛନ୍ତି । ମାନସିଂହଙ୍କ ସାହିତ୍ୟର କଳନା ଦିଗରେ ଏକାମ୍ର ସାହିତ୍ୟ ସଂସଦ ତରଫରୁ ପ୍ରକାଶିତ 'ମାନସିଂହ ସ୍ମରଣିକା' ମଧ୍ୟ ଏ ସଙ୍କଳନ ପ୍ରକାଶନରେ କିଛି ଦିଗ୍ ଦର୍ଶନ ଦେଇଛି । ମୁଁ ଏହି ସଂସ୍ଥାର ଅଗ୍ରଗାମୀ ପଦକ୍ଷେପ ପାଇଁ କର୍ମକର୍ତ୍ତା ମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି । ଶେଷରେ ସଂସଦର ସଭାପତି ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଉତ୍ସାହ ଓ ପରାମର୍ଶ ପାଇଁ ମୁଁ କୃତଜ୍ଞତା ଜଣାଇ ଏ ରାଜ୍ୟର ପୂଜ୍ୟପୂଜା ଅନୁବ୍ରତ ବହୁ ସ୍ୱେଚ୍ଛାସେବୀ ସଂସ୍ଥା ଓ ଅଗଣିତ ପାଠକ ସମାଜ ହାତରେ ଏହି ସଙ୍କଳନଟି ଅର୍ପଣ କରୁଅଛି ।

ବାଣୀବିହାର

**ନିତ୍ୟାନନ୍ଦ ଶତପଥୀ**
ସମ୍ପାଦକ, ପୂଜ୍ୟପୂଜା ସଂସଦ

# ମାନସିଂହ ରଚନା ସମ୍ଭାର

ଜନ୍ମ—୧୯୦୫ ମସିହା    ମୃତ୍ୟୁ—୧୯୭୩ ମସିହା

ପ୍ରଥମ ପ୍ରକାଶିତ କବିତା 'କୋଣାର୍କ'—ଏହା ପ୍ରଥମେ ଶ୍ରୀ ଛଦ୍ମ ନାମରେ 'ତରୁଣୀ' ଆଷାଢ଼, ୧୩୩୩ (ଜୁନ ୧୯୨୬) ସଂଖ୍ୟାରେ ପ୍ରକାଶିତ ।

ପ୍ରଥମ ପ୍ରକାଶିତ ପୁସ୍ତକ—'ଗ୍ରଜକବ' (ପ୍ରଥମ ପ୍ରକାଶ ୧୯୨୮) କଟକ ସତ୍ୟବାଦୀ ପ୍ରେସରେ ମୁଦ୍ରିତ ଓ 'ପ୍ରଗତି ସଙ୍ଘ'ଦ୍ୱାରା ପ୍ରକାଶିତ ।

**କବିତା ପୁସ୍ତକ :**

୧ । ଧୂପ (୧୯୩୧) (୧୯୪୮)
୨ । ହେମଶସ୍ୟ (୧୯୩୩) (୧୯୩୫)
୩ । ହେମ ପୁଷ୍ପ (୧୯୩୫) (୧୯୪୭)
୪ । କୋଣାର୍କ (୧୯୨୬)
୫ । ପ୍ରେମ ପୁଷ୍ପ (୧୯୩୫)
୬ । ପ୍ରେମଶସ୍ୟ (୧୯୪୫)
୭ । ଅକ୍ଷତ (ବିଭିନ୍ନ ସମୟର)
୮ । ମାଟି ବାଣୀ (୧୯୪୭)
୯ । ଜୀବନ ଚିତା (୧୯୪୭)
୧୦ । ବାପୁ ତର୍ପଣ (୧୯୪୮)
୧୧ । ଋଣ (୧୯୫୬)
୧୨ । ସିନ୍ଧୁ ଓ ବିନ୍ଦୁ (୧୯୬୨)
୧୩ । ସ୍ୱରଚ୍ଛ୍ୟାଶ୍ରମ (୧୯୫୨-୫୬)
୧୪ । କିଶୋର କବିତା (ବିଭିନ୍ନ ସମୟର)
୧୫ । ଗୀତ ବେଣୁ (ବିଭିନ୍ନ ସମୟର)

**କାବ୍ୟ :**

୧୬ । ଉପେକ୍ଷିତା (୧୯୨୮)
୧୭ । ନକ୍ୱଣ
୧୮ । ସାଧବ ଝିଅ, (୧୯୨୯, ୧୯୩୧, ୧୯୪୩ ରେ ସମାପ୍ତ)
୧୯ । ଶୁଭ ଦୃଷ୍ଟି (୧୯୩୦, ୧୯୩୫, ୧୯୩୫, ୧୯୪୭)

୨୦ । ଜେମା (୧୯୦୨)
୨୧ । କମଲାୟନ (୧୯୪୬)
୨୨ । ମାନସିଂହ ଚୟନ ୧ମ ଖଣ୍ଡ (୧୯୫୦)
୨୩ । ମାନସିଂହ ଚୟନ ୨ୟ ଖଣ୍ଡ (୧୯୫
୨୪ । ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ (୧୯୬ )
୨୫ । ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ (୧୯୬ )

**ନାଟକ-ନାଟିକା-ଗୀତିନାଟ୍ୟ :**

୨୬ । ରାଜକବି ଉପେନ୍ଦ୍ର (୧୯୨୮)
୨୭ । ପୁଷ୍ପିତା (୧୯୩୦, ୧୯୫୩)
୨୮ । ପୂଜାରଣୀ (୧୯୩୨, ୪ର୍ଥ ସଂସ୍କରଣ ୧୯୫୩)
୨୯ । ନଷ୍ଟ ନୀଡ (୧୯୩୮, ୧୯୬୪
୩୦ । ବାରବାଟୀ (୧୯୫୧) ୨ୟ ସଂସ୍କରଣ
୩୧ । ବୁଦ୍ଧ (୧୯୫୧)
୩୨ । ଶାସନ ଚକ୍ର (୧୯୫୧)
୩୩ । ଦୁର୍ଭିକ୍ଷ (୧୯୫୫)
୩୪ । ବୁଦ୍ଧଦୃଷ୍ଟି
୩୫ । ବୃଷ୍ଟାଭିନୟ

**ଭ୍ରମଣ କାହାଣୀ :**

୩୬ । ପଶ୍ଚିମ ପଥିକ (୧୯୨୭) ଲେଖା ୧୯୩୮ ରୁ

**ଉପନ୍ୟାସ :**

୩୭ । ଅନ୍ୱେଷଣ (୧୯୫୭)

**ପ୍ରବନ୍ଧ ଓ ସମାଲୋଚନା :**

୩୯ । କବି ଓ କବିତା (୧୯୪ ) (୧୯୬୩)
୩୦ । ଜୀବନପଥ (୧୯୪୯) (୧୯୫୭)
୪୧ । ଓଡ଼ିଆ ସମାଜ ଓ ସାହିତ୍ୟ (୧୯୫୧) (୧୯୬୩)
୪୨ । ସାହିତ୍ୟ ପ୍ରଜ୍ଞା
୪୩ । ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ (୧୯୫୩ ୨ୟ ସଂ ୧୯୫୭)
୪୪ । ମାଟିର ମହାକବି ସାରଳା ଦାସ (୧୯୫ ) (୧୯୭୧)

୪୫ । ଶିକ୍ଷାବ୍ରତର ଗାଥା (୧୯୬୫)
୪୬ । ଜୀବନୀ ଓ ପ୍ରବନ୍ଧ (୧୯୫୨)
୪୭ । ଓଡ଼ିଆ ସାହିତ୍ୟର ଇତିହାସ (୧୯୬୨)
୪୮ । ସରସ୍ୱତୀ ଫକୀରମୋହନ (୧୯୭୨)
୪୯ । ଗୀତା ମାହାତ୍ମ୍ୟ (୧୯୬୯)
୫୦ । ସାର୍ବଜନୀନ ଗୀତା

ଅନୁବାଦ :

୫୧ । ରାମୋନ୍ନତର ପ୍ରେମାଙ୍କର କାହାଣୀ (୧୯୫୬)
୫୨ । ଓଥେଲୋ
୫୩ । ଗୁରୁ ନାନକ ବାଣୀ ଓ ରଚନା
୫୪ । ଧମ୍ମପଦ ଟୀକା
୫୫ । ଶ୍ରୀମଦ୍ ଭଗବତ ଟୀକା

ସଂକଳନ :

୫୬ । ମହତ ବାଣୀ (୧୯୬୬)

ଇଂରାଜୀ ରଚନା :

୫୭ । Citizen Education (1942)
୫୮ । History of Oriya Literature (1962)
୫୯ । Dreams in Educations (1968)
୬୦ । Kalidas & Shakespear (1969)
୬୧ । Ripples f Mohanadi (1971)
୬୨ । The Saga of the land of Jagannath (1971)
୬୩ । Fakirmohan Senapati, Maker of Indian literature (1876)



## ପୂଜ୍ୟପୂଜା ସଂସଦ ପ୍ରକାଶିତ ପୁସ୍ତକାବଳୀ :

୧ । ମଧୁ ସ୍ମରଣିକା (୧୯୬୭)
୨ । ନୀଳକଣ୍ଠ ପରିକ୍ରମା (୧୯୬୯)
୩ । ବ୍ରହ୍ମଗଜ ପରିକ୍ରମା (୧୯୭୧)
୪ । ଆଗ୍ରୁର୍ଯ୍ୟ ପରିକ୍ରମା (୧୯୭୩)
୫ । ଅଠବଡ଼ୀ ପରିକ୍ରମା (୧୯୭୫)
୬ । ଗୋପବନ୍ଧୁ ପରିକ୍ରମା (୧୯୭୭)
୭ । ମାନସିଂହ ପରିକ୍ରମା (୧୯୭୯)

## ପରବର୍ତ୍ତୀ ପଦକ୍ଷେପ :

୮ । ବୈକୁଣ୍ଠନାଥ ପରିକ୍ରମା (୧୯୮୦-୮୧)

- ମୁଖ୍ୟ କାର୍ଯ୍ୟାଳୟ—

ଗୋପବନ୍ଧୁ ପାଠାଗାର
ପୂଜ୍ୟପୂଜା ସଂସଦ
ଗୁହାଳିଆଗଣ୍ଡ, କଟକ-୭୫୩୦୦୮

- ମୁଖ୍ୟ ପରିବେଷକ—

ବିଦ୍ୟାପୁରୀ, ବିନୋଦବିହାରୀ
କଟକ-୭୫୩୦୦୨

# ଡକ୍ଟର ମାୟାଧର ମାନସିଂହଙ୍କ ଦୁଇଟି ଅପ୍ରକାଶିତ ଲେଖା

## ( ୧ ) ବିଷୁବ ମିଳନ ଓ ଲେଖକ ସମ୍ମେଳନ (୧୯୬୧)

[ ୧୯୬୧ ମସିହା ବିଷୁବ ମିଳନ ଉତ୍ସବରେ ଡକ୍ଟର ମାନସିଂହ ସଭାପତିତ୍ୱ କରିଥିଲେ ଓ ସେହି ବର୍ଷ ଗୁଜୁରାଟର ବିଶିଷ୍ଟ ସାହିତ୍ୟିକ ଶ୍ରୀ ଉମାଶଙ୍କର ଯୋଷୀ ମୁଖ୍ୟଅତିଥି ଭାବେ ଯୋଗ ଦେଇଥିଲେ । ସେହି ବର୍ଷର ଆଲୋଚନା ସମ୍ପର୍କରେ ଡକ୍ଟର ମାନସିଂହଙ୍କ ମୌଳିକ ପ୍ରତିକ୍ରିୟା ନିମ୍ନ ଲେଖାଟିରେ ପ୍ରକାଶ ପାଇଛି । ଏହା ଏକ ଐତିହାସିକ ସାଂସ୍କୃତିକ ଦଲିଲ୍ ଭାବେ ଗୃହୀତ ହେବ । —ସମ୍ପାଦକ ]

ଓଡ଼ିଶାରେ ୧୯୩୬ ପୂର୍ବରୁ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବଟି ଏକ ମର୍ଯ୍ୟାଦାବନ୍ତ ସାହିତ୍ୟିକ ଘଟଣା ଥିଲା । ବାହାରୁ ଲୋକ ଆଣିବା ଦରକାର ପଡ଼ୁ ନଥିଲା । ଓଡ଼ିଆ ସାହିତ୍ୟସେବୀଙ୍କ ଦ୍ୱାରାହିଁ କାମ ଚଳୁଥିଲା । କୌଣସି ଦେଶର ସାହିତ୍ୟିକ ଉତ୍ସବ ପାଇଁ ଭିନ୍ନ ଭାଷାଭାଷୀ ଲୋକଙ୍କ ଉଦ୍‌ବୋଧନ ଦର୍କାର ମଧ୍ୟ ପଡ଼ୁନାହିଁ । ପଶ୍ଚିମ ଇଂରାଜୀ ସାହିତ୍ୟିକମାନେ ଏକାଠି ହୋଇ ନିଜର ସାହିତ୍ୟର ବିଗ୍ଭର କରିବାକୁ ବସିଲେ ଜଣେ ଇଂରେଜ ସାହିତ୍ୟିକର ଉଦ୍‌ବୋଧନର ଆବଶ୍ୟକତା ସେମାନେ ଅନୁଭବ କରନ୍ତି ନାହିଁ । ଆମ ଓଡ଼ିଶାରେ ଏବେ ଏହା ଏକ ନବ ସର୍ଜନା । ଉତ୍କଳ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ନିର୍ବାଚିତ ସଭାପତି ଗୋଟିଏ ଲିଖିତ ଭାଷଣ ପଢ଼ୁଥିଲେ । କିଛି ପ୍ରସ୍ତାବ ନିଆ ଯାଉଥିଲା । ଏତେ ଘର ନାଟ ତାମସାର ଆୟୋଜନ ସେତେବେଳେ ନଥିଲା । ଯାତ୍ରା ଓ ଗାମ୍ଭୀର୍ଯ୍ୟ ଭିତରେ ସାହିତ୍ୟିକ ଉତ୍ସବ ଯେପରି ହେବାର କଥା ସେହିପରି ହେଉଥିଲା । ସାହିତ୍ୟ ସମାଜର ବାର୍ଷିକୋତ୍ସବର ସଭାପତିମାନଙ୍କର ଅଭିଭାଷଣର ସଂଗ୍ରହ ଆଜି ଏକ ମୂଲ୍ୟବାନ ଗ୍ରନ୍ଥ ।

*

୧୯୩୬ ପରେ ଉତ୍କଳରେ ପେଶାଦାର ରାଜନୈତିକମାନଙ୍କର ଶାସକ ଭାବରେ ଆବିର୍ଭାବ ହୁଅନ୍ତେ ସାଂସ୍କୃତିକ ଅନୁଷ୍ଠାନମାନଙ୍କର ମହିମାର ଅପଚୟ ଆରମ୍ଭ ହେଲା । ଜନତାର ଦୃଷ୍ଟି ରାଜନୈତିକ ଦଳ, ନିର୍ବାଚନ ଓ ମନ୍ତ୍ରିମଣ୍ଡଳର ଆବିର୍ଭାବ ଓ ବିଲୟ ଉପରେ । ପ୍ରବହମାନ ଘଟଣାବଳୀ ଯେତେବେଳେ ଏପରି ଉତ୍ତେଜକ, ଚିରସ୍ଥାୟୀ ପାଇଁ କିଏ ଅଧିକ ବ୍ୟସ୍ତ ହେବ ? ଫଳରେ, ଆଜି ଚିରନ୍ତନ ଶରଣ ପଶୁଛି କ୍ଷଣିକର ଚରଣ ତଳେ । ସରସ୍ୱତୀଙ୍କୁ ଆଜି ବାଇଜୀର ନାଚ ନାଚିବାକୁ ହେଉଛି । ତାଙ୍କ ବୀଣାରେ ଆଜି ସିନେମାଗୀତ ନ ବାଜିଲେ ତାର ମୂଲ୍ୟ ରହୁନାହିଁ । ସାଂସ୍କୃତିକ ଅନୁଷ୍ଠାନରେ ତାମସା ନ ପୂରାଇଲେ ତାର ବଞ୍ଚିବା ସମ୍ଭବ ହେଉନାହିଁ । ପରିଶେଷରେ ଓଡ଼ିଶାର କ୍ଷୁଦ୍ର ସାଂସ୍କୃତିକ ଫସଲଟିକୁ କଟକ ଓ ଭୁବନେଶ୍ୱର ଭିତରେ ଭାଗ ବାଣ୍ଟି ଦେବା ଫଳରେ, ଭାରତୀୟ କୃଷକର କ୍ଷେତ ଜମିପରି ତାହା ଗୌରବମୟ ଶସ୍ୟରେ ଚିହ୍ନିତ ନ ହୋଇ, କେବଳ ହିଡ଼-ରେଖାରେ ହିଁ ଚିହ୍ନିତ ହେବାକୁ ଯାଉଛି ।

ଏ ପରିସ୍ଥିତିରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଯେ ପ୍ରତିବର୍ଷ ଏକ ସାହିତ୍ୟିକ ଉତ୍ସବର ଆୟୋଜନ କରି ଆସୁଛନ୍ତି ଏହା ଅତୀବ ସୁଖ୍ୟାତିର କଥା । କିନ୍ତୁ କର୍ତ୍ତୃପକ୍ଷ ଯଦି ଏହାକୁ ଖାଣ୍ଟି ସାଂସ୍କୃତିକ ଅନୁଷ୍ଠାନ କରି ଗଢ଼ିବାକୁ ସ୍ୱପ୍ନ ଦେଖିଥାନ୍ତି, ତେବେ ସେଥିପାଇଁ ଏ ପର୍ଯ୍ୟନ୍ତ ଆଚରିତ ପନ୍ଥା ଏକାନ୍ତ କାମ୍ୟ ବୋଲି ମନେ ହେଉନାହିଁ ।

ଏ ବର୍ଷ ଏହି ଉତ୍ସବରେ ପ୍ରକୃତ ଲେଖକ ଓ ବୁଦ୍ଧିଜୀବୀ କେତେଜଣ ଯୋଗ ଦେଇଥିଲେ ? କେତେଜଣ ଅଧ୍ୟାପକଙ୍କ ମୁଖ ଦେଖି ମୁଁ ପ୍ରଥମେ ବଡ଼ ପ୍ରସନ୍ନତା ଅନୁଭବ କରିଥିଲି । କିନ୍ତୁ ପରେ ଦେଖୁଛି ଯେ ସେମାନେ ହୁଏତ କେବଳ ପୁରସ୍କାର ପାଇଁ ହିଁ ଆସିଥିଲେ, କାରଣ ସେମାନଙ୍କ ଭିତରୁ ଅଧିକାଂଶ ପୁରସ୍କାର ପାଇଲେ । ଦୁଇ ତିନିଜଣ ଜଣାଶୁଣା ଲୋକ, ଯେଉଁମାନେ ଓଡ଼ିଆ ଭାଷା ଓ ସାହିତ୍ୟର ସମସ୍ୟା ଆଲୋଚନା ହେଉଥିଲାବେଳେ ନିଶ୍ଚୟ ରହିବାର ଉଚିତ, କାରଣ ଯୋଗ୍ୟତା ଦୃଷ୍ଟିରୁ ଯେତେ ନୁହେଁ ପଦ-ପଦବୀ ଦୃଷ୍ଟିରୁ ଯେଉଁମାନଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟର କର୍ଣ୍ଣଧାର ବୋଲି ଧରାହେଉଛି, ସେମାନେ ଆସି ନ ଥିଲେ ।

ଏଇଠାରେ ଗୁଜରାଟୀ ସାହିତ୍ୟ ପରିଷଦର ସମ୍ମିଳନୀ ସମ୍ପର୍କରେ ଏ ବର୍ଷର ବମ୍ବେ ମିଳନର ମୁଖ୍ୟ ଅତିଥି ଶ୍ରୀ ଉମାଶଙ୍କର ଯୋଶୀ ଯାହା ମତେ କହିଥିଲେ ତାହା କହି ରଖେ ।

ଶ୍ରୀଯୁକ୍ତ କେ. ଏମ୍. ମୁନ୍ସୀଙ୍କ କର୍ତ୍ତୃତ୍ୱରୁ ଛଡ଼ାଇ ଆଣି ତରୁଣ ଗୁଜରାଟୀ ସାହିତ୍ୟିକମାନେ ଏକ ନୂତନ ସମ୍ବିଧାନ ଉପରେ ଏହି ପରିଷଦକୁ ଗଢ଼ିଛନ୍ତି । ଜାତିର ନାଡ଼ୀ ସହିତ ସାହିତ୍ୟ ଓ ସାହିତ୍ୟିକଙ୍କୁ ଘନିଷ୍ଠ ଭାବରେ ସଂପୃକ୍ତ ରଖାଇବା

ପାଇଁ ସେମାନେ ଗ୍ରନ୍ଥ ରଖିଛନ୍ତି ଦ'ବର୍ଷକୁ ତିନିଟଙ୍କା ମାତ୍ର । ଏଇ ତିନି ଟଙ୍କାରେ ସଭ୍ୟମାନେ ପୁଣି ଏକ ଛାପା ମୁଖପତ୍ର ପାଉଥାନ୍ତି । ତାହାଠୁ କିଛି ସାହାଯ୍ୟ ମିଳେ ବା ମିଳିବାର ଆଶା ଥିଲେହେଁ, ସାହିତ୍ୟିକମାନେ ସାହିତ୍ୟକୁ ନିଜର ମଧ୍ୟମାରେ ନିଜ ଶକ୍ତିରେ ଠିଆ କରେଇବାରେ ହିଁ ସଚେଷ୍ଟ । ସେମାନଙ୍କର ସମ୍ମିଳନୀକୁ ସେମାନେ ବିଶିଷ୍ଟ ନିମନ୍ତ୍ରଣ କୌଣସି ମନ୍ତ୍ରୀ ବା କୋଟିପତିଙ୍କୁ ଦିଅନ୍ତି ନାହିଁ । କିନ୍ତୁ ଯୋଶୀ କହୁଥିଲେ, ସଭା ବସିଲାବେଳେ ବମ୍ବେ-ଅହମଦାବାଦର କୋଟିପତିମାନେ ଆସି ବସିବାର ଦେଖାଯାନ୍ତି । ଏ ପର୍ଯ୍ୟନ୍ତ କୋଟିପତିର ଦେଶ ଗୁଜରାଟରେ ଗୁଜରାଟୀ ସାହିତ୍ୟ-ପରିଷଦର ନିଜର ବୋଲି ଖଣ୍ଡିଏ ମଧ୍ୟ ଘର ନାହିଁ । ତା' ତୁଳନାରେ ଆମର ସୁଦୃଶ୍ୟ ଶ୍ରୀରାମଚନ୍ଦ୍ର ଭବନ ଅଛି । କିନ୍ତୁ ଉତ୍କଳ ସାହିତ୍ୟ ସମାଜ ବୋଇଲେ ଯାହା ବୁଝାଇବାର କଥା ତାହା ଅଛି କି ? କିନ୍ତୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ମାନେ ଗୁଜରାଟୀ ସାହିତ୍ୟ ପରିଷଦ ପରି ମର୍ଯ୍ୟାଦାବନ୍ତ ଭାବରେ ନିଜ ମଧ୍ୟମାରେ ନିଜେ ଗଠିତ ହେବା ଉଚିତ ନୁହେଁ କି ?

ଏ ବର୍ଷର ବିଷୁବ ମିଳନର ଆଲୋଚନାର ବିଷୟ ଥିଲା "ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟର ସମସ୍ୟା ।" ଆଲୋଚନା ଉଦ୍‌ଘାଟନ କରିଥିଲେ ଅଧ୍ୟାପକ ଗୋଲକ ବିହାରୀ ଧଳ ।

ଏଥରର ମୁଖ୍ୟ ଅତିଥି ଉମାଶଙ୍କର ଯୋଶୀଙ୍କର ଭାଷଣଟି ସମସ୍ତଙ୍କର ସନ୍ତୋଷଜନକ ହେବାର ପ୍ରଧାନ କାରଣ ଏଇ ଯେ ତାହା ସୁନ୍ଦର, ସଙ୍କ୍ଷିପ୍ତ ଭାବରେ ଲେଖା ହୋଇଥିଲା । ପୂର୍ବେ ଉତ୍କଳ ସାହିତ୍ୟ ସମାଜର ସଭାପତିଙ୍କ ଭାଷଣ ଏହିପରି ଲିଖିତ ଆକାରରେ ପରିବେଷିତ ହେଉଥିଲା । ସବୁ ସାହିତ୍ୟ ସମ୍ମିଳନୀରେ ସେୟା ହିଁ ହୁଏ । ସାହିତ୍ୟ ସଭାରେ ଗୁଡ଼ାଏ ଏଣ୍ଡ୍ରା ତେଣ୍ଡ୍ରା ଅନିର୍ଦ୍ଦିଷ୍ଟ ଭାବରେ ବୋଲି ଯିବା ସୁସ୍ଥ ପରମ୍ପରା ଓ ଅଭ୍ୟାସ ନୁହେଁ । ସାହିତ୍ୟ ସଭାକୁ ଦେଖଣାହାରୀ ଓ ଶ୍ରବଣାହାରୀଙ୍କୁ ଟାଣିବାପାଇଁ ଗୋଟିପୋ-ପାଲା-ଦାସକାଠିଆ ଠିଆ କରେଇବା ପରି, ଏ ପ୍ରକାର ବାଗ୍ମିଳ ଆଲୋଚନା ମଧ୍ୟ ଏକାନ୍ତ ହେୟ । ଏପରି କ୍ଷେତ୍ରରେ ଘୋର ଅନିଚ୍ଛାସତ୍ତ୍ୱେ ଧରିଆଣି ବସେଇ ଦେଇଥିବା ବିଚାରା ସଭାପତିର ଅବସ୍ଥା ହିଁ ବିଶେଷ ଭାବରେ ସଙ୍କଟ ଜନକ । କାରଣ ପ୍ରସ୍ତାବ ଯଦି ଅଲିଖିତ, ଅନିର୍ଦ୍ଦିଷ୍ଟ ଓ ଅସମ୍ପୂର୍ଣ୍ଣ, ତା' ଉପରେ ଆଲୋଚନା ଚାଲିବ କେଉଁ ରାସ୍ତାରେ ? ପୁଣି ପ୍ରସ୍ତାବ ଏପରି ବ୍ୟାପକ ଯେ, ଆଲୋଚକମାନେ କି କଥା ବା ନ କହି ପାରନ୍ତି ? ଯଦି ପ୍ରତ୍ୟେକ ବକ୍ତା ଯେଝା ଲାଇନ୍‌ରେ କହି ଚାଲିଲେ, ତେବେ ଉଦଘାଟକଙ୍କର ଭାଷଣର ମୂଲ୍ୟ କ'ଣ, ଏଣେ ବିଚାରା ସଭାପତି ତା ଶେଷ ଭାଷଣରେ କ'ଣବା କହି ମୁଣ୍ଡି ମାରିବ ?

ଏଥର ବିଷୁବ ମିଳନର ଆଲୋଚନାରେ କିଛି ଅପ୍ରୀତିକର ଯଦି ଘଟିଥାଏ, ତେବେ ସମ୍ପୃକ୍ତ ବନ୍ଧୁଗଣ ସଭାପତିର ଏହି ଅନୈର୍ଷ୍ୟ (ଅନ୍‌ଏନ୍‌ଭିଏବଲ) ଦାୟିତ୍ୱକୁ ସହାନୁଭୂତିର ସହିତ ଦେଖିବାକୁ ଚେଷ୍ଟା କରିବେ ବୋଲି ଅନୁରୋଧ କରେ ।

ଯାହାହେଉ, ଉଦ୍‌ଘାଟକଙ୍କର ପ୍ରସ୍ତାବନା ଯେପରି ହୋଇଥାଉନା କାହିଁକି, ତା'ଉପରେ ପରବର୍ତ୍ତୀ ଆଲୋଚନା ବେଶ ସରଗରମ ହେଲା । ଅବଶ୍ୟ ଅବ୍ୟକ୍ତ ତୁଳନାରେ ବ୍ୟକ୍ତର ପରିମାଣ ଅତି କମ୍ । କିନ୍ତୁ କିଏ କରିପାରିବ ? ସକଳ ଅବ୍ୟକ୍ତକୁ ବ୍ୟକ୍ତ କରିବାପାଇଁ ସମୟ ଆସିବ କୁଆଡ଼ୁ ? କିଏ ବା ଧୈର୍ଯ୍ୟ ଧରି ହାତ ଅଛି ଶୁଣିବାକୁ ? ସବୁକଥା ବିଗ୍ରହ କରିବାକୁ ହେବ । କିନ୍ତୁ ଦେଖାଗଲା ଯେ ଶ୍ରୀଯୁକ୍ତ ଧଳଙ୍କ ଭାଷଣ ଉପରେ ଯାହାସବୁ ଆଲୋଚନା ହେଲା, ଭାବଧାରା ଅନୁଯାୟୀ ସେ ସମସ୍ତଙ୍କୁ ନିମ୍ନଲିଖିତ ଭାବରେ ଶ୍ରେଣୀ-ବିଭାଗ କରାଯାଇପାରେ । ଯଥା :—ଭାଷା-ତାତ୍ତ୍ୱିକ, ଗାଠନିକ, ମାନବିକ ଓ ସୃଜନିକ ।

ପ୍ରତ୍ୟେକଟି ଉପରେ ଆଲୋଚନାର ସଙ୍କେତ ଓ ମୋର ସାମାନ୍ୟ ମତାମତ ଏଠାରେ ଚୁମ୍ବକରେ ଲିପିବଦ୍ଧ କରାଯାଉଛି । ହୁଏତ ଏହା ଭବିଷ୍ୟତରେ କାମ ଦେବ ।

**ଭାଷାତାତ୍ତ୍ୱିକ—**

ଯଦିଓ ବିଷୟଟି ଥିଲା 'ଓଡ଼ିଆ ଭାଷା ଓ ସାହିତ୍ୟର ସମସ୍ୟା' ଭାଷାତାତ୍ତ୍ୱିକ ଶ୍ରୀ ଧଳଙ୍କ ଉଦ୍‌ଘାଟନିକ ଭାଷଣ ବସ୍ତୁତଃ କେବଳ ଭାଷାତତ୍ତ୍ୱକୁ କେନ୍ଦ୍ରକରି ହିଁ ଗଢ଼ି ଉଠିଥିଲା । ଧଳେ ସାହିତ୍ୟକୁ ଆଦୌ ସ୍ପର୍ଶ ନ କରି କେବଳ ତାଙ୍କର ନିଜ ଜ୍ଞାନକ୍ଷେତ୍ର ଭାଷାତତ୍ତ୍ୱ ଉପରେ ପୂରା ଭାଷଣ ଦେବା ଅନେକେ ପସନ୍ଦ କଲେନାହିଁ । ନ କରିବାର କଥା । ସେ କହିଲେ ଯେ, ସେ ଚାହୁଁଛନ୍ତି ଲିଙ୍ଗୁଇଷ୍ଟିକ୍ ସର୍ଭେ, ଗୋଟିଏ କଥାକୁ ଭିନ୍ନ ଭିନ୍ନ ଅଞ୍ଚଳରେ ଲୋକେ କିପରି ଭିନ୍ନ ଭିନ୍ନ ଭାବରେ କହନ୍ତି, ଲୋକ ମୁଖରେ ଇଂରାଜୀର ଅନୁକରଣରେ ନୂତନ ନୂତନ ଇଡ଼ିୟମ ଓ ଫ୍ରେଜେଜ୍ କିପରି ପ୍ରତ୍ୟହ ସୃଷ୍ଟି ହେବାରେ ଲାଗିଛି, ବିଦେଶୀ ଜଣେ ଏ ଭାଷାକୁ ଶିଖିବାକୁ ଚାହିଁଲେ କିପରି ତାକୁ ଶିଖାଇବାକୁ ହେବ, ପୁଣି ଆମେ ଅନ୍ୟଭାଷା ତୁଳନାରେ ଆମ ଭାଷା କି ଅବସ୍ଥାରେ ଅଛି ତାହା କେଉଁ କେଉଁ ଭାବରେ ଚିନ୍ତା କରିବାକୁ ହେବ ଇତ୍ୟାଦି କଥା । ବାହ୍ୟ ଓ ଆନ୍ତର ଦୃଷ୍ଟିରୁ ସେ ତାଙ୍କ ଆଲୋଚନାକୁ ଏଇପରି ଭାବରେ ଦୁଇଭାଗ କରି ବ୍ୟାଖ୍ୟାନ କରିଥିଲେ ।

ଧଳଙ୍କର ପ୍ରସ୍ତାବ ସବୁ ଉତ୍ତମ । ବିରୋଧ କରିବାର କିଛିନାହିଁ । ଧଳଙ୍କ ଭାଷଣରେ ଯେତେକନୁହେଁ ପରବର୍ତ୍ତୀ ବକ୍ତାମାନଙ୍କ ଭାଷଣରେ (ଡକ୍ଟର ମହତାବ, ଶ୍ରୀଯୁକ୍ତ ଗଡ଼ନାୟକ, ଶ୍ରୀ ଚନ୍ଦ୍ରଧର ମହାପାତ୍ର ପ୍ରଭୃତିଙ୍କ) ଆଲୋଚନା ବେଶ୍ ଉଚ୍ଚ-ସ୍ୱରକୁ ଉଠିଥିଲା । କିନ୍ତୁ ମୂଳ ସମସ୍ୟା ଏଇ ହେଲା ଯେ, ହାଟ ଭିତରେ ବ୍ରହ୍ମଜ୍ଞାନ ଭଳି, ସେ ପ୍ରକାର ତାତ୍ତ୍ୱିକ ଆଲୋଚନା ଅସ୍ଥାନ ଓ ଅବେଳରେ ପଡ଼ି ତାର ମର୍ଯ୍ୟାଦା ହରାଉଥିଲା । ସଭାର ସମ୍ମୁଖରେ ଯାତ୍ରା ଓ ପାଲାର ଆୟୋଜନ,

ସଭାର ଏକ ପାର୍ଶ୍ୱରେ ସାହିତ୍ୟର-ଧାର-ମାଡ଼ୁ-ନଥିବା ପୁରୁଷମାନଙ୍କର ମେଳା ଓ ଗଣ୍ଡଗୋଳ, ତେଣେ ପଶ୍ଚାତ୍ ଓ ଆରେକ ପାର୍ଶ୍ୱରେ କଛ-ଶୁଣ୍ଡ ନଥିବା-ବୁଝୁ-ନଥିବା-ଓ-ଯାହା-କେବେ-ଆରମ୍ଭ-ହେବ ବୋଲି-ବସି ରହିଥିବା ଗୁଡ଼ାଏ ସ୍ତ୍ରୀ ଓ ତାଙ୍କର ପିଲା ପିଚକାଙ୍କ ଚିତ୍କାର ଭିତରେ ସାହିତ୍ୟାଲୋଚନା କେବଳ ସମ୍ଭବ ହୋଇପାରେ ବୋଧହୁଏ ଓଡ଼ିଶା ଦେଶରେ ଓ ପ୍ରଜାତନ୍ତ୍ର ପ୍ରାଙ୍ଗଣରେ । ଅନ୍ୟ କେଉଁଠି ଏପରି ପରିସ୍ଥିତି କଳ୍ପନା ବି କରିଯାଇ ନ ପାରେ । ଜମିଦାରିଆ ବା ଦରବାରିଆ ପରିବେଶ ଓ ବୁଦ୍ଧିଜୀବୀମାନଙ୍କର ମେଳଣ ଓ ଆଲୋଚନା ଦୁଇଟା ଯେ ଏକ କଥା ନୁହେଁ, ଓଡ଼ିଶାରେ ଯେଉଁମାନେ ସାହିତ୍ୟ ସମ୍ମେଳନ ଇତ୍ୟାଦିର ସାଡ଼ମ୍ବର ଆୟୋଜନ କରିଥାନ୍ତି, ତାହା ସେମାନଙ୍କର ମନେ ରଖିବା ଉଚିତ ।

ସେ ଯାହା ହେଉ, ଭାଷାତାତ୍ତ୍ୱିକ ଆଲୋଚନାରେ, ଆଞ୍ଚଳିକ ଲୋକ-ଭାଷା ମାନଙ୍କରୁ ମନୋଜ୍ଞ ଭାବରେ ସୂକ୍ଷ୍ମଭାବ-ପ୍ରକାଶକ ଦେଶଜ ଶବ୍ଦାବଳୀର ସଂଗ୍ରହ (ଯଥା—ଡକ୍ଟର ମହତାବ ଦେଇଥିବା ସୁନ୍ଦର ଉଦାହରଣ, ପୁରୀରେ କଥିତ—'ଗୃହାଣୀ ମଣ୍ଡପ') ଓ ଲେଖକମାନଙ୍କର ସେ ସବୁ ଆସ୍ତେ ଆସ୍ତେ ନିଜ ନିଜ ରଚନାରେ ଷ୍ଟାଣ୍ଡାର୍ଡ ଓଡ଼ିଆ ଭିତରେ ପ୍ରବର୍ତ୍ତନ ପାଇଁ ଯେଉଁ ଆବେଦନ ଦେଖା-ଦେଇଥିଲା, ତାହା ସର୍ବତୋଭାବରେ ଅନୁମୋଦନୀୟ ଓ ଗ୍ରହଣୀୟ ।

ଏ ହେଲା ଓଡ଼ିଆ ଭାଷାର ସମଗ୍ରତାର ପରିପ୍ରେକ୍ଷିତରେ ଏକ ଉଦାର ଓ ପ୍ରଗତିଶୀଳ ମନୋଭାବର ପରିଚୟ । କିନ୍ତୁ ସେହି ଆଲୋଚନା ଭିତରେ ଭାଷାତାତ୍ତ୍ୱିକ ଅନୁଶୀଳନ ନାମରେ ଆଉ ଏକ ଭାଷଣ-ଭଙ୍ଗୀ କିଞ୍ଚିତ୍ ସଂଯମ ଦର୍କାର କରେ ବୋଲି ମନେ ହୁଏ । ସଭାପତି ଅଭିଭାଷଣରେ ଲେଖକ ଏଇ ଅଗ୍ରହଣୀୟ ଭଙ୍ଗୀ ଉପରେହିଁ ଜୋର୍ ଦେଇ ତାର ମତ ପ୍ରକାଶ କରିଥିଲେ । ତାହାହିଁ ଏଠାରେ କହି ରଖେ ।

ପ୍ରକୃତିରେ ଅନୁପାତ ଓ ସାମଞ୍ଜସ୍ୟ ହିଁ ପରମ ସାଧାରଣ ଅଥଚ ପରମ ବିସ୍ମୟକର ତତ୍ତ୍ୱ । ଆମର ଏଇ ଶରୀର, ଅବୟବମାନଙ୍କର ସାହଚର୍ଯରେ ଏପରି କୁଶଳୀ ଭାବରେ କାମ କରି ଚାଲିଛି ଯେ, ତାହା ଆମେ ଅନୁଭବହିଁ କରି ପାରୁନା । ଅବୟବଗୁଡ଼ିକ ନିଜ ନିଜ ସୀମା ଓ ଅନୁପାତରେ ରହିଛନ୍ତି ବୋଲି ସିନା ଶରୀରର ସାମଗ୍ରିକ ସୌନ୍ଦର୍ଯ ? ଧର, ସେଥିରୁ ଗୋଟାଏ—ମୁଣ୍ଡ, ବା ଗୋଡ଼, ବା ହାତ ତାର ସୀମା ଓ ଅନୁପାତ ଡେଇଁ ଯଦି ମୋଟା ବା କ୍ଷୀଣ ହେବାକୁ ଆରମ୍ଭ କରିବ, ତେବେ ସମଗ୍ର ଶରୀରର ଅବସ୍ଥା କ'ଣ ହେବ ? ପୁଣି ପ୍ରତ୍ୟେକ ଚିନ୍ତା ବା ଆଲୋଚନା ସମଗ୍ରତାରୁ ବିଚ୍ଛିନ୍ନ ହେଲେ, ସମଗ୍ର ଉପରେ ତାହା କି ବିଶୃଙ୍ଖଳା ପ୍ରବର୍ତ୍ତନ କରିବ ତାହା ମଧ୍ୟ ଆଲୋଚକମାନେ ଦେଖିବା ଉଚିତ । ଭାଷାତତ୍ତ୍ୱର ଦୋହାଇ ଦେଇ ଆମେ ଯଦି ଢେଙ୍କାନାଳକୁ କଟକରୁ ଅଲଗା, ପୁରୀକୁ ବଲାଙ୍ଗୀରରୁ ଅଲଗା, ଗଞ୍ଜାମକୁ ବାଲେଶ୍ୱରରୁ ଅଲଗା ବୋଲି ପ୍ରମାଣିତ କରିବାର ଚେଷ୍ଟା କରୁଁ ତେବେ ଏହାର

ପ୍ରତିନିଧି ନ ହୋଇପାରେ ତାହା ଦେଖିବା ଉଚିତ ନୁହେଁ କି । ଏପରି ବିସ୍ମୟ ଧାରା ପ୍ରକୃତିରେ କେତେ ପରିମାଣ ସତ୍ୟ ଉପରେ ପ୍ରତିଷ୍ଠିତ ତାହା ବିଶ୍ଳେଷ କରା-ଯାଉଛି କି ? ଇଂଲଣ୍ଡରେ ମଧ୍ୟ ପ୍ରତି ଦଶମାଇଲରେ କଥିତ ଭାଷାର ରୂପ ବଦଳେ । ଗ୍ରେଟ ଏକ ଦ୍ୱୀପ-ରାଜ୍ୟ ଗ୍ରେଟ୍ ବ୍ରିଟେନ୍ । ସେଥିରେ ଇଂଲଣ୍ଡ, ସ୍କଟ୍, ଆଇରିଶ, ୱେଲସ୍, ମାଁକସ, ଇତ୍ୟାଦି କେତେ ଯେ ପ୍ରଧାନ, ଅପ୍ରଧାନ ଭାଷା ଖୁନ୍ଦିହୋଇ ରହିଛନ୍ତି, ଜାଣିଲେ ବିସ୍ମିତ ହେବାକୁ ହୁଏ । ସେଥିରୁ ୱେଲସ୍ ଭାଷା ଏବେ ବି ଜୀବନ୍ତ । ଏବେବି ସେଥିରେ କାବ୍ୟ-କବିତା ଲେଖାଯାଉଛି । କିନ୍ତୁ ଏ ଯୁଗର ଦୁଇ ଶ୍ରେଷ୍ଠ ୱେଲ୍‌ସମାନ୍ ସ୍ୱର୍ଗତ ଲଏଡ଼ ଜର୍ଜ ଓ ଆନୁରିନ୍ ବେଭାନ୍, ସମଗ୍ର ବ୍ରିଟିଶ ପାର୍ଲିଆମେଣ୍ଟକୁ ଯେଉଁ ଅଗ୍ନିମୟ ବାଗ୍ମିତାରେ ସ୍ତମ୍ଭିତ କରି ରଖୁଥିଲେ, ତାହା କ'ଣ ୱେଲସ୍ ନା ଷ୍ଟାଣ୍ଡାର୍ଡ଼ ଇଂଲିଶ୍ ମାଧ୍ୟମରେ ? ସ୍କଚ୍ ଡାଏଲେକ୍ଟରେ ରବର୍ଟ୍ ବର୍ଣ୍ଣସ୍ ପ୍ରାଣସ୍ପର୍ଶୀ, ଅମର କବିତା ଲେଖିଯାଇଛନ୍ତି । କିନ୍ତୁ ସ୍କଚ୍ ଜାତିର ମୁଖପତ୍ର ପ୍ରସିଦ୍ଧ 'ସ୍କଟସମ୍ୟାନ' କାଗଜ ସେହି ସ୍କଚ୍ ଡାଏଲେକ୍ଟ ଦେଇ ନିଜକୁ ପ୍ରଚାର କରେକି ? ଜାତୀୟତା ଓ ଇଂରେଜ-ବିଦ୍ୱେଷରେ ଉଦ୍‌ବୁଦ୍ଧ ହୋଇ ଆଇରିଶ୍‌ମାନେ ଆଗ୍ରହରେ ଗେଲିକ୍ ଭାଷାର ପ୍ରବର୍ତ୍ତନ କରିଛନ୍ତି । କିନ୍ତୁ ଆଇରିଶ୍ ଜାତୀୟତାର ପୁରୋହିତ ବିଶ୍ୱବିଖ୍ୟାତ କବି ଇଏଟସ୍ କେଉଁ ଭାଷାରେ ତାଙ୍କର ଅମର କାବ୍ୟ ସୃଷ୍ଟି କରି ଯାଇଛନ୍ତି ?

ଦେଖିବାର କଥା ଏହି ଯେ, ମନୁଷ୍ୟ-ମନୁଷ୍ୟ ଭିତରେ ସମାନତା ବାହାର କରିବାହିଁ ପଣ୍ଡିତଜନର ଗୁଣ । ପଣ୍ଡିତାଃ ସମଦର୍ଶିନଃ । ଭେଦ ଉପରେ ଜୋର ଦେଲେ, ସ୍ୱାମୀ-ସ୍ତ୍ରୀ ଓ ପିତା-ପୁତ୍ର ଏକାଠି ରହି ପାରିବେନି, ଗୋଟାଏ ଜାତି କ'ଣ ? ସ୍ୱାମୀ-ସ୍ତ୍ରୀ, ପିତା-ପୁତ୍ର, ଭାଇ-ଭାଇ ଭିତରେ ଯେ ଦୁରନ୍ତ ବ୍ୟବଧାନ ରହିଥାଏ ଏହା କେହି ଅସ୍ୱୀକାର କରି ପାରିବେ ନାହିଁ । କିନ୍ତୁ ଅସାମ୍ୟ ତୁଳନାରେ ସାମ୍ୟ ଏତେ ବେଶୀ ଯେ, ଅସାମ୍ୟକୁ ବଡ଼କରି ଦେଖେଇବାର ଚେଷ୍ଟାହିଁ ଦୁରଭିସନ୍ଧି ବୋଲି ଧରିବାକୁ ହେବ । ଗତ ଛଅଶ ବର୍ଷଧରି ଉତ୍କଳର କେଉଁ ପଲ୍ଲୀ କୋଣମାନଙ୍କରେ ସାରଳା ଦାସ ଓ ଜଗନ୍ନାଥ ଦାସେ ଭାଗବତ ଓ ମହାଭାରତ ଲେଖିଗଲେ ଯେ, ତାହା ଗୋଦାବରୀରୁ ଗଙ୍ଗାଯାଏ ବ୍ୟାପ୍ତ ସମଗ୍ର ଓଡ଼ିଆ ଜାତି ବୁଝିପାରୁଥିଲା. ଆଜି ଆଜି ଆମେ ଯୋଗ୍ୟ ପୁତ୍ର ସବୁ ବାହାରି ଯଦି କହିବା ଢେଙ୍କାନାଳର ଭାଷା କୋରାପୁଟର ଲୋକେ ବୁଝନ୍ତିନି, ଓ କମିତ ବୁଝିବେ ସେଥିପାଇଁ ବସାଅ ଭାଷାତାତ୍ତ୍ୱିକ ନିଯୁକ୍ତ କରନ୍ତୁ । ତେବେ ତାହା ବଜ୍ଞାନ ହୋଇପାରେ, କିନ୍ତୁ ହୁଏତ ଜ୍ଞାନ ହେବନି । ସୁଦୂର ମଧ୍ୟ ପ୍ରଦେଶର ଛତିଶଗଡ଼ୀ ସାହିତ୍ୟିକ ମୁକୁଟଧାରୀ ପାଣ୍ଡେଙ୍କ ନିକଟରେ ଜଗନ୍ନାଥ ଦାସଙ୍କ ଭାଗବତ ଜୀବନବେଦ ଥିବାର ମୁଁ ନିଜେ ଜାଣେ । ତାଙ୍କ ଭାଇ ଲୋଚନ ପ୍ରସାଦ ପାଣ୍ଡେଙ୍କର ପ୍ରିୟତମ କବି ହେଉଛନ୍ତି ଗଙ୍ଗାଧର ମେହେର । ଆଜି

ଆମେ ପ୍ରଶ୍ନର କରିବା ଯେ ଜଗନ୍ନାଥ ଓ ମେହେରଙ୍କ ଭାଷା ଜନତା ବୁଝିପାରୁ ନାହାନ୍ତି । ଏ ଭାଷାର ପ୍ରକାଶନ କ୍ଷମତାର ଅଭାବ, ତେଣୁ ଆଞ୍ଚଳିକ ଭାଷା ପୁରାଅ ଆଉବୃତ୍ତିମାନେ କି ଭାଷା କହୁଛନ୍ତି, ତାଙ୍କୁ ବି ପୁରାଅ । ଏହା ଚନ୍ଦ୍ରାର ବିଶୃଙ୍ଖଳା ସୂଚକ କି ? ଦୁଇକୋଟି ସଙ୍ଖ୍ୟକ ଓଡ଼ିଆ ଜାତି ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ଶତଶତ ବର୍ଷଧରି ଚଷା ଶାରଳା ଦାସର ଭାଷା, ବଣୁଆ ବ୍ରାହ୍ମଣ ପଣ୍ଡିତ ଜଗନ୍ନାଥ ଦାସର ଭାଷା ପୁଣି ପଣ୍ଡିତ ଅଭିଜାତ ଉପେନ୍ଦ୍ରର ଭାଷା ବୁଝି ଆସୁଥିଲେ, କିନ୍ତୁ ଆଜ ଭାଷାତତ୍ତ୍ୱର ଅନୁଶୀଳନ ନାମରେ ଆମେ କ'ଣ କେବଳ ଅନୈକ୍ୟ ଓ ବୈଷମ୍ୟର ପ୍ରଚାର କରି ବସିବା ? ସାହିତ୍ୟରେ ସବୁଲୋକେ ସବୁକଥା ବୁଝିବାର କୌଣସିଠାରେ ଦେଖାଯାଏ ନାହିଁ । କେତେଜଣ ସାଧାରଣ ଶିକ୍ଷିତ ଇଂରେଜ ବି ସେକ୍ସପିୟରଙ୍କ ନାଟକ ବା ସେଲିର କବିତା ବୁଝି ପାରନ୍ତି ? ରେଭେନ୍ସା କଲେଜରେ ଜଣେ ଅକ୍ସଫୋର୍ଡ଼ ପାସ୍ ଇଂରେଜ ଅଧ୍ୟାପକ ଆମକୁ ଇଂରେଜୀ ପଢ଼ାଉ-ଥିଲେ । ସେକ୍ସପିୟରଙ୍କ ନାଟକ ପଢ଼ାଇଲାବେଳେ, ସେ ବେଳେ ବେଳେ ଇଣ୍ଡିୟାନ୍ ନୋଟ-ଲେଖକଙ୍କ ବହି ଖୋଜନ୍ତି, ସେହି କ୍ଲାସରୁମ୍‌ରେ । ଆମେ ସବୁ ମନେ ମନେ ହସୁଥାଉ । ଖୋଦ୍ ଲଣ୍ଡନର ନାଗରିକ ଯେଉଁ କକ୍‌ନୀ—ଇଂରେଜୀ କହନ୍ତି, ତାହା ଲଣ୍ଡନର ବାହାରୁ ଆସିଥିବା ସାଧାରଣ ପଣ୍ଡିତ ଇଂରେଜ ମଧ୍ୟ ବୁଝି ପାରିବେନି । କିନ୍ତୁ ସ୍ୱାଭ ଅର୍ଥ ନୁହେଁ ଯେ, ଏଇ ବିଶିଷ୍ଟ ସ୍ଥାନ-ପାତ୍ର-ଭେଦ-ଜନିତ ଅବୋଧତା ଯୋଗୁଁ ଗୋଟିଏ ବହୁଜନ ବୋଧ୍ୟ ଭାଷାକୁ ଖଣ୍ଡ ଖଣ୍ଡ କରିଦିବା ବା ସେହି ଦୃଷ୍ଟିରେ ଦେଖାଯିବା ଉଚିତ । ଆମର ଭାଷାତାତ୍ତ୍ୱିକମାନେ ବରଂ ମନେ ରଖିବା ଉଚିତ ଯେ, ବୋଧ-ଅବୋଧର ମିଶ୍ରଣହିଁ ସାହିତ୍ୟିକ ରସ-ଭୋଗର ଏକ ମୁଖ୍ୟ ହେତୁ । ଓଡ଼ିଶାର ନିରକ୍ଷର ଜନସାଧାରଣ ଭିତରେ ଅବୋଧଭାଷୀ ଭଞ୍ଜଙ୍କର ଅସାଧାରଣ ଜନପ୍ରିୟତାର ଏକ ବଡ଼ କାରଣ ହିଁ ହେଲା ତାଙ୍କର ଅବୋଧତା । ସେହି ଅବୋଧ କବିକୁ ବୋଧ ଓ ଭୋଗ୍ୟ ରୂପେ ପରିବେଷଣ କରିବା ଯୋଗୁଁ ପାଲାବାଲାର ଆଦର, ଓ ବୋଧ ଓ ଭୋଗ୍ୟକୁ ନାଗ୍ରିର ଅବଗୁଣ୍ଠନ ପରି ଆପାତ ଅବୋଧ ଆବରଣ ଭିତରେ କୌଶଳରେ ଲୁଚାଇ ରଖି ପାରିଥିବାରୁ, ଭଞ୍ଜଙ୍କ ପ୍ରତି ଜନତାର ସମ୍ମାନ । ଗଞ୍ଜାମର ବିଶିଷ୍ଟ କଥନ ଭଙ୍ଗୀ, ସମ୍ବଲପୁରର ଆଞ୍ଚଳିକ ଲୌକିକ ଭାଷା, କଟକ ପୁରୀର କଥନ-ଭଙ୍ଗୀ ବା ଭାଷାଠାରୁ ଭିନ୍ନ, କିନ୍ତୁ ପୃଥକ୍ ନୁହେଁ । ଆମ ନିକଟରେ ସେମାନଙ୍କର ମାଧୁର୍ଯ୍ୟ ସେହି ଭିନ୍ନତାରେ । ସେହି ମାଧୁର୍ଯ୍ୟରୁ କେତେକାଂଶ ଷ୍ଟାଣ୍ଡାର୍ଡ଼ ଓଡ଼ିଆରେ କିପରି ରଖାଯାଇପାରେ ତାହା ଗମ୍ଭୀର ପ୍ରଣିଧାନର ବିଷୟ । କିନ୍ତୁ ଗଞ୍ଜାମ ବା ସମ୍ବଲପୁରର ଆଞ୍ଚଳିକ ମାଧୁର୍ଯ୍ୟକୁ ଦେଖାଇ ପୂରା ଉତ୍କଳର ସାମଗ୍ରିକ ସୌନ୍ଦର୍ଯ୍ୟକୁ ହୀନ ବା ଅପୂର୍ଣ୍ଣ ବୋଲି ପ୍ରଚାର କରିବାକୁ ଯିବା, ବା ଏପରି ଭାବରେ ତାହା ବଣ୍ଟିବା ଏ ଦେଶର ପଣ୍ଡିତ ଲୋକଙ୍କର ଉଚିତ କର୍ମ ହେବକି ? ତେଣୁ, ଆମର ସୁପଣ୍ଡିତ ଭାଷାତାତ୍ତ୍ୱିକମାନଙ୍କୁ ଅନୁରୋଧ ଯେ, ଭାଷାତତ୍ତ୍ୱର ଗମ୍ଭୀର ଓ ବ୍ୟାପକ ଅନୁଶୀଳନ

ହେଉ, ଲିଂଗ୍ୟୁଷ୍ଟିକ୍ ସର୍ଭେ ହେଉ, ଧ୍ୱନିବିଜ୍ଞାନ ବୈଜ୍ଞାନିକ ଭାବରେ ପ୍ରତି ସ୍କୁଲ-କଲେଜରେ ଚର୍ଚ୍ଚିତ ହେଉ, କିନ୍ତୁ ସାମାନ୍ୟ ସାମାନ୍ୟ ସ୍ୱାଭାବିକ ଭିନ୍ନତା ବା ଅବୋଧତା ଉପରେ ଜୋରଦେଇ ଦୁଇକୋଟି ଲୋକଙ୍କର ଏକ ଷ୍ଟାଣ୍ଡାର୍ଡ ଭାଷାର ସମଗ୍ରତା ଉପରେ କାଳ୍ପନିକ ପ୍ରାଚୀର ସବୁ ଠିଆ କରେଇବାକୁ ଚେଷ୍ଟା ସେମାନେ ନକରନ୍ତୁ। ଗୀତାରେ ଜନମାନସରେ ଅକାରଣ ବୁଦ୍ଧି-ଭେଦ ନ ଜନ୍ମେଇବା ପାଇଁ ମିଛରେ ଉପଦେଶ ଦିଆଯାଇ ନାହିଁ। ବିଜ୍ଞାନର ଆଲୋଚନାର ଅର୍ଥ ହେବା ଉଚିତ ନୁହେଁ ଯେ କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳର ବ୍ୟକ୍ତିତ୍ୱର ଦୁହାଇ ଦେଇ, ଓଡ଼ିଆ ଜାତିର ସାମଗ୍ରିକ ବ୍ୟକ୍ତିତ୍ୱର ହତ୍ୟାର ବ୍ୟବସ୍ଥା କରିବା, ପ୍ରତ୍ୟେକ କଥାର ସୀମା-ଓ-ଅନୁପାତ-ବୋଧ ଏକାନ୍ତ ଉଚିତ।

ଏହି ସମ୍ପର୍କିତ ଆଲୋଚନା ବେଳେ ନିଜନିଜର ଦୁଇ ପ୍ରକାର ଅଭିଜ୍ଞତା ବର୍ଣ୍ଣନା କରି, ଦୁଇଜଣ ଅଧ୍ୟାପକ ଆଞ୍ଚଳିକ ମନୋଭାବର ମୂଳଉପରେ ଉତ୍ତମ ରୂପେ କୁଠାରଘାତ ମଧ୍ୟ କଲେ। ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା କହିଲେ ଯେ 'ମାଟିର ମଣିଷ'କୁ ପଢ଼ାଇବାକୁ ଯାଇ ବଲାଙ୍ଗୀରରେ ତାଙ୍କୁ ଦୁଇବର୍ଷକାଳ ଶବ୍ଦାର୍ଥ ସନ୍ଧାନ କରିବାକୁ ପଡ଼ିଥିଲା। ଅଧ୍ୟାପକ ରାଜକିଶୋର ରାୟ କହିଲେ, ସେ କୋରାପୁଟ, ସମ୍ବଲପୁର, ସୁନ୍ଦରଗଡ଼, ବାଲେଶ୍ୱର ସବୁ ଅଞ୍ଚଳରୁ ପରୀକ୍ଷା ଖାତା ପାଆନ୍ତି ଓ ଦେଖନ୍ତି ଯେ ସବୁ ଅଞ୍ଚଳର ପିଲେ ଆମର ପରିଚିତ ଷ୍ଟାଣ୍ଡାର୍ଡ ଓଡ଼ିଆରେ ଲେଖୁଛନ୍ତି। କେଉଁ ଆଂଶିକ ଓ ଆଞ୍ଚଳିକ ଭିନ୍ନତା ଉପରେ ବାରମ୍ବାର ଅଙ୍ଗୁଳି ନ୍ୟସ୍ତ କରିବାର ବା ତା'ର ଗୌରବ ଗାଇବାର କି ଫାଇଦା ?

**ଗାଠନିକ**

ଭାଷାତାତ୍ତ୍ୱିକ ଆଲୋଚନା ବେଳେ ଅନେକ ବକ୍ତା ଏ ପ୍ରକାର କାମ ବା ଆଲୋଚନା ବ୍ୟକ୍ତି-ବିଶେଷର ନୁହେଁ, ଏଥିପାଇଁ ସ୍ୱତନ୍ତ୍ର ଅନୁଷ୍ଠାନ ସ୍ଥାପନର ଆବଶ୍ୟକତାର କଥା ବାରମ୍ବାର କହିଲେ। କିନ୍ତୁ ସେମାନେ ବାରମ୍ବାର କାହିଁକି ଏପରି କହିଲେ ? ଓଡ଼ିଶାରେ ଐତିହାସିକ ଉତ୍କଳ ସାହିତ୍ୟ ସମାଜ ତ ଠିଆ ହୋଇଛି, ପୁଣି ରିଜିମିନ୍ତ ସରକାରୀ ଓଡ଼ିଶା ସାହିତ୍ୟ ଆକାଡେମୀ ତ ଠିଆ ହୋଇଛି, ଉତ୍କଳ ବିଶ୍ୱବିଦ୍ୟାଳୟ ତ ଅଛି। ଆଉ କେତେ ଅନୁଷ୍ଠାନ ଦରକାର ଓଡ଼ିଆ ଭାଷାର କ୍ଷିପ୍ର ଉନ୍ନତି ପାଇଁ ? ସରକାରୀ ଅର୍ଥରେ ପରିପୁଷ୍ଟ ଓଡ଼ିଶା ସାହିତ୍ୟ ଆକାଡେମୀ ହିଁ ଆଲୋଚନାର ବିଶେଷ ଶରବ୍ୟ ହୋଇଥିଲା। ଅତ୍ୟନ୍ତ ପରିତାପର କଥା ଯେ ସେଥି ଉପରେ ଉଚ୍ଚଗ୍ରର ମହାତାବ ବାଦାନୁବାଦ ମଧ୍ୟ ଆରମ୍ଭ କରିଦେଲେ। କିନ୍ତୁ ତାହାହିଁ ଏ ଅନୁଷ୍ଠାନର ସ୍ୱକୀୟ ଦୁର୍ବଳତା ପ୍ରମାଣିତ କରୁଛି। ଶିଶୁ, ନାରୀ ଓ ଶିଳ୍ପୀହିଁ ଅନ୍ୟଠାରୁ ରକ୍ଷା ଆବଶ୍ୟକ କରିଥାନ୍ତି। ବୀର ଓ କର୍ମଠ ପୁରୁଷ ବା ଅନୁଷ୍ଠାନ

ନିକଟରେ ସେ ପ୍ରଶ୍ନ ଉଠିବ ନାହିଁ । ଓଡ଼ିଶା ସାହିତ୍ୟ ଆକାଡେମୀକୁ ଯେତକ ସୁସ୍ଥ, ମୁକ୍ତ ଆଲୋଚନାର ବାହାରେ ରଖାଯିବ, ତାହା ସେ ଜାତି ପକ୍ଷରେ ସେତକ କ୍ରମଶଃ ଅକାମୀ ହେବ, ଏହା ତା'ର କର୍ଣ୍ଣଧାରଗଣ ମନେ ରଖିବା ଉଚିତ । ଆମେ ଜହରଲାଲ୍ ନେହରୁଙ୍କୁ ଅନୁପସ୍ଥିତ ଥିଲେହେଁ ତାଙ୍କୁ ସମାଲୋଚନା କରୁଛୁ, ବିଶ୍ୱ-ବିଦ୍ୟାଳୟ ବିରୁଦ୍ଧରେ ଦେଶମୟ ଆଲୋଚନା ଚାଲିଛି, ଅଥଚ ସାହିତ୍ୟ ଆକାଡେମୀର ସମ୍ପାଦକ ନଥିଲେ ଓଡ଼ିଆ ଭାଷାର ଏକ ସ୍ୱାଧୀନ ସାଧାରଣ ସାହିତ୍ୟିକ ଆଲୋଚନାରେ ସାହିତ୍ୟ-ଆକାଡେମୀ ସମ୍ପର୍କିତ ଆଲୋଚନା କପରି ଅବାନ୍ତର ହୋଇଯିବ ବୁଝି ହେଉନି । କିନ୍ତୁ ଏହି ସୂତ୍ରରେହିଁ ଡକ୍ଟର ମହତାବ ଓଡ଼ିଆ ସାହିତ୍ୟ ଆକାଡେମୀ ସମ୍ପର୍କିତ ସକଳ ଆଲୋଚନାକୁ ଅବାନ୍ତର କହି ବନ୍ଦ କରିବାକୁ ଚେଷ୍ଟା କରିଥିଲେ । ଇଂରାଜୀରେ ସାହିତ୍ୟର ଅନ୍ୟନାମ ରିପବ୍ଲିକ୍ ଅବ୍ ଲେଟରଜ୍ । ସ୍ୱାଧୀନତାହିଁ ସାହିତ୍ୟର ପ୍ରାଣ । ଏ ସ୍ୱାଧୀନତାକୁ ଅସ୍ୱାଭାବିକ ଅର୍ଗଳ ଦେଇ ବାନ୍ଧିବାରେ କାହାରି ବ୍ୟକ୍ତିଗତ କ୍ଷଣିକ ମଙ୍ଗଳ ଥାଇପାରେ କିନ୍ତୁ ଏହା ନିଶ୍ଚିତ ଯେ ସେଥିରେ ସାହିତ୍ୟର ମଙ୍ଗଳ ନାହିଁ । ଲେଖକ ଓ ବୁଦ୍ଧିଜୀବୀମାନଙ୍କୁ ଆଲୋଚନା ପାଇଁ ନିମନ୍ତ୍ରଣ କରି ଡାକି ନେଇ ସେମାନଙ୍କ ସ୍ୱାଧୀନ ଆଲୋଚନାରେ ବାଧା ଦେବା, ସାମାଜିକ ଦୃଷ୍ଟିରୁ ମଧ୍ୟ କାମ୍ୟ କି ନା ବିଚାରର କଥା । ଶାସକ—ସତ୍ତମ ରାମଚନ୍ଦ୍ର ଜନମତକୁ ସମ୍ମାନ ଦେଇ ପ୍ରାଣପ୍ରିୟା ପତ୍ନୀକୁ ନିର୍ବାସିତ କରିଥିଲେ । ତାହା କରିବା ଦ୍ୱାରା ହିଁ ରାମ ଓ ସୀତା ଆଜି କୋଟି ମାନବର ଦେବ ଓ ଦେବୀ; କିନ୍ତୁ ଏବର ଶାସକଙ୍କର ଗୋଟିଏ ସାମାନ୍ୟ ଅନୁଷ୍ଠାନର ସମ୍ମାନ ପ୍ରତିଷ୍ଠାପିତ କରିବା ପାଇଁ ଇଏ କି ଅସ୍ୱାଭାବିକ ପନ୍ଥା ଅବଲମ୍ବନ ? ଏପରି କରିବା ଦ୍ୱାରା ଉଭୟେ ଶାସକ ଓ ଅନୁଷ୍ଠାନ ଭବିଷ୍ୟତ ଜାତି ଆଖିରେ କପରି ଦିଶିବେ, ସେତକ ବିଚାରକୁ ନିଆଯାଉ ।

ସେ ଯାହାହେଉ, ଓଡ଼ିଶାରେ ଉତ୍କଳ—ସାହିତ୍ୟ ସମାଜ ହେଉ ବା ଓଡ଼ିଶା ଏକାଡେମୀ ହେଉ. ଏପରିକି ବିଶ୍ୱବିଦ୍ୟାଳୟ ହେଉ, କୌଣସି ଅନୁଷ୍ଠାନ ସ୍ୱକୀୟ ପରମ୍ପରା, ତପସ୍ୟା ବା ସାଧନାରେ ମର୍ଯ୍ୟାଦାବନ୍ତ ଭାବରେ ଦେଶ ଆଗରେ ଆଜି ଠିଆ ହୁହନ୍ତି । ପ୍ରତିବେଶୀ ବଙ୍ଗ ସାହିତ୍ୟ ପରିଷଦର ମହିମା ଓଡ଼ିଶାର ପଣ୍ଡିତମାନେ ସ୍ମରଣ କରନ୍ତୁ । କଲିକତା ବିଶ୍ୱବିଦ୍ୟାଳୟରେ ସାର୍ ଆଶୁତୋଷ ମୁଖାର୍ଜି ଯେଉଁ ପରମ୍ପରା ଛାଡ଼ିଗଲେ ତାହା ସ୍ମରଣ କରାଯାଉ । ଏସବୁ ଜ୍ଞାନ-ବିଦ୍ୟାୟତନମାନଙ୍କରେ ଅର୍ଥର ବା ନିୟମ କାନୁନର କାଇଦା-ଦୋରସ୍ତ ଦୈନନ୍ଦିନ କାମ ଏକାବେଳକେ ଗୌଣ । ଏ ପ୍ରକାର ଅନୁଷ୍ଠାନମାନଙ୍କର ଆତ୍ମା ହେଉଛି ଗୋଟିଏ ଗୋଟିଏ ବା କେତୋଟି ନ୍ୟସ୍ତପ୍ରାଣ ଜ୍ଞାନ ତପସ୍ୱୀଙ୍କର ସାଧନା । ଗୋଟିଏ ଜ୍ଞାନତପସ୍ୱୀ ଦରିଦ୍ର ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ସେତେବେଳର ବିଚ୍ଛିନ୍ନ ଓଡ଼ିଶାରେ ଥାଇ, ଓଡ଼ିଆ ସାହିତ୍ୟକୁ ଯାହା ଦେଇ ଯାଇଛନ୍ତି, ଓଡ଼ିଶା ସରକାର ତାଙ୍କର ବହୁ ବର୍ଷର ଆୟ

ବର ଓଡ଼ିଶା ଆକାଡ଼େମୀ ଜରିଆରେ ବ୍ୟସ୍ତ କରାଇ ଦେଲେ ମଧ୍ୟ ତାହା ସିଦ୍ଧ ହେବାର ସମ୍ଭବ ଦିଶୁନାହିଁ ।

କାରଣ, ଆଡ଼ମ୍ବର ଓ ସିଦ୍ଧି ଏକା କଥା ନୁହେଁ । ଅନ୍ତତଃ ଯେଉଁମାନେ ଏ ଭିନ୍ନତା ଅନୁଭବକୁ ଆଣି ପାରି ନାହାନ୍ତି ସେମାନେ କୌଣସି ଦୃଢ଼ ସାହିତ୍ୟିକ ଅନୁଷ୍ଠାନ ଗଢ଼ିବା ସମ୍ଭବ ନୁହେଁ । ପ୍ରକୃତ ସାଧନା ଓ ସିଦ୍ଧି ନୀରବ, ଆତ୍ମସ୍ଥ, ବିନୀତ ଓ ସ୍ଥିତଧୀ । କଳା ଓ ସାହିତ୍ୟରେ ଆଡ଼ମ୍ବର ଯେ ଏକ ମାରାତ୍ମକ ବ୍ୟାଧି ଏହା ସ୍ମରଣ ରହିବା ଉଚିତ । ପ୍ରତି ସଭ୍ୟ ଦେଶରେ ଜ୍ଞାନାନୁଷ୍ଠାନ ସବୁ ଧୀର, ବିନୀତ, ନିରାଡ଼ମ୍ବର ଭାବରେ ହିଁ କର୍ମ କରିଥାଏ । ଗୋଟିଏ ଶ୍ରେଷ୍ଠ ଅକ୍ସଫୋର୍ଡ଼ ଇଂରାଜୀ ଅଭିଧାନଟି ସମ୍ପୂର୍ଣ୍ଣ କରିବାକୁ ଇଂରେଜ ପଣ୍ଡିତମାନଙ୍କୁ ସତୁରି ବର୍ଷ ଲାଗି ଯାଇଥିଲା । ତାର ପ୍ରାଥମିକ ଉଦ୍ୟମ କରୁ କରୁ ଲାଗି ଯାଇଥିଲା କୋଡ଼ିଏ ବର୍ଷ । ଆଦ୍ୟ ପରୀକ୍ଷାମୂଳକ ସଂସ୍କରଣ ଉପହାର ରୂପେ ଦିଆ ଯାଇଥିଲା ମହାରାଣୀ ଭିକ୍ଟୋରିଆଙ୍କୁ । ଶେଷ ସମ୍ପୂର୍ଣ୍ଣ ସଂସ୍କରଣ ଉପହାର ଦିଆଗଲା ତାଙ୍କ ନାତି ସମ୍ରାଟ୍ ପଞ୍ଚମ ଜର୍ଜଙ୍କୁ । ଏଇ ଅଭିଧାନର ସମ୍ପାଦକ ମଣ୍ଡଳୀରୁ ପ୍ରତ୍ୟେକେ ଇଂଲଣ୍ଡରେ ବିଦ୍ୱତ୍ତା ପାଇଁ ବିଖ୍ୟାତ ଓ ପ୍ରତ୍ୟେକର ଅକ୍ସଫୋର୍ଡ଼ ଅଭିଧାନରେ ଅଂଶଛଡ଼ା ନିଜ ନିଜର ବିଶେଷ ଅନୁଶୀଳନ କ୍ଷେତ୍ରରେ ଅର୍ଜିଥିବା କୀର୍ତ୍ତି ଯୋଗୁଁ ପ୍ରତ୍ୟେକେ ରାଜ୍ୟର ସର୍କାରଙ୍କ ଦ୍ୱାରା ସମ୍ମାନିତ । ଏ ଦେଶରେ ଏ ପରମ୍ପରା, ଏ ସାଧନା, ଏ ନୀରବ ତପସ୍ୟା, ଏହି ପରମ ଯୋଗ୍ୟତାର ଐତିହ୍ୟ କାହିଁ ? କଟକର ଏକ ପ୍ରାଇଭେଟ୍ ପବ୍ଲିଶର ଗୋପୀନାଥ ନନ୍ଦଙ୍କ ବିରାଟ ଭାଷାତତ୍ତ୍ୱ ଗ୍ରନ୍ଥ ପ୍ରକାଶ କରୁଥିଲା ବେଳେ, ଏ ଦେଶର ସରକାରୀ ସାହିତ୍ୟ ଆକାଡ଼େମୀ ଏପରି ବହି ସବୁ ପ୍ରକାଶ କରି ପବ୍ଲିକ୍ ଫଣ୍ଡର ଅପବ୍ୟୟ କରି ଚାଲିଛି ଯାହାକୁ କୌଣସି ଶ୍ରେଷ୍ଠ ପ୍ରକାଶକ ମଧ୍ୟ ଛାପାଖାନାରେ ସ୍ପର୍ଶ କରିବାକୁ ଯିବେନି ଓ ଯାହା ଛପା ନ ହୋଇଥିଲେ ଓଡ଼ିଆ ସାହିତ୍ୟର କୌଣସି ହେଲେ କ୍ଷତି ହୋଇ ନଥାନ୍ତା, କି ହେବା ଦ୍ୱାରା, କୌଣସି ହେଲେ ଗୌରବ ବଢ଼ିଯାଇ ନାହିଁ । ଏ ଦେଶରେ ଷ୍ଟାଣ୍ଡାର୍ଡ଼ର ବା ଏକ୍ସଲେନ୍ସର ଧାରଣା ଏପରି ସ୍ଥୂଳ ଯେ, ପଦସ୍ଥ-ଲୋକଙ୍କୁ ମଧ୍ୟ ବୁଝାଇବାକୁ ପଡ଼ିବ ଯେ, କୌଣସି ବସ୍ତୁ, ଯାହାକୁ ନେଇ ସେ ଗର୍ବ କରୁଛନ୍ତି, ବିଶ୍ୱଜ୍ଞାନର ପରିପ୍ରେକ୍ଷିତରେ ତାହା ଆଦୌ ବିଚାରକୁ ଆଣିବାର ଯୋଗ୍ୟ ନୁହେଁ । କର୍ତ୍ତୃପକ୍ଷ ଉତ୍କୃଷ୍ଟ କ୍ୱାଲିଟିକୁ, ଯୋଗ୍ୟତାକୁ, ମର୍ଯ୍ୟାଦାକୁ ଓ ଚରିତ୍ରାର୍ଥୀ ଗୁଣକୁ ଦୃଷ୍ଟି ଦିଅନ୍ତୁ । ଟଙ୍କା ପଇସାର ଖେଳ ଦେଖାଇ କୌଣସିଠାରେ ସାହିତ୍ୟ ଗଢ଼ି ହୁଏ ନାହିଁ । ପୁଣି ମନେ ରଖିବାର କଥା ଉତ୍କଳ ସାହିତ୍ୟ ସମାଜ ବା ଓଡ଼ିଶା ସାହିତ୍ୟ ଆକାଡ଼େମୀ ଯଦି ଓଡ଼ିଆ ସାହିତ୍ୟ ପାଇଁ ଠିକ୍ କାମ କରି ଚାଲିଛନ୍ତି, ତେବେ ଆଉ ଆଉ ଅନୁଷ୍ଠାନ ପାଇଁ ବକ୍ତାମାନେ ଦାବୀ କଲେ କାହିଁକି ? ବା କାହିଁକି ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ବିରୁଦ୍ଧରେ ବକ୍ତାମାନେ ବିକ୍ଷୋଦ୍‌ଗାର କଲେ ? ପାଟି ଦାନ୍ଦ କରାଇ ଦେବାଦ୍ୱାରା ଏ ସବୁ ଲାଭ ହିବ କି ?

**ମାନବିକ**

ଆଧୁନିକ ଓଡ଼ିଆ ସାହିତ୍ୟରେ ମାନବିକ ସମସ୍ୟା ଉପରେ ଶ୍ରୀଯୁକ୍ତ ଶରତଚନ୍ଦ୍ର ମୁଖାର୍ଜି ଯେପରି ଭାବ ପ୍ରବଣତାର ସହିତ ବଳିଷ୍ଠ ଭାବରେ ଆବେଦନ ଜ୍ଞାପନ କଲେ, ତାହା ଠିକ୍ ସାହିତ୍ୟିକ ଆଲୋଚନା ନ ହେଲେ ହେଁ, ଏକାବେଳକେ ଅପ୍ରାସଙ୍ଗିକ ନୁହେଁ; ଏବଂ ଅପ୍ରାସଙ୍ଗିକ ହେଲେ ମଧ୍ୟ, ତାକୁ ତାଚ୍ଛଲ୍ୟର ସହିତ ଦୂରକୁ ଅଟକାଇ ରଖିବା ଦ୍ୱାରା ଏ ସମସ୍ୟା ଲିଭେଇ ଯିବ ନାହିଁ । ସାହିତ୍ୟିକ ମାନଙ୍କର ହତ୍ୟାର ବ୍ୟବସ୍ଥା କରି ସାହିତ୍ୟର ଉନ୍ନତି କରୁଛୁ ବୋଲି ଭାବିବା ନୈତିକ ପ୍ରତାରଣା ଛଡ଼ା ଅନ୍ୟ କିଛି ହୋଇ ନ ପାରେ । ଆଶାକରେ ସଂପୃକ୍ତ ସମସ୍ତେ ଏହା ବିଗ୍ରଭିକୁ ଆଣିବେ । କିନ୍ତୁ ଏଇ ସମସ୍ୟାର ଅପର ଏକ ପାଖ ମଧ୍ୟ ଗଭୀର ଭାବରେ ବିଗ୍ରର୍ଯ୍ୟ । ଶ୍ରୀଯୁକ୍ତ ଶରତ୍ ମୁଖାର୍ଜି ଗୋଟିଏ ପାଖର କଥା କହିଥିଲେ । ଆଉ ପାଖଟିର ଚିତ୍ର ଦେଲେ ତରୁଣ ସାହିତ୍ୟିକ ରବିନାରାୟଣ ମହାପାତ୍ର । ସଭାରେ ଅଧିକାଂଶ ଭାବରେ ନାନା ଅବାଞ୍ଛିତ ମାନଙ୍କର ସମାବେଶ ଯୋଗୁଁ ଶେଷ ଆଡ଼କୁ ଯେଉଁ ଅଶୋଭନୀୟ ଗଣ୍ଡଗୋଳ ହେଉଥାଏ ସେଥିରେ ଅନେକେ ତାଙ୍କ କଥା ଶୁଣି ପାରି ନଥିବେ । କିନ୍ତୁ ସେ କହିଲେ ଯେ, "ସର୍କାରଙ୍କ ଭତ୍ତା ପାଇ ଆମ୍ଭେମାନେ ସାହିତ୍ୟିକ ହେବାକୁ ପ୍ରସ୍ତୁତ ନୋହୁଁ । ତା ହେଲେ ଆମେ ଶାସକ ଦଳର ଗ୍ଭଟୁକାର ହିଁ ହେବୁ କେବଳ । ନା, ଆମେ ଦାରିଦ୍ର୍ୟରେ ମରିବୁ ପଛେ, କାହାର ଅନୁଗ୍ରହ ଭାଜନ ହେବୁ ନାହିଁ, କି କାହାର ମୁଖପାତ୍ର ମାତ୍ର ହେବୁ ନାହିଁ ।"

ମୋ ମତରେ ଏହାହିଁ ସାହିତ୍ୟିକର ଉଜ୍ଜ୍ୱଳ ଆଦର୍ଶ ରହିବା ଉଚିତ । ତା' ହେଲେ ଧରି ନେବାକୁ ହେବ ଯେ, ପଦ୍ମଚରଣ-ବୈଷ୍ଣବ ପାଣି-ପ୍ରାଣକୃଷ୍ଣ-ବିଚ୍ଛନ୍ଦ-ବି: ବର୍ମାର ପ୍ରେତାତ୍ମାମାନଙ୍କର ଦୀର୍ଘ ନିଃଶ୍ୱାସ ଅଯଥାର୍ଥ ହୋଇନି । ଯେତେବେଳେ କବି ଓ ଲେଖକଙ୍କର ଦଳ ଭତ୍ତାପାଇ ଶାସକ ଗୋଷ୍ଠୀର କେବଳ ଆଜ୍ଞାବହ ଓ ଗ୍ଭଟୁକାର ହେବେ, ସେତେବେଳେ ସାହିତ୍ୟର ହିଁ ସମାଧି ଘଟିଯିବ, ସାହିତ୍ୟିକ ଆଉ ଥିବେ କାହିଁ ? ଅବଶ୍ୟ ସାହିତ୍ୟିକ ଭତ୍ତା ଓ ଦୁର୍ଦ୍ଦଶାପନ୍ନ ସାହିତି୍ୟକଙ୍କୁ ସାହାଯ୍ୟ ଦୁଇଟି ଭିନ୍ନ ପ୍ରସଙ୍ଗ ବୋଲି ଧରିବାକୁ ହେବ ।

କିନ୍ତୁ, ଆଜି ଓଡ଼ିଶାରେ ଲେଖକର ପ୍ରକୃତ ସମସ୍ୟା ହେଉଛି କାହାର ଅନୁଗ୍ରହ ପାଇବା ନୁହେଁ, ତାହା ହେଉଛି, ଲେଖକର ବହିର ବିକ୍ରିର ସମସ୍ୟା । ଆମର ଲୋକ-କଲ୍ୟାଣ-କାରକ ସରକାର ଏ ଦେଶରେ କେବଳ ପୁସ୍ତିପଠି ପାଠ୍ୟପୁସ୍ତକ ଲେଖକ ଓ ପ୍ରକାଶକଙ୍କ ପାଇଁ ସୁନ୍ଦର ବ୍ୟବସ୍ଥା କରି ଦେଇଛନ୍ତି । ସଂପୃକ୍ତ ସମସ୍ତେ ବେଶ୍ ଦି' ପଇସା ପାଉଛନ୍ତି ବୋଲି ଲୋକରେ ପ୍ରଗ୍ଭର । ଲୋକ କଲ୍ୟାଣକ ସରକାର "ପାଠ୍ୟ" ସାହିତ୍ୟର ଏପରି ସୁବ୍ୟବସ୍ଥା କରି ପାରିଲା ପରେ, 'ଅ-ପାଠ୍ୟ' କାବ୍ୟ-କବିତା-ନାଟକ-ଉପନ୍ୟାସ ପାଇଁ କାହିଁକି କ'ଣ କରିବାକୁ ଯିବେ ? ଅ-ପାଠ୍ୟଶ୍ରେଣୀୟ ସେ ପ୍ରକାର ସାହିତ୍ୟକୁ କିଏ ବା କାହିଁକି ପଚ୍ଛରି ଯିବ ?

ସର୍କାରଙ୍କ ବି. ଡି. ଓ. ଦଳ ଗାଁ' ଗଣ୍ଡାରେ କାହିଁକି ପେଗ୍ସ ସାହିତ୍ୟ ନେଇ ଭର୍ତ୍ତି କରୁଛନ୍ତି, ତାହାର ମଧ୍ୟ ବିଗ୍ଭର କରିବା କି ଦର୍କାର ? ତେଣୁ ଏ ଦେଶର ବ୍ୟବସ୍ଥାନୁସାରେ ଭଲ ସାହିତ୍ୟ ଯେଉଁମାନେ ସୃଷ୍ଟି କରିବେ ସେମାନେ ଅର୍ଦ୍ଧଭୁକ୍ତ ହୋଇ ବଞ୍ଚି ରହିବେ, ପ୍ରକାଶକ ପାଖକୁ ପ୍ରତ୍ୟହ ଟଙ୍କେ ଦି' ଟଙ୍କା ଦୈନିକ ମଜୁରି ପାଇଁ ଦୌଡ଼ିବେ, ଆଉ ବର୍ଷକେ ଥରେ ବିଷୁବ ମିଳନକୁ ନିମନ୍ତ୍ରଣଟିଏ ପାଇ ସମ୍ବର୍ଦ୍ଧନ କରି ନିଜ ନିଜ ଜନ୍ମକୁ ଧନ୍ୟ ମନେ କରିବେ । ଆଉ ବାକି କୌଣସି କଥାରେ ପାଟି ଫିଟେଇବା ଅବାନ୍ତର ବୋଲି ଧରି ନେବାକୁ ହେବ ।

**ସୃଜନକ**

ଯେଉଁ ସମସ୍ୟା ସାହିତ୍ୟ ବିଗ୍ଭରରେ ମୂଳ ଓ ପ୍ରଧାନ ତତ୍ତ୍ୱ ହେବାର କଥା, ଦୁଃଖର ସହିତ କହୁଛୁ ଯେ, ଏତେ ଓଡ଼ିଆ ବକ୍ତା କହିଗଲେ, କିନ୍ତୁ କେହି ହେଲେ ସେ ସମ୍ପର୍କରେ ପାଟି ଫିଟେଇ ନ ଥିଲେ । ରେଭେନ୍ସା କଲେଜର ବେଙ୍ଗଲି ଅଧ୍ୟାପକ ଶ୍ରୀ ବିବେକାନନ୍ଦ ମୁଖୋପାଧ୍ୟାୟ ଏକମାତ୍ର ବକ୍ତା ଯେ କି ସାହିତ୍ୟ ସୃଷ୍ଟିର ଏଇ ପ୍ରଧାନ ଓ ପରମ ତତ୍ତ୍ୱଟି ଉପରେ ହିଁ ଭାଷଣ ଦେଇଥିଲେ ଓ ଉତ୍ତମ ଭାଷଣ ଦେଇଥିଲେ । ମୁଖୋପାଧ୍ୟାୟ ସେହି ଜାତିର ଲୋକ ଯେ ଖାଣ୍ଟି ସାହିତ୍ୟ ସୃଷ୍ଟି କ'ଣ ଓ ପ୍ରକୃତ ବିଦ୍ୟା କ'ଣ ଜାଣେ ଓ ତାକୁ ସମ୍ମାନ କରି ଜାଣେ । ଆମର ଏଇ ରାଜ୍ୟରେ ଯେଉଁ ଲୋକ ଓଡ଼ିଆ ସାହିତ୍ୟକୁ କୌଣସି ଭାବରେ ହେଲେ ଋଦ୍ଧିମନ୍ତ କରି ନାହାନ୍ତି ବା କରିବାରେ ସ୍ୱାଭାବିକ ଭାବରେ ଅକ୍ଷମ, ସେ ମଧ୍ୟ ବିଦେଶୀ ଡିଗ୍ରୀର ମାର୍କା ଯୋଗୁଁ ଓଡ଼ିଆ ଭାଷାର ପୋଷ୍ଟ ଗ୍ରାଜୁଏଟ୍ ପ୍ରଫେସର ଗାଦୀରେ ବସିଯାଇ ପାରନ୍ତି । କିନ୍ତୁ କୌଣସି ସଭ୍ୟ ଦେଶରେ ତ ଏଭଳି ଅବ୍ୟାପାର ଘଟନା ନାହିଁ । ଓ ଘଟେ ନାହିଁ, ଆମର ପଡ଼ୋଶୀ ବଙ୍ଗ ଦେଶରେ ମଧ୍ୟ ତାହା ହୁଏନା । ଗୋଟିଏ ବିଷୟରେ ଅନ୍ତତଃ ଏକ ଉର୍ଜନ ପ୍ରାମାଣିକ ପୁସ୍ତକ ନ ଲେଖିବା ଲୋକକୁ ପ୍ରଫେସର ଗାଦିରେ ବସିବା, ଅନ୍ତତଃ ସଭ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ଦେଖାଯାଏ ନାହିଁ । ବଙ୍ଗଳାର ଲେଖକ ମୋହିତଲାଲ ମଜୁମଦାର ମାତ୍ର ବି. ଏ. ହେଲେ ମଧ୍ୟ ତାଙ୍କୁ ଢାକା ବିଶ୍ୱ ବିଦ୍ୟାଳୟ ବଙ୍ଗଳା ପୋଷ୍ଟ ଗ୍ରାଜୁଏଟ୍ ଡିପାର୍ଟମେଣ୍ଟର ହେଡ୍ କରିଥିଏ । କାରଣ ମୋହିତଲାଲ ମଜୁମଦାରଙ୍କର ଡିଗ୍ରୀର ଛଟା ନ ଥାଉ ପଛେ ସେ ଏକ ପକ୍ଷରେ ସୃଜନଶୀଳ କବି ଓ ତାଙ୍କର ସମାଲୋଚନା ବଙ୍ଗଳାରେ ସାହିତ୍ୟ-ବୋଧ ସମ୍ପର୍କରେ ନୂତନ ଆଲୋକପାତ କରି ଯାଇଛି । ତାଙ୍କ ତୁଳନାରେ ଉତ୍କଳ ଦେଶର ପୋଷ୍ଟ ଗ୍ରାଜୁଏଟ୍ ଓଡ଼ିଆ ବିଭାଗର ପ୍ରଫେସର କି ପ୍ରକାର କବି ଓ କି ପ୍ରକାର ସମାଲୋଚକ ଓ କି ପ୍ରକାର ବା ସାଧାରଣତମ ଓଡ଼ିଆ ସାହିତ୍ୟିକ ?

ଅଧ୍ୟାପକ ବିବେକାନନ୍ଦଙ୍କ ଭାଷଣରେ ତାଙ୍କ ଜାତିର ରକ୍ତଗତ ଜ୍ଞାନ-ସାଧନା ଓ ବିଦ୍ୟା-ପୂଜାର ଉଦାରବାଣୀ ହିଁ ଫୁଟି ଉଠିଥିଲା । ସେ କହିଥିଲେ ଯେ ସ୍ରଷ୍ଟାର ପ୍ରଥମ ଓ ପରମ ଆନନ୍ଦ ତାର ସୃଷ୍ଟିରେ । କିନ୍ତୁ ତାଙ୍କ ଡାକକୁ ବାରମ୍ବାର ଏସ୍ଥା

ଆଘାତ ଦେଇଛୁ ଯେ, ଓଡ଼ିଶାରେ ସାହିତ୍ୟିକମାନେ ସୃଷ୍ଟିର ଆନନ୍ଦ ଓ ତପସ୍ୟା ଉପରେ ସେତେ ଦୃଷ୍ଟି ଦିଅନ୍ତି ନାହିଁ ଯେତେ ଦିଅନ୍ତି ଆର୍ଥିକ ଲାଭାଲାଭ, ଟେକ୍ସବୁକ୍, ଆକାଡେମୀ ପୁରସ୍କାର ଆଦି ଗୌଣ ବିଷୟରେ । ବସ୍ତୁତଃ ଅଧିକାଂଶ ଓଡ଼ିଆ ବକ୍ତାମାନଙ୍କ ଆଲୋଚନା ଏଇ ସବୁ ଗୌଣ ବିଷୟ ଉପରେ ହିଁ ହୋଇଥିଲା । କିନ୍ତୁ ଓଡ଼ିଶାର ସାହିତ୍ୟିକମାନେ ବିବେକାନନ୍ଦ ବାବୁଙ୍କର ବ୍ୟଞ୍ଜନାକୁ ଅବଧାନକୁ ନେବେ ବୋଲି ଆଶା ।

## ଭବିଷ୍ୟତ

ଉତ୍କଳ ସାହିତ୍ୟ ସମାଜର ପୂର୍ବାଚରିତ ବାର୍ଷିକୋତ୍ସବ କଥା ମୂଳରୁ କହିଛୁ । ସେ ଆଉ ହେଉ ନାହିଁ । କିନ୍ତୁ ଦେଶର କବି, ଲେଖକ ସାହିତ୍ୟିକଗଣ ବର୍ଷରେ ଥରେ ମିଳିତ ହେବା ଜାତି ପକ୍ଷରେ ମଙ୍ଗଳକର । କିନ୍ତୁ ଅଫଳପ୍ରସୂ ଭାବରେ ଶତବର୍ଷ ଧରି ମିଳିତ ହେଲେ ଲାଭ କ'ଣ ? ତାହା କେବଳ ତାମାସା ହୋଇ ହିଁ ରହିବ । ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଏଇ ପଏଣ୍ଟଟି ଭଲ କରି ଉଠାଇଥିଲେ । ସେ କହିଥିଲେ ଯେ, ୪୦ରେ ଏ ବିଷୁବ ମିଳନରେ ଏ ପ୍ରକାର ଆଲୋଚନାର ପରିଣତି କ'ଣ ? କାହିଁକି ଏଥିରୁ ଗୁଡ଼ିଏ ଘଣ୍ଟା ଘଣ୍ଟା ଧରି ଆଲୋଚନା କରିବା ? ଆଲୋଚନା ଯଦି କାର୍ଯ୍ୟରେ ପରିଣତ ନ ହୁଏ ତେବେ ତାହା ଶ୍ରମର ଅପବ୍ୟୟ ଛଡ଼ା ଆଉ କ'ଣ ? ଆସ, ଏ ସମ୍ପର୍କରେ ରିଜୋଲ୍ୟୁଶନ୍ ପାଶ୍ କରିବା ଓ ସେହି ଅନୁସାରେ କର୍ମଯୋଜନା ଗଢ଼ିବା ।

କିନ୍ତୁ ତାଙ୍କ କଥାରେ କେହି କର୍ଣ୍ଣପାତ କଲେ ନାହିଁ । ଯେବେ କଲେ ନାହିଁ, ତେବେ ତାଙ୍କ କଥାର ଜବାବ ହେଲେ କେହି ଦେଇ । ଯଦି ବିଷୁବ ମିଳନ କେବଳ ଏକ 'ବନ୍ଧୁ ମିଳନ' ତେବେ ସ୍ପଷ୍ଟ ବୁଝାଯାଉ ଯେ ତାହା କେଉଁ ପ୍ରକାର ବନ୍ଧୁଙ୍କର ମିଳନ । ଶିଶୁ ସଭା, ନାରୀ ସଭା, ଅଭିନେତା-ଅଭିନେତ୍ରୀ-ସିନେମା ଷ୍ଟାର ସଭା, ଶିଳ୍ପୀ ସଭା, କମ୍ପୋଜିଟରମାନଙ୍କ ସଭା ଇତ୍ୟାଦି ନାନା ପ୍ରକାର ମେଳା କରି ତାରି ଭିତରେ ଗୁଞ୍ଜି ହୋଇ ଓଡ଼ିଆ ସାହିତ୍ୟର ସମସ୍ୟାମାନଙ୍କର ମଧ୍ୟ ଆଲୋଚନା ହୋଇ ନ ପାରେ । ଏହାର କ୍ଷେତ୍ର ସ୍ୱତନ୍ତ୍ର । ଏହାର ପରିବେଶ ସ୍ୱତନ୍ତ୍ର, ଏହାର ସଙ୍ଗଠନ ସ୍ୱତନ୍ତ୍ର । ଉଚ୍ଚକୋଟୀର ଅନୁଶୀଳନ ପାଇଁ କି ସଙ୍ଗଠନ, କି ପରମ୍ପରା, କି ଐତିହ୍ୟ, କି ପରିବେଶ ଦର୍କାର ତାହାର ସୂଚନା ଏଇ ପ୍ରବନ୍ଧରେ ଦିଆଯାଇଛୁ । ପୁଣି ବିଷୁବ ମିଳନ ଯଦି ଏକ ବ୍ୟକ୍ତି ବିଶେଷଙ୍କର ବାର୍ଷିକ ବନ୍ଧୁ ମିଳନ ମାତ୍ର ବୋଲି ଧରାଯାଏ ତେବେ ତାର ଏକ ବେଳକେ ବଦଳି ଯିବ । ବିଷୁବ ମିଳନ ପରି ଏକ ବାର୍ଷିକ ମେଳଣ ଆମ ସକଳର କାମ୍ୟ । କିନ୍ତୁ ତାହା ସମ୍ମାନନୀୟ ଓ ମର୍ଯ୍ୟାଦାବନ୍ତ ନ ହେଲେ, ଘୁଷୁରିର ପଙ୍କ ଯେପରି କାମ୍ୟ ସେହି ଶ୍ରେଣୀର କାମ୍ୟ ହୋଇ ରହିବ ।

●

## ମାନସିଂହଙ୍କ ଅପ୍ରକାଶିତ ଲେଖା—

# (୨) ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆର ଜନ୍ମ ଓ ମୃତ୍ୟୁ

### ୧ । ଏହାକି ଆମର ଜାତୀୟ ସାଧୁତା ?

ଇଂରେଜଙ୍କୁ ତଡ଼ି ଦେଇ ଆମେ ଯେଉଁ ଧରାସ୍ୱର୍ଗ ଉପଭୋଗ କରିବୁ ବୋଲି ସ୍ୱପ୍ନ ଦେଖିଥିଲୁ, ତା' ପରିବର୍ତ୍ତେ ଆମେ ଯେ ଆଜି ଚାରିଆଡ଼େ ନୈରାଶ୍ୟ ଓ ବିଶୃଙ୍ଖଳା ଭୋଗ କରୁଛୁ, ତା ଉପରେ ଆଉ ଯୁକ୍ତିତର୍କର ଅବକାଶ ବୋଧହୁଏ ନାହିଁ । କାରଣ ତାହା ଆମ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ତିକ୍ତ ଅଭିଜ୍ଞତା । କିନ୍ତୁ ଏହି ଅଧଃପତନକୁ ସ୍ୱୀକାର କରିନେଇ, ମୁହଁ ଫେରାଇ ଠିକ୍ ବାଟରେ ଚାଲିବା ପୁଣି ଆରମ୍ଭ କରିବାର ସତ୍‌ସାହସ ସମଗ୍ର ଜାତିରେ କୌଣସିଠାରେ ଦେଖା ଯାଉନାହିଁ । ବାହାରେ ସମଗ୍ର-ଜାତୀୟ ଜୀବନକୁ ବ୍ୟାଧିଗ୍ରସ୍ତ କରିଥିବା ପରିବ୍ୟାପ୍ତ ଅସାଧୁତା ଯେ ଆମର ଭିତରର ମାନସିକ ଓ ଆତ୍ମିକ ଅସାଧୁତାର ହିଁ ପ୍ରତିଫଳନ ମାତ୍ର, ଆମେ ଯଦି ସେତିକି ହିଁ ମାନି ନିଅନ୍ତେ, ତେବେ ତାହା ହୁଅନ୍ତା ଆମ ନବ ଜୀବନର ପ୍ରଥମ ପଦକ୍ଷେପ । କିନ୍ତୁ କାହିଁ ସେ ସତ୍‌ସାହସ ?

୨ । ଦେଶବାସୀ ସ୍ମରଣ ରଖନ୍ତୁ ଯେ ଆଜି ଆମ ସମଗ୍ର ଜାତୀୟ ଦୁର୍ଗତିର ମୂଳ ନିଦାନ ହେଉଛି ଏହି ଚାରିତ୍ରିକ ଅସାଧୁତା । ଗାନ୍ଧିର ପବିତ୍ର ପତାକା ବହନ କରି ଓ ପବିତ୍ର ନାମ ଉଚ୍ଚାରଣ କରି ଆମ ଭିତରୁ ଅଧିକାଂଶ ଯେ ଗତ ତିରିଶ ବର୍ଷ ଧରି ସକଳ କଳଙ୍କମୟ ଓ ଅକଳଙ୍କମୟ ଅନାଚାର ଓ ମିଥ୍ୟାଚାର କରି ଚାଲିଲେ ଅଥଚ ଜାତିଠାରୁ ପାଇ ଚାଲିଲେ କେବଳ ଦଣ୍ଡବତ ଓ ଫୁଲମାଳ ନୁହେଁ ; ପାଇଲେ ମଧ୍ୟ ଅସୀମ ବିତ୍ତ ଭୋଗ-ଭାଗ୍ୟ ଓ କ୍ଷମତା, ତାହାହିଁ ଯେ ଆଜି ସମଗ୍ର ଭାରତର ସାମାଜିକ ଜୀବନକୁ ଦୁଶ୍ଚିକିତ୍ସ୍ୟ କର୍କଟ-ରୋଗଗ୍ରସ୍ତ କରି ଠିଆ କରାଇଛି, ଏଥିରେ କୌଣସି ସନ୍ଦେହ ନାହିଁ ।

ହେ ମୋର ଦେଶବାସୀ, ଏହା ମାନିବା ହିଁ ଏହି ଲଜ୍ଜାକର ଜାତୀୟ ପରିସ୍ଥିତିର ଆଦ୍ୟ ଓ ମୁଖ୍ୟ ପ୍ରତିବିଧାନ ହେବ।

**୩। ସବୁଠୁଁ ମାରାତ୍ମକ ବୌଦ୍ଧିକ ଅସାଧୁତା—**

ପୁଣି ମନେ ରଖିବାକୁ ହେବ ଯେ, ସବୁଠାରୁ ମାରାତ୍ମକ ଓ ଆତ୍ମଧ୍ୱଂସକାରୀ ଅଧଃପତନ ହେଲା, ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଜାତୀୟ ଅସାଧୁତା ଓ କଳାବଜାର। ଭାରତବର୍ଷରେ ଆଜି ଅତି ଅପଦାର୍ଥ ମଧ୍ୟ ଧରାଧରି କରି କେବଳ ଧୂରନ୍ଧର ଜନର ପ୍ରାପ୍ୟ ଡକ୍‌ଟର୍, ପି.ଏଇଚ.ଡି ପ୍ରଭୃତି ଅତି ଗୌରବାବହ ଡିଗ୍ରୀ ଯୋଗାଡ଼ କରି ପାରୁଛନ୍ତି ; ତାହା ନୁହେଁ, ଯେ ଖଣ୍ଡିଏ ହେଲେ ବିସ୍ମରଣୀୟ ଗ୍ରନ୍ଥ ପୁସ୍ତିକା ଲେଖି ନାହାନ୍ତି ସେ ମଧ୍ୟ ଏକାଡେମୀର ଶାଢ଼ୀ ବାନ୍ଧୁଛନ୍ତି ବିରାଟ ସାହିତ୍ୟିକ ଭାବରେ। ପୁଣି ଜାତୀୟ ଜୀବନ କଥା ଗୁଡ଼ିକଦିଅ ; ଶିକ୍ଷାକ୍ଷେତ୍ରରେ ମଧ୍ୟ ଯାହାଙ୍କର ସାମାନ୍ୟତମ ଦାନନାହିଁ, ସେପରି ଲୋକ ସବୁ ଆଜି ଏ ଦେଶର ବିଶ୍ୱ-ଜ୍ଞାନପୀଠ ବିଶ୍ୱବିଦ୍ୟାଳୟ ମାନଙ୍କର ଭାଇସ୍‌ଚାନ୍‌ସଲେର।

୪। ଆମର କର୍ତ୍ତା ବା ଦେଶ ବାହକମାନେ ଯଦି ଭାବୁଛନ୍ତି ଯେ କ୍ଷମତାରେ ଥାଇ ଏ ପ୍ରକାର ସବୁବିଧ ଅନ୍ୟାୟ, ଅସାଧୁତା ଓ ମିଥ୍ୟାଚାର କରି ଚାଲିବେ ଅଥଚ ଏ ଜାତିର ନନ୍ଦିଘୋଷ ରଥ ସିଧା ସହଜ ଜାତୀୟ ଉନ୍ନୟନର ଗୁଣ୍ଡିଚାଘରେ ଯାଇ ପହଞ୍ଚିବ, ତେବେ ଦେଶବାସୀ ଦୃଢ଼ ଜାଣନ୍ତୁ ଯେ, ତାହା ଏକ ଅସମ୍ଭବ ବ୍ୟାପାର। ଧରାପୃଷ୍ଠସ୍ଥ ଜୀବନ, ସମ୍ପୂର୍ଣ୍ଣ ନିରପେକ୍ଷ ଓ ନିଷ୍ଠୁର ନୈତିକ ନିୟମାବଳୀ ଦ୍ୱାରା ହିଁ ପରିଚାଳିତ। ଯେଉଁ ପୁଅ ବାପକୁ କନ୍ଦେଇବ ସେ କିଛି କାଳପରେ ତା ପୁଅଠୁ ସେହି ବ୍ୟବହାର ହିଁ ପାଇବ । ଏହା ଦରିଦ୍ରର କୁଟୀରରେ ଘଟେ ଏବଂ ଘଟେ ମଧ୍ୟ ଧନୀକର ପ୍ରାସାଦରେ । ବିଶ୍ୱର ସାର୍ବଭୌମ ନିୟମତାନ୍ତ୍ରିକତାକୁ ଫାଙ୍କି ଦେବାର ଶକ୍ତି ବା ଅଧିକାର କୌଣସି ବ୍ୟକ୍ତି ବା ଜାତିର ମଧ୍ୟ ନାହିଁ।

ଓଡ଼ିଆ ଭାଷା ରାଜ୍ୟରେ ଘଟି ଆସୁଥିବା ମାରାତ୍ମକ ଅସାଧୁତା ଗୁଡ଼ିକ ପ୍ରତି ସରକାର ଓ ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରି ଗତ ବହୁବର୍ଷ ଧରି ଏହି ଲେଖକ ବିଭୀଷିକାମୟ ଅଭିଜ୍ଞତା ସବୁର ସମ୍ମୁଖୀନ ହୋଇ ଆସିଛି । କିନ୍ତୁ ସେଥିପାଇଁ ଦିନେହେଲେ ଅନୁତପ୍ତ ହୋଇନାହିଁ କି ହେବନାହିଁ। କାରଣ, ଏହି ଆତ୍ମ ସନ୍ତୋଷ ମିଳୁଛି ଯେ, ସାମାନ୍ୟ ଭାବରେ ହେଲେ ହେଁ ତା'ର ଭାଷା-ଜନନୀ ପ୍ରତି ସେ ତା'ର କର୍ତ୍ତବ୍ୟ ଯଥାକାଳ ଓ ଯଥାଶକ୍ତିରେ କରି ରଖିଛି।

**୫। ଆଞ୍ଚଳିକ ଭାଷାମାନଙ୍କର ଉନ୍ନୟନ—**

ଆଜି ଭାରତର ଚାରିଆଡେ ଆଞ୍ଚଳିକ ଭାଷାମାନଙ୍କର ପରିପୂର୍ଣ୍ଣ ଉନ୍ନୟନ ପାଇଁ ଚିତ୍କାର ଶୁଭୁଛି। ଏହା ଶୁଭଲକ୍ଷଣ ନିଶ୍ଚୟ। ତେବେ ଭାବିବା ଉଚିତ

ଯେ, ଏହି ଉନ୍ନସ୍ତନର ଉତ୍ତମ ଚଣ୍ଡୁ ବା ଅନୁତ୍ତମ ଚହ୍ନ କ'ଣ ? ଧର୍ମ-ଧର-ପାରଙ୍ଗମ ଅପଦାର୍ଥମାନଙ୍କୁ ଉଚ୍ଚତମ ଡିଗ୍ରୀ ବାଣ୍ଟିବା ଦ୍ୱାରା ଯଦି ବୁଝାଯାଏଯେ, ଆଞ୍ଚଳିକ ଭାଷାର ଉନ୍ନତି ହୋଇଗଲା, ତେବେ ଆଉ ଆମର ଭାବିବାର କି ଅଛି ? ତାହା ତ ଆମେ ଏକାଦିନେ କରିପାରିବା । ଆମର ବର୍ତ୍ତମାନ ସ୍ମୃତି ବିଶ୍ୱବିଦ୍ୟାଳୟ ଠିଆ । ଏହି ସ୍ତରଟି ବିଶ୍ୱବିଦ୍ୟାଳୟ ଏକାବର୍ଷ ସମଗ୍ର ଇଂଲଣ୍ଡରେ ଯେତେ ଡକ୍ଟର୍ ଅଛନ୍ତି, ଓଡ଼ିଆରେ ସେତିକ ଡକ୍ଟର୍ ଠିଆ କରିଦେଇ ପାରନ୍ତି । ଆମେ ସ୍ୱାଧୀନତା ପରେ ଏହି ପ୍ରକାର ସାଣାକାଠି ଧରି ଏମ୍ ଏ, ବି. ଏ., ଓ ମାଟ୍ରିକ୍ୟୁଲେଟ୍ ସବୁ ସହସ୍ର ସହସ୍ର ସଂଖ୍ୟାରେ ବାହାରକୁ ଗ୍ରୁଡ଼ିସାରିଲୁଣି । ଅଥଚ ତେଣେ କୋଠାରୀ-କମିଶନ୍ ସ୍ପଷ୍ଟ ବାଣୀରେ ଘୋଷଣା କରିଛନ୍ତି ଯେ, ଭାରତବର୍ଷର ମାଟ୍ରିକ୍ୟୁଲେଟ୍ ଉନ୍ନତ ଦେଶମାନଙ୍କର ପ୍ରାଇମେରୀ ଏବଂ ଭାରତବର୍ଷର ବି.ଏ., ଏମ୍ ଏ ସବୁ ସେ ଦେଶ ମାନଙ୍କର ମାଟ୍ରିକ୍ୟୁଲେଟ୍‌ମାନଙ୍କ ସହିତ ହିଁ ତୁଳନୀୟ । ସେ ପ୍ରକାର ଲଜ୍ଜାକର ପରିସ୍ଥିତି ପ୍ରତି ଭ୍ରୂକ୍ଷେପ ମାତ୍ର ନକରି ଏବଂ ବିଦ୍ୟା ଓ ଜ୍ଞାନର କୌଣସି ହେଲେ ମାନଦଣ୍ଡକୁ ସମ୍ମାନ ନଦେଇ, ଆମେ ଗାଏ ଗାଏଁ କଲେଜ ବସେଇ ଗ୍ଲିଛୁ କେବଳ ଶସ୍ତା ଓ ସହଜରେ ଅର୍ଥହୀନ ଡିଗ୍ରୀ-ଡିପ୍ଲୋମା ବାଣ୍ଟିବା ପାଇଁ ।

ଦେଶବାସୀ ଓ ଦେଶକାରକ ଗଣ ଧୀର ସ୍ଥିର ଭାବରେ ନିଜକୁ ପ୍ରଶ୍ନ କରନ୍ତୁ ଏହାରି ନାମ କି ଶିକ୍ଷା ? ବା କୋଟି କୋଟି ସଂଖ୍ୟକ ଏପରି ଛପା-ମରା ମୂର୍ଖଙ୍କୁ ବାହାର କରେଇ ଗ୍ଲିଲେ ଏହି ଦରିଦ୍ର ଓ ନିଃସ୍ୱ ଦେଶର ଲାଭ ନା କ୍ଷତି, କ'ଣ ହେବ ?

## ୭ । ସଭ୍ୟ ଦେଶର ଚିତ୍ର :—

କିନ୍ତୁ ସଭ୍ୟ ଉନ୍ନତ ଦେଶମାନଙ୍କର ଚିତ୍ର କ'ଣ, ସେଠି ଭାଷା ଓ ସାହିତ୍ୟର ଉନ୍ନତି କହିଲେ କ'ଣ ବୁଝାଏ ? ସବୁକ୍ଷେତ୍ରରେ ଅଗ୍ରଗାମୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକାରେ ସାଧାରଣତଃ ନାଗରିକ ଓ ନାଗରିକା କେଉଁ ପ୍ରକାର ପୁସ୍ତକ ପଢ଼ିବାକୁ ଅଧିକ ଆଗ୍ରହୀ ସେହି ବର୍ଣ୍ଣନାରୁହିଁ ସୂଚିତ ହେବବୋଲି ଆଶା ।

୧୯୬୬ ମସିହା ଡିସେମ୍ବର ୧୬ ତାରିଖରେ ପ୍ରସିଦ୍ଧ ଆମେରିକାନ୍ ପତ୍ରିକା "ଟାଇମ୍" ପ୍ରକାଶ କରିଛି ଯେ ସମସାମୟିକ କାଳରେ ଯୁକ୍ତରାଷ୍ଟ୍ରରେ ବିକ୍ରି ହେଉଥିବା ସବୁ ଶ୍ରେଣୀର ପୁସ୍ତକ ମାନଙ୍କ ମଧ୍ୟରେ ସର୍ବାଧିକ ବିକ୍ରି ହେଉଛି ଏନ୍-ସାଇକ୍ଲୋପିଡ଼ିଆ ଓ ରେଫେରେନ୍‌ସ ପୁସ୍ତକମାନଙ୍କର । ଏହା ବିକ୍ରି ବହିର ୫° ଭାଗରୁ ଅଧିକ କହିଲେ ଚଳେ । ସେ ଦେଶର ପ୍ରକାଶନ-ସଂସ୍ଥା ଓ ବିଶ୍ୱବିଦ୍ୟାଳୟ ସବୁ ଦେଶର ଜନ-ଚେତନାରେ ଜ୍ଞାନ-ବିଜ୍ଞାନ ପ୍ରତି ବାଞ୍ଛନୀୟ ଜିଜ୍ଞାସାଭାବ ଜାଗ୍ରତ କରାଇ ରଖିବା ପାଇଁ, ନିଜ ନିଜର ସ୍ୱତନ୍ତ୍ର ଏନ୍‌ସାଇକ୍ଲୋପିଡ଼ିଆ ଓ ରେଫରେନ୍‌ସ ବହିଗୁଡ଼ିକ

ନୂତନ ରୂପ, ନୂତନ ବେଶ ଓ ନୂତନ ଆଭିମୁଖ୍ୟ ଦେବାରେ ବର୍ଷପରେ ବର୍ଷ ଅକୁଣ୍ଠ ଭାବରେ ଅର୍ଥବ୍ୟୟ କରିଥାନ୍ତି । ଉଦାହରଣ ସ୍ୱରୂପ ଇଂରାଜୀ ଭାଷାରେ ଅଭିଧାନର କୌଣସି ଅଭାବ ନଥିଲେ ମଧ୍ୟ "ରାଣ୍ଡମ୍ ହାଉସ" ନାମକ ଏକ ପ୍ରସିଦ୍ଧ ପ୍ରକାଶନ ସଂସ୍ଥା ଦୁଇହଜାର ପୃଷ୍ଠାର ଏକ ନୂତନ ପ୍ରକାରର ଇଂରାଜୀ ଅଭିଧାନ ଉପରେ ଏବେ ଦୁଇକୋଟି ୨୫ ଲକ୍ଷଟଙ୍କା ଖର୍ଚ୍ଚ କରିଥିବା ପ୍ରକାଶ । କିନ୍ତୁ କେବଳ ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ପକେଇଲେ ସଫଳତା ଆସିଯାଏ ବୋଲି ସ୍ୱାଧୀନ ଭାରତବର୍ଷର ଲୋକେ ଓ ଚକ୍ରାକାରକମାନେ ଦୃଢ଼ବିଶ୍ୱାସ କଲେ ମଧ୍ୟ ସେସବୁ ସଭ୍ୟଦେଶରେ ଏହା ସିଦ୍ଧିର ପ୍ରଥମ କଥା ନୁହେଁ । ରାଣ୍ଡମ୍ ହାଉସ୍ ଏହି ଡିକ୍‌ସନାରି ବହିଟି ବଜାରକୁ ଆଣିବା ପୂର୍ବରୁ ଉପଯୁକ୍ତ ବିଶେଷଜ୍ଞ ଧୂରନ୍ଧର ଦଳଙ୍କୁ ଦଶବର୍ଷ ନିଯୁକ୍ତ କରିରଖିଥିଲେ । ଅର୍ଥ ଓ ପ୍ରଜ୍ଞାର ଯଥାଯୋଗ୍ୟ ମିଳନରେ ଏହିପରି ଭାବରେ ଏକ-ସମ୍ମାନନୀୟ ପଦାର୍ଥ ସୃଷ୍ଟି କରାଗଲା । ଯେପରି ହେବାର କଥା । ଫଳରେ ରାଣ୍ଡମ-ହାଉସର ଏହି ଅଭିଧାନଟି ପ୍ରକାଶିତ ହେବାମାତ୍ରେ ଇଂଲଣ୍ଡ ଓ ଆମେରିକାରେ ବହି ବିକି ଜଗତରେ ମଧ୍ୟ ରେକର୍ଡ଼ ସୃଷ୍ଟି କଲାଣି । ଏହାର ବିପରୀତରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ଲକ୍ଷଲକ୍ଷ ଟଙ୍କା ଖର୍ଚ୍ଚକରି ପୁସ୍ତକମାଳା ପ୍ରକାଶ କରିବାର ଚଢ଼ ପ୍ରତି ପାଠକେ ଆଖି ପକାନ୍ତୁ । ସେଠି ମଧ୍ୟ ସେହି ବ୍ୟାପକ ଜାତୀୟ ବ୍ୟାଧି । କୋଟି କୋଟି ଟଙ୍କା ଖର୍ଚ୍ଚକରି ନାଶନାଲ୍ ଲେବରେଟରି ସବୁ ଭାରତ ସରକାର ବଢ଼େଇଲେ ମଧ୍ୟ ଆମେ ବିଜ୍ଞାନରେ ସାମାନ୍ୟ ଅଗ୍ରଗତି କରିପାରୁ ନାହୁଁ । କେବଳ ସେହି ବ୍ୟାଧିଯୋଗୁଁ ସେହି ଅସାଧୁତା ଦୋଷରୁ । ଅର୍ଥାତ୍ ଜ୍ଞାନ-ବିଜ୍ଞାନ-କଳା-ସାହିତ୍ୟର ପତାକାତଳେ କେବଳ ଧନ-ପ୍ରଭାବ ଓ ଅଫିସକୁ କରଗତ କରିବାର ପ୍ରଚେଷ୍ଟା ମାତ୍ର ।

୭ । ଭାଷାରେ ଏନ୍‌ସାଇକ୍ଲୋପିଡ଼ିଆର ସ୍ଥାନ—

ଭାରତୀୟ ଆଞ୍ଚଳିକ ଭାଷାଗୁଡ଼ିକ ଉପରେ ସାର୍ବଭୌମ ଦାୟିତ୍ୱ ଲଦି ଦେବା ବିରୋଧରେ ମୁଖ୍ୟଯୁକ୍ତି ହେଉଛି ଏହି ଯେ, ଏଗୁଡ଼ିକ ଇଂରାଜୀପରି ସେ ଦାୟିତ୍ୱ ବହନ କରିବାପାଇଁ ଯୋଗ୍ୟ ବା ଶକ୍ତିଶାଳୀ ହୋଇନାହାନ୍ତି ।

ତେଣୁ ଆମ ଭାଷାମାନଙ୍କର ଏହି ଯୋଗ୍ୟତା ବା ଶକ୍ତିଶାଳିତା ସୁପ୍ରମାଣିତ କରେଇବାର ସମୟ ଆସିଛି ଏବଂ ଗୋଟିଏ ଭାଷାର ସର୍ବମୟ-ଶକ୍ତିଶାଳିତା ପ୍ରମାଣ କରେଇବା ଦଗରେ ପ୍ରଥମ ପଦକ୍ଷେପ ହେଉଛି ସେହି ଭାଷାରେ ଏକ ପରିପୂର୍ଣ୍ଣାଙ୍ଗ ଏନ୍‌ସାଇକ୍ଲୋପିଡ଼ିଆ ।

ଦୁଃଖର ବିଷୟ ଏହି ଯେ, ଆମେ ନିଜକୁ ସଭ୍ୟ ଓ ଅଗ୍ରଗାମୀ ଦେଖାଇ ହେବା ଲକ୍ଷ୍ୟରେ ପାଶ୍ଚାତ୍ୟ ସମାଜର ଗୋଟାକପରେ ଗୋଟେ ବାର ଅନୁଷ୍ଠାନସବୁ

ଅନୁକରଣ କରି ଚାଲିଛୁ । କିନ୍ତୁ ସେମାନଙ୍କର ଜ୍ଞାନ, ଆନ୍ତରିକତା, ଜାତୀୟତା ଓ ସର୍ବୋପରି ସାଧୁତାର ଅଭାବରୁ ଆମର ସେହି ଅନୁକରଣ ଗୁଡ଼ିକ ଉଭୟ ଲଜ୍ଜାକର ଓ ହାସ୍ୟକର ଭାବରେ ହିଁ କେବଳ ୟୁରୋପୀୟ ଅନୁଷ୍ଠାନଗୁଡ଼ିକର ଭୂତ-ପ୍ରେତ ହୋଇ ଠିଆହୋଇଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଆମର ଡମୋକ୍ରାସି, ଆମର କଲେଜ ଓ ବିଶ୍ୱବିଦ୍ୟାଳୟ ସବୁ, ଆମ ନାଶନାଲ୍ ଲାଇବ୍ରେରୀ ସବୁ । ଫ୍ରାନ୍ସ, ଇଂଲଣ୍ଡ, ଆମେରିକା ଓ ସୋଭିଏଟ୍ ରୁଷିଆରେ ମଧ୍ୟ ଯେ କୌଣସି ଏକ ଜାତୀୟ ଆକାଡ଼େମୀର ମେମ୍ବର କିପରି ଲୋକ ହୁଅନ୍ତି ଓ ତା'ର ତାତ୍ପର୍ଯ୍ୟ କ'ଣ ତାହା ଯେଉଁମାନେ ଜାଣନ୍ତି ସେ ଗୌରବାବହ ନାମ ବହନକରିଥିବା ଆମର ତଥା କଥିତ ଆକାଡେମି ଗୁଡ଼ିକୁ କି ଦୃଷ୍ଟିରେ ଦେଖିବ ? ଏପରି ଅଦ୍ଭୁତ ରଖି ଯଥା-ତଥା-ଗଠିତ ମେମ୍ବର ସବୁ ଜାତିର ଜୀବନରେ ବା କି ସ୍ଥାନ ରଖିପାରନ୍ତି ? କେବଳ ଅର୍ଥ ନାଶ ହିଁ ଶେଷ କଥା ।

## ୮ । ଏହା ଜଣକର କାମ ନୁହେଁ—

ଉପରେ ଆମେରିକାର ପ୍ରକାଶନ-ସଂସ୍ଥା ରାଣ୍ଡମ-ହାଉସ ଖଣ୍ଡିଏ ଇଂରେଜୀ ଅଭିଧାନ ମାତ୍ର ବାହାର କରିବା ପାଇଁ କିପରି ଏକ ଉଚ୍ଚକୋଟିର ଧୂରନ୍ଧର ବିଶେଷଜ୍ଞ ଗୋଷ୍ଠୀକୁ ଦଶବର୍ଷ ଖଟାଇଲେ ଏବଂ ଖର୍ଚ୍ଚ ମଧ୍ୟ କଲେ ସର୍ବମୋଟ ଦୁଇକୋଟି ପଚାଶଲକ୍ଷ ଟଙ୍କା, ତାହା କୁହାଯାଇଛି । କିନ୍ତୁ ଆମର ଏଠି ତଥା କଥିତ ଶିକ୍ଷିତ ଲୋକେ ମଧ୍ୟ ଧରି ନିଅନ୍ତି ଯେ ଏକ ପୂର୍ଣ୍ଣାଂଗ ଏନ୍‌ସାଇକ୍ଲୋପିଡ଼ିଆ କେବଳ ଲେଖି ଚାଲିଲେ ହେଲା ଏବଂ ଏହି ସହଜ ରୀତିରେ ତାହା ମଧ୍ୟ ଜଣେ ମାତ୍ର ଲୋକଦ୍ୱାରା ହୋଇପାରେ । କୌଣସି ସଭ୍ୟ ଉନ୍ନତ ଦେଶରେ ମଧ୍ୟ ଜଣେ ଲୋକ ଗୋଟାଏ ପରିପୂର୍ଣ୍ଣାଙ୍ଗ ଏନ୍‌ସାଇକ୍ଲୋପିଡ଼ିଆ ଠିଆ କରେଇଦବାର ଏପର୍ଯ୍ୟନ୍ତ ଜଣାଯାଇ ନାହିଁ ! ଏହା ସବୁଠିଁ ଅଭିଜ୍ଞ, ସୁପଣ୍ଡିତ ଅଧ୍ୟାପକ ଗବେଷକ ମାନଙ୍କର ମିଳିତକର୍ମ ବୋଲି ଧରାଯାଇଛି । ସୁପ୍ରସିଦ୍ଧ ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ତାର ଲେଖକ ସଂଗ୍ରହ କରେ ପୃଥିବୀର ସର୍ବାଞ୍ଚଳରୁ । ତାଙ୍କ ଭିତରେ ଅଛନ୍ତି ୪୩ ଜଣ ନୋବେଲ ପୁରସ୍କାର-ପ୍ରାପ୍ତ ବ୍ୟକ୍ତି । ଏହା ଏକ ସ୍ୱୟଂ ସ୍ୱତନ୍ତ୍ର ଅନୁଷ୍ଠାନ । ପୁଣି ଏହା ଏକାନ୍ତରେ ବହୁପ୍ରକାରର ଜ୍ଞାନୀ ଓ ପଣ୍ଡିତ ଲେଖକଙ୍କର କାମ ହୋଇଥିବାରୁ, ଲଣ୍ଡନ, ଚିକାଗୋ, ଅକ୍‌ସଫୋର୍ଡ଼ ଓ କେମ୍ବ୍ରିଜ୍ ଏହି ଚାରୋଟି ବିଶ୍ୱ-ବିଖ୍ୟାତ ବିଶ୍ୱବିଦ୍ୟାଳୟ ମାନଙ୍କର ସୁନିର୍ବାଚିତ ଅଭିଜ୍ଞ ଅଧ୍ୟାପକମାନଙ୍କର ହେପାଜତରେ ହିଁ ସ୍ୱାକୁ ରଖାଯାଇଛି । କିନ୍ତୁ ଏହା କୌଣସି ବିଶ୍ୱବିଦ୍ୟାଳୟ ଅଧୀନରେ ନାହିଁ । ଏହା ଏକ ସ୍ୱୟଂଚାଳିତ ସଂସ୍ଥା । କେବଳ ବିଶ୍ୱବିଦ୍ୟାଳୟ ବିଶିଷ୍ଟ ପ୍ରତିଷ୍ଠାବାନ୍ ଅଧ୍ୟାପକମାନେ ବ୍ୟକ୍ତିଗତ ଭାବରେ ଏହାର ଦାୟିତ୍ୱ ନେଇଛନ୍ତି । ଏସବୁ ସତ୍ତ୍ୱେ ଏହି ବିଶ୍ୱବିଖ୍ୟାତ ଓ ବିଶ୍ୱସମ୍ମାନିତ ଗ୍ରନ୍ଥରେ ମଧ୍ୟ ଭୁଲଭ୍ରାନ୍ତି ରହିଯାଉଛି ଏବଂ ଏହାମଧ୍ୟ ସ୍ୱୀକାର କରିବାକୁ କର୍ତ୍ତାମାନେ ଆଦୌ ଲଜ୍ଜିତ ବା କୁଣ୍ଠିତ ନୁହନ୍ତି । ଦଶବର୍ଷ ତଳେ

ଓଡ଼ିଶା ସମ୍ପର୍କରେ ଏହି ଗ୍ରନ୍ଥରେ ବହୁଭ୍ରମ ଆମେ ଦେଖାଇ ଦେବାରେ କର୍ତ୍ତାମାନେ ଏହା ନିଃସଙ୍କୋଚରେ ମାନିଯାଇ ସଂଶୋଧନ ପ୍ରାର୍ଥନା କଲେ । ଆମେ ଯୋଗାଇ ଦେଇଥିବା ଓଡ଼ିଶା ସମ୍ପୃକ୍ତ ପ୍ରବନ୍ଧ ସବୁ ବ୍ରିଟାନିକାର ୧୯୬୭ ସଂସ୍କରଣରେ ବାହାରୁଛି । ଜାଣିବାର କଥା ମଧ୍ୟ ଏହିଯେ ବ୍ରିଟେନିକାର ପରିପ୍ଲାନକମାନେ ପ୍ରବନ୍ଧ ଗୁଡ଼ିକର ପ୍ରୁଫ୍, ଦି ଦି ଥର କରି ବ୍ୟୋମ ଡ଼ାକରେ କେବଳ ପଠାଇ ନାହାନ୍ତି, ଲଣ୍ଡନ ଓ ଚିକାଗୋରେ ଥାଇ ଓଡ଼ିଶା ସମ୍ପର୍କରେ ଯେଉଁ ସଂଶୋଧନୀ ସବୁ ଠାଏ ଠାଏ ଯୋଡ଼ିଛନ୍ତି ତାହାମଧ୍ୟ ଆମପକ୍ଷରେ ବିସ୍ମୟକର ହୋଇଛି । ତେଣୁ ପାଠକେ ଓ ସରକାର ନିଜକୁ ପଚାରିବା ଉଚିତ ଯେ, ଏନ୍‌ସାଇକ୍ଲୋପିଡ଼ିଆ ଭଳି କାମ ଗୋଟାଏ ଲୋକର କାମ କି ନା ? ଆଜିଯୁଗରେ ଗୋଟାଏ ଲୋକ ଏକ ଏନ୍‌ସାଇ-କ୍ଲୋପିଡ଼ିଆ ଠିଆ କରେଇ ପାରିବା ଏକ ମାରାତ୍ମକ ବୌଦ୍ଧିକ ପ୍ରତାରଣା ଛଡ଼ା ଆଉ କିଛି ହୋଇପାରେ ? ଅପଦାର୍ଥଙ୍କୁ ଡି ଲିଟ୍ ବା ଅସାହିତ୍ୟିକଙ୍କୁ ସାହିତ୍ୟିକ ସମ୍ମାନ ବାଣ୍ଟିବା ଯେଉଁ ଜଳବାୟୁରେ ସମ୍ଭବ, ଏ ପ୍ରତାରଣା ମଧ୍ୟ ସେଇଠି କେବଳ ଜନ୍ମ ନେଇପାରେ ।

## ୯ । ଏନ୍‌ସାଇକ୍ଲୋପିଡ଼ିଆ, ପ୍ରତି ଦଶବର୍ଷରେ ବଦଳିବ—

ପୁଣି ଯେ କୌଣସି ଏନ୍‌ସାଇକ୍ଲୋପିଡ଼ିଆ ନିଜର ଉପଯୋଗିତା ରକ୍ଷା କରିବା ପାଇଁ ପ୍ରତି ଦଶବର୍ଷରେ ବରାବର ପରିମାର୍ଜିତ ହୋଇ ଚାଲିବା ଉଚିତ । ନଚେତ୍ ରେଫରେନ୍‌ସ ବହି ଭାବରେ ତା'ର ମୂଲ୍ୟ ଗଲା । କିନ୍ତୁ ଯେଉଁ ଏନ୍-ସାଇକ୍ଲୋପିଡ଼ିଆ କେବଳ ଜଣେ ଲୋକର କୃତି, ସେହି ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିଙ୍କପରେ ସେ ଏନ୍‌ସାଇକ୍ଲୋପିଡ଼ିଆକୁ ପରିମାର୍ଜିତ କରିବ କି'ଏ ? ସିଅର୍ସ-ରାବକ-କମ୍ପାନି ପକ୍ଷରୁ ଯେଉଁ ଖଣ୍ଡିକିଆ ଶ୍ରେଷ୍ଠ ଏନ୍‌ସାଇକ୍ଲୋପିଡ଼ିଆଟି ବାହାରେ ତା'ର ଗୁଣ ଓ ଚେହେରାରେ ଆମେ ପଢ଼ିଲା ବେଳଠାରୁ ଏ ଭିତରେ କେପରି ଆକାଶ-ପାତାଳ ପ୍ରଭେଦ ତାହା ପାଠକେ ଦେଖିବେ । କାରଣ ତାର ବରାବର ପରିମାର୍ଜନା ଚାଲିଛି । ପୁଣି ଶ୍ରେଷ୍ଠହେଲେ ହେଁ, ଏନ୍‌ସାଇକ୍ଲୋପିଡ଼ିଆ ତା'ର ବର୍ଦ୍ଧନଶକ୍ତି ରକ୍ଷା କରି ପାରିଛି, କାରଣ ତାହା ଏକ କମ୍ପାନୀ ପକ୍ଷରୁ ପ୍ରକାଶିତ । ତେଣୁ ଜଣେ ଲୋକ, ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ, କଳା, ଶିଳ୍ପ କେବଳ ନୁହେଁ ପଦାର୍ଥବିଦ୍ୟା, ରସାୟନ ବିଦ୍ୟା, ଜୀବ ବିଜ୍ଞାନ, ଜ୍ୟୋତିର୍ବିଦ୍ୟା ଆଦି ସକଳପ୍ରକାର ଜଟିଳ-ଗମ୍ଭୀର ମାନସିକ-ଜ୍ଞାନରେ ସମଭାବରେ ଧୁରନ୍ଧର ହୋଇ ଏକ ପୂର୍ଣ୍ଣାଙ୍ଗ ଏନ୍‌ସାଇକ୍ଲୋପିଡ଼ିଆ ଠିଆ କରାଇ ପାରନ୍ତି, ତାହା କେବଳ ଏହି ରାଜ୍ୟରେ ପୃଷ୍ଠପୋଷକତା ଲାଭ କରିପାରେ । ସାମ୍ପ୍ରତିକ କାଳରେ ଆମ ଦେଶରେ ଟାଇଟିଂ ଓ ବିଜ୍ଞାପନ କରିପାରେ କି'ଣ ?

## ୧୦। ଆଜି ମାନବିକ ଜ୍ଞାନର ପ୍ରସାର—

ଗତ ଦୁଇବର୍ଷ ଭିତରେ ମାନବିକଜ୍ଞାନ ସର୍ବକ୍ଷେତ୍ରରେ ଏପରି ଅକଳ୍ପନୀୟ ଭାବରେ ବଢ଼ି ଚାଲିଛି ଯେ, ଆଜି ଆରିଷ୍ଟଟଲ୍ ଅଲ୍‌ବେରୁନି ବା ଶଙ୍କର; ଯେଉଁମାନେକି ନିଜ ନିଜ କାଳରେ ଜ୍ଞାନସାଗର ରୂପେ ପରିଚିତ ଥିଲେ ଏବଂ ଯାହାଙ୍କୁ ଆଧୁନିକ ପଣ୍ଡିତମାନେ ସ୍ୱୀକାର କରିବାକୁ ବାଧ୍ୟ ହେଉଛନ୍ତି, ସେମାନେ ମଧ୍ୟ ଯଦି ଆଜି ପୃଥିବୀରେ ଦେଖାଯାନ୍ତି ତେବେ ଯେ କୌଣସି ଅଣ୍ଡର ଗ୍ରାଜୁଏଟ୍ ହୁଏତ ଅନେକ ବିଷୟରେ ସେମାନଙ୍କର ଗୁରୁ ହୋଇ ପାରିବ। ତେଣୁ ଆଜିର ଜ୍ଞାନକୋଷ ଜ୍ଞାନ ସଂଗ୍ରହ ପାଇଁ ଯେ ବହୁ ଧୂରନ୍ଧରଙ୍କର ସମ୍ମିଳିତ ଉଦ୍ୟମ ଏକାନ୍ତ ଆବଶ୍ୟକ, ଏହା ସ୍ୱାଭାବିକ, ଯୌକ୍ତିକ ଓ ଯଥାର୍ଥ। କାବ୍ୟ, ଉପନ୍ୟାସ, ଗଳ୍ପପରି ଜଣେ କେହି ଘଡ଼ାଘଡ଼ି ଘାଣ୍ଟିଦେଇ ଓ ଗୁମ୍ପି ଦେଇ "ମୁଁ ଏନ୍‌ସାଇକ୍ଲୋପିଡ଼ିଆ କରିଦେଲି" ବୋଲି କହିଲେ ବ୍ୟକ୍ତିଗତ ଆତ୍ମତୃପ୍ତି ସେଥିରେ ଅଯୌକ୍ତିକ ସନ୍ତୋଷ ଲାଭ କରିପାରେ; କିନ୍ତୁ ତାହା ଏକ ଘୋର ପ୍ରତାରଣା ମାତ୍ର ହୋଇଚାଲିବ। କାରଣ ଆଜି ଏନ୍‌ସାଇକ୍ଲୋପିଡ଼ିଆ ଲେଖା ବା ଛପାହେଲା ମାତ୍ରେ ତାର ପରିମାର୍ଜନାର ବ୍ୟବସ୍ଥା ଭାବି ରଖିବାକୁ ହେବ, ଯେପରି ଏପର୍ଯ୍ୟନ୍ତ ଚାଲିଛି-ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟେନିକାର। ଅର୍ଥାତ୍ ଏନ୍‌ସାଇ-କ୍ଲୋପିଡ଼ିଆ ଉତ୍ସାହୀ ବିଶେଷଜ୍ଞମାନଙ୍କର ଏକ ସ୍ୱୟଂ ସମ୍ପୂର୍ଣ୍ଣ ଓ ଗତିଶୀଳ ଅନୁଷ୍ଠାନ ହୋଇ ଚାଲୁରହିବା ଏକାନ୍ତ ଆବଶ୍ୟକ। ନଚେତ୍ ପ୍ରଥମ ସଂସ୍କରଣରେ ଯେଉଁ ପ୍ରଚୁର ଅର୍ଥବ୍ୟୟ ହେବ ତାହାମାତ୍ର ଦଶବର୍ଷ ଭିତରେହିଁ ଅକାମୀ ହୋଇଯିବ।

## ୧୧। ଓଡ଼ିଶାରେ ପ୍ରଥମ ଉଦ୍ୟମ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ତା'ର ମୃତ୍ୟୁ :—

ଗୋଟିଏ ଅନୁନ୍ନତ ଭାଷା ପକ୍ଷରେ ଏକ ପୂର୍ଣ୍ଣାଙ୍ଗ ଓ ସୁଧୀଜନ ସମ୍ମାନିତ ରେଫରେନ୍‌ସ ଓ ଜ୍ଞାନପରିବେଶକ ପୁସ୍ତକ ଭାବରେ ଏକ ଏନ୍‌ସାଇକ୍ଲୋପିଡ଼ିଆର ଗୁରୁତ୍ୱ ପୂର୍ଣ୍ଣଭାବରେ ହୃଦୟଙ୍ଗମ କରି, ପ୍ରାୟ ଦୀର୍ଘ କୋଡ଼ିଏ ବର୍ଷ ତଳୁ ଓଡ଼ିଶାରେ ଏହାର ଉଦ୍ୟମ କରାଯାଇଥିଲା—ଭୁବନେଶ୍ୱର ନଗରରେ ନୁହେଁ, ସୁଦୂର ସମ୍ବଲପୁରରେ। ଯାହାହେଉ, ଏକା ଏକା ଲଢ଼ି ଲଢ଼ି ଶେଷରେ ତତ୍‌କାଳୀନ ଭାଇସ୍-ଚାନ୍‌ସେଲର ଚନ୍ଦ୍ରାମଣି ଆଚାର୍ଯ୍ୟଙ୍କ ଉତ୍ସାହ ଫଳରେ ହିଁ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧୀନରେ ଏକ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ବିଭାଗ ଆରମ୍ଭ ହୋଇପାରିଲା। ଯଦି ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ବିଭାଗ କାହାପ୍ରତି କୃତଜ୍ଞତା ଅନୁଭବ କରିବାର କଥା, ତେବେ ତାହା ଯିବ ସେହି ସ୍ୱର୍ଗତ ଆଚାର୍ଯ୍ୟଙ୍କ ପ୍ରତି। ଦୁଃଖର କଥା ଏ ବିଭାଗର ଜନ୍ମ ପରେ ପରେ ଆଚାର୍ଯ୍ୟ ବିଶ୍ୱବିଦ୍ୟାଳୟରୁ ଚାଲିଗଲେ। ତାଙ୍କ ପରେ ଯେ ଆସିଲେ, ସେମାନଙ୍କ ତଳେ ଏନ୍‌ସାଇକ୍ଲୋପିଡ଼ିଆ କେବଳ କିଛିକାଳ ଚିରବିଚ୍ଛିନ୍ନ ଜୀବନ ଯାପନ କରି ବର୍ତ୍ତମାନକୁ ମୁମୂର୍ଷୁ କହିଲେ ଚଳେ।

କି ପ୍ରକାର ଦୁରଭିସନ୍ଧି ଓ ଅସହଯୋଗ ଭାବ ଭିତରେ ପାଞ୍ଚ-ଛ ବର୍ଷ ନିଜ-ମାନ ରକ୍ଷାକରି କାମ କରିଯାଉଛି ତା'ର ସାମାନ୍ୟ ସୂଚନା ପାଠକେ ପାଇବେ ଲେଖକର "ଶିକ୍ଷାବତ୍ରର ଗାଥା" ରେ । ସେ ବହି ଲେଖାବେଳେ ଲେଖକ ଡିପାର୍ଟମେଣ୍ଟରେ ଥିଲା । ଆଜି ସେ ଦୂରରୁ ଅସହାୟ ଭାବରେ ତା'ର ନିଜସୃଷ୍ଟ ବିଭାଗର ଶେଷ ନିଃଶ୍ୱାସ ହିଁ ଦେଖୁଛି । ଏ ଦେଶର ଆକାଡେ଼ମୀ-ବିଶ୍ୱବିଦ୍ୟାଳୟ-ନାସନାଲ ଲାବରେଟରୀ ପ୍ରଭୃତିରେ ମଧ୍ୟ, ଆଜି ଆମର ବୌଦ୍ଧିକ ଅସାଧୁତା କେତେ ତଳକୁ ଯାଇପାରେ ତାହା, ନୀରବରେ ଦେଖି ଦେଖି ଗ୍ରନ୍ଥ କୋହରେ ପୂର୍ଣ୍ଣହୋଇ ଆସୁଥିଲେ ହେଁ ଆଶାକରେ ଦିନେ ସେହି 'ଅନ୍‌ଟୋଲଡ୍‌ 'ଷ୍ଟୋରି' ବା ଅକୁହାକଥା ଏ ଦେଶର ସର୍ବଜନ ବିଦିତ ହେବ ଏବଂ ଏହି 'ଆକାଡେ଼ମିକ୍ ମର୍ଡ଼ର' ବା ବୌଦ୍ଧିକ ହତ୍ୟାର ସୁବିଚାର ହେବ । ଆଜିଯେ ଏ ଲେଖକ ଏ ସବୁକୁ ଲେଖି ରଖୁଛି ତାହା କେବଳ ଲେଖକର ନିଜର ମୁମୂର୍ଷୁ ସନ୍ତାନ, କାଳେ କେଉଁ ଉଦ୍ୟମୀ ଜନର ଉତ୍ସାହରେ ହୁଏତ ପୁନର୍ଜୀବନ ଲାଭକରି ପାରେ, କେବଳ ସେହି ଆଶାରେ ।

୧୨ । ଆମେ ଏକ କୈଫିୟତ୍-ଧୁରନ୍ଧର ଜାତି :—

ଭାରତବର୍ଷରେ ନିୟମ ସବୁର ଅକ୍ଷରକୁ ମୋଡ଼ିମାଡ଼ି କ୍ଷମତାଶୀଳ ଲୋକେ ଯେପରି କୌଶଳରେ ଅପକର୍ମ ସବୁ କରି ପାରନ୍ତି, ତାର ତୁଳନା ସମଗ୍ର ପୃଥିବୀରେ ମିଳିବନି । ଆମକୁ ଚୀନ ଓ ପାକିସ୍ଥାନ ଗୋଇଠା ମାରୁଛନ୍ତି । ଆମର ପଞ୍ଚବାର୍ଷିକ ଓ ପ୍ରତ୍ୟେକଟି ମିଆଦୀ ଯୋଜନା ଅକଳ୍ପନୀୟ ଜାତୀୟ ଅର୍ଥର ଶ୍ରାଦ୍ଧକରି ମଧ୍ୟ ବିଫଳ । ଆମର ସ୍କୁଲ୍ କଲେଜ-ବିଶ୍ୱବିଦ୍ୟାଳୟ ସବୁ ଆଜି ଗୁହାଳରେ ପରିଣତ ହେଲାଣି, ଅଥଚ ଏସବୁ ଆଇନ୍-କାନୁନ୍‌କୁ ଧରି ହିଁ ଦେଶରେ ଘଟିଚାଲିଛନ୍ତି ସେ ସବୁ ପାଇଁ ଆମର ପକ୍କା କୈଫିୟତ୍ ଥିଆ । ସେହିପରି ମଧ୍ୟ କହିବାକୁ ହେବଯେ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆର ମୃତ୍ୟୁ ମଧ ଘଟୁଛି, ଠିକ୍ ଆଇନ୍-କାନୁନ୍‌କୁ ସମ୍ମାନ ଦେଇ । ଆମର ଉତ୍ପାଦନ ପାଇଁ ଯେତେ ଖାତିର୍ ନାହିଁ, ଯେତେଅଛି ଉତ୍ପାଦନ ସମ୍ପୃକ୍ତ ଆଇନ୍ କାନୁନ୍ ପ୍ରତି । ସ୍ୱର୍ଗତ ପ୍ରଧାନମନ୍ତ୍ରୀ ନେହେରୁ ନିଜେ କରୁଣ ଅସହାୟତାରେ କହୁଥିଲେ ଯେ ଆମେ ଆମର କୃଷି ଉନ୍ନୟନ ବାଟରେ ଲକ୍ଷକୋଟି ମୁଦ୍ରା ବ୍ୟୟକରି ଚାଲିଥିଲେ ହେଁ ଆମେ ଏକ ଗଉଣି ଶସ୍ୟ ଅଧିକା ଉତ୍ପାଦନ କରି ପାରୁନାହୁଁ । ଆମେ ଅନ୍ୟକୁ ହାତ ପାତୁଛୁଁ । କିନ୍ତୁ ପୃଥିବୀର ଯେ କୌଣସି ପରୀକ୍ଷକ ଆସି ଦେଖିଲେ କହିବେଯେ, ଯେତେଟଙ୍କା ବରବାଦ ହେଉ ପଛେ, ଆମର ଜାତୀୟ ଦୁରବସ୍ଥା ଯେତେ ଲଜ୍ଜାଜନକ ହେଉପଛେ, ଆମର ନିୟମ କାନୁନ୍‌କୁ ଆମେ ଠିକ୍‌ମାନି ଚାଲୁଛୁ । ଆମର ଭକ୍ତି ନଥାଇ ପାରେ, କିନ୍ତୁ ଆମେ କି ଜୋର୍‌ରେ ଘଣ୍ଟି-ଘଣ୍ଟା ବଜାଇ ଦିଅଁ ପୂଜା କରୁଛୁ ତାହା କ'ଣ ବିଶ୍ୱ ଦେଖି ପାରୁନି ?

୧୩ । ସେହିପରି ମଧ୍ୟ ଏହି ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ସମ୍ବାଦ । ଅତ୍ୟନ୍ତ ପରିତାପର କଥା ଏହିଯେ, ଯେଉଁ ଭାରତବର୍ଷର ବିଶେଷ ସମ୍ମାନ

କେବଳ ସାହିତ୍ୟ-ସଂସ୍କୃତି ନେଇ, ସେ ଦେଶରେ ଆଜି ପଣ୍ଡିତ ଗୋଷ୍ଠୀଙ୍କୁ ମଧ୍ୟ ବୁଝାଇବାକୁ ପଡ଼ୁଛି ଯେ ଉତ୍ତମ ବହି ଲେଖିବାର ନିୟମ କାନୁନ୍ ବା ରୁଲ୍-ରେଗୁଲେସନରୁ ଆସେ ନାହିଁ, ଏହା ଏକାନ୍ତ ପ୍ରାକୃତିକ ବିଷୟ । ଏଠି ଡିଗ୍ରୀ-ଡିପ୍ଲୋମା ବା ସିନେଟ୍-ସିଣ୍ଡିକେଟର ଶ୍ରେଷ୍ଠ ଏକାନ୍ତ ରେ ଅବାନ୍ତର ବ୍ୟାପାର । ବୌଦ୍ଧିକ ବ୍ୟାପାର ସହିତ ଧରାଧରି, ଠେଲାପେଲା, ଷଡ଼ଯନ୍ତ୍ର ଇତ୍ୟାଦିର ଯେ କୌଣସି ସମ୍ପର୍କ ନାହିଁ ତାହା ଏ ଦେଶର ବୁଦ୍ଧିଜୀବୀ ଲୋକେ ମଧ୍ୟ ପାଶୋରି ଯାଉଛନ୍ତି । ଈର୍ଷା-ହିଂସା ଅଭିସନ୍ଧି ରଖି ଯିଏ କୌଣସି କମକୁ ନେଇ-ଆଣି-ଧୋଇ ପାରିବ ତାକୁ ଅବାନ୍ତର କଥାରେ ଠେଲି, ଯିଏ ସେ କାମ ସମ୍ବନ୍ଧରେ କେବେ ଭାବି ମଧ୍ୟ ନାହାନ୍ତି, ଯାହାଙ୍କର ବୌଦ୍ଧିକ ନମ୍ରତା ସର୍ବଜନ ବିଦିତ, ସେପରି ଲୋକଙ୍କୁ ଆଣି ସେ ସ୍ଥାନରେ ଠିଆ କରାଇବା ଦ୍ୱାରା ସାହିତ୍ୟ-ବିଜ୍ଞାନ-କୃଷି ଇତ୍ୟାଦି ସବୁ କ୍ଷେତ୍ରରେ ଆମର ପ୍ରକୃତ ଉତ୍ପାଦନଯେ ବ୍ୟାହତ ହେଉଛି, ଏହା ଆଜିହେଲେ ଆମର ନେତୃବୃନ୍ଦ ହୃଦୟଙ୍ଗମ କରନ୍ତୁ । ଏନ୍‌ସାଇକ୍ଲୋପିଡ଼ିଆ ଭଲହେଉଛି କି ମନ୍ଦ ହେଉଛି ବା କ'ଣ ହେଲେ ଏହା ଆହୁରି ଭଲହେବ, ତାହା ବାରମ୍ବାର ପଚାରିଲେ ମଧ୍ୟ ଯାହାଙ୍କଠୁ 'ହଁ' କି 'ନାହିଁ', କିଛି ଉତ୍ତର ମିଳନାହିଁ, କି ମିଳିବାର କୌଣସି ସମ୍ଭାବନା ମଧ୍ୟ ନାହିଁ ସେପରି ସ୍ଥଳେ ସ୍ୱୟଂ ଭାଇସ୍‌ଚାନ୍‌ସେଲରଙ୍କ ଦସ୍ତଖତ ସତ୍ତ୍ୱେ, ଏନ୍‌ସାଇକ୍ଲୋପିଡ଼ିଆକୁ କାଗଜ ଯୋଗାଇବାର ସ୍ଥାହାତକୁ ନଯାଇ ତା' ହାତକୁ କାହିଁକି ଗଲା ଏଥିପାଇଁ ଯେଉଁ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟରେ ପାଟିତୁଣ୍ଡ ଓ ମିଥ୍ୟା ଅଭିଯୋଗ ସବୁ ହୋଇ ପାରେ, ସେଠି ଅନ୍ୟ ବହୁତ କିଛି ଅସମ୍ଭବ ଘଟଣା ଘଟିପାରେ ଓ ଘଟୁଛି ମଧ୍ୟ । କିନ୍ତୁ ଉଚ୍ଚକୋଟୀର ବୌଦ୍ଧିକ କର୍ମଯେ ସେ ପରିସ୍ଥିତିରେ ସମ୍ଭବ ନୁହେଁ, ଏହା ପ୍ରାକୃତିକ ନିୟମ ।

## ୧୪ । ବନ୍ଧ୍ୟା କିଂ ବିଜାନାତି ଗୁର୍ବୀ ପ୍ରସବ ବେଦନା ?

କିନ୍ତୁ ଏକ ଏକ କରି ସକଳ ମିଥ୍ୟା ଅଭିଯୋଗର ସମ୍ମୁଖୀନ ହେବାପାଇଁ ଏ ଲେଖକ ଆଜିବି ଚ୍ୟାଲେଞ୍ଜ୍ ଦେଉଛି । ସକଳ ମିଥ୍ୟା କୁତ୍ସାସତ୍ତ୍ୱେ ଓଡ଼ିଆ ଭାଷାରେ ଏନ୍‌ସାଇକ୍ଲୋପିଡ଼ିଆ-ସଂପାଦନାର ଅନ୍ତତଃ ମୂଳପତ୍ତନ ଏ ଲେଖକ ପକାଇ ପାରିଛି ବୋଲି କୁହାଯାଇପାରେ । ପୂର୍ବ ମୌଧଟିକୁ ଠିଆ କରାଇଯିବାର ସ୍ୱପ୍ନଥିଲା । ଏଥିପାଇଁ ଲେଖକ ଅନରାରି ସର୍ଭିସ୍ (ବିନାଦରମା ସେବା) ମଧ୍ୟ ପାଇଛି । କିନ୍ତୁ ଓଡ଼ିଆ ଭାଷାର ଶୁଭାନୁଧ୍ୟାୟୀ ବନ୍ଧୁଗଣ ଚରିତ୍ର-ମାନସିକ-ତତ୍ତ୍ୱବାହୀ ଓଡ଼ିଆ ପ୍ରବାଦ "ଘଇତା ପଛେ ମରୁ ସଉତୁଣୀ ରାଣ୍ଡ ହେଉ" ନୀତିରେ କାମକରି ଏ ବାସ୍ତୁଗଟିକୁ ମାରିଦେବାରେହିଁ ଯେପରି ଆତ୍ମସନ୍ତୋଷ ଲଭ କଲେ । ଯେଉଁମାନେ ଜୀବନରେ ଖଣ୍ଡିଏ ଗ୍ରେଟବହି ମଧ୍ୟ ଲେଖି ପାରିନାହାନ୍ତି ଏନ୍‌ସାଇକ୍ଲୋପିଡ଼ିଆର ମୃତ୍ୟୁ ତାଙ୍କୁ ବାଧିବା କିପରି ? "ବନ୍ଧ୍ୟା କିଂ ବିଜାନାତି ଗୁର୍ବୀଂ ପ୍ରସବ-ବେଦନା" ?

## ୧୫—ବୌଦ୍ଧିକ କର୍ମରେ ପରଂପରାର ମୂଲ୍ୟ!—

ଦେଶର ନିୟାମକଗଣ ସ୍ମରଣ ରଖିବା ଉଚିତ ଯେ, ବୌଦ୍ଧିକ କର୍ମ ସବୁ ପୋଲିସ ଥାନାରୁ ଜଣେ ଅଫିସର ଚାଲିଗଲେ ତାଙ୍କ ଯାଗାରେ ନୂଆଲୋକ ଆସି କାମ ଚଳେଇବାରେ ଯେପରି କୌଣସି ବ୍ୟାଘାତ ଘଟିନଥାଏ ସେପରି ଆଦୌ ନୁହେଁ । କେବଳ ବୈଦ୍ଧିକ କର୍ମରେ continuity ବା ଧାରାବାହିକତା ଏକ ଅତ୍ୟାବଶ୍ୟକ ବ୍ୟବସ୍ଥା । ଇଂରେଜ କବି କଲରିଜ୍ ଏକ ରାତିରେ "କୁବ୍ଲାଇଖାଁ" ନାମକ ତାଙ୍କର ପ୍ରସିଦ୍ଧ କବିତାଟିକୁ ଶୋଇବା ଅବସ୍ଥାରେ ସ୍ୱପ୍ନରେହିଁ ପୁରାପୁରି ରଚନା କରିଗଲେ । ସକାଳେ ନିଦ ଭାଙ୍ଗିଲା ମାତ୍ରେ ସେହି ଅପୂର୍ବ ଘଟଣାଟି ସ୍ମରଣକରି, ସେ ସାଙ୍ଗେ ସାଙ୍ଗେ ସ୍ୱପ୍ନର ରଚନାଟିକୁ ଲେଖି ବସିଲେ । କିନ୍ତୁ ଅଧା ହୋଇଛି ଏହି ସମୟରେ ତାଙ୍କର ଏକ ବନ୍ଧୁ ଆସି କବାଟରେ ଧକ୍‌କା ମାରିଲେ ଓ ଅବାନ୍ତର ଗପରେ କବିଙ୍କ ସମୟ ନଷ୍ଟ କଲେ । ପରେ କଲେରିଜ୍ ଯେତେ ଚେଷ୍ଟାକଲେ ତାଙ୍କର ସେହି ସ୍ୱପ୍ନର କବିତାଟିକୁ ଆଉ ପୂରା କରି ପାରିଲେ ନାହିଁ । ଏପର୍ଯ୍ୟନ୍ତ ଇଂରେଜ ସାହିତ୍ୟରେ ଅପୂର୍ବ ସୃଷ୍ଟି କୁବ୍‌ଲାଇଖାଁ ଖଣ୍ଡିଆ ହୋଇ ରହିଛି ।

ସେହିପରି ମଧ୍ୟ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ କାମଟି ଧାରା ବାହିକ ଭାବରେ ଏକ ପ୍ରକାର ଚାଲିଥିଲା । ଛଅବର୍ଷ ଭିତରେ ଚାରିଖଣ୍ଡ ବହି ବାହାରିବା ଆଦୌ ନିନ୍ଦାର କଥାନୁହେଁ । ପୁଣି ତା' ସାଥେ ସାଥେ ପୂର୍ଣ୍ଣାଙ୍ଗ ଏନ୍‌ସାଇକ୍ଲୋପିଡ଼ିଆ ପାଇଁ ମୂଳପତ୍ତନ ମଧ୍ୟ ପକାଇ ଦିଆଯାଇଥିଲା । ଏତେବେଳକୁ ବଡ଼ ଏନ୍‌ସାଇକ୍ଲୋପିଡ଼ିଆର ଅନ୍ତତଃ ପ୍ରଥମ ଖଣ୍ଡଟି ବାହାରି ସାରିଥାନ୍ତା । ଏ ଲେଖକ ତା' ପାଇଁ ଧନ ଚତୁର୍ଥାଂଶ ବ୍ୟବସ୍ଥା କରିଯାଇଥିଲା । କିନ୍ତୁ ସେ ସବୁ ସେଇଠି ହିଁ ରହିଲେ । ଏପରିକି କ୍ଷୁଦ୍ର ଏନ୍‌ସାଇକ୍ଲୋପିଡ଼ିଆର ଚତୁର୍ଥ ଖଣ୍ଡଟି ତିନବର୍ଷ ହେଲା ଛପାସରିଥିଲେ ମଧ୍ୟ ତାହା ଏପର୍ଯ୍ୟନ୍ତ ବନ୍ଧା ବି ହୋଇପାରିନି ଏବଂ ଏଥିପାଇଁ ତଥାକଥିତ କର୍ତ୍ତୃପକ୍ଷଙ୍କୁ ଏହି ଲେଖକଙ୍କୁ ସ୍ମରଣ କରେଇ ଦେବାକୁ ପଡ଼ୁଛି । ଯାହାବା ବହି ବାହାରିଲା ଓଡ଼ିଶା ସାହିତ୍ୟ ଆକାଡେ଼ମୀର ଉତ୍ପାଦନ ପରି ସେ ସବୁ ବାଣୀବିହାରର କଙ୍କରିଲ ମରୁରେ ତାଲାବନ୍ଦ ହୋଇରହିଲେ । ଏହିକି ଏ ଦେଶରେ ଆମ ସାଧନାର ପରିଣତି ? ଏ ଦେଶ ଓ ସରକାର କଣ ସ୍ଥିର କରି ନେଇଛନ୍ତି ଯେ ବାଞ୍ଛାମାନେହିଁ ପିଲାଙ୍କ ଦାୟିତ୍ୱରେ ରହିବେ ? ନଚେତ୍ ସାହିତ୍ୟ ନାଁରେ ଏ ପ୍ରକାର ଲକ୍ଷ ଲକ୍ଷ ଟଙ୍କାର ବରବାଦ ଆମେ ଆଖି ଆଗରେ ଘଟି ଚାଲିଥିବାର କିପରି ଦେଖୁଛୁଁ ?

## ୧୬ । କ୍ଷାମିକତା ଭାଙ୍ଗିଲା କିଏ ?

ଏହି ଲେଖକ ଏନ୍‌ସାଇକ୍ଲୋପିଡ଼ିଆ ଛାଡ଼ିଯିବା ଦ୍ୱାରାହିଁ କ୍ଷାମିକତା ଭାଙ୍ଗିଗଲାବୋଲି କେହି କେହି ଏବେ କହୁଛନ୍ତି । କିନ୍ତୁ ଏହା ମଧ୍ୟ ଏକ ଘୋର

ମିଥ୍ୟାପ୍ରଚାର ମାତ୍ର । ଏହି ବିଭାଗ ପ୍ରତି ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କର ଅବୈଧିକ ଆଚରଣ ଏବଂ ବିଭାଗୀୟ କର୍ମଚାରୀମାନଙ୍କର ତଜ୍ଜନିତ ମାନସିକ ଅବସ୍ଥା ଜାଣିଲେ କେହି ଏ ପ୍ରକାର ଅଭିଯୋଗ କରିବେ ନାହିଁ ବୋଲି ଆଶା । ଏଠାରେ ଚୁମ୍ବକରେ କହୁଯାଏଁ ।

ଜଣେ ଲୋକର ଚେଷ୍ଟାରେ ଏକ ସମ୍ପୂର୍ଣ୍ଣ ନୂତନ ବିଭାଗ ଖୋଲାହୋଇଗଲା କେବଳ ନୁହେଁ ସେ ଲୋକମଧ୍ୟ ସେ ବିଭାଗର ପରିଚାଳକ ନିଯୁକ୍ତ ହେଲେ (ଅବଶ୍ୟ ସ୍ୱୟଂ ଭାଇସ୍‌ଚାନ୍‌ସେଲରଙ୍କ ସଭାପତିତ୍ୱରେ ଗଠିତ ଦାୟିତ୍ୱ ସମ୍ପନ୍ନ ନିଯୋଗ-କମିଟି ଦ୍ୱାରା ନିର୍ବାଚିତ ହୋଇ), ଏହା ଏ ଦେଶର ବହୁ ଲୋକଙ୍କୁ ମାନସିକ ଅଶାନ୍ତି ଆଣି-ଦେବାଟା ସ୍ୱାଭାବିକ । ଏ ଡିପାର୍ଟମେଣ୍ଟର ଇଂଲଣ୍ଡ ଓ ଆମେରିକାର ପ୍ରସିଦ୍ଧ ଏନ୍‌ସାଇ-କ୍ଲୋପେଡ଼ିଆ ପ୍ରକାଶନ ସଂସ୍ଥା ସବୁ ସହିତ ସଂଯୋଗ ସ୍ଥାପନ କରି, ଏନ୍‌ସାଇ-କ୍ଲୋପିଡ଼ିଆ ପ୍ରସ୍ତୁତିର ସର୍ବସ୍ୱୀକୃତ ଭିନ୍ନ ଭିନ୍ନ ସ୍ତରଦେଇ କାମ କରି ଚାଲିଲେ,— ଯେପରି ହେବାର କଥା । ଏଥିରେତ ନିଶ୍ଚୟ କାମ ଧୀରେ ଧୀରେ ହେବ । କିନ୍ତୁ ଡିପାର୍ଟ ମେଣ୍ଟ ଆରମ୍ଭ ହେବାର ବର୍ଷକ ଭିତରେ ଆଉଜଣେ ଲୋକ, ଏକା ଏକା ଏନ୍‌ସାଇ-କ୍ଲୋପିଡ଼ିଆ ଲେଖି ପକେଇବେ ବୋଲି ସଭା ସମିତି ଦ୍ୱାରା ଓ ଖବର କାଗଜରେ ଘୋଷଣା କରିଦେଲେ । ଯେହେତୁ ସେ ଜଣେ ପ୍ରାଚୀନ କଂଗ୍ରେସ କର୍ମୀ ତାଙ୍କର ଗତି ଅବାଧ, ପ୍ରଚାର ସର୍ବସଗ । ବିଶ୍ୱବିଦ୍ୟାଳୟର ଲୋକ ହୋଇ ଆମେ ତ ଏ ପ୍ରକାର ମିଥ୍ୟାଭିନୟ କରିପାରିନୁ ନାହିଁ । ପୁଣି ଶୀଘ୍ର କିଛି ଦେଇ ଦେବାପାଇଁ ଯାହା ଅପଣ୍ଡିତ କର୍ମ, ସେପରି ମଧ୍ୟ କରିପାରିବୁନି । ଅଥଚ ଡିପାର୍ଟମେଣ୍ଟର ପ୍ରତିଯୋଗୀ ଭାବରେ ଯେଉଁ ରାଜନୈତିକ କର୍ମୀ ଠିଆହେଲେ ସେ ନିରଙ୍କୁଶ ଭାବରେ ଯେପରି ଇଚ୍ଛା ସେପରି କରିଚାଲିଲେ ଏବଂ ତରତର କରି, ନିଜର ଅସାଧାରଣ କ୍ଷମତା ପ୍ରଦର୍ଶନ କରି, ଆମର ସମଗ୍ର ଡିପାର୍ଟମେଣ୍ଟକୁ ଖର୍ବୀକୃତ କରିବା ପାଇଁ ଦେଢ଼ଶ ପୃଷ୍ଠାରେ ଏକ "ଏନ୍‌ସାଇକ୍ଲୋପିଡ଼ିଆ" ମଧ୍ୟ ବାହାର କରିପକାଇଲେ । ଫଳରେ ଭାଇସ୍‌ ଚାନ୍‌ସେଲରଙ୍କ ଠାରୁ ଆରମ୍ଭ କରି ସିଣ୍ଡିକେଟ ସଭ୍ୟ ଓ ଅନ୍ୟସାଧାରଣ ଯିଏ ଆମର ଅସ୍ତିତ୍ୱ ଚାହୁଁ ନଥିଲେ, 'ଆମେ ଅଫିସକୁ ଆସି ଶୋଉଛୁ' ବୋଲି କୁତ୍ସାପ୍ରଚାର କରି ଚାଲିଲେ । ସେ ଯେ କି ମାନସିକ ଯନ୍ତ୍ରଣା, ତାହା ସାଧାରଣ ଅନୁମାନ ମଧ୍ୟ କରିପାରିବେ ନାହିଁ ।

ଯାହାହେଉ ଆମର ଜ୍ଞାନକୋଷର ପ୍ରଥମ ଖଣ୍ଡଟିର ପ୍ରକାଶ ହେବା ଫଳରେ ଏହି କୁତ୍ସା ପ୍ରଚାର ଆପେ ଆପେ ବିସ୍ମୃତ ହୋଇ ଆସିଲା । ପରେ ପରେ ପ୍ରତିବର୍ଷ ଖଣ୍ଡକ ପରେ ଖଣ୍ଡେ ବାହାରି ଚାଲିଲା କାରଣ ଆମେ ଯେଉଁ କେତେକାଳ ଅଫିସରେ ଆସି ଶୋଉଛୁ ବୋଲି କୁହାଯାଉଥିଲା ଏହିସବୁ ଭଲ୍ୟୁମ୍ ସେତିକିବେଳେହିଁ ଲେଖାହୋଇ ବାରମ୍ବାର ସଂଶୋଧିତ ହୋଇ ସଜଡ଼ା ଚାଲିଥିଲା ଏବଂ ସେ ସବୁ ସାଥେ ସାଥେ ବଡ଼ ଏନ୍‌ସାଇକ୍ଲୋପିଡ଼ିଆର କାମବି ଚାଲିଥିଲା ।

ଏ ଭିତରେ କିନ୍ତୁ ଡିପାର୍ଟମେଣ୍ଟ ଆରମ୍ଭରେ ଯେଉଁ କେତେକ ଲୋକ ସହକର୍ମୀ ଭାବରେ ଯୋଗ ଦେଇଥିଲେ, ସେମାନେ ଡିପାର୍ଟମେଣ୍ଟର ଅନିଶ୍ଚିତ ଭବିଷ୍ୟତ ଓ ବିଶେଷତଃ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କର ଏହାପ୍ରତି ବରାବର ଅକରୁଣ ଦୃଷ୍ଟି ଓ ସମାଲୋଚନା ଦେଖି ଦେଖି ଆସ୍ତେ ଆସ୍ତେ ଖସିଡ଼ି ପଳାଇଲେ । ଏହାକୁ ଏକ ପାର୍ମାନେଣ୍ଟ ଡିପାର୍ଟମେଣ୍ଟ କରି ଏବଂ ଏହାକୁ କେନ୍ଦ୍ର କରି ବିଶ୍ୱବିଦ୍ୟାଳୟର ନିଜର ଏକ 'ପ୍ରକାଶନ-ବିଭାଗ' ଖୋଲିବା ପାଇଁ ଯେତେ ପ୍ରସ୍ତାବ ଦିଆଗଲା, ତାହାକୁ କେହି କର୍ଣ୍ଣପାତ ମଧ୍ୟ କଲେ ନାହିଁ । ଅଥଚ ତେଣେ କେତେକ ସଦାଶୟ ସିଣ୍ଡିକେଟ ବନ୍ଧୁମାନଙ୍କ ପକ୍ଷରୁ କ୍ରମାଗତ ଚେଷ୍ଟା ଚାଲିଲାଯେ, ଅଧ୍ୟକ୍ଷଟିକୁ ଚଢ଼ା ଦୃଷ୍ଟିରେ ଥିବା ଅନ୍ୟ-କାହାକୁ ଆଣି ସେ ଗାଦିରେ ବସେଇବେ ।

ଫଳରେ ଅଧ୍ୟକ୍ଷର ସମ୍ପୂର୍ଣ୍ଣ ଅଜ୍ଞାତ ସାରରେ, ସେ ପୂର୍ଣ୍ଣପ୍ରାଣରେ ଛୋଟ ଓ ବଡ଼ ଉଭୟ ଏନ୍‌ସାଇକ୍ଲୋପିଡ଼ିଆ କିପରି ଶୀଘ୍ର ସମ୍ପୂର୍ଣ୍ଣ ହେବ ସେଥିପାଇଁ ଲାଗି ପଡ଼ି ଥିବାବେଳେ ହଠାତ୍ ଖବର କାଗଜ ଦେଖିଲେ, ତାଙ୍କର ପୋଷ୍ଟ ପାଇଁ ବିଜ୍ଞାପନ ବାହାରିଛି ।

କିନ୍ତୁ ସଦାଶୟ ବନ୍ଧୁଗଣ କୁଚକ୍ରାନ୍ତକୁ ଚୂର୍ଣ୍ଣିଭୂତ କରି ପ୍ରୋ-ଚାନ୍‌ସେଲର ନେତୃତ୍ୱରେ-ଗଠିତ-ବାଛ କମିଟି, ସକଳ କାଣ୍ଡିଡେଟଙ୍କୁ ଭେଟିସାରିଲା ପରେ ମତଦେଲେ ଯେ, କାମ-କରୁଥିବା-ଅଧ୍ୟକ୍ଷହିଁ ଏକମାତ୍ର ବ୍ୟକ୍ତି ଓଡ଼ିଶାରେ ଯେ ଏହି ଏନ୍‌ସାଇକ୍ଲୋପିଡ଼ିଆକୁ ସମ୍ମାନିତ ଭାବରେ ଠିଆ କରାଇ ପାରିବେ ।

କିନ୍ତୁ ବିଶ୍ୱାସ କରି ପାରିବେକି ପାଠକେ, ପ୍ରୋ-ଚାନ୍‌ସେଲର-ସଭାପତିତ୍ୱରେ ବସିଥିବା ବାଛ କମିଟିର ଏ ପ୍ରକାର ରାୟ ସତ୍ତ୍ୱେ, ଉତ୍କଳ ବିଶ୍ୱବିଦ୍ୟାଳୟର ବନ୍ଧୁଗଣ, ପୋଷ୍ଟକୁ ପୁଣି ଆଡ଼ଭର୍ଟାଇଜ୍ କରି ବସିଲେ ।

କିନ୍ତୁ ସିଲେକ୍‌ସନ-କମିଟି ସେହି ଗୋଟିଏ ଲୋକହିଁ ଏହି ଗୁରୁ ଦାୟିତ୍ୱ ପାଇଁ ଉପଯୁକ୍ତ ବୋଲି, ପୁଣି ରାୟ ଦେଲେ ।

ବର୍ତ୍ତମାନ ହତବୁଦ୍ଧି ସିଣ୍ଡିକେଟ ଆଉ ଏକ ପନ୍ଥା ଧରିଲେ । ଅଧ୍ୟକ୍ଷଙ୍କୁ ଜଣାଇ ଦିଆଗଲା ଯେ ସେ ପୋଷ୍ଟରେ କେବଳ ତାଙ୍କର ଅବସର-ନେବାକାଳ (ଅର୍ଥାତ୍ ଅଳ୍ପ କେତେ ମାସ ମାତ୍ର !) ପର୍ଯ୍ୟନ୍ତ ରହିବେ ।

ତେଣୁ ପାଠକେ ଓଡ଼ିଆ ଭାଷାର ଉନ୍ନୟନ ଲକ୍ଷ୍ୟରେ ଗୋଟିଏ ସମ୍ପୂର୍ଣ୍ଣ ନୂତନ ବିଭାଗ ଖୋଲି ଓ ତା' ଦେଇ ଅଳ୍ପକାଳ ଭିତରେ ଏକ ପୂର୍ଣ୍ଣାଙ୍ଗ ଏନ୍‌ସାଇକ୍ଲୋପିଡ଼ିଆ ପ୍ରକାଶ କରାଇ ନେଲାପରେ ଏହି ଭଳି ଏକ ବିଶ୍ୱବିଦ୍ୟାଳୟ ପରି ସଂସ୍ଥାର ଭଦ୍ର ଓ ଶାଳୀନ ବ୍ୟବହାର ଓ ପୁରସ୍କାର, ଯେଉଁଥିରେ ବିଚାର ଅଧ୍ୟକ୍ଷ ନିଜହସ୍ତ-ବିଭାଗର ସବୁ ମାୟାମମତା ଓ ଯୋଜନାକୁ ପରିତ୍ୟାଗ କରି କି ଦୁଃଖ ଓ ବିରକ୍ତିରେ ଖସିଡ଼ି ଚାଲିଗଲା, ତାହା କେବଳ ଅନୁମେୟ ।

ସଦାସ୍ୱଣ ସିଣ୍ଡିକେଟ ମଣ୍ଡଳ ଭବିଲେ ବୋଧହୁଏ ଯାହା ହେଉ ଏକ ବିରାଟ ବିଜୟ ହେଲା । ଏଥର ପିସ୍ଥଜନଙ୍କ ଗାଦନଶୀଳ କରିବାରେ ଆଉ କଷ୍ଟ କିଛି ରହିବ ନାହିଁ । ପୁଣି ପୋଷ୍ଟସବୁ ବିଜ୍ଞାପିତ ହେଲା । କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ସିଲେକ୍ସନ କମିଟି, ଡଲଟ, ପି.ଏଚ.ଡ଼.-ମଣ୍ଡିତ କାଣ୍ଡିଡ଼େଟମାନଙ୍କ ଭିତରୁ କାହାକୁ ଯୋଗ୍ୟ ନ ବିଚାରି, ଦୁଃଖ ଓ କ୍ରୋଧରେ ପରାମର୍ଶ ଦେଲେ, ଯେଉଁ ଲୋକକୁ ତଡ଼ିଛ, ତାକୁହିଁ ଡାକ ଆଣ । କିନ୍ତୁ ସଦାଶୟ ସିଣ୍ଡିକେଟ ତା କରିବେ କାହିଁ ? ଏଥର ମଧ୍ୟ ସିଣ୍ଡିକେଟ ସେ ଲୋକକୁ ଫେରେଇ ଆଣିବାର ପ୍ରଶ୍ନ ନ ଉଠାଇ ପୋଷ୍ଟଟିକୁ ପୁଣି ବିଜ୍ଞାପନ ଦେଇ ବସିଲେ । ଇ ଭିତରେ ପ୍ରାୟ ତିନି ବର୍ଷ ଗଲାଣି । ଡିପାର୍ଟମେଣ୍ଟକୁ କେବଳ ଆଳସ୍ୟରେ ମସବୁ ମାସ ଦରମା ଦେଇ ବଞ୍ଚାଇ ରଖିବାରେ ଅର୍ଥ ଥିଲେହେଁ, ଯେଉଁ ଲୋକ କାମ କରୁଥିଲା ସେଇ ଲୋକକୁ ଆଣିଲା ବେଳକୁ 'ଅର୍ଥର ଅଭାବ'—କୈଫିୟତ । ଫଳରେ ଡିପାର୍ଟମେଣ୍ଟ ଆଜି କେବଳ କରାଣୀ ଗୃହରେ ।

୧୭ । ଏନ୍ ସାଇକ୍ଲୋପିଡ଼ିଆକୁ କେନ୍ଦ୍ର କରି ବଡ଼ ଯୋଜନା :—

ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆକୁ କେନ୍ଦ୍ର କରି ଆଗାମୀ ଓଡ଼ିଆ ଜାତି ପାଇଁ ଏକ ଜୀବନ୍ତ ଗବେଷଣାଗାର ଏବଂ ବିଜ୍ଞାନ ଓ ସାହିତ୍ୟ ସଂପର୍କରେ ଉଚ୍ଚ କୋଟିର ପ୍ରକାଶନ ସଂସ୍ଥା ଠିଆ କରାଇଯିବାହିଁ ଲେଖକର ସ୍ୱପ୍ନ ଥିଲା । ଏକ ତରୁଣ ଲେଖକ ଗବେଷକ ଗୋଷ୍ଠୀକୁ ଏହି ଦିଗରେ ଦୀକ୍ଷିତ ଓ ଅନୁପ୍ରବିଷ୍ଟ କରାଇ ଦେଇ ଆପେ ଆପେ ବିଦାୟନେଇ ଯିବା ହିଁ ଥିଲା ସେହି ସ୍ୱପ୍ନର ଶେଷଦୃଶ୍ୟ । ଅନରାରି ସର୍ଭିସେସ୍‌ର ଅଫର୍ ଏବେବି ରହିଛି । କିନ୍ତୁ ବହୁ ଅଭିସନ୍ଧି-ଓ କାମନା ବାସନାର କ୍ରୀଡ଼ାଭୂମି ବିଶ୍ୱ-ବିଦ୍ୟାଳୟ ଏହାର କ୍ଷେତ୍ରନୁହେଁ । ଏ ଆଖଡ଼ାର ତନ୍ତ୍ର ଅଭିଜ୍ଞତା ଛଅ ବର୍ଷକାଳ ଦାଲିକାମୁଣ୍ଡ ସହି, କୌଣସି ମତେ ଗୃହଖଣ୍ଡ ବାହାର କରିଛି । ଗତ ତିନିବର୍ଷ ଭିତରେ ଏହି ମୂଲ୍ୟବାନ ଜାତୀୟ ଡିପାର୍ଟମେଣ୍ଟକୁ ମୁମୂର୍ଷୁ ଅବସ୍ଥାକୁ ଆଣିବାରେହିଁ ବିଶ୍ୱବିଦ୍ୟାଳୟର ବୈଦ୍ଧିକ ସଚେତନତା ବା ମାତୃଭାଷାର ଉନ୍ନୟନ ପାଇଁ ମମତାର କଥା ମଧ୍ୟ ବେଶ୍ ସୁପ୍ରମାଣିତ । ଏ ସବୁ ସତ୍ତ୍ୱେ ଏ ଦେଶର ସରକାର କେବଳ କେତୋଟି ଲୋକର ମିଥ୍ୟା ଅଭିମାନକୁ ସମ୍ମାନକରି, ଏହି ମୂଲ୍ୟବାନ ଜାତୀୟ ଯୋଜନାଟିକୁ ମରିବାକୁ ଦେଇ ଦେବେ କି ? ଏବେବି ଡିପାର୍ଟମେଣ୍ଟଟିକୁ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଦେଇ ସରକାର ନିଜର ବୌଦ୍ଧିକ ସାଧୁତାକୁ ସମ୍ମାନ କରନ୍ତୁ ।

୧୮ । ଉତ୍କଳ ବିଶ୍ୱବିଦ୍ୟାଳୟ ଜଗୁଆଳି ମାତ୍ର :—

ପ୍ରକାଶ ଥାଉକି, ଉତ୍କଳ ବିଶ୍ୱବିଦ୍ୟାଳୟର ଏନ୍‌ସାଇକ୍ଲୋପିଡ଼ିଆ ପାଇଁ ସାମାନ୍ୟତମ ଗୌରବ ଦାବୀ କରି ନପାରନ୍ତି । ଏହାର କୌଣସି ଭାଇସ୍‌ଚାନ୍‌ସେଲର ବା କୌଣସି ସିଣ୍ଡିକେଟ ମେମ୍ବର ଏଥିପାଇଁ ସାମାନ୍ୟତମ ଚିନ୍ତା ବା ଚେଷ୍ଟା ଦେଇ ନାହାନ୍ତି । ବରଂ ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ଗ୍ରନ୍ଥଟଦେଲେ ପରେ ପରେ ତଥାକଥିତ

କର୍ତ୍ତୃପକ୍ଷ ଯାକୁ ପରିଚ୍ଛିନ୍ନ କରିବା ଦିଗରେ ଯେଉଁ ପଦକ୍ଷେପ କରିଗଲେ ତାହାର ପରିଣାମହିଁ ଆଜିର ମ୍ରିୟମାଣ ଅବସ୍ଥା । ଅଥଚ ଏ ପ୍ରୋଜେକ୍ଟର ସମସ୍ତ ବ୍ୟୟ ଓଡ଼ିଶା ସରକାର ହିଁ ବହନ କରନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଏଥିପାଇଁ ନିଜର ଏକ ପାହୁଲା ମଧ୍ୟ ଖର୍ଚ୍ଚ କରିନାହାନ୍ତି । ବରଂ ବିକ୍ରୀ ବାବଦରେ ବହୁ ସହସ୍ର ମୁଦ୍ରା ଉତ୍କଳ ବିଶ୍ୱ-ବିଦ୍ୟାଳୟ ଏ ପ୍ରୋଜେକ୍ଟରୁ ଲାଭ ପାଇସାରିଲେଣି । ସରକାରୀ ଖର୍ଚ୍ଚରେ ଏହି ପ୍ରୋଜେକ୍ଟ ପାଇଁ ତିଆରି ଘର, ଓ କିଣା ହୋଇଥିବା ଫର୍ଣ୍ଣିଚର ଓ ଉତ୍କୃଷ୍ଟ ଲାଇବ୍ରେରୀ, ବର୍ତ୍ତମାନ ବିଶ୍ୱବିଦ୍ୟାଳୟର ଅଧିକା ସମ୍ପଦ । ଅଥଚ କେବଳ କେୟାର୍-ଟେକର ଭାବରେ ଥିଲେ ହେଁ, ବିଶ୍ୱବିଦ୍ୟାଳୟ ନିଜର ପାରିବାର ପଣିଆରେ ପ୍ରୋଜେକ୍ଟଟିର ତଣ୍ଟି ଚିପି ଧରିଲେ ।

୨୯ । ବ୍ରିଟାନିକା ( ବା ଚେମ୍ବର୍ସ ) ଇତ୍ୟାଦି ବିଶ୍ୱପ୍ରସିଦ୍ଧ ଏନ୍‌ସାଇକ୍ଳୋପିଡ଼ିଆ ଗୁଡ଼ିକ କିପରି କୌଣସି ଏକ ବିଶ୍ୱବିଦ୍ୟାଳୟର ଅଧୀନରେ ନ ରହି, ଏକ ଏକ ସ୍ୱତନ୍ତ୍ର ଅନୁଷ୍ଠାନ, ତାହା ପୂର୍ବେ କୁହାଯାଇଛି । ସେହିପରି ମଧ୍ୟ ଭାରତ ବର୍ଷରେ ନିକଟରେ ଠିଆ ହୋଇଥିବା ହିନ୍ଦୀ, ତେଲୁଗୁ, ତାମିଲ, ମାଲୟାଲମ୍ ଓ ଆସାମୀ ଏନ୍‌ସାଇକ୍ଳୋ-ପିଡ଼ିଆ-ପ୍ରତ୍ୟେକେ ଏକ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ।

ପୁଣି ଏନ୍‌ସାଇକ୍ଳୋପିଡ଼ିଆ ଯେ ଆର୍ଥିକ ଦିଗରୁ ମଧ୍ୟ ମୋଟାମୋଟି ସ୍ୱୟଂସମ୍ପୂର୍ଣ୍ଣ ଏହାମଧ୍ୟ ଆମେ ବାରମ୍ବାର ବିଶ୍ୱବିଦ୍ୟାଳୟକୁ ଅଙ୍କ କଷି ଜଣାଇ ସାରିଛୁ । ପୂର୍ବପରି ଡିପାର୍ଟମେଣ୍ଟର କର୍ତ୍ତୃତ୍ୱରେ ଥିଲେ, 'ସଂକ୍ଷିପ୍ତ ଜ୍ଞାନକୋଷ' ଏତେ ବେଳକୁ ବିକ୍ରିସରି ଡିପାର୍ଟମେଣ୍ଟ ହୁଏତ ଦୁଇଲକ୍ଷ ଟଙ୍କା ଫେରି ପାଆନ୍ତାଣି ଏବଂ ସେହି ଟଙ୍କା ଲାଗିଥାନ୍ତା ବଡ଼ ଏନ୍‌ସାଇକ୍ଳୋପିଡ଼ିଆ ଆଡ଼କୁ । ଏହିପରି ଆମର ଥିଲା ଯୋଜନା ।

କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟ ତଳେ ଡିପାର୍ଟମେଣ୍ଟର ନିଜର ସାମାନ୍ୟତମ ସ୍ୱାଧୀନତାହିଁ ନଥିଲା । ନଥିଲା ସାମାନ୍ୟତମ ଉତ୍ସାହ । ଅଥଚ ଥିଲା, ବଗ୍ଗର ଅଧ୍ୟକ୍ଷ ଯେ ସାମାନ୍ୟ କର୍ମଗୁଣସମ୍ପନ୍ନ ଏହା ପ୍ରମାଣିତ କରାଇବାର ପ୍ରଚୁର ଉନ୍ମାଦନା ଏବଂ ସେହି ସୂତ୍ରରେ ପ୍ରଚୁର ବାଧାସୃଷ୍ଟି ।

ଗୋଟିଏ ଦୃଷ୍ଟାନ୍ତ ଦେଉଛୁ । ଶୁଣିଆଜ୍ଞେ ତ କୁହା ପ୍ରଚୁର ଚାଲିଥାଏ । ଏନ୍‌ସାଇକ୍ଳୋପିଡ଼ିଆର ପ୍ରଥମ ଛଅଗୋଟି ଫର୍ମା ଛାପିଦେଇ, ଆମେ ଆଡ଼ଭାଇଜର ବୋର୍ଡର ପ୍ରତିଟି ସଦସ୍ୟ ଏବଂ ଭାଇସ୍‌ଚାନ୍‌ସେଲରଙ୍କ ସମେତ ପ୍ରତିଟି ସିଣ୍ଡିକେଟ୍ ମେମ୍ବରଙ୍କୁ ସେଥିରୁ ପ୍ରତ୍ୟେକଙ୍କୁ ଏକକପି ପଠାଇ ଦେଇ, ସେ ସବୁକୁ ଦେଖି ଯଥାଯଥ ଉପଦେଶ ଓ ସମାଲୋଚନା ପାଇଁ ସବିନୟ ନିବେଦନ ଜଣାଇ ରଖିଲୁ ।

ପାଠକେ ବିଶ୍ୱାସ କରିବେକି, କେବଳ ଜଣେ ମେମ୍ବର ଡକ୍ଟର ବସନ୍ତ କୁମାର ବେହେରାଙ୍କ ଛଡ଼ା ଆମେ ଅନ୍ୟ କାହାରଠାରୁ ଉତ୍ତରହିଁ ପାଇଲୁ ନାହିଁ— ବହୁକାଳ ଅପେକ୍ଷା କରି ।

ଏନ୍‌ସାଇକ୍ଳୋପିଡ଼ିଆର ଜ୍ଞାନବିଜ୍ଞାନ ନେଇ ଏଇ ସିଣ୍ଡିକେଟ୍ ଏପରି ଭାବରେ ସମ୍ପୂର୍ଣ୍ଣ ଅନୁତ୍ସାହୀ । ସେ ବରେଣ୍ୟ ସଂସ୍ଥା, ଏନ୍‌ସାଇକ୍ଳୋପିଡ଼ିଆ ଛାପା ହେବାର

କାଗଜ କିଏ ଯୋଗାଇବ, ତା ନେଇ ଗ୍ରନ୍ଥ ଫଟାଇ ପାରିଲେ ଏବଂ ସ୍ୱୟଂ ଭାଇସ୍-ଚ୍ୟାନ୍‌ସେଲର ଓ ରେଜିଷ୍ଟ୍ରାରଙ୍କ ଉପସ୍ଥିତିରେ ଓ ସମ୍ପୂର୍ଣ୍ଣ ନ୍ୟାୟ ବିଚାରରେ ବହରମ୍‌ପୁରର ଏକ ବ୍ୟବସାୟୀଙ୍କୁ ଦିଆଯାଇ ଥିଲେହେଁ, ତାହା ବଦଳି କଟକର ମାରବାଡ଼ି ବ୍ୟବସାୟୀଙ୍କୁ ଦିଆ ଯିବାପର୍ଯ୍ୟନ୍ତ କଥାଗଲା ।

ଏଇ ଆମର ବିଦ୍ୱଜ୍ଜନମଣ୍ଡଳୀ, ଏଇ ଆମର ବିଶ୍ୱବିଦ୍ୟାଳୟ ! ଏପ୍ରକାର ସଂସ୍ଥା ଏନ୍‌ସାଇକ୍ଲୋପିଡ଼ିଆ ଠିଆ କରାଇବେ ?

ସରକାରଙ୍କୁ ଅନୁରୋଧ, ସବୁଠି ଯେପରି—ଏଠି ମଧ୍ୟ ଏହାକୁ ଏକ ସ୍ୱୟଂ-ପରିଚାଳିତ ସଂସ୍ଥା କରି, ଶିକ୍ଷା ବା ସଂସ୍କୃତି ବିଭାଗର ପ୍ରତ୍ୟକ୍ଷ ଅଧୀନରେ କାର୍ଯ୍ୟକାରୀ କରାନ୍ତୁ । ଏବଂ ମନେ ରଖନ୍ତୁ ମଧ୍ୟ ଯେ, ଏ କ୍ଷେତ୍ରରେ ସରକାର ତାଙ୍କର ଇନ୍‌ଭେଷ୍ଟ-ମେଣ୍ଟ ଫେରି ପାଇବା ସାଥେ ସାଥେ, ନିଜ ଭାଷା ଓ ସାହିତ୍ୟକୁ ଅଭୂତ ପୂର୍ବ ଭାବରେ ଅଭିବୃଦ୍ଧି କରିପାରିବେ । କିନ୍ତୁ ବଡ଼ କଥା—'ସଂସ୍ଥା ଯଥାର୍ଥ ଲୋକ ହାତରେ ପଡ଼ିଲେ ହେଲା ।

୨୦ । ଜନକ ଓ ପାଳକ ଭାବରେ ଲେଖକର ଏଇ ପ୍ରୋଜେକ୍ଟ ପ୍ରତି ଗଭୀର ବେଦନା ଯେ ସ୍ୱାଭାବିକ, ଏହା କାହାରି ସ୍ୱୀକାର କରିବାର ବୋଧହୁଏ କଷ୍ଟ ହେବନାହିଁ । କିନ୍ତୁ ସେ ଆଜି ତାର ନିଜ-ସୃଷ୍ଟ ଡିପାର୍ଟମେଣ୍ଟ ପ୍ରତି ଏକ ଅବାଞ୍ଛିତ ବାହାର ବ୍ୟକ୍ତି ମାତ୍ର । ଏହାହିଁ ଏ ଦେଶର ବୁଦ୍ଧିଜୀବୀର ପରମ ପୁରସ୍କାର । ତେବେ ଜନ୍ମ ଦେଇଥିବା ପିଲାଟିକୁ ମରିଯାଉଥିବା ଦେଖି କେଉଁ ପିତା ସ୍ଥିର ରହିବ ? ତେଣୁ ଅତ୍ୟନ୍ତ ସ୍ୱାଭାବିକ ଭାବରେ ହିଁ, ଲେଖକ ପ୍ରୋଜେକ୍ଟଟିକୁ ପୁନର୍ଜୀବିତ କରିବାପାଇଁ ଚାନ୍‌ସଲେର, ଭାଇସ୍ ଚାନ୍‌ସେଲର, ସାଂସ୍କୃତିକ ମନ୍ତ୍ରୀ, ଡିରେକ୍ଟର ଅଫ୍ କଲ୍‌ଚରାଲ ଆଫେୟାର୍ସ ଇତ୍ୟାଦି ସମ୍ପୃକ୍ତ ସମସ୍ତଙ୍କୁ ଆପିଲ କରିଆସିଛି । କିଛି କାହିଁ ନ ହେବାରୁ, ଶେଷରେ ସବୁକଥା ପ୍ରକାଶ୍ୟରେ ଦେଶବାସୀଙ୍କୁ ଜଣାଇ ଦେବାହିଁ ଉଚିତ ମନେକଲା । କାରଣ ବିଦାୟ ଘଡ଼ି ଯେ ନିକଟ ହୋଇ ଆସୁଛି । ଏହା ମାନି ଚାଲିବାହିଁ ବୋଧହୁଏ ବୁଦ୍ଧିମାନର କାମହେବ । ବିଦାୟ ପୂର୍ବରୁ ହିସାବ ନିକାଶ ସାରିଥିବା କଥା । ଲେଖକ ପକ୍ଷରୁ ଯାହା କହିସିବାର କଥା, ତାହା ତେଣୁ ବେଳସୁଁ କହି ରଖିଲା, ତେଣିକି ସରକାର ବା ଦେଶବାସୀ ଯାହା କରିବେ । ଆଞ୍ଚଳିକ ଭାଷା ଉନ୍ନୟନ କାମରେ ଓଡ଼ିଶା ସରକାର ନିକଟରେ କେନ୍ଦ୍ର ସରକାରରୁ କୋଟିଏ ଟଙ୍କା ପାଇବେ । ସେଥିରେ ହାତଦେବା ପୂର୍ବରୁ ଓଡ଼ିଶା ଦେଶରେ ସାହିତ୍ୟ ଆକାଡ଼େମୀ ନାମରେ ଅର୍ଥର ବରବାଦ ହୋଇଛି ଏବଂ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ପରି ମୂଲ୍ୟବାନ ପ୍ରୋଜେକ୍ଟଟାକୁ ଏକ ତଥାକଥିତ ବିଶ୍ୱବିଦ୍ୟାଳୟ କିପରି ଜାଣି ଜାଣି ବା ନିଜର ଅଜ୍ଞତାରେ ମାରିଦେଇଛି, ତାହା ପୁଙ୍ଖାନୁପୁଙ୍ଖ ରୂପେ ଅବଧାନକୁ ଆଣନ୍ତୁ ଏବଂ ସେହି ଅଭିଜ୍ଞତାରେ କାମ କରନ୍ତୁ ।



# ମାନସିଂହଙ୍କ ଓଡ଼ିଆ ସାହିତ୍ୟର ଇତିହାସ

**ଅଧ୍ୟାପକ କୁମୁଦଚନ୍ଦ୍ର ଦାଶ**

ସାହିତ୍ୟର ଇତିହାସ ରଚନାକୁ ଏବେ କେହି କେହି ସାହିତ୍ୟର ସମାଲୋଚନା-କର୍ମଠାରୁ ଏକ ଭିନ୍ନ ପ୍ରସଙ୍ଗ ବୋଲି କହିବାକୁ ଆରମ୍ଭ କଲେଣି । ଏ କଥାଟି ଏକାବେଳକେ ତାତ୍ପର୍ଯ୍ୟହୀନ ନ ହେଲେ ମଧ୍ୟ ସାହିତ୍ୟର ଇତିହାସ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଏଇଭଳି ପଦେ କଥାରେ କଦାପି ଉଡ଼ାଇ ଦିଆଯାଇ ପାରିବ ନାହିଁ । ନୂତନ ସମୀକ୍ଷା କ୍ଷେତ୍ରରେ ସୃଷ୍ଟି ସୌନ୍ଦର୍ଯ୍ୟର ସିଧାସଳଖ ଉପଲବ୍ଧି ଓ ଆବିଷ୍କାରର ଯେଉଁ ଧାରଣା ସୃଷ୍ଟି ହୋଇଛି, ତର୍କ ନିଷ୍ଠ ଭାବେ ଦେଖିବାକୁ ଗଲେ ଏହା ଏକ ଅସମ୍ଭବ ବ୍ୟାପାର । କୌଣସି ପ୍ରକାର ପ୍ରାକ୍-ଧାରଣା ନ ଥାଇ କୌଣସି ସୃଷ୍ଟିର ସମ୍ମୁଖୀନ ହେବା ସମ୍ଭବ ନୁହେଁ । ସମାଲୋଚନା ପ୍ରକୃତରେ ସାହିତ୍ୟର ଏକ ସନ୍ଧାନ ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ଏ ସନ୍ଧାନର ଶେଷ ମଧ୍ୟ ନାହିଁ । ସାହିତ୍ୟିକ ସତ୍ୟର ଚୂଡ଼ାନ୍ତ ଆବିଷ୍କାର ସମ୍ଭବ ନୁହେଁ, କିନ୍ତୁ ସେହି ଅପ୍ରାପ୍ୟର ପ୍ରାପ୍ତି ଆଶାରେ ଅବିରତ ସାଧନା ହିଁ ହେଉଛି ସମାଲୋଚନାର ପ୍ରକୃତ କାର୍ଯ୍ୟ । ପ୍ରାଥମିକ ପାଥେୟ ଭାବେ ହୁଏତ କିଛି ସାହିତ୍ୟ-ଚେତନା ବା ସମୀକ୍ଷା-ଧାରଣାକୁ ଗ୍ରହଣ କରିନେବାକୁ ପଡ଼ିବ, କିନ୍ତୁ କୌଣସି ସତ୍-ସମାଲୋଚକ ସେଇତକ ପାଥେୟ କିମ୍ବା ଅନ୍ୟ ସୂତ୍ରରୁ ପ୍ରାପ୍ତ ତତ୍ତ୍ୱର୍ମୀ ଯାବତୀୟ ପାଥେୟରେ ମଧ୍ୟ କଦାପି ସନ୍ତୁଷ୍ଟ ରହି ନ ପାରେ । ସାହିତ୍ୟ ସମ୍ପର୍କରେ ସନ୍ତୋଷଜନକ ଏକ ନିଜସ୍ୱ ଦୃଷ୍ଟିଭଙ୍ଗୀ ହାସଲ ନ କରିବା ଯାଏ, ସମାଲୋଚକର ମୁକ୍ତି ଅସମ୍ଭବ । ସମାଲୋଚକକୁ ଏଇ ଦାର୍ଶନିକ ସନ୍ଧାନ ପାଇଁ ବାରମ୍ବାର ଯେ ସାହିତ୍ୟର ଦୃଷ୍ଟାନ୍ତମାନଙ୍କର ସାହାଯ୍ୟ ନେବାକୁ ହେବ, ଏଥିରେ ଆଦୌ କୌଣସି ସନ୍ଦେହ ନାହିଁ ଏବଂ ସାହିତ୍ୟର ଦୃଷ୍ଟାନ୍ତ ନିଶ୍ଚିତ ଭାବରେ ସମୟର ଏକ ନିର୍ଦ୍ଦିଷ୍ଟ ବିନ୍ଦୁରୁ ଅନାଗତ କାଳ ଭିତରେ ନାହିଁ, ଅଛି ଗତ, ଅତୀତ ବା ଇତିହାସ ଭିତରେ । ସୁତରାଂ ସାହିତ୍ୟର ଇତିହାସ ଭିତରୁ ସମାଲୋଚକ ମୁକ୍ତି ପାଇ ନ ପାରେ । ସାହିତ୍ୟ ବିଚାର ମୁଖ୍ୟତଃ ଦୁଇଟି ପ୍ରସଙ୍ଗକୁ ଅପେକ୍ଷା ରଖେ ଗୋଟିଏ ହେଉଛି ସାହିତ୍ୟର ଇତିହାସ (History of literature ଓ

ଅନ୍ୟଟି ହେଉଛି ସାହିତ୍ୟର ଦର୍ଶନ (Philosophy of literature) ତେଣୁ ସାହିତ୍ୟରେ ଇତିହାସର ଗୁରୁତ୍ୱ ନିଃସନ୍ଦେହ ।

ଓଡ଼ିଆ ସାହିତ୍ୟ ବେଶ୍ ଏକ ପ୍ରବୃଦ୍ଧ ସାହିତ୍ୟ ହେଲେ ମଧ୍ୟ ତାହାର ଇତିହାସ ରଚନାର ଇତିବୃତ୍ତ ଖୁବ୍ ପ୍ରାଚୀନ ନୁହେଁ । ଉଦ୍ୟମର ସ୍ଥୂଳ ସୂଚନାଠାରୁ ହିସାବକୁ ନେଲେ ମଧ୍ୟ ଏହା ପ୍ରାୟ ଶହେଟି ବର୍ଷର କଥା । ସାହିତ୍ୟର ଇତିହାସ ନିଶ୍ଚିତ ଭାବରେ ଏକ କବି ତାଲିକା ନୁହେଁ । କିନ୍ତୁ ଏପରି ତାଲିକାର ଏକ ଐତିହାସିକ ଚରିତ୍ର ଅଛି ନିଶ୍ଚୟ । ୧୮୭୨ ମସିହାରେ ପ୍ରକାଶିତ ହଣ୍ଟର ସାହେବଙ୍କ 'ଓଡ଼ିଶା' ପୁସ୍ତକ ପରିଶିଷ୍ଟ ରୂପେ ସଂଯୋଜିତ କବି ତାଲିକା ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଐତିହାସିକ ବିଗ୍ରହ ଦିଗରେ ପ୍ରଥମ କାର୍ଯ୍ୟ । ସେଇ ସମୟ ପରେ ସ୍ୱର୍ଗତ କୃଷ୍ଣପ୍ରସାଦ ବ୍ରହ୍ମଚାରୀ (୧୮୯୭) ତାରିଣୀ ଚରଣ ରଥ (୧୯୧୬), ଅପର୍ଣ୍ଣା ପଣ୍ଡା (୧୯୨୧) ବିନାୟକ ମିଶ୍ର (୧୯୨୮) ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ (୧୯୪୫/୧୯୫୧) ଏ ଦିଗରେ ସେମାନଙ୍କର ଲେଖନୀ ଚାଳନା କରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଓଡ଼ିଆ ସାହିତ୍ୟର କ୍ରମପରିଣାମ (୧୯୪୮/୧୯୫୩) ମଧ୍ୟ ଏ ଦୃଷ୍ଟିରୁ ସ୍ମରଣୀୟ । କିନ୍ତୁ ଓଡ଼ିଆ ସାହିତ୍ୟର ଇତିହାସ ରଚନାର ଉଲ୍ଲେଖଯୋଗ୍ୟ ଉଦ୍ୟମ ସବୁ ୧୯୬୦ ମସିହା ପରେ ବିଗତ ଏଇ ପ୍ରାୟ କୋଡ଼ିଏ ବର୍ଷ ଭିତରେ ହିଁ ଦେଖିବାକୁ ମିଳେ । ସପ୍ରଭ ବୟସ୍କ ପୂର୍ବବର୍ତ୍ତୀ କେତେକ ସାଧକଙ୍କ ବ୍ୟତୀତ ଉନ୍ନତରୁ ଅଧିକ ନୂତନ ଆଲୋଚକଙ୍କ ଉଦ୍ୟମ ଏ କ୍ଷେତ୍ରରେ ପରିଲକ୍ଷିତ ହୁଏ । ପ୍ରାସଙ୍ଗିକ ଭାବରେ ଏଠି ସେଗୁଡ଼ିକର ଉଲ୍ଲେଖ କରାଯାଇ ପାରେ । ଯଥା—

(୧) ପଣ୍ଡିତ ବିନାୟକ ମିଶ୍ର—ଓଡ଼ିଆ ସାହିତ୍ୟର ଇତିହାସ (୧୯୬୨) ଓ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭)

(୨) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ—ଓଡ଼ିଆ ସାହିତ୍ୟର ଇତିହାସ ( ୪ଖଣ୍ଡ ପ୍ରକାଶିତ ୧୯୬୩ ରୁ ୧୯୭୧ ମଧ୍ୟରେ)

(୩) ଶ୍ରୀ ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ଆଦିପର୍ବ (୧୯୬୩) ଓଡ଼ିଆ ସାହିତ୍ୟର ମଧ୍ୟପର୍ବ (୧୯୬୫) ଓଡ଼ିଆ ସାହିତ୍ୟର କ୍ରମବିକାଶ (୧୯୭୮)

(୪) ଡକ୍ଟର ନଟବର ସାମନ୍ତରାୟ—'ଓଡ଼ିଆ ସାହିତ୍ୟର ଇତିହାସ : ୧୮୦୩-୧୯୨୦ (ପ୍ରଥମ ପ୍ରକାଶ-୧୯୬୪)

(୫) ଡକ୍ଟର ମାୟାଧର ମାନସିଂହ—ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭)

(୬) ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ—ଓଡ଼ିଆ ସାହିତ୍ୟର ଇତିହାସ—୧ମ (୧୯୬୯), ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ (୧୯୭୫)

(୭ ଡକ୍ଟର ବଂଶୀଧର ମହାନ୍ତି— ଓଡ଼ିଆ ସାହିତ୍ୟର ଇତିହାସ ( ୩ ଖଣ୍ଡ ପ୍ରକାଶିତ— ୧୯୭୦ ରୁ ୧୯୭୭ ମଧ୍ୟରେ) ।

(୮) ଡକ୍ଟର ସଚ୍ଚିଦାନନ୍ଦ ରାଉତ ରାୟ —ସାହିତ୍ୟରେ ମୂଲ୍ୟବୋଧ (୧୯୭୪) ।

ଏମାନଙ୍କ ବ୍ୟତୀତ ଆଉ କେତେ ଜଣ (ହରାକର ମହାନ୍ତି; ଜନକୀବଲ୍ଲଭ ମହାନ୍ତି, ହେମନ୍ତ କୁମାର ଦାସ ଓ ନଶାମଣି ମିଶ୍ର' ମୁଖ୍ୟତଃ କଲେଜ ପାଠ'— ଛାତ୍ରଙ୍କ ଆଖି ଆଗରେ ରଖି ଇତିହାସ ନାଁରେ କେତେ ଖଣ୍ଡ ବହି ଲେଖିଛନ୍ତି । ସେ ସବୁ ଏଠି ବିଚାର୍ଯ୍ୟ ନୁହନ୍ତି ।

ଡକ୍ଟର ମାୟାଧର ମାନସିଂହଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ କ'ଣ, ତାହାର ନିର୍ଦ୍ଧାରଣ ଉଲ୍ଲିଖିତ ବିଭିନ୍ନ ଇତିହାସ ସହିତ ତାହାର ତୁଳନା ଏବଂ ବର୍ତ୍ତମାନର ସ୍ୱାଧୀନ ଅଧ୍ୟୟନ—ଏହିପରି ମୁଖ୍ୟତଃ ଦୁଇଟି ଦିଗରୁ କରାଯାଇପାରେ । ତୁଳନାତ୍ମକ ବିଚାର ପାଇଁ ସମସ୍ତ ଅନୁକୂଳ ନୁହେଁ । ସାମାନ୍ୟ ଭାବରେ ଏତିକି କୁହାଯାଇପାରେ ଯେ ମାନସିଂହଙ୍କ ଇତିହାସରେ ପଣ୍ଡିତ ବିନାୟକ ମିଶ୍ରଙ୍କ ପ୍ରାଚ୍ୟମୁଖୀ ପାଣ୍ଡିତ୍ୟ ଓ ପ୍ରଦର୍ଶନ ମନୋବୃତ୍ତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଆବେଗଶୂନ୍ୟ, ନିସ୍ପୃହ ଓ ନିର୍ଲିପ୍ତ ଧୈର୍ଯ୍ୟ, ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ସଂସ୍କୃତ ଜିଜ୍ଞାସା ଓ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ, ଡକ୍ଟର ନଟବର ସାମନ୍ତରାୟଙ୍କ ତଥ୍ୟନିଷ୍ଠ ବୈଜ୍ଞାନିକ ବିଶ୍ଳେଷଣ ପ୍ରବଣତା; ଐତିହାସିକ ସମୀକ୍ଷା ଦୃଷ୍ଟି ଓ ତର୍କନିଷ୍ଠ ଯଥାଯଥ ଅଭିବ୍ୟକ୍ତି, ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ପଦ୍ଧତିତତ୍ତ୍ୱବାଦିତା (Methodologism), ଡକ୍ଟର ବଂଶୀଧର ମହାନ୍ତିଙ୍କ ସାରଲ୍ୟ ଓ ସଂଗ୍ରହ-ପ୍ରବଣତା ଏବଂ ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟଙ୍କ ମାର୍କସ୍ ଇତିହାସ ଚେତନା ସମ୍ବଳିତ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀ ଅନୁପଲବ୍ଧ । ଏତଦ୍ ସତ୍ତ୍ୱେ, ମାନସିଂହଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଉଲ୍ଲିଖିତ ସମସ୍ତ ଇତିହାସର ଊର୍ଦ୍ଧ୍ୱରେ ହିଁ ସ୍ଥାନ ପାଇବାର ଯୋଗ୍ୟ ବୋଲି ଯଦିଓ କୁହାଯାଇ ପାରିବ ନାହିଁ, ତଥାପି ଏହା ସମସ୍ତଙ୍କ ତଳେ କଦାପି ନୁହେଁ । ତାହାର ସ୍ଥାନ ଠିକ୍ କେଉଁଠି ନିର୍ଦ୍ଧାରିତ ହେବ, ସେ ସମ୍ପର୍କରେ ଗୋଟାଏ ବ୍ୟକ୍ତିଗତ ମତ ଦେଇ ଲାଭ ନାହିଁ । ଉଲ୍ଲିଖିତ ଗ୍ରନ୍ଥମାନଙ୍କ ମଧ୍ୟରେ ମାନସିଂହଙ୍କ ଇତିହାସର ସ୍ଥାନ ଯେ ନିଶ୍ଚିତ ଭାବେ ସମ୍ମାନ ଜନକ ବା ଅନ୍ତତଃ ଅସମ୍ମାନ ଜନକ କଦାପି ନୁହେଁ, ଏହା ସମସ୍ତେ ସ୍ୱୀକାର କରିବେ । ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ବୋଧହୁଏ ମାନସିଂହଙ୍କ ଇତିହାସ ହିଁ ଉଲ୍ଲିଖିତ ବିଭିନ୍ନ ଇତିହାସ ମଧ୍ୟରେ ସର୍ବାଧିକ ଲୋକପ୍ରିୟ, ଏପରିକି ଅନେକଙ୍କ ନିକଟରେ ଏହା ହିଁ ଓଡ଼ିଆ ସାହିତ୍ୟର ଏକମାତ୍ର ଇତିହାସ । ଅବଶ୍ୟ ଲୋକପ୍ରିୟତା ଉତ୍କର୍ଷର ଯେ ଏକ ଅପରିହାର୍ଯ୍ୟ ପ୍ରମାଣ, ତାହା କୁହାଯାଇ ନ ପାରେ । ତୁଳନାତ୍ମକ ବିଚାର ଦୃଷ୍ଟିରୁ ଉପରୋକ୍ତ କୃତିଚୟ ମଧ୍ୟରେ ମାନସିଂହଙ୍କ ଇତିହାସର ସ୍ୱାତନ୍ତ୍ର୍ୟ ବୋଧହୁଏ

ତାହାର ବ୍ୟକ୍ତିଗତ ସୌନ୍ଦର୍ଯ୍ୟବାଦୀ ଆଭିମୁଖ୍ୟରେ ହିଁ ଅନ୍ତର୍ନିହିତ । ତୁଳନାତ୍ମକ ବିଗ୍ରହ ଏଠାକରେ ସୀମିତ ରହୁ । ତାଙ୍କ ନିର୍ଦ୍ଦିଷ୍ଟ ରଚନାକୁ କେନ୍ଦ୍ର କରି ବର୍ତ୍ତମାନ କିଛି କୁହାଯାଉଛି ।

ମାନସିଂହଙ୍କ ଏହି ଇତିହାସର ସ୍ୱରୂପ ଉପଲବ୍ଧିରେ ଏହାର ଜନ୍ମ-ଇତିହାସର ସାମାନ୍ୟ ଅବଗତି ସାହାଯ୍ୟ କରିପାରେ । ମାନସିଂହ ଓଡ଼ିଆ ସାହିତ୍ୟର ଦୁଇଟି ଇତିହାସ ରଚନା କରିଛନ୍ତି, ଗୋଟିଏ ଇଂରାଜୀରେ ଏବଂ ଅନ୍ୟ ଗୋଟିଏ ଓଡ଼ିଆରେ । ଏଠାରେ ଯେଉଁ ଇତିହାସର ଆଲୋଚନା କରାଯାଉଛି, ତାହା ତାଙ୍କର ଓଡ଼ିଆରେ ରଚିତ 'ଓଡ଼ିଆ ସାହିତ୍ୟର ଇତିହାସ' ଯାହା ସର୍ବପ୍ରଥମ ଥର ପାଇଁ ୧୯୬୭ ମସିହାରେ କଟକ ଗ୍ରନ୍ଥମନ୍ଦିର ପ୍ରକାଶନ ସଂସ୍ଥା କର୍ତ୍ତୃକ ପ୍ରକାଶିତ ହୋଇଥିଲା । କିନ୍ତୁ ଏହି ଦ୍ୱିତୀୟ ଗ୍ରନ୍ଥଟି ପ୍ରଥମଟିର ଏକ ସ୍ୱାଧୀନ ଅନୁବାଦ-ମୂଳକ ପ୍ରୟାସ । କୌଣସିଟି ଗ୍ରନ୍ଥ ସମ୍ପୂର୍ଣ୍ଣ ଭାବରେ ତାଙ୍କ ନିଜ ଇଚ୍ଛା ଭିତରୁ ସୃଷ୍ଟି ଲାଭ କରିନାହିଁ । ଭାରତୀୟ କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରତିଷ୍ଠିତ ହେବା ପରେ ଭାରତର ବିଭିନ୍ନ ପ୍ରାଦେଶିକ ସାହିତ୍ୟର ଇତିହାସର ସର୍ବଭାରତୀୟ ପ୍ରଚାରପାଇଁ ଉଦ୍ୟମ ହେଲା । ଏଥିପାଇଁ ଇଂରାଜୀ ଭାଷା ହିଁ ମାଧ୍ୟମ ଭାବରେ ଗୃହୀତ ହେଲା ଏବଂ ସେହି ମୂଳ ମାଧ୍ୟମରେ ରଚିତ ବିଭିନ୍ନ ଇତିହାସକୁ ଭାରତୀୟ ଭାଷାମାନଙ୍କରେ ରୂପାନ୍ତରିତ କରିବାର ବ୍ୟବସ୍ଥା କରାଗଲା । ମୂଳ ଇଂରାଜୀ ଭାଷା ରେ 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖିବାର ଭାର ମାନସିଂହଙ୍କ ଉପରେ ନ୍ୟସ୍ତ କରାଗଲା । ଏଥିପାଇଁ ଉଭୟ ଭାଷା ଏବଂ ଓଡ଼ିଆ ସାହିତ୍ୟରେ ବିଶେଷ ଦକ୍ଷତା ସମ୍ପନ୍ନ ଲେଖକଙ୍କର ଯେ ଆବଶ୍ୟକତା ଥିଲା ଏଥିରେ ସନ୍ଦେହ ନାହିଁ ଏବଂ ଅନେକ ଏଥିରେ ନିଶ୍ଚୟ ଏକମତ ହେବେ ଯେ ଏଥିପାଇଁ ମାନସିଂହଙ୍କଠାରୁ ଯୋଗ୍ୟତର ଓଡ଼ିଆ ଲେଖକ ସେତେବେଳେ ନିଶ୍ଚୟ ନ ଥିଲେ । ବହୁ ତ୍ରୁଟି ରହି ଯାଇଥିଲେ ମଧ୍ୟ ସାହସିକତାର ସହିତ ମାନସିଂହ ଏହା ଲେଖିଥିଲେ । ମାନସିଂହଙ୍କର ଆଲୋଚନାଧୀନ ଦ୍ୱିତୀୟ ଗ୍ରନ୍ଥଟି, ଅର୍ଥାତ୍ ଓଡ଼ିଆ ଭାଷାରେ ରଚିତ ତାଙ୍କର ଇତିହାସ ଗ୍ରନ୍ଥଟି ଇଂରାଜୀ ପୁସ୍ତକଟିର ହିଁ ଏକ ସ୍ୱାଧୀନ ଅନୁବାଦ ପ୍ରାୟ । ଏଥିରେ ପୂର୍ବ ଗ୍ରନ୍ଥର କେତେକ ବ୍ୟତିକ୍ରମ ନାନା ଦୃଷ୍ଟିକୋଣରୁ ସେ କରିଛନ୍ତି, ଯାହା ଫଳରେ ଅନ୍ୟ ଏକ ସ୍ୱତନ୍ତ୍ର ନୂତନ ଗ୍ରନ୍ଥର ମର୍ଯ୍ୟାଦା ଏହା ଆହରଣ କରି ପାରିଛି । କିନ୍ତୁ ଯେଉଁ ମୌଳିକ ଆଭିମୁଖ୍ୟ ବା ଦୃଷ୍ଟିଭଙ୍ଗୀ ଇଂରାଜୀ ସଂସ୍କରଣରେ ପ୍ରତିଫଳିତ ଓଡ଼ିଆ ସଂସ୍କରଣରେ ତାହାର କୌଣସି ଗୁରୁତ୍ୱପୂର୍ଣ୍ଣ ବ୍ୟତିକ୍ରମ ପରିଲକ୍ଷିତ ହୁଏ ନାହିଁ । ମାନସିଂହ ସମୀକ୍ଷା-ଦୃଷ୍ଟିର ଉଭୟ ଗୁଣ ଓ ଦୋଷ ଉଭୟଙ୍କ ସମାନ ଭାବରେ ପ୍ରତିଫଳିତ ।

ମାନସିଂହଙ୍କୁ ଯେତେବେଳେ ଇଂରେଜୀ ଭାଷାରେ ପ୍ରଥମେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାକୁ ଦିଆଗଲା, ସେତେବେଳେ ଓଡ଼ିଆ ସାହିତ୍ୟ

ସମାଲୋଚନା କ୍ଷେତ୍ରରେ ସେ ଆଦୌ ଏକ ନୂଆଲୋକ ନ ଥିଲେ । ସେ କ୍ଷେତ୍ରରେ ତାଙ୍କର ପ୍ରାୟ ଦୀର୍ଘ ତିରିଶ ବର୍ଷର (୧୯୨୮-୫୮) ଅଭିଜ୍ଞତା ରହିଥିଲା । କବି ଓ କବିତା (୧୯୪୮) ଓଡ଼ିଆ ସମାଜ ଓ ସାହିତ୍ୟ (୧୯୫୧) ଏବଂ ମୂ.ଟିର ମହାକବି ସାରଳାଦାସ (୧୯୫୮) —ଏପରି ତିନୋଟି ସମାଲୋଚନା ଗ୍ରନ୍ଥ ତାଙ୍କର ପ୍ରକାଶ ପାଇ ସାରିଥିଲା । ଇଂରେଜୀରେ ଦୁଇ ବିଶ୍ୱବିଖ୍ୟାତ କବି ଓ ନାଟ୍ୟକାର ମହାକବି କାଳିଦାସ ଓ ମହାକବି ସେକ୍ସପିୟରଙ୍କର ତୁଳନାତ୍ମକ ଅଧ୍ୟୟନ କରି ବିଦେଶୀ ବିଶ୍ୱବିଦ୍ୟାଳୟରୁ ସେ ପି. ଏଚ୍. ଡି ଡିଗ୍ରୀ ହାସଲ କରିଥିଲେ । (ମାନସିଂହ ଇଂରେଜୀ ସାହିତ୍ୟ ଉପରେ ଡକ୍ଟରେଟ୍ କରିବାରେ ପ୍ରଥମ ଓଡ଼ିଆ) । ମୁଖ୍ୟତଃ ତାଙ୍କର ଏହି ସମାଲୋଚକୀୟ ଅଭିଜ୍ଞତାକୁ କେନ୍ଦ୍ର କରି ମାନସିଂହ ତାଙ୍କର ଇତିହାସଟିକୁ ରୂପାୟିତ କରିଛନ୍ତି । ତାଙ୍କ ସାହାଯ୍ୟ କଲଭଳି ଓଡ଼ିଆ ସାହିତ୍ୟର କୌଣସି ପୂର୍ଣ୍ଣାଙ୍ଗ ଓ ପରିଚ୍ଛନ୍ନ ବା ଆଦର୍ଶ (Complete and Standard) ଇତିହାସ, ନା ଓଡ଼ିଆ ନା ଇଂରେଜୀ କୌଣସିଥିରେ ମଧ୍ୟ ନ ଥିଲେ । ଏହି ପୃଷ୍ଠଭୂମିରେ ତାଙ୍କର ସମସ୍ତ ଅଭିଜ୍ଞତା, ସାହିତ୍ୟ ଏକାଡେମୀର ସମୟ-ସୀମିତ ନିର୍ଦ୍ଦେଶ ମଧ୍ୟରେ ତାଙ୍କର 'History of Oriya literature' ର ଜନ୍ମ, ଯାହା କି ଆଲୋଚନାଧୀନ 'ଓଡ଼ିଆ ସାହିତ୍ୟର ଇତିହାସ'ର ଆଦିରୂପ ମାତ୍ର ।

୧୯୫୮ ପର୍ଯ୍ୟନ୍ତ ମାନସିଂହ ସମାଲୋଚନାର ସ୍ୱରୂପ ଯାହା, ତହିଁରୁ ତାଙ୍କ 'ଇତିହାସ' ଆଦୌ ବ୍ୟତିକ୍ରାନ୍ତ ନୁହେଁ । ମାନସିଂହ ସମାଲୋଚନାର ବିଗ୍ଭର ଆଜି ପର୍ଯ୍ୟନ୍ତ ହୋଇନାହିଁ, ତାହା ଠିକ୍ ରୂପେ ହେଲେ ଉପରୋକ୍ତ ମତଟିର ସତ୍ୟତା ପ୍ରତିପାଦିତ ହେବ । କିନ୍ତୁ ସେଥିପାଇଁ ଏକ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ । ସଂକ୍ଷେପରେ ମାନସିଂହୀୟ ସମାଲୋଚକ ମାନସ ସମ୍ପର୍କରେ ଏଇପରି କିଛି କୁହାଯାଇପାରେ । ମାନସିଂହ ଥିଲେ ଜଣେ ବହୁପାଠୀ ବିଦଗ୍ଧ ସାହିତ୍ୟିକ । ନିଜ ପାଇଁ ସୁନିର୍ଦ୍ଦିଷ୍ଟ ଭାବେ କୌଣସି ସାହିତ୍ୟ ଦର୍ଶନ ସ୍ଥିର କରି ମୂଲ୍ୟାୟନ (Evaluation or Appreciation)ରେ ସେ ପ୍ରବୃତ୍ତ ହୋଇ ନ ଥିଲେ ହେଁ ତାଙ୍କ ସମାଲୋଚନାରେ ସାଧାରଣ ଭାବରେ ଏକ ଶୃଙ୍ଖଳା ଆବିଷ୍କାର କରି ହେବ । ସମାଲୋଚନାର ଚ୍ଚରୋଟି ମୂଳ ପ୍ରବୃତ୍ତି ବ୍ୟାଖ୍ୟା, ନିର୍ଦ୍ଦେଶନା, ମୂଲ୍ୟାୟନ ଓ ବର୍ଣ୍ଣନା ମଧ୍ୟରୁ ସେ ମୁଖ୍ୟତଃ ମୂଲ୍ୟ ଯୁକ୍ତଶୀଳ (Evaluative) ସମାଲୋଚନାର ପକ୍ଷପାତୀ ଥିଲେ । ତାଙ୍କର ମାନଦଣ୍ଡ କିନ୍ତୁ ସବୁବେଳେ ମୌଳିକ ନୁହେଁ । ଏଥିପାଇଁ ସେ ଉଭୟ ଆରୋହ ଓ ଅବରୋହ (Inductive & Deductive) ବିଗ୍ଭର ଶୈଳୀ ବ୍ୟବହାର କରିଛନ୍ତି । ତାଙ୍କର ଆରୋହ ସବୁବେଳେ ପର୍ଯ୍ୟାପ୍ତ ଦୃଷ୍ଟାନ୍ତ ଭିତ୍ତିରୁ ଗୃହୀତ ନୁହେଁ କିମ୍ବା ଅବରୋହ ସବୁବେଳେ ସମାନ ଆଭିମୁଖ୍ୟ ଗ୍ରହଣ କରିନାହିଁ । ସମାଲୋଚନାର ଇତିହାସରେ ପରିଦୃଷ୍ଟ ବିଭିନ୍ନ ସମୀକ୍ଷା-ଧାରାର ପରିଚୟ ତାଙ୍କ ରଚନାରୁ ମିଳୁଥିଲେ ହେଁ ସେ ମୁଖ୍ୟତଃ ପ୍ରଭାବବାଦୀ (Impressionist)

ସୌନ୍ଦର୍ଯ୍ୟବାଦୀ ସମୀକ୍ଷା-ପଦ୍ଧତିର ଅନୁକାରୀ । ଫଳତଃ ତାଙ୍କ ସମାଲୋଚନାରେ ବ୍ୟକ୍ତିଗତ ରୁଚି ଓ ଧାରଣାର ବାହୁଲ୍ୟ ଯେ କେହି ଲକ୍ଷ୍ୟ କରିପାରିବେ । ତାଙ୍କ ସ୍ରଷ୍ଟା ଓ ସମାଲୋଚକ ମାନସ ଉପରେ ଚିରସ୍ଥିତିବାଦ (Classicism) ର ପ୍ରଭାବ ରହିଥିଲେ ମଧ୍ୟ ସେ ମୁଖ୍ୟତଃ ଓ ମୂଳତଃ ଥିଲେ ସ୍ୱଚ୍ଛନ୍ଦତାବାଦୀ (Romantic) । ତାଙ୍କ ମନ ଉପରେ ଜାତୀୟତାବାଦ ଓ ସଂସ୍କୃତି-ସମୃଦ୍ଧି-ତତ୍ତ୍ୱର ସାମୟିକ ପ୍ରଭାବ ମଧ୍ୟ ଥିଲା । ତଥ୍ୟ ସର୍ବସ୍ୱ ଐତିହାସିକ ସମୀକ୍ଷା ପଦ୍ଧତି ପ୍ରତି ସେ ବିଶେଷ ଆଗ୍ରହଶୀଳ ନ ଥିଲେ । ସେ ସମୀକ୍ଷା-କାଳୀନ ସମୟ ବା ମୁହୂର୍ତ୍ତର ଅଧୀନ ଥିଲେ ଏବଂ ସମ୍ପୃକ୍ତ ପ୍ରସଙ୍ଗରେ ପୂର୍ବେ ସେ କ'ଣ କହିଥିଲେ ଓ ନ କହିଥିଲେ, ସେ ସମ୍ପର୍କରେ ତାଙ୍କର ସବିଶେଷ ସ୍ମରଣ ବା ଧ୍ୟାନଶୀଳତା ନ ଥିଲା । ଫଳତଃ ତାଙ୍କ ସମାଲୋଚନାରେ ସ୍ୱବିରୋଧର ପରିଚୟ ମଧ୍ୟ ଏକାନ୍ତ ଦୁର୍ଲ୍ଲଭ ନୁହେଁ । ସାହିତ୍ୟ-ଚେତନା ଦୃଷ୍ଟିରୁ ସେ ଥିଲେ ସାରଳ୍ୟବାଦୀ ଏବଂ ବିଂଶ ଶତାବ୍ଦୀର ସାହିତ୍ୟର ଜଟିଳ ତତ୍ତ୍ୱବାଦିତାରେ ତାଙ୍କର ବିଶ୍ୱାସ ନ ଥିଲା । ମାନସିଂହ ସମାଲୋଚନାର ଏହି ରୂପ (ଗୁଣ ହେଉ କି ଦୋଷ ହେଉ) ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ସୁସ୍ପଷ୍ଟ ଆବିଷ୍କାର କରାଯାଇ ପାରିବ । ସାରଳା-ବଳରାମ-ଜଗନ୍ନାଥ-ସନ୍ଥ ସାହିତ୍ୟ ରୀତିକାବ୍ୟ-ବୈଷ୍ଣବପଦାବଳୀ-ରାଧାନାଥ-ମଧୁସୂଦନ-ଫକୀରମୋହନ-ଗଙ୍ଗାଧର-ସତ୍ୟବାଦୀ ଓ ସବୁଜ ସାହିତ୍ୟ-ପ୍ରଗତିଶୀଳ ଓ ଆଧୁନିକ ସାହିତ୍ୟ-ଏ ସବୁ ସମ୍ପର୍କରେ ତାଙ୍କ ସମଗ୍ର ଜୀବନକାଳ ମଧ୍ୟରେ ସେ ଯାହା କିଛି ଲେଖିଯାଇଛନ୍ତି, ସେସବୁ ଉପରୋକ୍ତ ଆବିଷ୍କାରଗୁଡ଼ିକୁ ବାରମ୍ବାର ପ୍ରମାଣିତ କରିବେ ।

ସାହିତ୍ୟର ସମାଲୋଚନା ଓ ଇତିହାସ ସମ୍ପର୍କରେ ସେ ତାଙ୍କର କେତେକ ମତାମତ ଓ ମାନଦଣ୍ଡର ସୂଚନା ଦେଇ ଯାଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟ ସମ୍ପର୍କରେ ମତବ୍ୟକ୍ତ କରି ସେ ଲେଖିଛନ୍ତି, "କିନ୍ତୁ ଏହି ଆଲୋଚନାର ସ୍ତର ଉର୍ଦ୍ଧ୍ୱଗ ନ ହୋଇ, ସାଧାରଣତଃ ସନ-ତାରିଖ-ଗାଁ-ଶବ୍ଦାର୍ଥ-ପୋଥି ସଂଖ୍ୟା ପ୍ରଭୃତି ସାହିତ୍ୟ ରାଜ୍ୟର ଅପ୍ରଧାନ ସ୍ତରରେ ରହିଯାଉଛି" । (ଓ. ସା. ଇ. ପୃ-୫୦୯) 'ଓଡ଼ିଆ ଅଧ୍ୟାପକ ମଣ୍ଡଳୀ'ର ଶୁଭେଚ୍ଛୁ, କିନ୍ତୁ ଜଣେ ଶାଣିତ ଶତ୍ରୁ, ଉତ୍କଳର ମାନସିଂହ ଓଡ଼ିଆ ସମାଲୋଚନାର ସ୍ତର ସମ୍ପର୍କରେ ପୁଣି କହିଛନ୍ତି "କିନ୍ତୁ ସମସାମୟିକ ଓଡ଼ିଆ ସାହିତ୍ୟରେ ଦୁର୍ବଳତମ ଓ ଦରିଦ୍ରତମ ବିଭାଗ ହୋଇ ରହିଯାଉଛି, ବୋଧହୁଏ ସାହିତ୍ୟ-ସମାଲୋଚନା । ପତ୍ର ପତ୍ରିକାମାନଙ୍କର ପୃଷ୍ଠାମାନଙ୍କରେ ଲମ୍ବା ଲମ୍ବା ଆଲୋଚନା ପ୍ରଚୁର ପ୍ରକାଶିତ ହେଉଛି ସତ୍ୟ, କିନ୍ତୁ ସେ ସବୁର ସ୍ତର ଅତି ନିମ୍ନ । ସାହିତ୍ୟ କ୍ଷେତ୍ରରେ ମୂଲ୍ୟ ନିର୍ଦ୍ଧାରଣ ଏକ ସୂକ୍ଷ୍ମ, କୋମଳ, ଅନ୍ତର୍ଦୃଷ୍ଟି ସମ୍ପନ୍ନ ପ୍ରଚେଷ୍ଟା । ସେଠି ଗୁଡ଼ାଏ ଅବାନ୍ତର କଥା ଗଦା କରି ନିଜର ପାଣ୍ଡିତ୍ୟ ପ୍ରତିଷ୍ଠାପିତ କରିବାର ପ୍ରୟାସ କେବଳ ହାସ୍ୟକର ନୁହେଁ ବରଂ ଏକ ବିପଜ୍ଜନକ

ବ୍ୟାପାର । ଏହା ଯେ ବିଶେଷ ଭାବରେ ଆସୁଛି ଓଡ଼ିଆ ଅଧ୍ୟାପକମାନଙ୍କ ଠାରୁ ତାହା ହିଁ ଅତି ପରିତାପର କଥା ଓ ଅତି ଅଶୁଭ ଲକ୍ଷଣ । ଏବର ଓଡ଼ିଆ ଶିକ୍ଷକ ଓ ଅଧ୍ୟାପକମାନେ ଅଧିକାଂଶ ଭାବରେ ଇଂରାଜୀ ଓ ସଂସ୍କୃତ ସହିତ ସମ୍ପର୍କହୀନ । ଖାଲି ଓଡ଼ିଆ ପଢ଼ି, ସାହିତ୍ୟ ତତ୍ତ୍ୱର ଆଲୋଚନା ବା ବିଶ୍ୱସାହିତ୍ୟର ପରିପ୍ରେକ୍ଷିତରେ ସାହିତ୍ୟର ମୂଲ୍ୟାଙ୍କନ କିପରି ସମ୍ଭବ ହୋଇପାରେ, ଆଜିର ଯୁଗରେ ? ଫଳରେ ଏହି ଅଧ୍ୟାପକମାନଙ୍କ ପ୍ରବନ୍ଧ ପ୍ରସାଦାତ୍, ଓଡ଼ିଆରେ ଏବେ ସମାଲୋଚନା କହିଲେ, ଗୁଡ଼ାଏ ଉଦ୍ଧୃତିର ସମାହାର ବା ଅଯୁକ୍ତିପ୍ରତିଷ୍ଠ ନିନ୍ଦା ବା ପ୍ରଶଂସା, ଯାହା ବିଶ୍ୱ ସାହିତ୍ୟ ସହିତ ଅନାସକ୍ତ ଓ ନିରପେକ୍ଷ ।" (ଓ. ସା.-ଇ-ପୃ ୪୧୧) ସାହିତ୍ୟର ଇତିହାସ ସମ୍ପର୍କରେ ତାଙ୍କ ଅବଲମ୍ବିତ ମାର୍ଗର ସୂଚନା ତାଙ୍କର ଏହି ଉଦ୍ଧୃତିରୁ ଆହୁରି ସ୍ପଷ୍ଟ ହୁଏ । "ଏକ ଜାତିର ସାହିତ୍ୟର ଇତିହାସ ଯେ ହେଉଛି ମୌଳିକ ସ୍ରଷ୍ଟାମାନଙ୍କର ହିଁ ଇତିହାସ, ତାହା ପୂର୍ବରୁ ସୂଚିତ ହୋଇଛି । ଏହି ଆମ୍ଭର ଇତିହାସରେ ସ୍ଥାନ ସନର ବିସ୍ତୃତ ବା ନାମଧାମର ତାଲିକା ଏକ ଇତର ଅବାନ୍ତରତା ମାତ୍ର । ବିଶ୍ୱବରେଣ୍ୟ କାଳିଦାସ-ସେକ୍ସପିୟରଙ୍କ ସ୍ଥାନ ଓ କାଳତ ଏପର୍ଯ୍ୟନ୍ତ ଅନିର୍ଦ୍ଦିଷ୍ଟ ଓ ଭ୍ରମସଙ୍କୁଳ । କିନ୍ତୁ ଯେଥିଯୋଗୁ ତ ତାଙ୍କ ରଚନା ଭୋଗ କରିବାରେ କିଛି ଅସୁବିଧା କାହାରି ହେଉ ନାହିଁ । ପୁଣି, ସମଗ୍ର ସଂସ୍କୃତ ସାହିତ୍ୟର ଇତିହାସରେ କୌଣସି ହେଲେ ଲେଖକ ଓ କୌଣସି ହେଲେ ଗ୍ରନ୍ଥର ସନ ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇ ପାରୁନି । ଅଥଚ ସଂସ୍କୃତ ସାହିତ୍ୟ ଚର୍ଚ୍ଚାରୁ ବିଶ୍ୱରେ ନୂତନ ନୂତନ ଜ୍ଞାନ କ୍ଷେତ୍ରର ଉଦ୍ଭବ ହୋଇଛି । କିନ୍ତୁ ଦେଖୁଛୁଁ ଯେ ସାହିତ୍ୟ ଚର୍ଚ୍ଚା ବୋଇଲେ ଓଡ଼ିଶାରେ ଦଳେ ଅଧ୍ୟାପକଙ୍କର ସନ-ସ୍ଥାନ-ନାମ ନେଇ ବାଡ଼ିଆ ବାଡ଼ି ଛଡ଼ା ଅନ୍ୟ କିଛି ନାହିଁ । ଏ ଅଧ୍ୟାପକଙ୍କର ସାହିତ୍ୟିକ ମୂଲ୍ୟବୋଧ ମଧ୍ୟ ଧୂଆ ଓ ଓ ଅଧୂଆ ମୂଳାର ପ୍ରଭେଦ ଦେଖିପାରେ ନାହିଁ ।" (ଓ.ସା.ଇ. ପୃ-୬୭) ଡକ୍ଟର ମାନସିଂହ ତାଙ୍କର 'ଇତିହାସ'କୁ ଏକ କବି ବା ଲେଖକ—ତାଲିକାରେ ପରିଣତ କରିବାକୁ ଚାହିଁ ନାହାନ୍ତି । କାଳିଦାସଙ୍କ ମାର୍ଗ ଦର୍ଶନରେ ସେ ବିଶ୍ୱାସ ରଖିଛନ୍ତି—

ପୁରାଣ ମିତ୍ୟେବ ନ ସାଧୁ ସର୍ବଂ
ନ ଚାପି କାବ୍ୟଂ ନବମିତ୍ୟବଦ୍ୟଂ
ସନ୍ତଃ ପରୀକ୍ଷାନ୍ୟତରଦ୍ ଭଜନ୍ତେ
ମୂଢ଼ଃ ପର ପ୍ରତ୍ୟୟନେୟ ବୁଦ୍ଧିଃ ।

ମୁଖ୍ୟତଃ ଏଇ 'ନାଁ' ଥିବା-ନ-ଥିବା ନେଇ ଏବଂ ତାକୁ ହିଁ ଆଳ କରି ମାନସିଂହ ଇତିହାସର ବହୁ ନିନ୍ଦା କରାଯାଇଛି । କିନ୍ତୁ ସାହିତ୍ୟର ଇତିହାସରେ ଲେଖକ ମାନେ ଯେ ସମସ୍ତଙ୍କର ଉଲ୍ଲେଖ ଅସମ୍ଭବ ଏଥିରେ ସନ୍ଦେହ ନାହିଁ ।

ସୌନ୍ଦର୍ଯ୍ୟବାଦୀ ସମୀକ୍ଷା-ପଦ୍ଧତିର ଅନୁକାରୀ । ଫଳତଃ ତାଙ୍କ ସମାଲୋଚନାରେ ବ୍ୟକ୍ତିଗତ ରୁଚି ପ୍ରଦାନର ବାହୁଲ୍ୟ ଯେ କେହି ଲକ୍ଷ୍ୟ କରିପାରିବେ । ତାଙ୍କ ସ୍ରଷ୍ଟା ଓ ସମାଲୋଚକ ମାନସ ଉପରେ ଚିରସ୍ମୃତିବାଦ (Classicism) ର ପ୍ରଭାବ ରହିଥିଲେ ମଧ୍ୟ ସେ ମୁଖ୍ୟତଃ ଓ ମୂଳତଃ ଥିଲେ ସ୍ୱଚ୍ଛନ୍ଦତାବାଦୀ (Romantic) । ତାଙ୍କ ମନ ଉପରେ ଜାତୀୟତାବାଦ ଓ ସଂସ୍କୃତି-ସମୃଦ୍ଧି-ତତ୍ତ୍ୱର ସାମୟିକ ପ୍ରଭାବ ମଧ୍ୟ ଥିଲା । ତଥ୍ୟ ସର୍ବସ୍ୱ ଐତିହାସିକ ସମୀକ୍ଷା ପଦ୍ଧତି ପ୍ରତି ସେ ବିଶେଷ ଆଗ୍ରହଶୀଳ ନ ଥିଲେ । ସେ ସମୀକ୍ଷା-କାଳୀନ ସମୟ ବା ମୁହୂର୍ତ୍ତର ଅଧୀନ ଥିଲେ ଏବଂ ସଂପୃକ୍ତ ପ୍ରସଙ୍ଗରେ ପୂର୍ବେ ସେ କ'ଣ କହିଥିଲେ ଓ ନ କହିଥିଲେ, ସେ ସମ୍ପର୍କରେ ତାଙ୍କର ସବିଶେଷ ସ୍ମରଣ ବା ଧ୍ୟାନଶୀଳତା ନ ଥିଲା । ଫଳତଃ ତାଙ୍କ ସମାଲୋଚନାରେ ସ୍ୱବିରୋଧର ପରିଚୟ ମଧ୍ୟ ଏକାନ୍ତ ଦୁର୍ଲ୍ଲଭ ନୁହେଁ । ସାହିତ୍ୟ-ଚେତନା ଦୃଷ୍ଟିରୁ ସେ ଥିଲେ ସାରଲ୍ୟବାଦୀ ଏବଂ ବିଂଶ ଶତାବ୍ଦୀର ସାହିତ୍ୟର ଜଟିଳ ତତ୍ତ୍ୱବାଦିତାରେ ତାଙ୍କର ବିଶ୍ୱାସ ନ ଥିଲା । ମାନସିଂହ ସମାଲୋଚନାର ଏହି ରୂପ (ଗୁଣ ହେଉ କି ଦୋଷ ହେଉ) ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ସୁସ୍ପଷ୍ଟ ଆବିଷ୍କାର କରାଯାଇ ପାରିବ । ସାରଳା-ବଳରାମ-ଜଗନ୍ନାଥ-ସନ୍ଥ ସାହିତ୍ୟ ରୀତିକାବ୍ୟ-ବୈଷ୍ଣବପଦାବଳୀ-ରାଧାନାଥ-ମଧୁସୂଦନ-ଫକୀରମୋହନ-ଗଙ୍ଗାଧର-ସତ୍ୟବାଦୀ ଓ ସବୁଜ ସାହିତ୍ୟ-ପ୍ରଗତିଶୀଳ ଓ ଆଧୁନିକ ସାହିତ୍ୟ-ଏ ସବୁ ସମ୍ପର୍କରେ ତାଙ୍କ ସମଗ୍ର ଜୀବନକାଳ ମଧ୍ୟରେ ସେ ଯାହା କିଛି ଲେଖିଯାଇଛନ୍ତି, ସେସବୁ ଉପରୋକ୍ତ ଆବିଷ୍କାରଗୁଡ଼ିକୁ ବାରମ୍ବାର ପ୍ରମାଣିତ କରିବେ ।

ସାହିତ୍ୟର ସମାଲୋଚନା ଓ ଇତିହାସ ସମ୍ପର୍କରେ ସେ ତାଙ୍କର କେତେକ ମତାମତ ଓ ମାନଦଣ୍ଡର ସୂଚନା ଦେଇ ଯାଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟ ସମ୍ପର୍କରେ ମନ୍ତବ୍ୟ କରି ସେ ଲେଖିଛନ୍ତି, "କିନ୍ତୁ ଏହି ଆଲୋଚନାର ସ୍ତର ଉର୍ଦ୍ଧ୍ୱଗ ନ ହୋଇ, ସାଧାରଣତଃ ସନ-ତାରିଖ-ଗାଁ-ଶବ୍ଦାର୍ଥ-ପୋଥି ସଂଖ୍ୟା ପ୍ରଭୃତି ସାହିତ୍ୟ ରାଜ୍ୟର ଅପ୍ରଧାନ ସ୍ତରରେ ରହିଯାଉଛି" । (ଓ. ସା. ଇ. ପୃ-୫୦୯) 'ଓଡ଼ିଆ ଅଧ୍ୟାପକ ମଣ୍ଡଳୀ'ର ଶୁଭେଚ୍ଛୁ କିନ୍ତୁ ଜଣେ ଶାଣିତ ଶତ୍ରୁ ଡକ୍ଟର ମାନସିଂହ ଓଡ଼ିଆ ସମାଲୋଚନାର ସ୍ତର ସମ୍ପର୍କରେ ପୁଣି କହିଛନ୍ତି "କିନ୍ତୁ ସମସାମୟିକ ଓଡ଼ିଆ ସାହିତ୍ୟରେ ଦୁର୍ବଳତମ ଓ ଦରିଦ୍ରତମ ବିଭାଗ ହୋଇ ରହିଯାଉଛି, ବୋଧହୁଏ ସାହିତ୍ୟ-ସମାଲୋଚନା । ପତ୍ର ପତ୍ରିକାମାନଙ୍କର ପୃଷ୍ଠାମାନଙ୍କରେ ଲମ୍ବା ଲମ୍ବା ଆଲୋଚନା ପ୍ରଚୁର ପ୍ରକାଶିତ ହେଉଛି ସତ୍ୟ, କିନ୍ତୁ ସେ ସବୁର ସ୍ତର ଅତି ନିମ୍ନ । ସାହିତ୍ୟ କ୍ଷେତ୍ରରେ ମୂଲ୍ୟ ନିର୍ଦ୍ଧାରଣ ଏକ ସୂକ୍ଷ୍ମ, କୋମଳ, ଅନ୍ତର୍ଦୃଷ୍ଟି ସମ୍ପନ୍ନ ପ୍ରଚେଷ୍ଟା । ସେଠି ଗୁଡ଼ାଏ ଅବାନ୍ତର କଥା ଗଦା କରି ନିଜର ପାଣ୍ଡିତ୍ୟ ପ୍ରତିଷ୍ଠାପିତ କରିବାର ପ୍ରୟାସ କେବଳ ହାସ୍ୟକର ନୁହେଁ ବରଂ ଏକ ବିପଜ୍ଜନକ

ବ୍ୟାପାର । ଏହା ଯେ ବିଶେଷ ଭାବରେ ଆସୁଛି ଓଡ଼ିଆ ଅଧ୍ୟାପକମାନଙ୍କ ଠାରୁ ତାହା ହିଁ ଅତି ପରିତାପର କଥା ଓ ଅତି ଅଶୁଭ ଲକ୍ଷଣ । ଏବର ଓଡ଼ିଆ ଶିକ୍ଷକ ଓ ଅଧ୍ୟାପକମାନେ ଅଧିକାଂଶ ଭାବରେ ଇଂରାଜୀ ଓ ସଂସ୍କୃତ ସହିତ ଘନିଷ୍ଠ ସମ୍ପର୍କହୀନ । ଖାଲି ଓଡ଼ିଆ ପଢ଼ି, ସାହିତ୍ୟ ତତ୍ତ୍ୱର ଆଲୋଚନା ବା ବିଶ୍ୱସାହିତ୍ୟର ପରିପ୍ରେକ୍ଷିତରେ ସାହିତ୍ୟର ମୂଲ୍ୟାଙ୍କନ କିପରି ସମ୍ଭବ ହୋଇପାରେ, ଆଜିର ଯୁଗରେ ? ଫଳରେ ଏହି ଅଧ୍ୟାପକମାନଙ୍କ ପ୍ରବନ୍ଧ ପ୍ରସାଦାତ୍, ଓଡ଼ିଆରେ ଏବେ ସମାଲୋଚନା କହିଲେ, ଗୁଡ଼ାଏ ଉଦ୍ଧୃତିର ସମାହାର ବା ଅପ୍ରକୃତପ୍ରତିଷ୍ଠ ନିନ୍ଦା ବା ପ୍ରଶଂସା, ଯାହା ବିଶ୍ୱ ସାହିତ୍ୟ ସହିତ ଅନାସକ୍ତ ଓ ନିରପେକ୍ଷ ।" (ଓ. ସା.-ଇ-ପୃ ४११) ସାହିତ୍ୟର ଇତିହାସ ସମ୍ପର୍କରେ ତାଙ୍କ ଅବଲମ୍ବିତ ମାର୍ଗର ସୂଚନା ତାଙ୍କର ଏଇ ଉଦ୍ଧୃତିରୁ ଆହୁରି ସ୍ପଷ୍ଟ ହୁଏ । "ଏକ ଜାତିର ସାହିତ୍ୟର ଇତିହାସ ଯେ ହେଉଛି ମୌଳିକ ସ୍ରଷ୍ଟାମାନଙ୍କର ହିଁ ଇତିହାସ, ତାହା ପୂର୍ବରୁ ସୂଚିତ ହୋଇଛି । ଏହି ଅମ୍ଭର ଇତିହାସରେ ସ୍ଥାନ ସନର ବିଗ୍ରହ ବା ନାମଧାମର ତାଲିକା ଏକ ଇତର ଅବାନ୍ତରତା ମାତ୍ର । ବିଶ୍ୱବରେଣ୍ୟ କାଳିଦାସ-ସେକ୍‌ସପିୟରଙ୍କ ସ୍ଥାନ ଓ କାଳତ ଏପର୍ଯ୍ୟନ୍ତ ଅନିର୍ଦ୍ଦିଷ୍ଟ ଓ ଭ୍ରମସଙ୍କୁଳ । କିନ୍ତୁ ସେଥିଯୋଗୁ ତ ତାଙ୍କ ରଚନା ଭୋଗ କରିବାରେ କିଛି ଅସୁବିଧା କାହାରି ହେଉ ନାହିଁ । ପୁଣି, ସମଗ୍ର ସଂସ୍କୃତ ସାହିତ୍ୟର ଇତିହାସରେ କୌଣସି ହେଲେ ଲେଖକ ଓ କୌଣସି ହେଲେ ଗ୍ରନ୍ଥର ସନ ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇ ପାରୁନ । ଅଥଚ ସଂସ୍କୃତ ସାହିତ୍ୟ ଚର୍ଚ୍ଚାରୁ ବିଶ୍ୱରେ ନୂତନ ନୂତନ ଜ୍ଞାନ କ୍ଷେତ୍ରର ଉଦ୍ଭବ ହୋଇଛି । କିନ୍ତୁ ଦେଖୁଛୁଁ ଯେ ସାହିତ୍ୟ ଚର୍ଚ୍ଚା ବୋଇଲେ ଓଡ଼ିଶାରେ ଦଳେ ଅଧ୍ୟାପକଙ୍କର ସନ-ସ୍ଥାନ-ନାମ ନେଇ ବାଡ଼ିଆ ବାଡ଼ି ଛଡ଼ା ଅନ୍ୟ କିଛି ନାହିଁ । ଏ ଅଧ୍ୟାପକଙ୍କର ସାହିତ୍ୟିକ ମୂଲ୍ୟବୋଧ ମଧ୍ୟ ଧୂଆଁ ଓ ଓ ଅଧୂଆ ମୂଳାର ପ୍ରଭେଦ ଦେଖିପାରେ ନାହିଁ ।" (ଓ.ସା.ଇ. ପୃ-୬୭) ଉକ୍ତିର ମାନସିଂହ ତାଙ୍କର 'ଇତିହାସ'କୁ ଏକ କବି ବା ଲେଖକ—ତାଲିକାରେ ପରିଣତ କରିବାକୁ ଚାହିଁ ନାହାନ୍ତି । କାଳିଦାସଙ୍କ ମାର୍ଗ ଦର୍ଶନରେ ସେ ବିଶ୍ୱାସ ରଖିଛନ୍ତି—

ପୁରାଣ ମିତ୍ୟେବ ନ ସାଧୁ ସର୍ବଂ
ନ ଚାପି କାବ୍ୟଂ ନବମିତ୍ୟବଦ୍ୟଂ
ସନ୍ତଃ ପରୀକ୍ଷାନ୍ୟତରଦ୍ ଭଜନ୍ତେ
ମୂଢଃ ପର ପ୍ରତ୍ୟୟନେୟ ବୁଦ୍ଧିଃ ।

ମୁଖ୍ୟତଃ ଏଇ 'ନାଁ' ଥିବା-ନ-ଥିବା ନେଇ ଏବଂ ତାକୁ ହିଁ ଆଳ କରି ମାନସିଂହ ଇତିହାସର ବହୁ ନିନ୍ଦା କରାଯାଇଛି । କିନ୍ତୁ ସାହିତ୍ୟର ଇତିହାସରେ ଲେଖକ ମାନେ ଯେ ସମୟଙ୍କର ଉଲ୍ଲେଖ ଅସମ୍ଭବ ଏଥିରେ ସନ୍ଦେହ ନାହିଁ ।

ବଙ୍ଗସାହିତ୍ୟର କୌଣସି ଇତିହାସ ଗ୍ରନ୍ଥରେ ଏପରି ପରମ୍ପରା ପରିଲକ୍ଷିତ ହୁଏ ନାହିଁ । ସାହିତ୍ୟ ଏକାଡେମୀର ଅନ୍ୟ ଯେଉଁମାନେ ଇତିହାସ ଲେଖିଛନ୍ତି, ସେମାନେ ମଧ୍ୟ ମାନସିଂହଙ୍କ ପନ୍ଥା ଅବଲମ୍ବନ କରିଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶିତ 'History of Bengali literature'ର ଉପସଂହାରରେ ଲେଖକ ଡକ୍ଟର ସୁକୁମାର ସେନ୍ ଲେଖିଛନ୍ତି, "The short compass of this history does not allow for the inclusion of writers who have made their mark after 1941, the year that marks Tagore's death as well as approach of the second world war. It has also not been possible to take into account many writers who have produced good and popular works but did not chalkout any new path or create any new form The essence of literature, as of beauty, lies in its perpetual freshness or lavanya (literally, salinity) as it is called in our ancient language" (Page-345) ବଙ୍ଗଳା ସାହିତ୍ୟ ପ୍ରତି ଏହା ଯଦି ଏକ ଠିକ୍ ଦୃଷ୍ଟିଭଙ୍ଗୀ, ଓଡ଼ିଆ ସାହିତ୍ୟ ପ୍ରତି ତାହା କଦାପି ଭୁଲ ହୋଇ ନ ପାରେ । ମାନସିଂହଙ୍କ ଇତିହାସ ୧୯୪୧ ରେ ସରିଯାଇ ନାହିଁ, ତାହା ଅପ୍-ଟୁ-ଡେଟ୍ ବା ୧୯୬୭ ପର୍ଯ୍ୟନ୍ତ ଯାଇଛି । ୧୯୬୭ ଭିତରର ଏପରି କୌଣସି 'ମହାନ୍' ସ୍ରଷ୍ଟାଙ୍କୁ ମାନସିଂହ ବାଦ୍ ଦେଇ ନାହାନ୍ତି, ଯାହା ଫଳରେ 'ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସ' ତ୍ରୁଟିବହୁଳ ଗ୍ରନ୍ଥ ବୋଲି ବୁଝାଯିବ, ସେ ଯେଉଁ ଲେଖକମାନଙ୍କୁ ଗ୍ରହଣ କରିଛନ୍ତି, ସେମାନଙ୍କ ସମ୍ପର୍କରେ ତାଙ୍କକୃତ 'ମୂଲ୍ୟାୟନ' (Evaluation) ଅବଶ୍ୟ ଏକ ଭିନ୍ନ ବ୍ୟାପାର ।

ସ୍ଥାନ-କାଳ-ପାତ୍ର-ଜନ ପ୍ରତି ମାନସିଂହଙ୍କର ଯେପରି ଅନାସ୍ଥା, ସେଥିରୁ ମାନସିଂହଙ୍କ ଇତିହାସ-ରଚନା ଯୋଗ୍ୟତା ସମ୍ପର୍କରେ କେହି କେହି ସନ୍ଦେହ ପ୍ରକାଶ କରିପାରନ୍ତି । କିନ୍ତୁ ଏଠି ଏତିକି ବୁଝାଯାଇପାରେ ଯେ ସାହିତ୍ୟ ଇତିହାସର ରଚନାଶୈଳୀ ଓ ଐତିହାସିକ ସମୀକ୍ଷା ପଦ୍ଧତି ସମାନ କଥା ନୁହେଁ । 'ଇତିହାସ'ର ସାଧାରଣ ରୂପକୁ ଗ୍ରହଣ କରିନେଇ ଏଥିପାଇଁ ଯେ କୌଣସି ସମୀକ୍ଷା ପଦ୍ଧତି ବ୍ୟବହାର କରାଯାଇ ପାରେ । ବିଭିନ୍ନ ପଦ୍ଧତି ମଧ୍ୟରେ କେଉଁଟି ଶ୍ରେଷ୍ଠ, ତାହା ଏକ ଭିନ୍ନ କଥା । ମାନସିଂହ ଏଥିରେ ବିଶ୍ୱାସ ରଖିଥିଲେ । ତାଙ୍କ 'ଇତିହାସ'ରେ ଐତିହାସିକ ତଥ୍ୟର ବ୍ୟବହାର ପ୍ରାଚୁର୍ଯ୍ୟ ନାହିଁ । 'ଇତିହାସ'ର ଏକ ସ୍ଥୂଳ-ନକ୍ସା

ଭିତରେ ନିଜସ୍ୱ ପଦ୍ଧତିରେ ବିଭିନ୍ନ ଲେଖକ ଓ ଓଡ଼ିଆ ସାହିତ୍ୟର ଗତିପ୍ରକୃତିର ଯଥାସମ୍ଭବ ସମୀକ୍ଷା ଓ ସୂଚନା ସେ ପ୍ରଦାନ କରିଛନ୍ତି । ଓଡ଼ିଆ ସାହିତ୍ୟର ଇତିହାସକୁ ସେ ମୁଖ୍ୟତଃ ଦୁଇଟି 'ପର୍ବ' ଓ ଚାରୋଟି 'ଉପପର୍ବ'ରେ ବିଭକ୍ତ କରିଛନ୍ତି । ତା'ର ବିବରଣ ଏହିପରି—

(କ) ଓଡ଼ିଆ ସାହିତ୍ୟର ପ୍ରାଚୀନ ପର୍ବ—ପ୍ରଥମରୁ ୧୮୬୫ ପର୍ଯ୍ୟନ୍ତ

(ଖ) ଓଡ଼ିଆ ସାହିତ୍ୟର ଆଧୁନିକ ପର୍ବ—୧୮୬୬ରୁ ୧୯୬୭ ପର୍ଯ୍ୟନ୍ତ

ଏ ପ୍ରତ୍ୟେକ 'ପର୍ବ'କୁ ସେ ମୁଖ୍ୟତଃ ଦୁଇଟି ଲେଖାଏଁ ଉପପର୍ବରେ ବିଭକ୍ତ କରିଛନ୍ତି । ଯଥା—

'ପ୍ରାଚୀନ ପର୍ବ'ରେ

(କ) ପ୍ରଥମ ଉପପର୍ବ—ପ୍ରଥମରୁ ୧୫୬୮ ପର୍ଯ୍ୟନ୍ତ

(ଖ) ଦ୍ୱିତୀୟ ଉପପର୍ବ—୧୫୬୮ରୁ ୧୮୬୫ ପର୍ଯ୍ୟନ୍ତ

'ଆଧୁନିକ ପର୍ବ'ରେ

(କ) ପ୍ରଥମ ଉପପର୍ବ—୧୮୬୬ରୁ ୧୯୨୦ ପର୍ଯ୍ୟନ୍ତ

(ଖ) ଦ୍ୱିତୀୟ ଉପପର୍ବ—୧୯୨୧ ରୁ ୧୯୬୭ ପର୍ଯ୍ୟନ୍ତ

ଏଥିରୁ ପ୍ରଥମ ତିନୋଟି ପର୍ବ ତାଙ୍କ ଦୃଷ୍ଟିରେ 'ପ୍ରାକ୍-ସାମ୍ପ୍ରତିକ' ଏବଂ ଅନ୍ତିମ ପର୍ବଟି 'ସାମ୍ପ୍ରତିକ' ଯାହାକୁ ସେ 'ସମସାମୟିକ ଚିନ୍ତା' ଭାବରେ ଚିହ୍ନିତ କରିଛନ୍ତି । ମାନସିଂହ ଇତିହାସର ସମାଲୋଚକମାନେ ମୁଖ୍ୟତଃ ଏହି ଅନ୍ତିମ ପର୍ବଟିକୁ ହିଁ ନିନ୍ଦା ଓ ଆକ୍ରମଣ କରିଥା'ନ୍ତି । ମାନସିଂହଙ୍କ ସ୍ୱର ଅବଶ୍ୟ ଏଠି ବେଳେ ବେଳେ ବଡ଼ ତୀକ୍ଷ୍ଣ ଓ ଆକ୍ଷେପମୂଳକ ହୋଇ ଉଠିଛି । କେତେକଙ୍କ ସମ୍ପର୍କରେ ଆଲୋଚନାରେ ସେ ଅନୁପାତ ରକ୍ଷା କରି ନାହାନ୍ତି । ଏପରିକି ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ପରି ଜଣେ ସମକାଳୀନ ବିଶିଷ୍ଟ ସ୍ରଷ୍ଟାଙ୍କ ସମ୍ପର୍କରେ ତାଙ୍କର ଆଲୋଚନା କେବଳ ତାଙ୍କର ନାମୋଲ୍ଲେଖ (ନାମ ଓ ଉପନାମ ଭିତରେ ଏକ 'ନାଥ' ମଧ୍ୟ ରହିଯାଇଛି ବୋଧହୁଏ) ଓ ଦୁଇ ତିନୋଟି ବାକ୍ୟରେ ହିଁ ସୀମିତ ହୋଇ ରହିଛି । ଏହିପରି ଅସାଧାରଣ ପ୍ରମାଦ ହୁଏତ ଅନେକ ବାହାରିବ । ସୌଭାଗ୍ୟ କୁମାର ମିଶ୍ର (ମାନସିଂହ ଇତିହାସରେ ଉଲ୍ଲେଖ ଲାଭ କରିଥିବା ତରୁଣତମ ଲେଖକ-ଜନ୍ମ ୧୯୩୯) ଅନବଧାନତାବଶତଃ ସୌଭାଗ୍ୟ କୁମାର ମହାପାତ୍ରରେ ପରିଣତ ହୋଇଛନ୍ତି । (ପୃ ୪୦୭) । ଏଭଳି ସାମୟିକ ଅନବଧାନତା ଅସ୍ୱାଭାବିକ ନୁହେଁ । ପ୍ରାଚୀନ ଓଡ଼ିଆ ସାହିତ୍ୟର 'ବିଶେଷଜ୍ଞ'ମାନେ ମଧ୍ୟ ଲେଖୁ ଲେଖୁ ବଳଦେବଙ୍କ 'ସର୍ପଜଣାଣ'କୁ ଏକ 'ଚଉତିଶା' ବୋଲି ଉଲ୍ଲେଖ କରି ଦିଅନ୍ତି । ଏପରି ଭୁଲ କାଢ଼ିବା ଉଚିତ

✳

ନୁହେଁ । ତେବେ ମୋଟା ମୋଟି 'ସମସାମୟିକ ଚନ୍ଦ' ପ୍ରସଙ୍ଗରେ ତାଙ୍କର ବ୍ୟକ୍ତିଗତତା ଅବାଞ୍ଛିତ ଭାବରେ ଅତିରିକ୍ତ ହୋଇ ପଡ଼ିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସମସାମୟିକ ଚନ୍ଦରେ ୧୯୨୧ରୁ ୧୯୬୭ ମଧ୍ୟରେ ସାହିତ୍ୟ ସାଧକ ଭାବରେ ସେ ଯେଉଁମାନଙ୍କର ନାମୋଲ୍ଲେଖ ବା ଆଲୋଚନା କରିଛନ୍ତି ସେମାନେ ହେଲେ ୧-କାଳନ୍ଦୀ ଚରଣ ପାଣିଗ୍ରାହୀ, ୨-ଅନ୍ନଦା ଶଙ୍କର ରାୟ, ୩-ବୈକୁଣ୍ଠନାଥ ପଟ୍ଟନାୟକ, ୪-ଗୋଦାବରୀଶ ମହାପାତ୍ର, ୫-ମାୟାଧର ମାନସିଂହ, ୬-ରାଧାମୋହନ ଗଡ଼ନାୟକ, ୭-କୃଷ୍ଣଚନ୍ଦ୍ର ତ୍ରିପାଠୀ, ୮-ଭଗବତୀ ଚରଣ ପାଣିଗ୍ରାହୀ, ୯-ଅନନ୍ତ ପଟ୍ଟନାୟକ, ୧୦-ମନମୋହନ ମିଶ୍ର, ୧୧-ସଚ୍ଚି ରାଉତରାୟ, ୧୨-ଭାନୁଜୀ ରାଓ, ୧୩-ଗୁରୁପ୍ରସାଦ ମହାନ୍ତି, ୧୪-ବିନୋଦ ଚନ୍ଦ୍ର ନାୟକ, ୧୫-ଅନନ୍ତ ପ୍ରସାଦ ପଣ୍ଡା, ୧୬-କୁଞ୍ଜ ବିହାରୀ ଦାଶ, ୧୭-ଚକ୍ରଧର ମହାପାତ୍ର, ୧୮-ଚକ୍ରଧର ମହାପାତ୍ରଙ୍କ ପତ୍ନୀ, ୧୯-ପ୍ରାଣକୃଷ୍ଣ ସାମଲ, ୨୦-ବିଦ୍ୟୁତ୍‌ଲତା ଦେବୀ, ୨୧-ମନୋରମା ମହାପାତ୍ର, ୨୨-ତୁଳସୀ ଦାସ, ୨୩-ବ୍ରହ୍ମୋତ୍ରୀ ମହାନ୍ତି, ୨୪-ରବୀନ୍ଦ୍ରନାଥ ସିଂହ, ୨୫-ଜ୍ଞାନୀନ୍ଦ୍ର ବର୍ମା, ୨୬-ଚନ୍ଦ୍ରମଣି ବେହେରା, ୨୭-ରମାକାନ୍ତ ରଥ, ୨୮-ବିନୋଦ ରାଉତରାୟ, ୨୯-ଦୁର୍ଗାମାଧବ ମିଶ୍ର, ୩୦-ଦୁର୍ଗାଚରଣ ପରିଡ଼ା, ୩୧-ବ୍ରଜନାଥ ରଥ, ୩୨-ମନୋଜ ଦାସ, ୩୩-ଯଦୁନାଥ ଦାଶମହାପାତ୍ର, ୩୪-ବିରଞ୍ଚି ଚରଣ ପଟ୍ଟନାୟକ, ୩୫-ଗୋପୀନାଥ ମହାନ୍ତି, ୩୬-କାହ୍ନୁଚରଣ ମହାନ୍ତି, ୩୭-ନିତ୍ୟାନନ୍ଦ ମହାପାତ୍ର, ୩୮-ଚିତ୍ତରଞ୍ଜନ ଦାସ, ୩୯-ଲକ୍ଷ୍ମୀଧର ନାୟକ, ୪୦-ଶାନ୍ତନୁ କୁମାର ଆଚାର୍ଯ୍ୟ, ୪୧-ରାଜକିଶୋର ପଟ୍ଟନାୟକ, ୪୨-ବସନ୍ତ କୁମାରୀ ପଟ୍ଟନାୟକ, ୪୩-ବିଭୂତି ପଟ୍ଟନାୟକ, ୪୪-ବିଭୂଦତ୍ତ ମିଶ୍ର, ୪୫-ସୀତାକାନ୍ତ ମହାପାତ୍ର, ୪୬ ଉମାଶଙ୍କର ପଣ୍ଡା, ୪୭-ନୃସିଂହ କୁମାର ରଥ, ୪୮-ସୌଭାଗ୍ୟ କୁମାର ମିଶ୍ର, ୪୯-ମଙ୍ଗଳୁ ଚରଣ ବିଶ୍ୱାଳ, ୫୦-କେଶବ ମେହେର, ୫୧-ଡକ୍ଟର ହରେକୃଷ୍ଣ ମହତାବ୍, ୫୨-ସୁରେନ୍ଦ୍ର ମହାନ୍ତି, ୫୩-ରାଜକିଶୋର ରାୟ, ୫୪-ମହାପାତ୍ର ନୀଳମଣି ସାହୁ, ୫୫-ବାମାଚରଣ ମିଶ୍ର, ୫୬-ପ୍ରାଣବନ୍ଧୁ କର, ୫୭-ବ୍ରହ୍ମାନନ୍ଦ ପଣ୍ଡା, ୫୮-ଫତୁରାନନ୍ଦ, ୫୯-ସୁଶୀଳ ମିଶ୍ର, ୬୦-ଶ୍ରଦ୍ଧାକର ସୂପକାର, ୬୧-ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ୬୩-ଡକ୍ଟର ରାଧାନାଥ ରଥ, ୬୪-ଗୋଲୋକ ବିହାରୀ ଧଳ, ୬୫-ଶ୍ରୀହର୍ଷ ମିଶ୍ର, ୬୬-ଡକ୍ଟର ନଟବର ସାମନ୍ତରାୟ, ୬୭-ଡକ୍ଟର ବଂଶୀଧର ମହାନ୍ତି, ୬୮-ଅସିତ୍ର କବି, ୬୯-ବେଣୁଧର ରାଉତ, ୭୦-ଡଃ ନରେନ୍ଦ୍ରନାଥ ମିଶ୍ର, ୭୧-ସର୍ବେଶ୍ୱର ଦାସ, ୭୨-ପଠାଣି ପଟ୍ଟନାୟକ, ୭୩-ଜାନକୀ ବଲ୍ଲଭ ମହାନ୍ତି, ୭୪-ଗଙ୍ଗାଧର ବଳ, ୭୫-ଆର୍ତ୍ତବଲ୍ଲଭ ମହାନ୍ତି, ୭୬-ବିନାୟକ ମିଶ୍ର, ୭୭-ସୂର୍ଯ୍ୟନାରାୟଣ ଦାଶ, ୭୮-ଡକ୍ଟର ବୈଦ୍ୟନାଥ ମିଶ୍ର, ୭୯-ପରମାନନ୍ଦ ଆଚାର୍ଯ୍ୟ, ୮୦-ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ୮୧-ସତ୍ୟନାରାୟଣ ରାଜଗୁରୁ, ୮୨-କେଦାରନାଥ ମହାପାତ୍ର, ୮୩-ଡକ୍ଟର ନବୀନ କୁମାର ସାହୁ, ୮୪-ସୁଧାକର ପଟ୍ଟନାୟକ, ୮୫-କୃଷ୍ଣ ପ୍ରସାଦ

ବସୁ, ୮୬-ଡକ୍ଟର ବସନ୍ତ କୁମାର ବେହେରା, ୮୭-ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ୮୮ ଡକ୍ଟର ଗଦାଧର ମିଶ୍ର, ୮୯-ଡକ୍ଟର ବଂଶୀଧର ପାଢୀ, ୯୦-ଅଣିମା କୁମାର ଘୋଷ, ୯୧-କାଳୀଚରଣ ପଟ୍ଟନାୟକ, ୯୨-ଗିରିଜାଶଙ୍କର ରାୟ, ୯୩-ଭଞ୍ଜକିଶୋର ପଟ୍ଟନାୟକ, ୯୪-ରାମଚନ୍ଦ୍ର ମିଶ୍ର, ୯୫-ଗୋପାଳ ଛୋଟରାୟ, ୯୬-ମନୋରଞ୍ଜନ ଦାସ, ୯୭-କମଳଲୋଚନ ମହାନ୍ତି, ୯୮-ବୈଷ୍ଣବ ପାଣି, ୯୯ ସତୀନ୍ଦ୍ର ମୋହନ ମହାନ୍ତି ଓ ୧୦୦-କୁନ୍ତଳା କୁମାରୀ ସାବତ । ଉପର କୋଡ଼ିଏର 'ପ୍ରାୟ' ସମସ୍ତ 'ଅପରିହାର୍ଯ୍ୟ' ମାନେ ଯେ ଏହି ଶହେଙ୍କ ଭିତରେ ରହିଛନ୍ତି, ଏଥିରେ ସନ୍ଦେହ ନାହିଁ । ୪୭ ବର୍ଷ ବା ଅର୍ଦ୍ଧଶତାବ୍ଦୀର ସମସ୍ତ ପରିସର ମଧ୍ୟରେ ୧୦୦ ଜଣ ବିଶିଷ୍ଟ ସାହିତ୍ୟସାଧକ ଗୋଟାଏ ସାହିତ୍ୟର ଜୀବନ୍ତତାର ଯଥେଷ୍ଟ ପ୍ରମାଣ ଦିଏ । ଡକ୍ଟର ମାନସିଂହଙ୍କ ବ୍ୟକ୍ତିଗତ ରୁଚି ତଥା ଅନବଧାନତା ଭିତରେ ମଧ୍ୟ ଶହେ ଜଣଙ୍କର ଯେ ଉଲ୍ଲେଖ ରହିଛି, ତାହା କ'ଣ ସାଧାରଣ କଥା ? ପୁଣି ସେ ଯେତେବେଳେ ଏକ ଅଗବେଷିତ ସମୟ ଉପରେ ଲେଖୁଛନ୍ତି, ସେତେବେଳେ ଏହାଠାରୁ ଅଧିକ ନ ହୋଇ ପାରିବା ଗୋଟାଏ ବଡ଼ କଥା କ'ଣ ? ସମକାଳୀନ ସାହିତ୍ୟର ଆଲୋଚନା, ବିଶେଷତଃ ସ୍ୱୟଂ ଆଲୋଚକ ଯଦି ଜଣେ ସୃଷ୍ଟିଶୀଳ ଲେଖକ ହୋଇଥାନ୍ତି, ପ୍ରକୃତରେ ବଡ଼ ସମସ୍ୟାସଂକୁଳ ଭାବରେ ଦେଖା ଦେଇଥାଏ । ଜଣେ ପୂର୍ବତନ ଅନୁଭବୀଙ୍କ ଭାଷାରେ, "To make proper estimate of modern literature, is indeed one of the most difficult task of literary criticism. An old country and its old litrature is a study, but a new country and its new literature is a problem. It is hard to realise the past, but it is harder to read the present." (Dr. S. K. Dey Preface to Bengali Literature in 19th Century-PXI-1919) ଡକ୍ଟର ଜାନକୀବଲ୍ଲଭ ମହାନ୍ତିଙ୍କ ସହିତ ଏକମତ ହୋଇ କୁହାଯାଇ ପାରେ ଯେ "ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଆ କବି ଏବଂ କାବ୍ୟମାନଙ୍କ ସମ୍ପର୍କରେ ଯତ୍‌ସାମାନ୍ୟ ଆଲୋଚନା ହୋଇଥିଲେ ହେଁ ଏହି ଆଧୁନିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଧାରାବାହିକ ଆଲୋଚନାର ଏକାନ୍ତ ଅଭାବ । ନାନା କାରଣରୁ ଆଲୋଚକଙ୍କୁ ଏହି ସମ୍ପର୍କୀୟ ଆଲୋଚନା କ୍ଷେତ୍ରରେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଓଡ଼ିଆରେ 'ଗ୍ରନ୍ଥସୂଚୀ' ପୁସ୍ତକର ଅଭାବ ଓ ଉପାଦେୟ ପୁସ୍ତକାବଳୀ ଦ୍ୱାରା ସୁସଜ୍ଜିତ ପୁସ୍ତକାଗାରରେ ଅଭାବ ତନ୍ମଧ୍ୟରୁ ଅନ୍ୟତମ । ତାହାଛଡ଼ା ଯେ କୌଣସି ସାହିତ୍ୟର ଏହି ବିଭାଗ ସମ୍ପର୍କରେ ଆଲୋଚନା କରିବା ମଧ୍ୟ ଅତୀବ କଷ୍ଟସାଧ୍ୟ । (ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରଥମ ସଂସ୍କରଣର ଭୂମିକା) । ମାନସିଂହଙ୍କର ଏ ସମସ୍ୟା ନ ଥିଲା ବୋଲି ଆମେ ଭାବିବା କାହିଁକି ? ଯାହା କହନ୍ତୁ ଯାମ୍ନୁଛଳ

ସାହିତ୍ୟର ଆଲୋଚନା କରିବାକୁ ଯିବା ଅର୍ଥ ହାଣମୁହଁକୁ ବେକ ପତେଇ ଦେବା, ମାନସିଂହଙ୍କ ଭାଗ୍ୟ ତାହାଠାରୁ ଭିନ୍ନ ହୋଇପାରି ନାହିଁ ।

ବିଂଶ ଶତାବ୍ଦୀର ବରେଣ୍ୟ କବି ଓ ସମାଲୋଚକ T. S. Eliot କହନ୍ତି ଯେ 'ସୃଷ୍ଟିଶୀଳ ସମାଲୋଚନା'—ଏପରି କିଛି ନାହିଁ । ତାଙ୍କ କହିବାର ତାତ୍ପର୍ଯ୍ୟ ହେଉଛି ଯେ ସମାଲୋଚନାରେ 'ସୃଷ୍ଟିଶୀଳତା' ବୋଲି ଏକ ବ୍ୟାପାର ଅନାବଶ୍ୟକ । ଏହି ତାଙ୍କର ମତ ଏବଂ ବୋଧହୁଏ ଯୁକ୍ତିଯୁକ୍ତ ଭାବରେ ସମର୍ଥନୀୟ । ତଥାପି ସୃଷ୍ଟିଶୀଳ ସମାଲୋଚନା (Creative Criticisn) ବୋଲି ଗୋଟାଏ ଧାରା ସମାଲୋଚନାର ଇତିହାସରେ ଦେଖା ନ ଦେଇଛି ତାହା ନୁହେଁ । ବିଶ୍ୱ କବି ରବୀନ୍ଦ୍ରନାଥ ଠାକୁର ଯେଉଁସବୁ ସମାଲୋଚନା ଲେଖି ଯାଇଛନ୍ତି, ସେ ସବୁକୁ ଏହି ନାମରେ ହିଁ ନାମିତ କରାଯିବ । ଏହା ଗୁଣ ହେଉ କି ଦୋଷ ହେଉ, ମାନସିଂହ ସମାଲୋଚନାର ଏହା ହିଁ ବୈଶିଷ୍ଟ୍ୟ । ତାଙ୍କ ପୂର୍ବବର୍ତ୍ତୀ ସମୀକ୍ଷା ଗ୍ରନ୍ଥ, ବିଶେଷତଃ 'କବି ଓ କବିତା'ରେ ଏହା ସହଜରେ ଅନୁଭବ କରାଯାଇପାରେ । ଉଦାହରଣ ସ୍ୱରୂପ, 'ପ୍ରାଚୀନ ଓଡ଼ିଆ କାବ୍ୟ' ଶୀର୍ଷକ 'ଓଡ଼ିଆ ସମାଜ ଓ ସାହିତ୍ୟ' ଗ୍ରନ୍ଥରେ ସଙ୍କଳିତ ପ୍ରଥମ ଆଲୋଚନାରେ ଭଞ୍ଜ ଓ ଭଞ୍ଜାନୁଗ କବି ଓ ସେମାନଙ୍କ କାବ୍ୟ ସମ୍ପର୍କରେ ଡକ୍ଟର ମାନସିଂହ ଲେଖିଛନ୍ତି, "ଭଞ୍ଜ ଓ ଭଞ୍ଜ ଯୁଗ ଓଡ଼ିଆ କବିମାନଙ୍କର କାବ୍ୟ-ଜଗତକୁ ଅଖଣ୍ଡ ଭାବରେ ଭାବି ବସିଲେ ଏକ ପ୍ରାସାଦବାସିନୀ ରାଜରାଣୀର କଳ୍ପନା ମନକୁ ଆସେ । ଉତ୍କଳର କଳା ସମୃଦ୍ଧ ଦେବାଳୟମାନଙ୍କ ପରି, ଏ ପ୍ରାସାଦର ପ୍ରତ୍ୟେକ ପ୍ରସ୍ତର ଖଣ୍ଡ ସୂକ୍ଷ୍ମ ଓ ଜଟିଳ ଶିଳ୍ପରେ ଗୁମ୍ଫିତ ହୋଇ ରହିଛି । ସେ ପ୍ରାସାଦର ଅଗଣା କର୍ପୂର ଜଳରେ ବିଚ୍ଛୁରିତ, ଚଉରିଫଳ ଖୋସା ଚେଟୀ ପ୍ରାତଃକାଳରେ ମୟୂର ପୁଚ୍ଛର ସମାର୍ଜନୀରେ ସେ ଅଗଣା ମାର୍ଜନ କରଯାଏ । ବିରହ ଛଡ଼ା ସେଠାରେ ବେଦନା ନାହିଁ—ପ୍ରେମାଶ୍ରୁ ଛଡ଼ା ଅଶ୍ରୁ ନାହିଁ, କୋଧ ଅଭିମାନରେ ପର୍ଯ୍ୟବସିତ । ରାଣୀ ଓ ସହଚରୀଗଣ ଅସୂର୍ଯ୍ୟମ୍ପଶ୍ୟା । ରାଜାନ୍ତଃପୁରର ବାହାରେ ଅଗଣିତ ଜନପଦ ସହିତ ସେମାନଙ୍କର ସମ୍ପର୍କ ନାହିଁ । ଉଦ୍ୟାନ ଲତା ପରି ସେମାନଙ୍କ ଜୀବନ ; ଲତାର ପୁଷ୍ପୋଦ୍‌ଗମ ପରି ପ୍ରେମ ହିଁ ସେମାନଙ୍କ ଜୀବନର ଏକମାତ୍ର ସାର୍ଥକତା" । (ପୃ-୧) ପୁଣି, "ଏଠାରେ କୌଣସି ଶକୁନ୍ତଳା ପ୍ରତ୍ୟାଖ୍ୟାତ ହୋଇ ବୃନ୍ଦାବନଚାରିଣୀ ହୋଇନାହିଁ, କୌଣସି ଜୁଲିଏଟ ପ୍ରେମପାଇଁ ଆତ୍ମତ୍ୟାଗ କରିନାହିଁ, କୌଣସି ସୁଭଦ୍ରା ପ୍ରେମପାଇଁ ପ୍ରଣୟୀର ରଥଚାଳନା କରି ବାହାରି ଯାଇନାହିଁ । ସମସ୍ତଙ୍କର ପ୍ରଣୟ କେବଳ ବିଳାପ, ଅଶ୍ରୁ, ଅଭିମାନ ଓ ରତିକ୍ରୀଡ଼ା ।" (ପୃ-୮) ମାନସିଂହଙ୍କ ଇତିହାସରେ ଏଇ ସୃଷ୍ଟିଶୀଳ ସମାଲୋଚନାର ପରିଚୟ ଗ୍ରନ୍ଥର ପରିଚ୍ଛେଦ-ପରିକଳ୍ପନାଠାରୁ ଆରମ୍ଭ କରି ପ୍ରତ୍ୟକ୍ଷ ସମୀକ୍ଷା କର୍ମ ପର୍ଯ୍ୟନ୍ତ ସର୍ବତ୍ର ଦେଖିହେବ । ପରିଚ୍ଛେଦ-ପରିକଳ୍ପନାରେ ତୀକ୍ଷ୍ଣ ତର୍କନିଷ୍ଠ ଶୃଙ୍ଖଳା ଅପେକ୍ଷା

ଏକ ପ୍ରକାର ଭିନ୍ନଧର୍ମୀ ଶୃଙ୍ଖଳା (ଯାହାକୁ ତର୍କ-କୈନ୍ଦ୍ରିକ ଦୃଷ୍ଟିକୋଣରୁ 'ସୃଷ୍ଟିଶୀଳ ବିଶୃଙ୍ଖଳା' ମଧ୍ୟ କୁହାଯାଇପାରେ) ମାନସିଂହଙ୍କ ଇତିହାସରେ ପରିଲକ୍ଷିତ ହୋଇଥାଏ । ସମୁଦାୟ ସତରଟି ଅଧ୍ୟାୟ ବା ପରିଚ୍ଛେଦରେ ମାନସିଂହ ତାଙ୍କର ଇତିହାସକୁ ରୂପାୟିତ କରିଛନ୍ତି । ଓଡ଼ିଆ ଜୀବନ ଓ ସାହିତ୍ୟ, ଓଡ଼ିଆ ସାହିତ୍ୟର ସାଧାରଣ ଚରିତ୍ର, ଓଡ଼ିଆ ଭାଷା, ଓଡ଼ିଆ ଅପଭ୍ରଂଶରେ ବୌଦ୍ଧ-କବିତା, ସଂସ୍କୃତର ମଧ୍ୟକାଳୀନ ଗ୍ରନ୍ଥ, ପ୍ରାକ୍ ପ୍ରଭାତର ଷୀଣାଲୋକ, ଓଡ଼ିଆ ମହାଭାରତ ଓ ତାହାର ଶୁଦ୍ର ସ୍ରଷ୍ଟା, ସାରଳାଙ୍କ ପରବର୍ତ୍ତୀ ଯୁଗ, ଧର୍ମୀୟ ଉତ୍ସାହର ଯୁଗ, ପୁରାଣ ଓ ଆଳଙ୍କାରିକ କବିତା, ଆଧୁନିକ ଯୁଗର ଆରମ୍ଭ-ଐତିହାସିକ ପଷ୍ଟାଦ୍‌ପଟ, ମହତ୍ତ୍ରୟୀ (ଫକୀରମୋହନ, ରାଧାନାଥ ଓ ମଧୁସୂଦନ), କାବ୍ୟ ରାଜ୍ୟର ଅନ୍ୟ ପ୍ରଦୀପାବଳୀ, ଗଦ୍ୟ ରାଜ୍ୟର ପ୍ରଦୀପାବଳୀ, ଓଡ଼ିଶାରେ ନାଟକ ଓ ରଙ୍ଗମଞ୍ଚ, ସତ୍ୟବାଦୀ ସ୍କୁଲ ଓ ସମସାମୟିକ ଚିନ୍ତା—ଏହା ହିଁ ତାଙ୍କର ଅଧ୍ୟାୟ-ବିଭାଗ । ବୃତ୍ତିହୀନ ନିର୍ଜୀବ ସାରଲ୍ୟ ନାହିଁ, ତର୍କନିଷ୍ଠତାର ଅନୁପସ୍ଥିତି ନଥିଲେ ହେଁ ରୁକ୍ଷତା ନାହିଁ, ଅଛି ଏକ ସୃଷ୍ଟିଶୀଳ ଦୃଷ୍ଟି ସମ୍ପନ୍ନତା । କେବଳ ପରିଚ୍ଛେଦର 'ନାମକରଣ' ଗୁଡ଼ିକ ହିଁ ଲେଖକଙ୍କ ସୃଷ୍ଟିଶୀଳ ଦୃଷ୍ଟିକୋଣର ଯଥେଷ୍ଟ ସୂଚନା ପ୍ରଦାନ କରିଥାନ୍ତି । ବିଶେଷତଃ ଏହାର ପ୍ରଥମ ଦୁଇଟି ଅଧ୍ୟାୟର ସୃଷ୍ଟି କେବଳ ମାନସିଂହ ଲେଖନୀ ମାଧ୍ୟମରେ ହିଁ ଓଡ଼ିଆ ସାହିତ୍ୟର ସମ୍ପଦରେ ପରିଣତ ହୋଇପାରେ । ପରେ ଯେଉଁ ଲେଖନୀରୁ 'The saga of the Land of Jagannath' ବାହାରିଲା, ଏହା ସେହି ଲେଖନୀର ସୃଷ୍ଟି । ବିଦଗ୍ଧ-ଦ୍ରଷ୍ଟା ଚିତ୍ତରଞ୍ଜନ ଦାସଙ୍କ ନିରୀକ୍ଷଣ ଯଥାର୍ଥ; "ଅନ୍ୟମାନେ କ'ଣ ଭାବି ସେମାନଙ୍କର ମତ ଦେଇଛନ୍ତି କେଜାଣି, ମୁଁ ଆପଣଙ୍କୁ ସତ କହୁଛି ଯେ, ବହିଟି ମତେ ଭାରି ଭଲ ଲାଗିଛି । ବିଶେଷତଃ ଓଡ଼ିଶାର ଐତିହାସିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିମାନଙ୍କର ଆଲୋଚନା କରାଯାଇଥିବା ପ୍ରଥମ କେତୋଟି ଅଧ୍ୟାୟରେ ଆପଣ ବିଷୟଟିର ଯେପରି ଚର୍ଚ୍ଚା କରିଛନ୍ତି, ମୁଁ କୌଣସି ଓଡ଼ିଶାବାସୀଙ୍କ ଲେଖାରେ ତାହା ଆଗରୁ ପଢ଼ିଛି ବୋଲି ମୋର ମନେ ହେଉନାହିଁ ।" (ଓ.ସା.ଇ. ପୃ-୩୩) କେବଳ ଏତିକି ନୁହେଁ, ତାଙ୍କ ଲେଖନୀର ସୃଷ୍ଟିଶୀଳତାକୁ ସତରଟି ଯାକ ଅଧ୍ୟାୟ ପର୍ଯ୍ୟାପ୍ତ ଦୃଷ୍ଟାନ୍ତ ଦ୍ୱାରା ବାରମ୍ବାର ପ୍ରମାଣିତ କରିଥାନ୍ତି । କଥାତ୍ମକ, ତର୍କାତ୍ମକ, ବର୍ଣ୍ଣନାତ୍ମକ ଓ ଅଭିବ୍ୟକ୍ତି ମୂଳକ—ରଚନାର ଏଇ ଯେଉଁ ମୁଖ୍ୟ ଚାରିରୂପ ସେ ପ୍ରତ୍ୟେକର ବ୍ୟବହାର କ୍ଷେତ୍ରରେ ସେ ଏହାର ପ୍ରମାଣ ମଧ୍ୟ ଦେଇଛନ୍ତି । ତାଙ୍କର ଶୈଳୀ ସ୍ପଷ୍ଟ, ଆଳଙ୍କାରିକ, ବଳିଷ୍ଠ, ସାବଲୀଳ, ଯଥାଯଥ ଓ ସ୍ନିଗ୍ଧ । ଏଠାରେ ତାଙ୍କ ରଚନା-ସୌନ୍ଦର୍ଯ୍ୟର କେତୋଟି ଦୃଷ୍ଟାନ୍ତ ଲିପିବଦ୍ଧ କରାଯାଇପାରେ ।

(କ) ସାରଳା ଦାସଙ୍କ ଆବିର୍ଭାବ : "ଏହିପରି ସେତେବେଳେ ଏହି ସମଗ୍ର ଉପମହାଦେଶ ବିଦେଶୀ ଅଧିକୃତ ଓ ଶାସିତ ଥିଲାବେଳେ ଓଡ଼ିଶା ଉଭୟ ସ୍ୱାଧୀନତା

ଓ ଉତ୍କଳ ସାମରିକ ଯଶ ଭୋଗ କରୁଥିଲା, ବହୁ ଶତାବ୍ଦୀ ଧରି। ସେଦିନ ଏହି ଦେଶ ଓଡ଼ିଆ ଜାତିର ସଂସ୍କୃତି ଓ ସଭ୍ୟତାର ସୂଚକରୂପୀ, ବହୁସଂଖ୍ୟକ ମନ୍ଦିରମାନଙ୍କ ଦ୍ୱାରା ଅଳଙ୍କୃତ ହୋଇଥିଲା। ସତ୍ୟରେ, ସେଦିନ ଏ ଦେଶର ସମୃଦ୍ଧିର ତୁଳନା ନଥିଲା। ଏହି କାଳରେ ନିର୍ମିତ କୋଣାର୍କ ଓ ଭୁବନେଶ୍ୱରର ମନ୍ଦିରମାନଙ୍କ ଗାତ୍ରରେ ଏ ଦେଶର ମହାରଣାମାନେ ଯେଉଁ ଜାତିକ ଆଙ୍କି ଯାଇଛନ୍ତି, ସେ ଜାତି କିପରି ଥିଲା ? ସେଦିନ ସେ ଜାତିର ଥିଲା ଜୀବନ ପ୍ରତି ଅସରନ୍ତି ଶ୍ରଦ୍ଧା। ସେ ଜାତି ମାତି ରହିଥିଲା ଯୁଦ୍ଧ, ଶିକାର, ଖେଦା ଓ ବାଣିଜ୍ୟ ଅଭିଯାନରେ କେବଳ ନୁହେଁ, ସେ ଉତ୍ତମ ଭାବରେ ଉପଭୋଗ କରୁଥିଲା ପ୍ରଣୟ, ସଙ୍ଗୀତ ଓ ନୃତ୍ୟ ଏବଂ ସମାଜର ସୁଧୀଜନର ବାଣୀ ଅନୁଯାୟୀ ସର୍ବସ୍ୱ ସମର୍ପିବାର ମଧ୍ୟ ଜାଣିଥିଲା ତାର ଇଷ୍ଟ ଦେବତାର ପୀଠ ତଳେ। ଏ ଜାତି ସେଦିନ ନିଜକୁ ତାର ରାଜାକୁ ଓ ଦେଶକୁ ନେଇ ପ୍ରକୃତ ଗର୍ବ ଅନୁଭବ କରୁଥିଲା ଏବଂ ଅହରହ ସ୍ୱପ୍ନ ଦେଖୁଥିଲା ସୁନ୍ଦରୀ ନାରୀର। ଓଡ଼ିଆ ମହାଭାରତର କବି ସାରଳା ଦାସ ଏହି ପ୍ରକାର ଅନୁକୂଳ ରାଜନୈତିକ ପରିବେଶ ଓ ସମୃଦ୍ଧ ଉଦାର କାଳରେ ଜନ୍ମ ଗ୍ରହଣ କରିଥିଲେ। ସାରଳା ଦାସ ଯେ ଜଣେ ପ୍ରକୃତ ଜାତୀୟ କବି, ତାର ପ୍ରକୃଷ୍ଟ ପ୍ରମାଣ ଏହି ଯେ, ତାଙ୍କ ମହାଭାରତରେ ଆମେ ସେକାଳ ଓଡ଼ିଆ ଜାତିର ଏହି ସମସ୍ତ ସୁଖମୟ ପରିସ୍ଥିତିଗୁଡ଼ିକ ବାରମ୍ବାର ପ୍ରତିବିମ୍ବିତ ହେବାର ଦେଖିବା। × × ସାରଳା ଦାସଙ୍କ ଓଡ଼ିଆ ମହାଭାରତ କାଳ ଓ ପ୍ରତିଭାର ଏକ ସୁବର୍ଣ୍ଣ ସଂଯୋଗ କହିବାକୁ ହେବ।" (ପୃ-୯୯/୧୦୦)

(ଖ) ସାରଳା ଲେଖନୀର ବୈଶିଷ୍ଟ୍ୟ : ସମଗ୍ର ଓଡ଼ିଆ ସାହିତ୍ୟରେ ସାରଳା ଦାସ ହେଉଛନ୍ତି ଏକମାତ୍ର ଲେଖକ ଯାହାର ଲେଖନୀ 'ସାହିତ୍ୟ'ର ଅର୍ଥ ବୁଝିଥିଲା କେବଳ 'ଜୀବନ'। ସେ ସାହିତ୍ୟର ଅର୍ଥ ଦର୍ଶନ, ବା ଧର୍ମ ବା ନୀତିଶିକ୍ଷା ବୋଲି ମାନନାହିଁ। ସେ ପ୍ରତିଭା କୌଣସି ଆଦର୍ଶ ପ୍ରଚାର କରିବାର ଛଳନା କରିନାହିଁ। ସେ କେବଳ ଆମ ଭଳିପରି ନାରୀ ପୁରୁଷଙ୍କୁ ନେଇ ଗଳ୍ପ କହିବାକୁ ଉଦ୍ୟତ ଏବଂ ସେହି ଗଳ୍ପକୁ ହୃଦୟଗ୍ରାହୀ କରିବାପାଇଁ ସ୍ୱାଭାବିକ ଭାବରେ ଅତିରଞ୍ଜିତ କରିବାକୁ ପ୍ରସ୍ତୁତ।" (ପୃ-୧୦୯)

(ଗ) ଜଗନ୍ନାଥ ଦାସଙ୍କ ଭାଗବତ : ସମଗ୍ର ଓଡ଼ିଆ ସାହିତ୍ୟରେ ଏକମାତ୍ର ଏହି ଗ୍ରନ୍ଥ, ଜଗନ୍ନାଥଙ୍କ ଭାଗବତରେ ହିଁ, ଆମେ ସେହି ରହସ୍ୟମୟ 'ବାଇବଲିକ୍ ବାକ୍‌ସ୍ପର୍ଶ' ଦେଖିବାକୁ ପାଉ। ପ୍ରକୃତ ଓ ଶିଷ୍ଟ ସଂସ୍କୃତ ପଦାବଳୀ ସହିତ କଥିତ ଓଡ଼ିଆର ପଦ ଓ ବାକ୍ୟାଂଶ ସବୁ ମିଶାଇ, ଅଥଚ କେବଳ ଯାହା ଶାଳୀନ ତାହାକୁ ହିଁ ବ୍ୟବହାର କରି, ପାଣ୍ଡିତିକ ଯଥାର୍ଥତା ଅପେକ୍ଷା ଭାଷାରେ କଳାଗତ ସୁଷମା ପ୍ରତି ସ୍ୱତଃ ଦୃଷ୍ଟି ରଖି ଏବଂ ରଚନାର ସମଗ୍ରତାରେ ବିକୀର୍ଣ୍ଣ କରି ଏପରି ଏକ ସୂକ୍ଷ୍ମ ରହସ୍ୟମୟ ମାଦକତା, ଯାହା ଅର୍ଥପ୍ରତୀତି ନ ହେଲେ ମଧ୍ୟ ଶ୍ରୋତା ଓ

ପାଠକଙ୍କୁ ଆକର୍ଷିତ କରି ରଖିଛି, ଜଗନ୍ନାଥ ଦାସ ଏ ସବୁର ମିଶ୍ରଣରେ ଏପରି ଏକ ରଚନାଶୈଳୀ ଗୁଡ଼ି ଯାଇଛନ୍ତି, ଯାହା ଏ ପର୍ଯ୍ୟନ୍ତ ସମଗ୍ର ଓଡ଼ିଆ ଭାଷାରେ କାହା-ଦ୍ୱାରା ସିଦ୍ଧିର ସହିତ ଅନୁକାରିତ ହୋଇପାରିଛି ବୋଲି ମଧ୍ୟ କୁହାଯାଇ ପାରିବ ନାହିଁ । ଜଗନ୍ନାଥ ଦାସଙ୍କ ଭାଗବତରେ ବ୍ୟବହୃତ ଓଡ଼ିଆ ଭାଷାର ଶୁଦ୍ଧତା, ଶାଳୀନତା, ସୌନ୍ଦର୍ଯ୍ୟ ଓ ଗୁରୁ ଗମ୍ଭୀରତା ଅନ୍ୟତ୍ର କେଉଁଠି ହେଲେ ସମ୍ଭବ ହୋଇ ପାରିନାହିଁ ।" (ପୃ-୧୫୭)

(ଘ) ଓଡ଼ିଆ ରୀତିକାବ୍ୟ : ସେ ଯାହା ହେଉ, ଚମତ୍କାର ବା ଆଲଙ୍କାରିକ କବିତା ଏକ କ୍ଷୁଦ୍ର ସୀମା ଭିତରେ ଏକ ବିଶିଷ୍ଟ ସୁନ୍ଦରାନନ୍ଦ ଯେ ସୃଷ୍ଟି କରିଥାଏ, ଏଥିରେ ସନ୍ଦେହ ନାହିଁ । ଶବ୍ଦ ଓ ଅର୍ଥର ଲୁଚକାଳି ଖେଳ ଏକପ୍ରକାର ମାନସିକ ଆନନ୍ଦ ଦେଇଥାଏ । ତେଣୁ ଏ ଧରଣର କବିତାକୁ ପ୍ରକୃତରେ ଭାଷାର ଅଳଙ୍କାର କୁହାଯିବା କଥା । ସମୃଦ୍ଧ ଭାଷାର ପରିବ୍ୟାପ୍ତ ଓ ଅବହେଳିତ କଣ୍ଠମାଳରୁ ଏହି କବିତା ସର୍ବୋତ୍କୃଷ୍ଟ ସୁନ୍ଦରାନନ୍ଦ ସୃଷ୍ଟି କରିଥାଏ । ଯଦି କବିତାର ଏକ ସଙ୍ଖ୍ୟା ହୁଏ ଭାଷାର କାରିଗରି, ତେବେ କେବଳ ଓଡ଼ିଆ ନୁହେଁ, ସକଳ ଭାଷାରେ ଏହି ଶ୍ରେଣୀୟ କାବ୍ୟ କବିତା ଏକ ବିଶିଷ୍ଟ ଆସନ ଦାବୀ କରିପାରିପାରେ । କିନ୍ତୁ ଏ ଦାବୀ ଅଧିକାଂଶ ସ୍ଥଳରେ କ୍ଷୁଣ୍ଣ ହୁଏ ଯେତେବେଳେ ଏହି କାବ୍ୟ କବିତା ରୁଚିବନ୍ତ ଉତ୍ସାହକୁ ପରିଣତ କରେ ଏକ ରୁଗ୍ଣ, ବିକୃତ, ଅର୍ଥହୀନ ଆତିଶଯ୍ୟରେ, ଯେଉଁଠି ପଦ୍ୟର ଗୋଟାଏ ପ୍ରକାର ମାପକୁ, କବିତାର ନିଜସ୍ୱ ଓ ଏକାନ୍ତ ପ୍ରକୃତି ବୋଲି, ଭ୍ରମକୁ ସତ୍ୟ ବୋଲି ଗ୍ରହଣ କରାଯାଏ । ଓଡ଼ିଆ ରୀତି ବା ଆଲଙ୍କାରିକ କାବ୍ୟ-କବିତାରେ ଏହି ଶ୍ରେଣୀୟ କାବ୍ୟ-କବିତାର ସକଳ ଦୋଷ ଓ ସକଳ ଗୁଣର ଆମେ ବ୍ୟାପକ ପ୍ରାଚୁର୍ଯ୍ୟ ଦେଖିବାକୁ ପାଇବା—ବେଶୀ ଦୋଷ, କମ୍ ଗୁଣ ।" (ପୃ-୧୭୭)

(ଙ) ଭଞ୍ଜୀୟ କବିଶକ୍ତି : ଉପେନ୍ଦ୍ର ଯେ ପ୍ରଚୁର ପରିମାଣରେ ବିଶୁଦ୍ଧ କବିଶକ୍ତିର ଅଧିକାରୀ ଥିଲେ ଏହାର ବହୁ ନିଦର୍ଶନ ସେ ଗୁଡ଼ି ଯାଇଛନ୍ତି । କିନ୍ତୁ ମନେହୁଏ ଯେ ଏକ ଭ୍ରାନ୍ତ ଉତ୍ସାହର ଆତିଶଯ୍ୟ ଏହି ସହଜ କବିଙ୍କ ଅନ୍ତଃସ୍ଥଳର ସୁକୁମାରୀ ସରସ୍ୱତୀଙ୍କୁ କବିତା ନାଁରେ ନବୋଧ ପାଣ୍ଡିତ୍ୟର ଗୋଟାଏ ଭାରି ଗଦା ତଳେ ଚାପିଦେଇ, ନିଶ୍ୱାସ ଚପି ମାରି ଦେଇଥିଲା । ସେ ଗୁଡ଼ି ଯାଇଥିବା ବିପୁଳ ରଚନାବଳୀର ଅଧିକାଂଶ ଏହା ହିଁ ପ୍ରମାଣିତ କରେ ।" (ପୃ-୧୭୭)

(ଚ) ଗୋପାଳକୃଷ୍ଣଙ୍କ ମହିମା : ଗୋପାଳକୃଷ୍ଣଙ୍କ କବି ମହିମାର ନିଃସନ୍ଦେହ କବିଟି ଏହି ଯେ ଓଡ଼ିଆରେ ସମସ୍ତ ବୈଷ୍ଣବ ଗୀତିକାର ଓ କବିମାନଙ୍କ ଭିତରେ ତାଙ୍କରି ରଚନା ସବୁଠାରୁ ଅନୁବାଦ-ଅନୁକୂଳ । କାରଣ ସେ ରଚନାର ମହତ୍ତ୍ୱ ବାହ୍ୟ ଶବ୍ଦାଡମ୍ବରରେ ନାହିଁ, ଅଛି ଅନ୍ତର୍ନିହିତ ଏକ ସାରବସ୍ତୁରେ ଯାହାର ସମ୍ମାନ

ପୃଥିବୀର ସବୁଠି । ତାହା ବୋଲି, ଗୋପାଳକୃଷ୍ଣଙ୍କ ଗୀତାବଳୀର ରାଗରାଗିଣୀ ବା ପଦ ଯୋଜନାର ମାଧୁର୍ଯ୍ୟ ଅନ୍ୟମାନଙ୍କଠାରୁ ନ୍ୟୂନ ବୋଲି ଭାବିବାର ମଧ୍ୟ କୌଣସି କାରଣ ନାହିଁ । ସମ୍ପୂର୍ଣ୍ଣ ଆସ୍ଫାଳନ ଶୂନ୍ୟ ଭାବରେ ରାଗରାଗିଣୀ ଦେଖା ଦେଇଛନ୍ତି ଯେପରି ଗୋପାଳକୃଷ୍ଣ ସଙ୍ଗୀତରେ ସମ୍ପୃକ୍ତ ଭାବର ଅନୁଗାମୀ ହୋଇ, ସେହିପରି ମଧ୍ୟ କମ୍ଭୁତମ ସଙ୍ଖ୍ୟାର ଶବ୍ଦ ଦେଇ ଭାବ ସବୁ ଆପଣାକୁ ପ୍ରକାଶିତ କରି ରଖିଛନ୍ତି, ଯାହା କେବଳ ଉଚ୍ଚତମ ସୃଜନୀ ପ୍ରତିଭାଠାରେ ହିଁ ଦେଖା ଦେଇଥାଏ । ଗୀତଗୁଡ଼ିକର ସୂକ୍ଷ୍ମ କୋମଳ ଭାବରାଜି ମଧ୍ୟ ପ୍ରକଟିତ କରି ରଖିଛନ୍ତି ଏକ ବ୍ୟକ୍ତିତ୍ୱ ଓ ଆତ୍ମା ଯାହା ଅବସ୍ଥିତ ଥିଲା ଉଚ୍ଚ ଆଧ୍ୟାତ୍ମିକ ସ୍ତରରେ ।" (ପୃ ୨୧୩)

(ଛ) ସାମନ୍ତସିଂହାର ଲେଖନୀ : ସାମନ୍ତସିଂହାର ଲେଖନୀ ଆମର ପାର୍ଥିବ ଆଖିକୁ ଐଶ୍ୱରିକ ପ୍ରଣୟ ସହିତ ପରିଚିତ କରାଇଛି; କିନ୍ତୁ ରାଧାକୃଷ୍ଣଙ୍କର ଇତର ପ୍ରଣୟ ସ୍ରୋତରେ ଭାସିଯାଇ ସେହି କବି ଲେଖନୀ ଖସି ଆସିଛି ଯୌନ କାନ୍ତିବତୀର କୁତ୍ସିତ ସ୍ଥୂଳତାକୁ । ଓଡ଼ିଶା ଦେଶର ବୈଷ୍ଣବମାନଙ୍କ ନିକଟରେ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ଏକ ଚିରସଙ୍ଗୀ ଗ୍ରନ୍ଥ । କିନ୍ତୁ ଅପୂର୍ବ ମହିମାଯୁକ୍ତ ସଙ୍ଗେ ସଙ୍ଗେ ଏ ଗ୍ରନ୍ଥରେ ଯେ ଦୁଃଖଦ ବହୁ ଉପାଦାନ ରହିଗଲା, ତାହା ଯେ କୌଣସି ନିରପେକ୍ଷ ସମାଲୋଚକ କହିପାରେ । (ପୃ ୧୯୨)

(ଜ) କବିସୂର୍ଯ୍ୟଙ୍କ ଲଲିତା : ଗୀତ ଗୋବିନ୍ଦରେ ପ୍ରଣୟୀ ଓ ପ୍ରଣୟିନୀଙ୍କୁ ଏକାଠି କରାଇବା ମାଧ୍ୟମିକଟି ଏକ ପ୍ରକାର ବ୍ୟକ୍ତିତ୍ୱହୀନ । ନିଜେ ପ୍ରଣୟୀ ଓ ପ୍ରଣୟିନୀ ମଧ୍ୟ କେବଳ ଦୁର୍ବଳ ଭାବୋଚ୍ଛ୍ୱାସ ମାନଙ୍କର ବିଗ୍ରହ ମାତ୍ର । କିନ୍ତୁ କବିସୂର୍ଯ୍ୟଙ୍କ ଚମ୍ପୂରେ ଏ ସମସ୍ତେ ରକ୍ତ ମାଂସର ପରିଚିତ ବ୍ୟକ୍ତିତ୍ୱ ଧାରଣ କରି ଆଶା ଓ ନିରାଶାରେ ଆନ୍ଦୋଳିତ ହୋଇଛନ୍ତି ଓ ବିଶ୍ୱର ସକଳ ପ୍ରଣୟୀଜନ ପରି ପରସ୍ପରକୁ ପାଇବା ପାଇଁ ଛଳନା ଓ ଚାତୁରୀର ଆଶ୍ରୟ ନେଇଛନ୍ତି । ଏ ସବୁ ଭିତରେ କବିସୂର୍ଯ୍ୟଙ୍କ ଚମ୍ପୂ କାବ୍ୟର ଲଲିତାଟି ହୋଇ ଉଠିଛି ସମଗ୍ର ବୈଷ୍ଣବ କାବ୍ୟ ଜଗତର ଚତୁରୀତମା ଦୂତିକା । ଭାବପ୍ରବଣ ଓ ପରସ୍ପର ପ୍ରତି ନିରଲମ୍ବ ଭାବରେ ଆସକ୍ତ ଦୁଇ ପ୍ରଣୟୀଜନଙ୍କୁ ମିଳାଇବା ଆଗରୁ ଏହି ଦୁଷ୍ଟ—ମଧୁର ଦୂତୀ ମଜା ଦେଖିବା ପାଇଁ ସେମାନଙ୍କୁ ଏକ ପ୍ରକାର ନାକରେ ଦଉଡ଼ି ଲଗେଇ ଟଣାଟଣି କରି ଛାଡ଼ିଛି । (ପୃ ୨୦୬)

(ଝ) ଆଧୁନିକ କବିତା : ପାଠକେ, ସାହିତ୍ୟର ଦୀର୍ଘ ଇତିହାସରେ 'ବିଦ୍ରୋହ ବା ବିପ୍ଳବ' ନୂଆ ନୁହେଁ । କେତେକ ଗୋଡ଼କୁ ଉପରକୁ ଟେକି ମୁଣ୍ଡରେ ଚାଲିବା 'ନୂଆକଥା' ବା ଚାଞ୍ଚଲ୍ୟକର ଘଟଣା ହୋଇପାରେ କିନ୍ତୁ ତାହାକୁ କୌଣସି ମତେ ଗତିର ଏକ ବିପ୍ଳବମୂଳକ ରୂପ ବୋଲି କହି ହେବ ନାହିଁ । ଯେ କୌଣସି ବିପ୍ଳବ ଏକାନ୍ତରେ ଆସ୍ତିକ । ତାହା ସାଧାରଣତଃ ହୋଇଥାଏ ଅନ୍ୟାୟ ବା ଅସଙ୍ଗତ

ବିରୁଦ୍ଧରେ ଜେହାଦ, ତାହା ହୋଇଥାଏ ଅନୁଷ୍ଠାନର ଅତ୍ୟାଚାର ବିରୁଦ୍ଧରେ ଯୁଦ୍ଧ ଘୋଷଣା ତାହା ସର୍ବଂସହା ଧରଣୀର ସାମୟିକ ଭୂମିକମ୍ପ ପରି । ସ୍ନାୟୁଶକ୍ତିହୀନ ଏ ସବୁ ତଥାକଥିତ 'ନୂତନ' କବିତାରେ କାହିଁ ସେ ଧର୍ମୀୟ କୋଧ ବା ଜେହାଦ୍‌ର ଉଷ୍ଣତା ? (ପୃ-୩୮)

(ଓ) ଗୋପୀନାଥ ମହାନ୍ତିଙ୍କ ଗଦ୍ୟଶୈଳୀ : ସବୁଜମାନଙ୍କର ଏ ପ୍ରକାର ଉଦ୍ୟାନକାଳୀନ ମଧ୍ୟବର୍ତ୍ତୀୟ ପରିବେଶ ପରେ ହଠାତ୍ ଦେଖାଦେଲେ ଗୋପୀନାଥ ମହାନ୍ତି, ଯାହାଙ୍କର ଅଚଷ୍ଟା, ଝାଣ୍ଟୁଆ, ଆବୁଝାବୁଆ ଗଦ୍ୟ ଆମ ସାମନାକୁ ଆଣି ଦେଲା ରୁକ୍ଷ ଜମି, ଗହନ ଜଙ୍ଗଲ, ବଙ୍କାଟଙ୍କା ପର୍ବତଶୃଙ୍ଗଶ୍ରେଣୀ ଓ କ୍ଷିପ୍ର ବେଗବତୀ ନଦୀକୁ । ଏଇଠି ଆମେ ଭେଟିଲୁ ଏକ ନୂତନ ଗଦ୍ୟଶୈଳୀ, ଯାହା ଏକ ଅସାଧାରଣ ବ୍ୟକ୍ତିତ୍ୱର ସ୍ୱାକ୍ଷର ବହନ କରି ଚାଲିଛି । ଏ ପ୍ରକାର ଗଦ୍ୟ କେବଳ ଗୋପୀନାଥ ମହାନ୍ତି ଲେଖିପାରନ୍ତି, ଆଉ କେହି ନୁହେଁ । (ପୃ: ୪୦୨)

ବିଶେଷ କୌଣସି ପ୍ରୟାସ ସ୍ୱୀକାର ନ କରି ଚୟନ କରାଯାଇଥିବା ଉପରୋକ୍ତ ଅଂଶଗୁଡ଼ିକରୁ ମାନସିଂହଙ୍କ ରଚନାର ବୈଶିଷ୍ଟ୍ୟ ଅନୁଭବ କରାଯାଇ ପାରେ । ତାଙ୍କ ଧାରଣାର ସ୍ପଷ୍ଟତା, ଅଭିବ୍ୟକ୍ତିର ସ୍ୱରବୈଚିତ୍ର୍ୟ, ବାକ୍‌କେଳି, ଶବ୍ଦଚୟନ-ଦକ୍ଷତା, ବାକ୍ୟ-ଭଙ୍ଗୀ, ସ୍ୱାତନ୍ତ୍ର୍ୟର ଉପଲବ୍ଧି ଶକ୍ତି, ସାଧାରଣର ଅସାଧାରଣୀକୃତ ପ୍ରକାଶ-କ୍ଷମତା, ଭାବ-ରୂପର ସମ୍ବନ୍ଧ ଉଦ୍‌ଘାଟନ ପ୍ରୟାସ ଓ ପାଟବ, ଅଭିଜ୍ଞାତ ଓ ସାଧାରଣୀୟ ଅଭିବ୍ୟକ୍ତିଗତ ମନୋଜ୍ଞ ସମନ୍ୱୟ ପ୍ରଭୃତି ବହୁଗୁଣର ପରିଚୟ ଏଥିରୁ ମିଳିଥାଏ । ଅବଶ୍ୟ ତାଙ୍କର ବାର୍ତ୍ତା, ବକ୍ତବ୍ୟ ବା ମତାମତକୁ ସବୁ କ୍ଷେତ୍ରରେ ସମସ୍ତେ ନିଶ୍ଚୟ ସ୍ୱୀକାର କରିବେ ଏହା ନୁହେଁ କିନ୍ତୁ ପୃଥିବୀର କେଉଁ ସମାଲୋଚକର ସବୁ କଥାକୁ ବା ସମସ୍ତେ ସ୍ୱୀକାର କରିଛନ୍ତି ? ସମାଲୋଚନା ବିଶେଷତଃ ତାହା ଯେତେବେଳେ ଏକ ମୂଲ୍ୟାୟନନିଷ୍ଠ ସମାଲୋଚନା, ସେତେବେଳେ ମତାନ୍ତର ଏକ ଅପରିହାର୍ଯ୍ୟ ସମ୍ଭାବନା । ସେଥିପାଇଁ ମତାନ୍ତରକୁ ମନାନ୍ତରରେ ପରିଣତ କରି କାହାର 'ବ୍ୟକ୍ତିତ୍ୱ'ର 'ଶ୍ରାଦ୍ଧ' କରିବାକୁ ଯିବା ସୃଷ୍ଟିଜଗତରେ ଚରମ ଅଧୋଗତିର ହିଁ ପରିଚୟ ବହନ କରିବ, ଏଥିରେ ସନ୍ଦେହ ନାହିଁ । ସ୍ଥାନ କାଳଗତ ମାମୁଲି ତ୍ରୁଟି ଓ ମତାମତ ଗତ ଯାବତୀୟ ଆନୁକୂଲତା ଓ ପ୍ରତିକୂଳତା ସତ୍ତ୍ୱେ, ସୃଷ୍ଟିଶୀଳ ବିଶିଷ୍ଟ ଦୃଷ୍ଟିଭଙ୍ଗୀ ହେତୁ ମାନସିଂହ-ଇତିହାସ ଯେ ଓଡ଼ିଆ ସାହିତ୍ୟର ଇତିହାସ କ୍ଷେତ୍ରରେ ନିଶ୍ଚିତ ଭାବରେ ଏକ ଐତିହାସିକ ଆସନ ଲାଭ କରିବ ଏଥିରେ ସନ୍ଦେହ ନ ଥାଇ ପାରେ ।

ତୁଳନାତ୍ମକ ସୂଚନା ପ୍ରଦାନ ମାନସିଂହ-ଇତିହାସର ଅନ୍ୟ ଏକ ଲକ୍ଷଣୀୟ ବିଭବ । କିନ୍ତୁ ଏ ତୁଳନା ସୁରେନ୍ଦ୍ର ମହାନ୍ତିଙ୍କ ତୁଳନାପରି ବ୍ୟାପ୍ତି-ଭିତ୍ତିକ ନୁହେଁ ।

ସୁରେନ୍ଦ୍ର ମହାନ୍ତି ଇତିହାସର ବିଭିନ୍ନ ପର୍ଯ୍ୟାୟକୁ ମୁଖ୍ୟତଃ ତୁଳନା କରିଛନ୍ତି । ଉଦାହରଣ ସ୍ୱରୂପ ରେନାଁସା ସହିତ ଭକ୍ତି ଆନ୍ଦୋଳନର ତୁଳନା । ମାନସିଂହ ସେପରି କରି ନାହାନ୍ତି । ମାନସିଂହ ଜଣେ ବିଦଗ୍ଧ ସାହିତ୍ୟ ପାଠକ ଭାବରେ ବିଶ୍ୱର ବିଭିନ୍ନ ସାହିତ୍ୟ ସହିତ ପରିଚିତ । ତେଣୁ ସାହିତ୍ୟର ମୂଲ୍ୟ କଳନା ପ୍ରସଙ୍ଗରେ ସାମୟିକ ଭାବେ ସେ ବିଭିନ୍ନ ସାହିତ୍ୟ-କୃତିର ଦୃଷ୍ଟାନ୍ତ ଦେଇଛନ୍ତି । ମୁଖ୍ୟତଃ ସଂସ୍କୃତ, ଇଂରାଜୀ, ହିନ୍ଦୀ ବଙ୍ଗଳା ସାହିତ୍ୟରୁ ହିଁ ସେ ଏଥିପାଇଁ ଦୃଷ୍ଟାନ୍ତ ସଂଗ୍ରହ କରିଛନ୍ତି । ତହିଁରୁ କେତୋଟି ଦୃଷ୍ଟାନ୍ତ ଏଠାରେ ସଂଗ୍ରହ କରାଯାଇ ପାରେ ।

ଜଗନ୍ନାଥ ଦାସଙ୍କ ଭାଗବତ ସମ୍ପର୍କରେ କହିବାକୁ ଯାଇ ସେ ଲେଖିଛନ୍ତି: ଏ ଉତ୍କଳ ଦେଶରେ ଜଗନ୍ନାଥଙ୍କ ଭାଗବତର ଲୋକପ୍ରିୟତା ଆମକୁ ସ୍ମରଣ କରାଏ ଇଂରାଜୀ ଭାଷା ଜନତା ଭିତରେ ବାଇବଲର ସେହି ଇଂରାଜୀ ଅନୁବାଦ କୁହାଯାଏ ଅଥରାଇଜ୍ଡ଼ ଭର୍ସନ । ଏଇ ଅନୁବାଦ ଏପରି ବହୁ ସନ୍ଥ ପଣ୍ଡିତଙ୍କ ସହଯୋଗରେ କରାହୋଇଥିଲା, ଯେଉଁମାନଙ୍କର କବି ବା ଲେଖକ ଭାବରେ କୌଣସି ହେଲେ ଖ୍ୟାତି ନ ଥିଲା । କିନ୍ତୁ ବାଇବଲର ଏହି ଅନୁବାଦ ଅସାଧାରଣ ମାଧୁର୍ଯ୍ୟମୟ ହୋଇଉଠିଛି । ଇଂରାଜୀରେ ତେଣୁ 'ବାଇବଲୀୟ ବାକ୍‌ରୀତି' ବୋଲି ଏକ ଶୈଳୀର କଥା କୁହାଯାଏ, ଯାହା ସହଜରେ ବର୍ଣ୍ଣନୀୟ ନୁହେଁ । ଜଗନ୍ନାଥଙ୍କ ଭାଗବତ ଅନୁବାଦରେ ଆମେ ଏହି 'ବାଇବଲୀୟ ବାକ୍‌ରୀତି' ଦେଖିବାକୁ ପାଉ । ଦାସଙ୍କ ଏହି ଓଡ଼ିଆ ଭାଗବତ ଏକ ଆନୁବାଦିକ ବସ୍ତୁ । ଇଂରାଜୀ ବାଇବଲର ଅଥରାଇଜ୍ଡ଼ ଭର୍ସନ ପରି । ଜଗନ୍ନାଥଙ୍କ ଭାଗବତର ଅନୁବାଦ ମଧ୍ୟ ଯଥାର୍ଥ ନୁହେଁ, ସୁନିର୍ଦ୍ଦିଷ୍ଟ ଓ ସୁସ୍ପଷ୍ଟ ମଧ୍ୟ ନୁହେଁ । କିନ୍ତୁ ଇଂରାଜୀ ବାଇବଲ୍ ପରି ଏଥିରେ ମଧ୍ୟ ଆମେ ପାଉ ସେହି ଏକ ପୁଣ୍ୟ ଗନ୍ଧ, ସେହି ସୁକୁମାର ଗତିଶୀଳତା, ସେହି ସହଜାତ ଗାମ୍ଭୀର୍ଯ୍ୟ ଓ ନୈତିକତା ଓ ଆଧ୍ୟାତ୍ମିକତାର ସେହି ସମୁଚ୍ଚ ବାୟୁସ୍ତର, ଯାହା ଶ୍ରୋତା ଓ ପାଠକର ହୃଦୟକୁ ଅବାଧରେ ପ୍ରଭାବିତ କରି ବସେ । ସମସ୍ତ ଓଡ଼ିଆ ସାହିତ୍ୟରେ ଏକମାତ୍ର ଏଇ ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ଭାଗବତରେ ହିଁ ଆମେ ସେହି ରହସ୍ୟମୟ 'ବାଇବଲିକ୍ ବାକ୍‌ସୃଷ୍ଟି' ଦେଖିବାକୁ ପାଉ ।" (ପୃ ୧୫୬)

ଭଞ୍ଜ ସାହିତ୍ୟର ଯୌନ-ବର୍ଣ୍ଣନା ସମ୍ପର୍କରେ ସାମାନ୍ୟ ତୁଳନାତ୍ମକ ସୂଚନା ଦେଇ ସେ ଲେଖିଛନ୍ତି, ଆଧୁନିକ ବିଶୁଦ୍ଧିବାଦୀମାନେ କିନ୍ତୁ ସ୍ମରଣ ରଖିବା ଉଚିତ ଯେ, ଏମିଲ ଜୋଲା ବା ଡି. ଏଇଚ୍ ଲରେନ୍ସଙ୍କ ବିଶ୍ୱବିଖ୍ୟାତ ଉପନ୍ୟାସମାନଙ୍କରେ ଯୌନ-ବ୍ୟବହାର ବା ମାନବିକ ପ୍ରଣୟ—ବ୍ୟାପାର ଯେପରି ଭାବରେ ବିଶ୍ୱଜନ ଆଗରେ ପରିବେଷିତ ହୋଇଛି, ସେ ତୁଳନାରେ, ଉପେନ୍ଦ୍ରଙ୍କ ବର୍ଣ୍ଣନାରେ କୌଣସି ଅପରାଧ ଧର୍ତ୍ତବ୍ୟ ହିଁ ନୁହେଁ । (ପୃ ୧୮୩) ଭଞ୍ଜୀୟ ଶବ୍ଦ-କସରତ୍ ସମ୍ପର୍କରେ ମଧ୍ୟ ସେ ସବିଶେଷ ତୁଳନାତ୍ମକ ସୂଚନା ପ୍ରଦାନ କରିଛନ୍ତି । (ପୃ ୧୮୩)

ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତସିଂହାର ତାଙ୍କ ମତରେ ଇଂରାଜୀ ସ୍ପେନ୍‌ସର୍ଙ୍କ ସହିତ ତୁଳନୀୟ । ତାଙ୍କ ଭାଷାରେ "ଗମ୍ଭୀର ମନୋରମ କାରୁଣ୍ୟ ସହିତ ଅପୂର୍ବ ସାଙ୍ଗୀତିକତାର ମିଳନ ଘଟିଛି ଅଭିମନ୍ୟୁଙ୍କ କବିତାରେ । ଏହି ହେତୁ ତାଙ୍କୁ ଓଡ଼ିଆ ସାହିତ୍ୟର ସ୍ପେନ୍‌ସର୍ କହିବା ହୁଏତ ଯଥାର୍ଥ ହେବ ।" (ପୃ ୧୯୩) ଭକ୍ତ ଚରଣଙ୍କୁ ସେ ପୁଣି ତୁଳନା କରୁଛନ୍ତି ମାଥ୍ୟୁ ଆର୍ଣ୍ଣୋଲ୍‌ଡଙ୍କ ସହିତ "ଯାହାକୁ 'ଇନ୍‌ଷ୍ଟାଇଡ଼୍' ବା ଦେବ ପ୍ରେରିତ କହି ପାରିବା ମଥୁରାମଙ୍ଗଳର କବି ଭକ୍ତ ଚରଣ ସେ ଶ୍ରେଣୀର କବି ନୁହନ୍ତି । ଇଂରେଜୀ କବି ମାଥ୍ୟୁ ଆର୍ଣ୍ଣୋଲ୍‌ଡଙ୍କ ପରି ସେ ଓଡ଼ିଆ ଜାତିର ସାଂସ୍କୃତିକ ଜଗତରେ ନିଜକୁ ପ୍ରତିଷ୍ଠିତ କରି ଯାଇଛନ୍ତି, ପ୍ରତିଭାର ସ୍ୱତଃ-ଉତ୍ସାରିତ, ଅନିବାର୍ଯ୍ୟ ଭାବରାଜି ଦ୍ୱାରା ତେତେ ନୁହେଁ, ଯେତେ ଏକ ପଣ୍ଡିତ ଓ ସୁଧୀଜନର ବିଜ୍ଞ ଦର୍ଶନ ଓ ଉପଦେଶାବଳି ଦ୍ୱାରା ।" (ପୃ ୧୯୫) ଅନ୍ୟତ୍ର ଯଦୁମଣି ବୀରବଲଙ୍କ ସହିତ ତୁଳିତ । "ଉତ୍ତର-ଭାରତରେ ବୀରବଲଙ୍କ ପରି ଓଡ଼ିଶାରେ ଯଦୁମଣି ମହାପାତ୍ର ପ୍ରତିତ୍ପନ୍ନମତିତ୍ୱ ଓ ନର୍ମବାକ୍ ପାଇଁ ଏକ ଚିର ଆନନ୍ଦ ଦାୟକ କାହାଣୀରେ ପରିଣତ ହୋଇ ଯାଇଛନ୍ତି ।" (ପୃ ୧୯୬-୭)

ମାନସିଂହଙ୍କ ତୁଳନାତ୍ମକ ବିଚାରରେ ଆମର ବ୍ୟାସକବି ଫକୀର ମୋହନ ଇଂରାଜୀ ଔପନ୍ୟାସିକ ଓ କବି ଟମାସ ହାର୍ଡି (Thomas Hardy) ଙ୍କୁ ସ୍ମରଣ କରାଇଥାନ୍ତି । ଜନ ସାଧାରଣଙ୍କ ଲୌକିକ ଭାଷାକୁ, ଏବଂ ମାଟି-ଓ-ପ୍ରକୃତି-ସହିତ-ଘନିଷ୍ଠ ଭାବରେ ସଂପୃକ୍ତ ଥିବା ନର ନାରୀଙ୍କୁ ସାହିତ୍ୟରେ ବ୍ୟବହାର କରିବା କେବଳ ନୁହେଁ, ସେଇ ନିରକ୍ଷର, ଚୀରବାସ ଅଧମମାନଙ୍କ ଦେଇ ହିଁ ଆମକୁ ବିଶ୍ୱଜନନୀତାର ସ୍ୱାଦ ନେଇ ପାଇବାରେ, ସକଳ ବିଖ୍ୟାତ ପାଶ୍ଚାତ୍ୟ ଔପନ୍ୟାସିକ-ମାନେ ମଧ୍ୟରେ ସେନାପତି ଆମକୁ ଇରେଜ ଔପନ୍ୟାସିକ ଟମାସ୍ ହାର୍ଡିଙ୍କୁ ହିଁ ସ୍ମରଣ କରାଇଥାନ୍ତି । ସେନାପତି ଟମାସ ହାର୍ଡିଙ୍କର ଆଂଶିକ ସମସାମୟିକ ଥିଲେ । ହାର୍ଡିଙ୍କ ପରି ସେନାପତି ଥିଲେ ଉଭୟ କବି ଓ ଗାଳ୍ପିକ ଏବଂ ତାଙ୍କର ପରି ସହର ଓ ଗ୍ରାମାଞ୍ଚଳର ନିମ୍ନ ଶ୍ରେଣୀର ଚରିତ୍ରମାନଙ୍କୁ ବ୍ୟବହାର କରି ହିଁ ପରମ ସୃଷ୍ଟି ସବୁ ଛାଡ଼ି ଯାଇଛନ୍ତି । କିନ୍ତୁ ସେନାପତି ଓ ହାର୍ଡି ବା ବିଶ୍ୱସାହିତ୍ୟର ଅନ୍ୟ ଯେ କୌଣସି କୀର୍ତ୍ତି ମାନଙ୍କ ଭିତରେ ଏକ ବିରାଟ ପାର୍ଥକ୍ୟ ଏହି ଯେ ସେନାପତି ଏକମାତ୍ର ମହାପୁରୁଷ ଯେ କି ଗୋଟିଏ ଭାଷାକୁ ମୃତ୍ୟୁ ମୁଖରୁ ରକ୍ଷା କଲେ ଓ ପାଂଶୁ ଶୀଳ ଭାବରେ ନାନା ଉତ୍କୃଷ୍ଟ ସୃଷ୍ଟି ଦେଇ ତାକୁ ଅସାଧାରଣ ଭାବରେ ରୁଙ୍କିମନ୍ତ ମଧ୍ୟ କରି ଦେଇ ଗଲେ ଯଦିଓ ସେ ଲୋକ ଜୀବନରେ କେବେ ହେଲେ ଲେଖକୀୟ ଖ୍ୟାତିର କଳ୍ପନା ହିଁ କରି ନ ଥିଲେ । ଜୀବନଯାକ ତାଙ୍କର ଏକମାତ୍ର ସ୍ୱପ୍ନ ଥିଲା ସେ ଯେଉଁ ଜାତିରେ ଜନ୍ମ ଗ୍ରହଣ କରିଥିଲେ, ତାର ସେବା କରିଯିବା ।" (ପୃ ୨୭୯)

କବିବର ରାଧାନାଥ ରାୟ ଓ ଭକ୍ତ କବି ମଧୁସୂଦନ ରାଓଙ୍କ ଯୁଗ୍ମକୃତ 'କବିତାବଳୀ', ଇଂରାଜୀ ରୋମାଣ୍ଟିକ ଶରୀଇରାଲର ଆଦ୍ୟାକୃତ Lyrical Ballads (1798), ଯାହାକି ଓ୍ୱାର୍ଡ଼ସ୍ ଓ୍ୱାର୍ଥ ଓ କଲରିଜଙ୍କ କବିତାବଳୀରେ ସମ୍ପୃକ୍ତ, ତା'ର ସହିତ ତୁଳିତ ହୋଇଛି । ମାନସିଂହ ଲେଖିଛନ୍ତି ଅଷ୍ଟାଦଶ ଶତାବ୍ଦୀର ଶେଷ ଅଙ୍କରେ କବି ଓ୍ୱାର୍ଡ଼ସ୍ ଓ୍ୱାର୍ଥ ଓ କଲରିଜଙ୍କ ଯୁଗ୍ମ ଉଦ୍ୟମର ଫଳ, 'ଲିରିକାଲ ବାଲାଡ଼୍ସ୍, ନାମକ କବିତା ସଂଗ୍ରହ ଇଂରେଜୀ ସାହିତ୍ୟରେ ଯେପରି ଏକ ଭାଷା ପ୍ରତି ନବଯୁଗ ଆରମ୍ଭ କରି ଦେଲା ବୋଲି କୁହାଯାଏ, ଓଡ଼ିଆରେ ରାଧାନାଥ ମଧୁସୂଦନଙ୍କ ଯୁଗ୍ମଚେଷ୍ଟାର ଫଳ କବିତାବଳୀ ସମ୍ପର୍କରେ ତାହା ହିଁ କୁହାଯାଇପାରେ ।" (ପୃ ୨୭୧) ବର୍ଣ୍ଣନାଶୀଳତା ଦୃଷ୍ଟିରୁ ରାଧାନାଥଙ୍କୁ ଭଞ୍ଜଙ୍କ ସହିତ ତୁଳନାତ୍ମକ ବିଚାରରେ ଆଣିବାର ଚେଷ୍ଟା ମଧ୍ୟ କରାଯାଇଛି ।(ପୃ ୨୭୨)

ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ମାୟାଦେବୀ' କାବ୍ୟର ବିଚାର ପ୍ରସଙ୍ଗରେ ଉକ୍ତିର ମାନସିଂହ ଲେଖିଛନ୍ତି, "ଟେନିସନ୍‌ଙ୍କ 'ପ୍ରିନ୍‌ସେସ୍' ପରି ଏ କାବ୍ୟର ଭିତରେ ଭିତରେ ଅନୁପମ ସାଙ୍ଗୀତିକ ମାଧୁର୍ଯ୍ୟମୟ କଥା ଓ ଗୀତ ସବୁ ଖଞ୍ଜାଯାଇଛି ଏବଂ ଏହାର ବଳିଷ୍ଠ ବ୍ୟକ୍ତିତ୍ୱର ମୁଦ୍ରା ସ୍ମରଣୀୟ । କାବ୍ୟର ପଂକ୍ତିଗୁଡ଼ିକ ବ୍ରାଉନିଙ୍ଗୀୟ ଶକ୍ତି ମିଲ୍‌ଟନୀୟ ଗମ୍ଭୀରତା ଯେପରି ଏକ ପାର୍ବତ୍ୟ ପ୍ରପାତ ପରି ବହି ଗ୍ଲାଲିଛନ୍ତି ।" (ପୃ ୩୭୨) କବି ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ସମ୍ପର୍କରେ ତାଙ୍କର ବିଚାର " ସେହି ତରୁଣ ବୟସରେ ବୈକୁଣ୍ଠ ନାଥଙ୍କ କବିତାରେ ଏପରି ଏକ ସ୍ୱଚ୍ଛତା ଓ ସାଙ୍ଗୀତିକତା ଦେଖା ଦେଇଥିଲା, ଯାହା ସ୍ମରଣ କରାଇ ଦେଉଥିଲେ ଇଂରେଜ କବି ସେଲିଙ୍କୁ । କିନ୍ତୁ ଦୁଃଖର କଥା ଯେ ସେ ଅଗ୍ନି କଣା, ସ୍ୱତଃ ସ୍ଫୁର୍ତ୍ତି ପ୍ରକାଶ, ଅତଶୀଘ୍ର ହଜିଗଲା ଓ ରହିଗଲା ଗଦାଗଦା 'ଡଗରେଲ୍', ବାଜେ କବିତା ।" (ପୃ ୩୭୨) କବି ଗଡ଼ନାୟକଙ୍କ ଗାଥା କବିତା ପ୍ରସଙ୍ଗରେ, "ଓଡ଼ିଶା ଓ ଭାରତ ଇତିହାସର ବହୁ ଅଜ୍ଞାତ ଘଟଣା, ଗଡ଼ନାୟକଙ୍କ ଲେଖନୀ ପ୍ରସାଦରୁ ପ୍ରେରଣାଦାୟୀ କାବ୍ୟ ଗୌରବ ପାଇ ପାରିଛନ୍ତି । ସେ ସବୁ ପଢ଼ିଲାବେଳେ ରବୀନ୍ଦ୍ର ନାଥଙ୍କ କଥା ଓ କାହାଣୀ ବରାବର ମନକୁ ଆସିଯାଇଥାଏ ।" (ପୃ ୩୭୮)—ଏ ମତ ମଧ୍ୟ ତାଙ୍କ ତୁଳନାତ୍ମକ ମନୋବୃତ୍ତିର ଅନ୍ୟ ଏକ ପରିଚୟ । କବି ପ୍ରାଣକୃଷ୍ଣ ସାମଲଙ୍କୁ ଇଂରାଜୀ କବି କୀଟ୍‌ସ୍‌ଙ୍କ ସହିତ ସେ ତୁଳନା କରିଛନ୍ତି । "ତାଙ୍କର ତରୁଣ ବୟସର ରଚନାମାନଙ୍କରେ ଆମେ କେତେଗୁଡ଼ିଏ ସୁଲକ୍ଷଣ ଦେଖିବାକୁ ପାଇଥିଲୁ, ଯାହା ଦେଖା ଦେଇଥିଲା ପ୍ରସିଦ୍ଧ ଇଂରେଜୀ କବି କୀଟ୍‌ସ୍‌ଙ୍କ ଆଦ୍ୟ ରଚନାବଳୀରେ ।" (ପୃ-୩୯୩) ଇତିହାସ ଗ୍ରନ୍ଥରେ ତାଙ୍କର ଶେଷ ତୁଳନାତ୍ମକ ଦୃଷ୍ଟିବୋଧ ହୁଏ ଗୋପୀନାଥ ମହାନ୍ତିଙ୍କୁ କେନ୍ଦ୍ର କରି । ମହାନ୍ତିଙ୍କ 'ହରିଜନ' ଉପନ୍ୟାସ ସମ୍ପର୍କରେ

ମାନସିଂହ ଲେଖିଥିବା ଏକମାତ୍ର ବାକ୍ୟ ହେଉଛି, "ମୁଲକରାଜ ଆନନ୍ଦଙ୍କ 'ଅଛୁତ' (The Untouchable) ଉପନ୍ୟାସ ଅପେକ୍ଷା, ସେହି ବିଷୟ ଉପରେ ମହାତ୍ମାଙ୍କ ହରିଜନ ଅଧିକ ବାସ୍ତବ ଓ ଅଧିକ ଶକ୍ତିଶାଳୀ ମନେହୁଏ ।" (ପୃ-୪୦୩)

ଏସବୁ ଦୃଷ୍ଟାନ୍ତରୁ ମାନସିଂହଙ୍କ ତୁଳନାତ୍ମକ ବିଗ୍ରହର ପ୍ରୟାସର ପ୍ରମାଣ ସ୍ପଷ୍ଟ । ଏ ପ୍ରସଙ୍ଗରେ Mathew Arnold 'Touchstone Method'କୁ ଆମେ କେତେକାଂଶରେ ସ୍ମରଣ କରିପାରିବା, ଏଥିରେ ସନ୍ଦେହ ନାହିଁ ।

ଇତିହାସ ପ୍ରତି ମାନସିଂହଙ୍କ ଦୃଷ୍ଟିକୋଣର ସୂଚନା ପୂର୍ବରୁ ଦିଆଯାଇଛି । ଐତିହାସିକ ପୃଷ୍ଠଭୂମି (Historical Background) ବର୍ଣ୍ଣନା ବା ନିର୍ଦ୍ଧାରଣରେ ମାନସିଂହ ବିସ୍ତୃତିକୁ ପସନ୍ଦ କରିନାହାନ୍ତି । ଡକ୍ଟର ନଟବର ସାମନ୍ତରାୟଙ୍କ 'ଇତିହାସ'ରେ ଏ ଦିଗରେ ବିପୁଳ ସାଧନାମୟ ଯେଉଁ ବିସ୍ତୃତ ତାତ୍ପର୍ଯ୍ୟାତ୍ମକ ଅନୁଶୀଳନ ପରିଲକ୍ଷିତ ହୁଏ, ମାନସିଂହଙ୍କ ଇତିହାସରେ ତାହା ନାହିଁ । କିନ୍ତୁ ମାନସିଂହ ଯେ ଏହାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରିଛନ୍ତି ବା ଏ ସମ୍ପର୍କରେ ଆଦୌ କିଛି ଲେଖିନାହାନ୍ତି, ତାହା କୁହାଯାଇ ନ ପାରେ । ଏ ଦୃଷ୍ଟିରୁ ସେ ଅତି ସଂକ୍ଷିପ୍ତ ଓ ଯଥାଯଥ । ଏଥିରେ ବେଳେ ବେଳେ ତାଙ୍କର ଦୃଷ୍ଟି ସ୍ୱାତନ୍ତ୍ର୍ୟର ମଧ୍ୟ ପରିଚୟ ମିଳିଥାଏ । ଧର୍ମାଦି ପ୍ରସଙ୍ଗୀୟ ଇତିହାସରୁ ଅନାବଶ୍ୟକ ପୁଙ୍ଖାନୁପୁଙ୍ଖତାକୁ ସେ ପରିହାର କରିଛନ୍ତି । ସଂକ୍ଷେପତଃ ସମୟର ଏକ ସାମାନ୍ୟଧର୍ମୀ ସ୍ପଷ୍ଟ ଧାରଣା ସୃଷ୍ଟି କରିବା ହିଁ ହୋଇଛି ତାଙ୍କ ପ୍ରୟାସର ଉଦ୍ଦେଶ୍ୟ । ଗ୍ରନ୍ଥର ପ୍ରଥମ ତିନି ଗୋଟି ଅଧ୍ୟାୟ, ସପ୍ତମ ଅଧ୍ୟାୟର 'ଐତିହାସିକ ପୃଷ୍ଠଭୂମି', ନବମ ଅଧ୍ୟାୟର 'ଐତିହାସିକ ପୃଷ୍ଠଭୂମି' ଦଶମ ଅଧ୍ୟାୟର 'ପଶ୍ଚାତ୍ପଟ : ସାହିତ୍ୟ ଓ ସାମନ୍ତ ପରିଷଦ', ଦଶମ ଅଧ୍ୟାୟର 'ପଶ୍ଚାଦବଲୋକନ' ଏବଂ ଏକାଦଶ ଅଧ୍ୟାୟର 'ଆଧୁନିକ ଯୁଗର ଆରମ୍ଭ' କ୍ରମରେ 'ଐତିହାସିକ ପଶ୍ଚାତ୍ପଟ'ର ଆଲୋଚନା ପ୍ରଭୃତିରୁ ମାନସିଂହଙ୍କ ଏହି ଅଭିମୁଖ୍ୟର ଯଥେଷ୍ଟ ପରିଚୟ ମିଳିଥାଏ । ଐତିହାସିକ ଗତି ପ୍ରକୃତିର ବିବରଣରେ ମାନସିଂହ ଲେଖନୀର ସଂକ୍ଷେପବାଦିତା ଓ ଯଥାଯଥତା ପାଇଁ ଦୃଷ୍ଟାନ୍ତ ଭାବରେ ଏକାଦଶ ଅଧ୍ୟାୟର ଦୁଇଟି ପରିଚ୍ଛେଦ ଏଠାରେ ଉଦ୍ଧାର କରାଯାଇପାରେ ।

"ଆଗରୁ କୁହାଯାଇଛି ଯେ ଓଡ଼ିଆମାନେ ଇତିହାସର ବହୁ ଯୁଗ ଧରି ଏକ ସମୃଦ୍ଧି ଜାତି ଭାବରେ ବଞ୍ଚି ରହିଥିଲେ । ସେମାନେ ତୋଳିଥିଲେ ଶିଳ୍ପୈଶ୍ୱର୍ଯ୍ୟମୟ ବିରାଟ ମନ୍ଦିରାବଳୀ, ନଦନଦୀମାନଙ୍କୁ ନିୟନ୍ତ୍ରିତ କରିଥିଲେ ବନ୍ଧ ଓ ଶଙ୍ଖ ସବୁ ଠିଆକରି, ଏବଂ ଶାସନ କରିଥିଲେ ଦୀର୍ଘକାଳ ଧରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏକ ବିରାଟ ସାମ୍ରାଜ୍ୟ । କିନ୍ତୁ ଏହା ମଧ୍ୟ ସୂଚିତ ହୋଇଛି ଯେ ଏହି ସମୃଦ୍ଧ ଓଡ଼ିଆ ଜାତିର ଦୁର୍ବିପାକମୟ ଦୀର୍ଘଦଶାର ଆରମ୍ଭ ହୋଇଗଲା ସମ୍ରାଟ ପ୍ରତାପରୁଦ୍ରଙ୍କ ରାଜତ୍ୱରେ, ମୁସଲମାନ ଶାସିତ ବଙ୍ଗଳାରୁ ସ୍ୱାଧୀନ ହିନ୍ଦୁ ଓଡ଼ିଶାକୁ ଚୈତନ୍ୟଙ୍କ ଆଗମନର ପ୍ରାୟ ସମକାଳରେ । ଚୈତନ୍ୟ ପୁରୀରେ ଅବସ୍ଥାନ କରୁଥିଲାବେଳେ ହିଁ

ଓଡ଼ିଶାର ଏକ ବିସ୍ତୃତ ଅଞ୍ଚଳ କୃଷ୍ଣଦେବ ରାୟ୍ ନେଇଗଲେ । ଦୁଇଶ ବର୍ଷ ଧରି ଓଡ଼ିଶାରୁ ବିଚ୍ଛିନ୍ନ ରହିବା ପରେ ୧୯୩୬ ରେ ଓଡ଼ିଆମାନେ ଏହି ନିଜ ଭୂମିର ମାତ୍ର ଅର୍ଦ୍ଧେକ ଫେରି ପାଇଲେ. ଅର୍ଦ୍ଧେକ ଚିରକାଳଲାଗି ହରେଇଲେ । ଚୈତନ୍ୟଙ୍କ ସ୍ୱର୍ଗ-ପ୍ରାପ୍ତିର ମାତ୍ର ତିନିଦଶକ ଭିତରେ ଓଡ଼ିଶାର ଯେଉଁ ଅଞ୍ଚଳ ବାକି ଥିଲା ତାହା ମଧ୍ୟ ସ୍ୱାଧୀନତା ହରେଇଲା । ସମ୍ରାଟ ଶାହାଜାହାନଙ୍କ ରାଜତ୍ୱରେ ଯେଉଁ ବିସ୍ତୃତ ଅଞ୍ଚଳ ଆଜି ବଙ୍ଗ ପ୍ରଦେଶର ମେଦିନୀପୁର ଓ ହୁଗୁଲୀ ବୋଲି ପରିଚିତ, ଯାହା ଚିରକାଳ ଧରି ଉତ୍କଳ ରାଜ୍ୟର ଅଭିନ୍ନ ଅଙ୍ଗ ହୋଇଥିଲା, ଶାସନ ଓ ବାଣିଜ୍ୟିକ ସୁବିଧା ପାଇଁ ସେତିକି ମୋଗଲ ସାମ୍ରାଜ୍ୟର ଓଡ଼ିଶା ସୁବ୍‌ବାରୁ କାଢ଼ି ନେଇ ବଙ୍ଗଳା ସୁବ୍‌ବା ସହିତ ମିଶାଇ ଦିଆଗଲା ଏବଂ ସେହି ସୂତ୍ରରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇପଡ଼ିଲା ଚିରକାଳ ଲାଗି । ପଶ୍ଚିମ ଓଡ଼ିଶାର ସମ୍ବଲପୁର ଓ ଗଡ଼ଜାତର ଅଞ୍ଚଳ ଯାହାର ଅନେକାଂଶ ବର୍ତ୍ତମାନର ମଧ୍ୟପ୍ରଦେଶରେ ଅବସ୍ଥିତ, ସେସବୁ ବହୁକାଳ ଧରି ରହିଲା ମରହଟ୍ଟାମାନଙ୍କ ଅଧୀନରେ । ସେଥିରୁ ସମ୍ବଲପୁର ଓଡ଼ିଶାକୁ ଫେରିଆସିଲା ୧୯୦୫ ରେ, ଖଡ଼ିଆଳ ଫେରିଆସିଲା ୧୯୩୬ ରେ, କିନ୍ତୁ ଚିରକାଳ ଲାଗି ବିଚ୍ଛିନ୍ନ ହୋଇ ରହିଗଲା ସେହି ମଧ୍ୟପ୍ରଦେଶରେ ବିସ୍ତୀର୍ଣ୍ଣ ଓଡ଼ିଆ ଭାଷାଭାଷୀ ଭୂମି, ସ୍ୱାଧୀନୋତ୍ତର ଯୁଗରେ ରାଜ୍ୟସୀମା ପୁନର୍ଗଠନ ବ୍ୟପଦେଶରେ ଓଡ଼ିଶା ବୋଧହୁଏ ଚିରକାଳ ଲାଗି ହରେଇ ବସିଲା ସିଂହଭୂମି, ୧୯୫୫ ରେ ।” ( ପୃ ୨୫୩ )

ଓଡ଼ିଶାର ଅଙ୍ଗଚ୍ଛେଦ ପରି ଦାରୁଣ ଐତିହାସିକ ଘଟଣାର ଏହି ବିବରଣୀ ପରେ ତା’ ଉପରେ ମାନସିଂହଙ୍କ ସଂକ୍ଷିପ୍ତ ବିଚାର ପ୍ରଣିଧାନ ଯୋଗ୍ୟ ।

“ଏକ ଐତିହାସିକ ଜାତିର ଏପରି ନିଷ୍ଠୁର ଜୀବନ୍ତ କର୍ତ୍ତନ ପୃଥିବୀରେ ଅନ୍ୟ କୌଣସିଠାରେ ଦେଖାଯାଇନାହିଁ, ଯେପରି ଘଟିଯାଇଛି ଓଡ଼ିଆମାନଙ୍କ ସମ୍ପର୍କରେ । ଶତାବ୍ଦୀ ଶତାବ୍ଦୀ ଧରି ଏ ଜାତିର ଦେହରୁ ତାର ଅବୟବ ଗୁଡ଼ିକୁ ଗୋଟି ଗୋଟି କରି ଯେ ଛିଣ୍ଡେଇ ନିଆଯାଇଛି କେବଳ ତାହା ନୁହେଁ, ମୂଳ ଗଣ୍ଡିଟାକୁ ମଧ୍ୟ ଖୋଜି ଖୋଜି କରି ହାଣି ଦିଆଯାଇଛି । ତାର ଐତିହାସିକ ଜାତିର ଏହି ଜୀବନ୍ତ ଅଙ୍ଗଚ୍ଛେଦ ଓ ରାଷ୍ଟ୍ରୀୟ ଅନ୍ୟାୟ ସବୁକୁ ମନରୁ ଏକାବେଳକେ ପୋଛିଦେବା ଯେ କୌଣସି ଶିକ୍ଷିତ ଓଡ଼ିଆ ପକ୍ଷରେ ସମ୍ଭବ ନୁହେଁ ।” ( ପୃ ୨୫୨-୫୩ )

ସାହିତ୍ୟର ଇତିହାସ ରଚନା ଏକ ସହଜ ବ୍ୟାପାର ନୁହେଁ । ଆଗ୍ରହର ବୈଚିତ୍ର୍ୟ ବା ବହୁମୁଖୀନତା ଭିତରେ ଏକ ସମନ୍ୱିତ ଶକ୍ତି ସଂଗ୍ରହ କରିବାର ଦକ୍ଷତା ନଥିଲେ ସର୍ବାଙ୍ଗସୁନ୍ଦର ଇତିହାସ ରଚନା ଏକ ଦୁରାଶା ମାତ୍ର । ଯାବତୀୟ ତଥ୍ୟବାଦୀ ବୈଜ୍ଞାନିକତା ସତ୍ତ୍ୱେ ଗୋଟାଏ ସାହିତ୍ୟର ସମସ୍ତ ଅଂଶ ପ୍ରତି ଆଲୋଚନାର ଆଗ୍ରହ ରକ୍ଷିପାରିବା ମଧ୍ୟ ସହଜସାଧ୍ୟ ବୋଲି କୁହାଯାଇ ନ ପାରେ । ଏପରି କଷ୍ଟକାଠିନ୍ୟକୁ ବରଣ କରି ସାହିତ୍ୟର ଯେଉଁ ଇତିହାସ ଗଢ଼ିଉଠେ, ତାର ଆଲୋଚନା ସେଇପରି ସ୍ୱଭାବରେ କଷ୍ଟକର ହୋଇଉଠିବା କଥା । ଏଥିପାଇଁ ବହୁମୁଖୀ

ବିଚାର ବିଶ୍ଳେଷଣକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏଠି ଏତିକି କହିବାର କଥା ଯେ, ଉତ୍କଳର ମାସ୍ଟ୍ରାଧର ମାନସିଂହଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ର ଏହା ପ୍ରଥମ ଆଲୋଚନା ନୁହେଁ । ଏହାର ସପକ୍ଷ, ବିଶେଷତଃ ବିପକ୍ଷରେ ବହୁକଥା କୁହାଯାଇ ସରିଚି, ଏପରି କି ବିଶିଷ୍ଟ ପ୍ରଗତିଶୀଳ କବି ଶ୍ରୀଯୁକ୍ତ ରବିନ୍ଦ୍ରନାଥ ସିଂହ 'ଓଡ଼ିଆ ସାହିତ୍ୟର ଧର୍ଷଣ' ବୋଲି ଏକ ପୁସ୍ତକ ମଧ୍ୟ ମାନସିଂହ ଓ ତାଙ୍କର ଏହି ପୁସ୍ତକ ବିରୁଦ୍ଧରେ ରଚନା କରିଛନ୍ତି । ଏ ବିବାଦକୁ ଜୀବନ ଓ ସାହିତ୍ୟ ପ୍ରତି ଦୃଷ୍ଟି-କୋଣର ଭିନ୍ନତାର ଏକ ବିବାଦ ବୋଲି କୁହାଯାଇ ପାରେ । କିନ୍ତୁ 'ଭ୍ରାନ୍ତ' ବା 'ମୂଲ୍ୟହୀନ' ମୂଲ୍ୟାୟନର ବିରୋଧ ଓ ନିରାକରଣ ଯଦି ଏପରି ପୁସ୍ତକର ସୃଷ୍ଟି-ହେତୁ ବୋଲି ଗ୍ରହଣ କରାଯାଏ, ତେବେ କେବଳ ମାନସିଂହଙ୍କ ବିରୁଦ୍ଧରେ ନୁହେଁ ଅନ୍ୟ ଏକାଧିକ ସମକାଳୀନ ଓଡ଼ିଆ ସମାଲୋଚକଙ୍କ ବିରୁଦ୍ଧରେ ହୁଏତ ସେପରି ପୁସ୍ତକ ଲେଖିବାର ଆବଶ୍ୟକତା ଅନୁଭୂତ ହେବ । ଯାହାର ସ୍ୱାଧୀନତା ଯେତେ ବେଶୀ ଓ ବ୍ୟାପକ, ତା' ପାଇଁ ସେହି ସ୍ୱାଧୀନତାର ମୂଲ୍ୟ ରକ୍ଷା ମଧ୍ୟ ସେତିକି ଦାୟିତ୍ୱପୂର୍ଣ୍ଣ । ସ୍ୱାଧୀନତାର ଅପବ୍ୟବହାର ଅନ୍ୟ କାହାର ବିଶେଷ କିଛି କ୍ଷତି କରି ପାରିବ ନାହିଁ । ଲେଖକର ସ୍ୱାଧୀନତା ଅପରିସୀମ ବୋଲି ତାର ଦାୟିତ୍ୱ ମଧ୍ୟ ଅତି ଗମ୍ଭୀର । ତାହା ସତ୍ତ୍ୱେ, ଜାଣିଶୁଣି କାହା ଦେହକୁ କାଦୁଅ ଫିଙ୍ଗିବାକୁ ଗଲେ, ସେ କାଦୁଅ ଫେରି ଆସିବ ସିନା, ସେଥିରେ କାହାର କିଛି କ୍ଷତି ହେବ ନାହିଁ । ମାନସିଂହ ଯଦି ସେପରି କରିଥାନ୍ତି ତେବେ ତା'ର ବ୍ୟତିକ୍ରମ ହୋଇ ନ ପାରେ । ତାର୍କିକ ନିୟମ (Logical Principles) ଗୁଡ଼ିକ ଚିରନ୍ତନ । ସେଥିରୁ କାହାର ମୁକ୍ତି ନାହିଁ । ସେ ଯାହାହେଉ, ଏହି ରଚନାଟିରେ ପୂର୍ବବର୍ତ୍ତୀ ଆଲୋଚନା ବା ନିନ୍ଦନ ବନ୍ଦନକୁ ବିଶେଷ ଭାବରେ ବ୍ୟବହାର କରିବାର ଉଦ୍ୟମ କରାଯାଇ ନାହିଁ । ବିଶ୍ୱ ସମୀକ୍ଷାଧାରାର ସାମ୍ପ୍ରତିକ ଗତି ଓ ପ୍ରକୃତି, ଓଡ଼ିଆ ସମାଲୋଚନାର ଇତିହାସ ଓ ବର୍ତ୍ତମାନ ଅବସ୍ଥା, ସମାଲୋଚନାର ବାସ୍ତବ ତାତ୍ପର୍ଯ୍ୟ ପ୍ରଭୃତି ବିଭିନ୍ନ ଦୃଷ୍ଟିକୋଣରୁ ଐତିହାସିକ, ତୁଳନାତ୍ମକ ଓ ବର୍ଣ୍ଣନାତ୍ମକ ବିଚାର ଧାରାର ସମନ୍ୱୟଭିତ୍ତିକ ଏକ ପଦ୍ଧତିରେ ଯଥାସମ୍ଭବ ଏକ ନିରପେକ୍ଷ ବିସ୍ତାରର ସାମାନ୍ୟ ଉଦ୍ୟମ ମାତ୍ର ଏଠାରେ କରାଯାଇଛି । ମାନସିଂହ ଇତିହାସର ନିନ୍ଦନ କିମ୍ବା ବନ୍ଦନ ନୁହେଁ, ତାହାର ଯଥାର୍ଥ ସ୍ୱରୂପୋପଲବ୍ଧି ପାଇଁ ଏ ଉଦ୍ୟମ ସାମାନ୍ୟ ମାତ୍ର । ସତ୍ୟାବିଷ୍କାର ଗବେଷଣାର କାର୍ଯ୍ୟ, ସେଠି ବ୍ୟକ୍ତିଗତ ରୁଚି ଅଭିରୁଚିର କୌଣସି ସ୍ଥାନ ନାହିଁ ବୋଲି ଏ ଲେଖକର ବିଶ୍ୱାସ । ମାନସିଂହ ଇତିହାସର ଅନ୍ତିମ ବାକ୍ୟଟି ସ୍ମରଣ କରାଇଦେଇ ଏ ଆଲୋଚନାର ଉପସଂହାର କରାଯାଉଛି ।

"ପାଠକ ପାଠିକା ମାନଙ୍କଠାରେ ଓଡ଼ିଶାର ପ୍ରତ୍ୟେକ ପୁରାଣ ପାଠକର ଯେଉଁ ମଧୁର କ୍ଷମା ଭିକ୍ଷା, 'ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇବ, ଲେଖନକାରର ଦୋଷ ନ ଧରିବ"—ତାହା ମଧ୍ୟ ମାଗି ରଖୁଛୁ ।" (ପୃ. ୪୧୨)

# ମାନସିଂହଙ୍କ କବିତାରେ ଶାଶ୍ୱତ ପ୍ରଣୟ ଚେତନା

**ଅଧ୍ୟାପକ ଶ୍ରୀ ରାଘବାନନ୍ଦ ନାୟକ**

ମାୟାଧର ମାନସିଂହଙ୍କ ସୃଷ୍ଟି ସମ୍ଭାର ବିପୁଳ-ଏତେ ବ୍ୟାପକ ଓ ସମ୍ପ୍ରସାରିତ ତାର ପରିଧି ଓ ପୃଷ୍ଠଭୂମି ଯେ ତା ମଧ୍ୟରୁ ମଣିମୁକ୍ତା ସଂଗ୍ରହ କରିବା ସାଧନା ସାପେକ୍ଷ । ଉନ୍ନତ ବନସ୍ପତିଭରା ବିରାଟ ଅରଣ୍ୟ ମଧ୍ୟରୁ ନାଁ ନ ଜଣା ଅଜଣା ଫୁଲର ସୁରଭି ବେଳେବେଳେ ଏତେ ଗଭୀର ସମ୍ବେଦନରେ ପ୍ରାଣକୁ ମହକାଇ ଦିଏ ଯେ ତାହା ବନଯାତ୍ରୀକୁ କରିଦିଏ ମଧୁମୟ । ମାନସିଂହଙ୍କ କାବ୍ୟ ଜଗତର ଏହି ବିସ୍ତୃତି ମଧ୍ୟରେ ସେହି ମନମତାଣିଆ ଅରଣ୍ୟ କୁସୁମ ଗୁଡିକ ହିଁ ମନେହୁଏ ତାଙ୍କ କାବ୍ୟ ଚେତନାର ଶ୍ରେଷ୍ଠ ଅଭିବ୍ୟକ୍ତି; ତାହାହିଁ ତାଙ୍କର ମୃତ୍ୟୁଞ୍ଜୟୀ ଭାବସତ୍ତା । ତାହାହିଁ ତ ଶ୍ରେଷ୍ଠ କବିତା ଯାହା ଆମକୁ ଗଭୀର ଅଭିଭୂତ କରେ । କାରଣ ନିଭୃତ ଚିତ୍ତଲୋକର ଅତଳସ୍ପର୍ଶ ସମୁଦ୍ରରେ ଏହା ରଚନା କରେ ସ୍ପନ୍ଦନ । ମୁହୂର୍ତ୍ତିର ଅନୁଭୂତିରୁ ତାର ଉଦ୍‌ଭବ ହେଲେ ବି, ଧୂଳି ମାଟିର ପୃଥିବୀ ଉପରେ ଜୀବନର ବିଚିତ୍ରଲୀଳା ମଧ୍ୟରୁ ତାହା ରସ ସଂଗ୍ରହ କରି ପୁଷ୍ପିତ ହେଲେ ମଧ୍ୟ ଏକ ଅଖଣ୍ଡ ଅମୂର୍ତ୍ତି ଅଥଚ ଶାଶ୍ୱତ ହୃଦୟର କାହାଣୀ ଏହି କବିତାରେ ସଞ୍ଜୀବିତ ଥାଏ । ମାତ୍ର ଚିରନ୍ତନ ହୃଦୟାବେଗ ତ ନୂତନ ମଧ୍ୟରେ ଚିର ପୁରାତନ । ତାର ପରିବର୍ତ୍ତନ ନାହିଁ, ପରିବର୍ଜନ ନାହିଁ । ସେହି ଏକ ସୁର ବିଭିନ୍ନ ଯୁଗରେ ଝଂକୃତ ହୋଇଛି; ଭାବରେ ଏକା, ପ୍ରକାଶରେ ଖାଲି ଯାହା ବିଚିତ୍ରତା । ତାକୁ ଆମେ ଶାଶ୍ୱତ କବିତା ବୋଲି କହି ପାରିବା ।

କେବଳ ମାନସିଂହ କାହିଁକି ଯେ କୌଣସି କବିର ମହାନତା ଏହି ଶାଶ୍ୱତର ମାନଦଣ୍ଡରେ ବିଚାର କରାଯାଇ ପାରେ । କୌଣସି ଦେଶ, କୌଣସି କାଳର ମାପକାଠିଠାରୁ ଏହା ଭିନ୍ନ । ମହାକାଳ ବହୁସୃଷ୍ଟିକୁ ଅବହେଳାରେ ଫୋପାଡ଼ି ଦିଏ, ସ୍ମରଣର ବାଲୁକାବେଳାରେ ବହୁ ପଦ ଚିହ୍ନ ଲିଭିଯାଏ—ମାତ୍ର ଦେଶ କାଳାତୀତ ଏହି ଅମର ଭାବସତ୍ତା ଶାଶ୍ୱତ ଚେତନା ଗର୍ଭିତ କବିତା କାଳର

କପୋଳତଳେ ଶୁଭ୍ର ସମୁଜ୍ଜ୍ୱଳ ଜ୍ୟୋତିଷ୍ମାନ୍ ତାରକାଭଳି ଜକ ଜକ କରୁଥାଏ । ଲୌକିକ ଜଗତରେ ବ୍ୟକ୍ତିଗତ ଅନୁଭବଗୁଡ଼ିକ ସ୍ୱଳ୍ପାୟୁ । ପୂର୍ବରାଗ, ଅନୁରାଗ, ପ୍ରେମ, ମିଳନ, ବିରହ, ଈର୍ଷା, ମାନ, ଅଭିମାନ, ଜୀବନ, ଯୌବନ, ଆତ୍ମକାଙ୍କ୍ଷା ପ୍ରଭୃତି ଭାବାବେଗ ମଣିଷ ମନରେ କ୍ଷଣିକ ପାଇଁ ଆସେ, ଚାଲିଯାଏ । ମଣିଷ ମନରେ ଏହି ସଂଶ୍ଲେଷଣ, ଭଙ୍ଗାଗଢ଼ା ବୁଦ୍ ବୁଦ୍ ଭଳି ତା'ର ଜନ୍ମମୃତ୍ୟୁ ମୁହୂର୍ତ୍ତିକ ମଧ୍ୟରେ ସଂଘଟିତ ହୁଏ । ଶିଳ୍ପରେ ରୂପାନ୍ତରିତ ହେଲେ କିନ୍ତୁ ତାହା ଅମର ହୋଇ ଦେଶ-କାଳାତୀତ ହୋଇପାରେ । ମାନସିଂହଙ୍କ କାବ୍ୟ ଚେତନାକୁ ବିଶ୍ଳେଷଣ କଲେ, ଆମେ ତା ମଧ୍ୟରେ ଏକ ଦରଦୀ ଚିରନ୍ତନ ହୃଦୟକୁ ଆବିଷ୍କାର କରୁ ।

ସେମାନେ ସମସ୍ତେ ଏହି ପୃଥିବୀ ଉପରେ ବିଚରଣ କରିଥିଲେ—ଦଳ ଦଳ କବି, ଦଳ ଦଳ ଶିଳ୍ପୀ, କଳାର ସାଧକଗଣ । ସମସ୍ତେ କିନ୍ତୁ ଗୋଟିଏ କଥା କହି ଯାଇଛନ୍ତି—ଏ ମାଟିର ଚଟାଣ ଉପରେ, ଆକାଶର ଗୁମ୍ବୁଜ ତଳେ ଓ କାଳ ସମୁଦ୍ରର ଅସୁମାରି ଢେଉର ପୃଷ୍ଠଭୂମିରେ ସବୁଠାରୁ ଶ୍ରେଷ୍ଠ ହେଉଛି ମଣିଷ ଓ ତାର ପ୍ରେମ । ଜଣେ କବିତ ଅତି ଉଚ୍ଚକିତ କଣ୍ଠରେ ଶୁଣାଇଛି ସମସ୍ତଙ୍କୁ—'ଶୁନ୍ ହେ ମାନୁଷ୍ ଭାଇ, ସବାର ଉପରେ ମାନୁଷ୍ ସତ୍ୟ ତାହାର ଉପରେ ନାହିଁ ।' ସବୁଠାରୁ ଆଶ୍ଚର୍ଯ୍ୟ କଥା ସବୁ ମଣିଷର କଣ୍ଠସ୍ୱରରେ ପ୍ରଣୟର ଭାଷା କିନ୍ତୁ ଏକାଭଳି । ଦେଶ କାଳ ସୀମା ଡେଇଁ, ବ୍ୟକ୍ତିତ୍ୱର ପରିଚୟ ଅତିକ୍ରମ କରି ଏକ ସାର୍ବଜନୀନ କଣ୍ଠସ୍ୱର ଏଥିରେ ଶୁଣିବାକୁ ମିଳେ । ଏହା ଯେମିତି ସେଇ ପ୍ରେମିକ ବୁଲ୍‌ବୁଲ୍‌ର ଶେଷଗାନ, ନିଜ ହୃଦୟ ରକ୍ତ ଦେଇ କଣ୍ଟକରେ ଛିନ୍ନଭିନ୍ନ ହୋଇ ପ୍ରେମର ଗୋଲାପକୁ ରକ୍ତାକ୍ତ କରିଛି । ବହୁ କଣ୍ଠରୁ ନୁହେଁ, ମନେ ହୁଏ ଯେପରି ବିଚିତ୍ର ମୂର୍ଚ୍ଛନାରେ ଏହା ଗୋଟିଏ କବିର ଜୀବନ ସଙ୍ଗୀତ । କାରଣ ପ୍ରତ୍ୟେକ ମଣିଷର ରକ୍ତର ଧାରା ଯେପରି ଲାଲ, ହୃଦୟର ସ୍ପନ୍ଦନ ସେହିପରି ଏକ ପ୍ରକାର । ତେଣୁ ପ୍ରଣୟର ଭାଷା ହୃଦୟରୁ ଝରି ଆସେ ବୋଲି କାଳ କାଳ ଧରି ବଞ୍ଚିରହେ । ଏହି ପ୍ରଣୟ ସଙ୍ଗୀତ ମଣିଷର ବୁଦ୍ଧିରୁ ଜାତ ନୁହେଁ, ବୁଦ୍ଧି କେବଳ ଏହାକୁ ଶାଣିତ ଓ କଳାତ୍ମକ କରେ ମାତ୍ର; ଏହା ପ୍ରକୃତରେ ହୃଦୟର ଗୋପନ କନ୍ଦରରୁ ଝରିଆସି ଆମର ଚେତନାକୁ ଗଭୀର ଭାବରେ ଅଭିଭୂତ ଓ ସ୍ପନ୍ଦିତ କରେ ।

ଯେଉଁ କେତୋଟି ଶାଶ୍ୱତ ହୃଦୟଭାବ କାବ୍ୟର ପ୍ରଧାନ ଉପଜୀବ୍ୟ, ପ୍ରଣୟ ଚେତନା ସବୁଠାରୁ ମୁଖ୍ୟସ୍ଥାନ ଅଧିକାର କରିଛି । ମଣିଷର ପ୍ରଣୟ ସଙ୍ଗୀତର ଝଙ୍କାରରେ ମିଳନ ଓ ବିରହର ସୁର ଅନୁରଣିତ ହୋଇଛି । କାବ୍ୟ ଜଗତରେ ଏହି ପ୍ରଣୟ ସଙ୍ଗୀତର ଗୌରବ ସ୍ମରଣାତୀତ ଯୁଗରୁ କାଳ କାଳାନ୍ତରରେ ଦେଶ ଦେଶାନ୍ତରରେ ପ୍ରତିଷ୍ଠା ପାଇଛି । ମଣିଷ ଜାତିର ତୀବ୍ରତମ ଅନୁଭବର କଥା ଯୋଗୁଁ ଏହା ଆଦିରସ ବୋଲି ପରିଚିତ । ଯୁଗର ପରିବର୍ତ୍ତନରେ ସମାଜ ଓ ବ୍ୟକ୍ତି ଚେତନା ଅନେକ

ବଦଳିଯାଏ, ଭାବ ବିନ୍ୟାସର ମଧ୍ୟ ପରିବର୍ତ୍ତନ ଘଟେ । ଏହି ବିନ୍ୟାସକୁ ଗ୍ରହଣ ଦେଲେ କୌଣସି କବି ପ୍ରଣୟର ବିଷୟବସ୍ତୁରେ ମୌଳିକତାର ପରିଚୟ ଦେଇ ପାରିବା ସମ୍ଭବ ହୋଇ ନାହିଁ । ମାସ୍ୟାଧର ମାନସିଂହଙ୍କ ମାନସିକ ଆବେଗ ଓ ଧର୍ମ ହେଉଛି ପ୍ରେମ । ତେଣୁ ଆଧୁନିକ କାବ୍ୟଜଗତରେ ସେ ଜଣେ ଶ୍ରେଷ୍ଠ ପ୍ରେମିକ କବି ଭାବରେ ପରିଚିତ । ତାଙ୍କର ଅଧିକାଂଶ କାବ୍ୟଗ୍ରନ୍ଥରେ ପ୍ରେମହିଁ ମୁଖ୍ୟସ୍ଥାନ ଅଧିକାର କରିଛି ।

ଯେ କୌଣସି କବିର ପ୍ରେରଣାର ଉତ୍ସ କୌଣସି ବ୍ୟକ୍ତି ବିଶେଷ ହୋଇ-ପାରେ । ହୃଦୟ ଉପରେ ତା'ର ପ୍ରଭାବ ହିଁ କବିତା ସୃଷ୍ଟିର କାରଣ ମଧ୍ୟ ହୋଇ-ପାରେ । ବଡ଼ କଥା ହେଲା କବିର ଉନ୍ମୁକ୍ତ ହୃଦୟ-ବ୍ୟକ୍ତି ସେଠାରେ ଉପଲକ୍ଷ ମାତ୍ର । ମାନସିଂହଙ୍କ ପ୍ରେମ କବିତା ଏକଦା ବହୁ ଜନପ୍ରିୟ ଥିଲା, ସେଥିପାଇଁ ଲୋକ-ମୁଖରେ ତାଙ୍କର ବ୍ୟକ୍ତିଗତ ଜୀବନ ମଧ୍ୟ ସନ୍ଦେହ ମୁକ୍ତ ନଥିଲା । ମାତ୍ର ମାନସିଂହ କହିଛନ୍ତି—"କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ନାରୀ ବା ପୁରୁଷ ଯେ ମୋର ସାହିତ୍ୟିକ ଜୀବନର ମୂଳଉତ୍ସ ଏକଥା ସ୍ୱୀକାର କରିବାର କୌଣସି କାରଣ ମୁଁ ଦେଖୁନାହିଁ । (ମୁଁ କାହିଁକି ଲେଖେ—ଡ଼: ମାନସିଂହ, ଡଗର ୧୪ଶ ବର୍ଷ, ୯ମ ସଂଖ୍ୟା) । ମୂଳ ପ୍ରେରଣାର ଉତ୍ସ ହେଉଛି ମାନବର ଆଦିମ ହୃଦୟାବେଗ । ମାନସିଂହଙ୍କର ଆଦ୍ୟକାଳ ଲେଖା 'ସେଦିନର କବିତା' ଗୁଚ୍ଛ ମଧ୍ୟରେ ସେହି ସୂଚନା ଆମେ ପାଉ । 'ରତି' କବିତାରେ କବି ଚିରନ୍ତନ ହୃଦୟାବେଗର ଅମୂର୍ତ୍ତି ଅନୁଭବକୁ ପ୍ରମୂର୍ତ୍ତି କରିଛନ୍ତି । ଜ୍ୟୋତ୍ସ୍ନାର ଶ୍ରେଣୀରେ ଯେ ଅବତରଣ କରେ, ତାର ନର୍ତ୍ତିତ ବେଣୀରେ ଭରିଦିଏ ସାରା ଭୁବନ; ସୁରଭିତ ଅଙ୍ଗରେ ଶୀକର ଶୀତଳ ପବନରେ ସେ ଜୀବନ ସାଥିରେ ଖେଳୁଥାଏ । ତାର ପରିଚୟ ହେଉଛି—ସେ ଆଦ୍ୟ, ଅନ୍ତ ଓ ବିଶ୍ୱର ସ୍ଥିତି, ସୃଷ୍ଟିର ନିୟମ ଓ ଜୀବନର ଗୀତ । ତାହା ହେଉଛି କୋଟି କୋଟି ବର୍ଷର ନିଭୃତ ଭାବନା, ଆତ୍ମାର ପ୍ରୀତି । ମାନବର ସେହି ଚିରନ୍ତନ ଭାବକଳ୍ପକୁ କବି ରୂପ ଦେଇଛନ୍ତି—

'ଲକ୍ଷ ଲକ୍ଷ ବଚନ ମୁଁ ଅଭିମାନ ମୌନ
ମୋ ପାଖରେ ବିଶ୍ୱର ସବୁହିଁ ଅଗୌଣ
ତରଳ ଜୀବନ ମୁହିଁ ମୁଖର ଛନ୍ଦ,
ଚିରକାଳ ଅନ୍ଧ, ଚିରକାଳ ମୌନ । (ରତି)

ଉଚ୍ଛଳ ଯୌବନ ହିଁ ସୃଜନ ପ୍ରେରଣାର ଆଦିଭୂମି । ବାସ୍ତବତା ଅପେକ୍ଷା ସ୍ୱପ୍ନ ହିଁ ତାର ଅତି ଅନ୍ତରଙ୍ଗ । ତରୁଣ ପ୍ରାଣର ଏ ଉଚ୍ଛ୍ୱାସରେ ପକ୍ଷୀ ଶ୍ରେଣୀର କୁଞ୍ଜରେ ବସି ବସନ୍ତର ଦିନ କାଟିବା ଅତ୍ୟନ୍ତ ସ୍ୱାଭାବିକ । ପୁଣି ଚନ୍ଦ୍ରତାରା ସହ ସାରା ବିଶ୍ୱ-ପ୍ରଦକ୍ଷିଣ କରିବାର ଯାଯାବରୀ ମନକୁ ରୁଦ୍ଧ କରିବା ମଧ୍ୟ ଅସମ୍ଭବ । ତେଣୁ କବି ଗାଇଛନ୍ତି—

'ତୁମ ଆଗମନ ସାଥେ ହେ ଯୌବନ ଜାଗିଛି ବାସନା।
ଅବାରିତ ଗତି ତା'ର, ନ ପାରେ ମୁଁ କରି ତାରେ ମନା ।
× × ×
ନଖିଳ ବକ୍ଷରେ ପୁଣି ଖୋଜେ, ଖୋଜେ ଜୀବନର ଡାକ
ହୃଦୟ ଆଲୋକ
ନ ପାଇଲେ କାନ୍ଦି, ପୁଣି ଖୋଜିବାକୁ ବାହାରେ ବାହାରେ' ।
(ଉଚ୍ଛଳ ଯୌବନ)

ସବୁଜ କବିଙ୍କର ଯୌବନର ସ୍ୱପ୍ନ ସହ ଏହି କବିତାଗୁଡ଼ିକର ସାମ୍ୟ ଦେଖାଦେଲେ ମଧ୍ୟ ପଳାୟନ ବାଦ ନୁହେଁ, ଜୀବନକୁ ଖୋଜିବାର ପ୍ରୟାସ ଏଠାରେ ପରିସ୍ଫୁଟ । ସେ ଅସୀମ ପଥର ପଥିକ ହେବାପାଇଁ ସୁରଭି ଶୀତଳ-ମଳୟ ରଥରେ କୁସୁମ ଫଗୁଲ ଫଗୁଣ ପୁରରେ କଳ୍ପନାର ରଥବାହି ଯାତ୍ରା କରିଥିଲେ । (ତରୁଣ କବିର ଆଶା) । ଏହି ଭାଷାସ୍ୱାନ ଅନୁଭବ ସବୁ ସେ ଅନାବୃତ ସ୍ୱଚ୍ଛତାରେ, ଅନାଡମ୍ବର ଭାଷାରେ ପ୍ରକାଶ କରିବାକୁ ଚାହିଁଛନ୍ତି । ଏଗୁଡ଼ିକ ପଢ଼ିଲେ ଆମ କାନରେ ବାଜେ ବନ୍ୟ ଝରଣାର କଳ କଳ ସଙ୍ଗୀତ ।

ତା ପରେ ଜୀବନର ଉପକୂଳକୁ ପ୍ଲାବନ କରି ଆସିଛି ପ୍ରେମ ; ମିଳନ ଓ ବିରହ ମଧ୍ୟରେ ଜୀବନକୁ ନୂଆଲୋକରେ ଦେଖିବାର ତୃଷ୍ଣା । ସୌନ୍ଦର୍ଯ୍ୟ ଓ ରୂପତୃଷ୍ଣା କବିର ପ୍ରାଣରେ ଯେଉଁ ଭାବତରଙ୍ଗ ସୃଷ୍ଟି କରିଛି, 'ପ୍ରଣୟୀ' କବିତାରେ ତା'ର ଅଭିବ୍ୟକ୍ତି ଦେଖ । ବକ୍ଷଭରା ପ୍ରଣୟର ନୂତନ ପୁଲକ ମଧ୍ୟରେ କବି ବସନ୍ତର ଉଦ୍ଦୀପନ ରୂପ ପ୍ରତ୍ୟକ୍ଷ କରିଛନ୍ତି । ବସନ୍ତ କରିଛି ଧରଣୀକୁ ମଧୁମୟ, ମଳୟ ହୋଇଛି ମତ୍ତ, କୁସୁମ ସୁରଭି ଚୁମ୍ବି ଆମ୍ରବକୁଳ ମଦାଳସା ପିକରମଣୀ ପ୍ରଣୟୀପାଇଁ ମଉଆ ପୂରବୀ ଗାଉଛି । ଏହି ପ୍ରତୀକ୍ଷାର ମୁହୂର୍ତ୍ତରେ ଏକ ଗଭୀରତର ସତ୍ୟ ଓ ପ୍ରେମାନୁଭୂତିକୁ କବି ଭାଷା ଦେଇଛନ୍ତି—

'ସବୁ ଉଆଣରୁ ପୀରତି-ଉଆଣ କଠିନ
ବାଳପି ବସିଲେ ବୋଧିବାର ଲୋକ ନଥାଏ,
କଠିନ ଆହୁରି ବାନ୍ଧିବା ଲୁହ ଆଖିର
ଯେତେ ପୋଛ, ପୁଣି ସେତିକ ଗୋ ବୁକୁ ବଥାଏ ।'
(ପ୍ରଣୟୀ)

ଓଡ଼ିଆ ଗୀତିକବିତାର ଧାରାରେ ପ୍ରେମମୂଳକ କାବ୍ୟ ଦୃଷ୍ଟିରୁ ଧୂପ (୧୯୩୧) ଅନବଦ୍ୟ ସୃଷ୍ଟି । ଏହି କବିତାଗୁଚ୍ଛଟି ଓଡ଼ିଆ କାବ୍ୟବେଦୀରେ ଶାଶ୍ୱତ ପ୍ରଣୟ ଚେତନାର ଶ୍ରେଷ୍ଠ ନୈବେଦ୍ୟ । କବିଙ୍କର ଅନୁଭବ ହୋଇଛି ଜୀବନରେ ନାରୀର

ପ୍ରଣୟଦାନ ସର୍ବଶ୍ରେଷ୍ଠ ଗୌରବ । କ୍ଷଣକାଳ ପାଇଁ ଯେଉଁ ଆନନ୍ଦ ସେ ପାଇଛନ୍ତି ତାହାତ ଅପରିମେୟ । (ଗୋପନ କଥା) ମୂର୍ଖ ଜନସାଧାରଣ ନ ବୁଝିଲେ ମଧ୍ୟ ଅଶ୍ରୁ ମୁକ୍ତାର ଯଥାର୍ଥ ମୂଲ୍ୟାୟନ ନ କରିଲେ ବି, ପ୍ରେମିକପାଇଁ ଯେଉଁ ନାରୀ ଅଶ୍ରୁ ଝରାଇଛି, କବି ଆଖିରେ ସେ ପରମ ପୂଜ୍ୟ । (ପାପ ଓ ପ୍ରେମ) । ମୁଦ୍ରିତ ବନ୍ଧ୍ୟ ଲୋଚନପାତରେ ପ୍ରିୟାକୁ ସେ ଜନ୍ମର ଏକ ଅବଚ୍ଛେଦ୍ୟ ସତ୍ତାରୂପରେ ଅନୁଭବ କରିଛନ୍ତି । ଅଶ୍ରୁରେ ହିଁ ପାଇଛନ୍ତି ପ୍ରିୟାର ଗଭୀର ସ୍ପର୍ଶ । ପ୍ରୀତିରେ ପୁଣି ଏତେ ବେଦନା ଓ ଏତେ ଆନନ୍ଦ ଯେ ଥାଏ ତାହା ପ୍ରଥମଥର ପାଇଁ ଅନୁଭବ କରିଛନ୍ତି । (ଅଶ୍ରୁର ଆନନ୍ଦ) । ଲୌକିକ ଦୃଷ୍ଟିରେ ପାପ ଓ ପୁଣ୍ୟର ମାପକାଠିରେ ପ୍ରେମକୁ ତଉଲ କରିବା ବୃଥା—ଲୁହ-ଦେଇ, ପ୍ରଣୟ ଦେଇ ପ୍ରେମିକା କବିଙ୍କ ଆଖିରୁ ଝରାଇଛି ଲୁହ, ତାଙ୍କୁ କରିଛି ପ୍ରଣୟ ବିଭୋର । (ପ୍ରିୟାର ସାଧନା) । ତେଣୁ ପ୍ରେମର ଭାଷା ସାଧାରଣ ଭାଷା ହେଲେ ମଧ୍ୟ, ସେହି ସାଧାରଣ ଶବ୍ଦଗୁଡ଼ିକ ନୂତନ ତାତ୍ପର୍ଯ୍ୟରେ ପ୍ରାଣସତ୍ତାକୁ ସ୍ନିଗ୍ଧ କରିଛି । ସମସ୍ତଙ୍କର 'ତମେ' ଅପେକ୍ଷା ପ୍ରେମିକାର 'ତମେ' ଡାକ ସେଥିପାଇଁ ଏତେ ମଧୁମୟ । (ପ୍ରେମର ଭାଷା) ।

ପ୍ରେମଠାରୁ ପ୍ରେମର ସ୍ମୃତି ଆହୁରି ମହୀୟାନ୍ । କୃଷ୍ଣାରଜନୀ, ଉପରେ ଭୀଷଣ ବାରିଦମାଳାର ଗର୍ଜନ, ଉଚ୍ଛୃଙ୍ଖଳ ଝଞ୍ଜା ବାୟୁର ତର୍ଜନ । ନିଶବ୍ଦ ସାରା ନଗରୀ, ପଥ ନିର୍ଜନ—କେବଳ ଭେକ ଓ ଝିଙ୍କାରୀର ଗର୍ଜନରେ ଧରଣୀ ପୂରି ଯାଇଛି । ଏହି ପୃଷ୍ଠଭୂମିରେ ଅଭିସାର ଲାଗି ଏକାକୀ ପଥପାର୍ଶ୍ୱରେ ଛିଡ଼ା ହୋଇଛି ନୂପୁର ଚରଣା, କୁସୁମରେ ଜଡ଼ିତ ସଜ୍ଜିତା କବି ପ୍ରେୟସୀ । ବରଷି ଯାଉଛି ସୁରଭିର ନିଶ୍ୱାସ । ରୋମାଣ୍ଟିକ କବିଙ୍କର ପ୍ରେମଭଳି ଅତୀନ୍ଦ୍ରିୟ ଓ ଅମୂର୍ତ୍ତ ରୂପ ନୁହେଁ, ଏଥିରେ ମୂର୍ତ୍ତ ଓ ଶରୀରୀ ରୂପ অତ୍ୟନ୍ତ ପରିସ୍ଫୁଟ ଭାବରେ ବର୍ଣ୍ଣିତ ହୋଇଛି । ଏଠାରେ ଅନ୍ନମୟ ଓ ଓ ମନୋମୟ ଉଭୟ ସତ୍ତା କବିଙ୍କ ପକ୍ଷରେ ପ୍ରତ୍ୟକ୍ଷ ସତ୍ୟ । ରୂପ, ରସ, ଗନ୍ଧ, ସ୍ପର୍ଶ ମାଧ୍ୟମରେ ଦେହ ମଧ୍ୟରେ ସେ ଅନୁଭବ କରିଛନ୍ତି ପ୍ରେମ, ଦେହକୁ ଆଶ୍ରୟ କରି ସେ ଦେହାତୀତକୁ ମଧ୍ୟ ଉପଲବ୍ଧି କରିଛନ୍ତି । ନାରୀର ପରିପୂର୍ଣ୍ଣ ରୂପ ହେଉଛି ତାର ପ୍ରେମ । ଆଷାଢ଼ ଆକାଶକୁ ଶଙ୍କା ନ କରି ଘର ଗୁଡ଼ା ପର ପାଶରେ ଠିଆ ହୋଇଥିବା ଅଭିସାରିକା ଏହି ତରୁଣୀର ଚନ୍ମୟୀ ଛବି, ସବୁ ଛାଡ଼ିଦେବାର ଆଷାଢ଼ ତଟିନୀ ଭଳି ନାରୀର ଏ କୂଳ ପ୍ଲାବନୀ ରୂପ ବୈଷ୍ଣବ ପ୍ରେମ ସାହିତ୍ୟରେ ହିଁ ଏତ ଉପଲବ୍ଧ ହୋଇଥିଲା । (ଆଷାଢ଼ର ଅଭିସାର) । ବୈଷ୍ଣବୀୟ କଦମ୍ବ କୁଞ୍ଜ ଭଳି ସହକାର ହୋଇଛି ପ୍ରଣୟର ସ୍ମୃତିପୀଠ । ଶଙ୍କିତ ମିଳନାକାଙ୍କ୍ଷୀ ଓ ହୃଦୟର ପୁଳକଭରା ଚମକରେ ବସୋଦ୍ଦୀର୍ଣ୍ଣ ଗୀତିରୁ ପ୍ରଣୟର ଏକ ଅନବଦ୍ୟ କାହାଣୀ ରଚନା କରି କବି କ୍ଷଣିକର ଆନନ୍ଦରେ ଅମୃତର ଆସ୍ୱାଦନ କିପରି ପାଇଛନ୍ତି ତାହା ବର୍ଣ୍ଣନା କରିଛନ୍ତି । ମଧୁମୟ ଯାମିନୀ ସାତ ମଳୟର ସ୍ପର୍ଶରେ ମାତି ଉଠିଥିଲା, ବନପକ୍ଷୀ ଗାଇ ଯାଉଥିଲା

କରୁଣ ମଧୁର ସଙ୍ଗୀତ । ଶଙ୍କିତ ଛଳ ଛଳ ଯୌବନର ଉଚ୍ଛଳ ପ୍ରକାଶ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ଏପରି ଇନ୍ଦ୍ରିୟ ସଚେତନ ସ୍ପର୍ଶାତୁର ଭାବରେ ରୂପାୟିତ ହୋଇଥିଲା । ପ୍ରେମିକର ଅନୁଭବରେ ତାର ପ୍ରିୟା ବିଶ୍ବର ଶ୍ରେଷ୍ଠ ରୂପସୀ; ପ୍ରେମ ବିଶ୍ବର ଶ୍ରେଷ୍ଠ ଅନୁଭବ, ସେହି ଧନରେ ସେ ହୁଏ ସମ୍ରାଟ । (ଏଇ ସହକାର ତଳେ) ।

ବିରହର କଷଟି ପଥରରେ ପ୍ରେମ-ସୁନାର ଯଥାର୍ଥ ପରଖ ହୁଏ । ବୈଷ୍ଣବୀୟ ବିରହ ସଙ୍ଗୀତ ବିଶ୍ବର ଶ୍ରେଷ୍ଠ ପ୍ରେମ କବିତାର ଗୌରବ ଲାଭ କରିଛି । ପ୍ରୀତି ଅନୁଭୂତିର ଅଗ୍ନିରେ ଜଳିପୋଡ଼ି ଯେଉଁ ବ୍ୟଥାର ସୁର ଜାଗିଉଠେ ତାହା ହୁଏ ଶ୍ରେଷ୍ଠ କବିତା । କବି ମାନସିଂହଙ୍କ ସେହି ଅନୁଭବର ପ୍ରକାଶ ଆମେ ଦେଖୁଁ ଯେତେବେଳେ ସେ କହିଛନ୍ତି—

'ମନେ ହୁଏ ଧୂପସମ ଦଗ୍‌ଧ ହୋଇ ବାଷ୍ପ ଯିବ ହୋଇ
ପ୍ରଣୟର ଅଗ୍ନି ଶେଯେ ପ୍ରଣୟୀର ଭସ୍ମ ଯିବ ଧୋଇ ।'

(ପ୍ରଣୟ ବ୍ୟଥା)

ଜୀବନ ବସନ୍ତରେ ତାଙ୍କର ପ୍ରିୟା ବିଧବା ପରଲୋକ, ଆଉ ସାରା ଜୀବନ ଲକ୍ଷେ ଫେରି ପାଇବାର ଆଶା ନାହିଁ । ତେଣୁ ପ୍ରିୟାର ସୁକୋମଳ ଚରଣ ସ୍ପର୍ଶପାଇଁ, ସେଇ ପଥରେ ଘାସ ହେବ ପାଇଁ କବି ପ୍ରାଣର ଆତୁରତା କାବ୍ୟ ଚେତନାକୁ ବେଦନାସିକ୍ତ କରିଛି । (ମିଳନ ପଥ) । ଜୀବନକୁ ଯେ ଆଲୋକମୟ କରିଥିଲା, ସେ ଆଜି ନାହିଁ । ବିଧବା ପ୍ରିୟାର ଶରୀର ସୌରଭ ଯେଉଁ ଅଙ୍ଗନର ଗଗନରେ ଭାସି ବୁଲୁଥିବ । ତାର ନୂପୁର ରବ ଯେଉଁଠି ଶବ୍ଦାୟିତ ହେଉଥିବ, ସେହି ଗୃହର ଯଦି ଶିଳାତଳ ସେ ପାଲଟି ଯାନ୍ତି । ତା ହେଲେ ପ୍ରିୟାର ପଦ ସ୍ପର୍ଶରେ ତାଙ୍କ ପାଷାଣ ହୃଦୟ ବାରବାର ଚମକିବ । (ବିଧବା ପ୍ରିୟା) । ଏହି ଭାବ ଆମେ ବହୁ ଯୁଗର ବହୁ କବି କଣ୍ଠରୁ ଶୁଣିଛୁଁ । ବିରହିଣୀ ରାଧା ମରଣ ପରେ କଦମ୍ବ ତଳେ ତାଙ୍କ ଶବକୁ ଶ୍ୟାମ ଯିବା ପଥରେ ରଖିଦେବାପାଇଁ ସଖିମାନଙ୍କୁ କହିଛନ୍ତି । କବି ମାନସିଂହଙ୍କ କବିତାରେ ମୃତ୍ୟୁ ଚେତନାର ଲହର ବିରହ ବଂଶୀର ସ୍ୱରଭଳି ହୃଦୟକୁ ସ୍ପର୍ଶ କରିଥାଏ । ତାଙ୍କର ଭଷ୍ମପାଣରେ ପ୍ରିୟାର ଦେହର ଗ୍ଲାଇ ପଡ଼ିବାକୁ, ଯଦି ସମ୍ଭବ ହୁଏ ସେଇ ଭସ୍ମ ଉପରେ ପଦ୍ମପାଦ ଗ୍ଭଲିବାପାଇଁ କବି କାମନା କରିଛନ୍ତି । ତାହାହେଲେ ମରଣ-ତୀରରେ ପୁଣି ସେ ନବଜନ୍ମ ପାଇବେ । ଏଇ ବିରହ କାନ୍ତ ଜୀବନକୁ କରିଛି ତାତ୍ପର୍ଯ୍ୟପୂର୍ଣ୍ଣ । ଭିତରେ ବାହାରେ ସବୁଆଡ଼େ ସେ ପ୍ରିୟାକୁ ଅନୁଭବ କରୁଛନ୍ତି । ତେଣୁ କବି କହିଛନ୍ତି—

'ବିରହ-ବିଧୂର ବିରହ ମଧୁର ଭାବେ ମୋ ବିରହୀ ହୃଦୟ,
ବିରହ ଯେ ହେଲା ଯୋଗ, ଭୋଗିବାକୁ ଦେହସାରା ମୋର ପ୍ରିୟା ।'

ଯଦି ଦେଖାହେବା ଏ ଜୀବନରେ ସମ୍ଭବ ନୁହେଁ, ଶେଷ ଜୀବନ ସ୍ମୃତିର ନିଧି କରି ଏ ପୃଥିବୀରେ ଏକ କରୁଣ ରାଗିଣୀ ଭଳିତ ସଞ୍ଚରିବ । (ସ୍ମୃତି) । ନିଶିଥ ଜ୍ୟୋତ୍ସ୍ନାପ୍ଲାବିତ ବିଜନ ନଦୀରେ ଏକାକିଆ ବଂଶୀସ୍ୱନ ଭଳି ମାନସିଂହଙ୍କର ଏହି ବିରହ କବିତାର ମୂର୍ଚ୍ଛନା କାଳ କାଳାନ୍ତରରେ ବିଶ୍ୱର ସକଳ ପ୍ରଣୟୀ ପ୍ରାଣରେ ବାରବାର ଝଂକୃତ ହେଉଥିବ ।

ତାଙ୍କ କବିତାରେ ଆଉ ଏକ ବିଭବ ଆମ ଆଗରେ ପରିସ୍ଫୁଟ ହୁଏ, ଯେତେବେଳେ କବିର ପ୍ରେୟସୀ ପରକୀୟା ନ ହୋଇ ହୋଇ ଅଛନ୍ତି ସ୍ୱକୀୟା । ତାଙ୍କ କାବ୍ୟ ଚେତନାର ଏହା ଏକ ନବ ରୂପାନ୍ତର । ବାହାରର ରୂପତୃଷ୍ଣା କ୍ରମଶଃ ଏକ ଗଭୀରତର ବ୍ୟାପକ ଅନ୍ତର୍ଲୀନ ରୂପତୃଷ୍ଣାରେ ପରିଣତ ହୋଇଛି । ପ୍ରଦୀପର ଆଲୋକରେ ନୁହେଁ, ଘନ ଅନ୍ଧକାରରେ ପ୍ରେୟସୀର ଜ୍ୱଳନ୍ତ ରୂପଶିଖା ସେ ଦେଖିଛନ୍ତି । (ରୂପାଲୋକ) ସଦ୍ୟସ୍ନାତା ପ୍ରେୟସୀକୁ ପୁଣି ପୂର୍ଣ୍ଣ ହେମନ୍ତର ଏକ ଅଂଶ ଭଳି କବିଙ୍କୁ ଉପଲବ୍ଧ ହୋଇଛି । (ହେମନ୍ତ ପ୍ରଭାତ) ପ୍ରିୟାର ସୋହାଗ ସ୍ପର୍ଶରେ କଠିନ ସଂସାର, ଲାଞ୍ଛନା ଓ ଦୁର୍ଭାଗ୍ୟର ନିଷ୍ଠୁରତା ଭୁଲି ତାଙ୍କର ପ୍ରାଣରେ ଜାଗି ଉଠିଛି କେଉଁ ଅତୀନ୍ଦ୍ରିୟ ସତ୍ତାର ଅଭିବ୍ୟକ୍ତି । (ସୋହାଗ) ସୁଖ ଦୁଃଖମୟ ଏହି ବିଚିତ୍ର ଧରଣୀର ଜୀବନ ପ୍ରବାହ ମନେହୁଏ ସ୍ୱର୍ଗ; ସ୍ୱର୍ଗ ଓ ମୁକ୍ତି ଅପେକ୍ଷା ଏ ଜୀବନ ଲୀଳା ବରଂ ସ୍ପୃହଣୀୟ ଲାଗେ । (ମୁକ୍ତି ନାହିଁ ଲୋଡ଼େ) ନାରୀ ସୌନ୍ଦର୍ଯ୍ୟର ବହିଃରୂପ ଅପେକ୍ଷା ଆତ୍ମାର ସୌନ୍ଦର୍ଯ୍ୟକୁ ପ୍ରେମର ମଧୁମୟ ଦୃଷ୍ଟିରେ ପ୍ରେୟସୀର ରୂପ ମଧ୍ୟରେ ସେ ଆବିଷ୍କାର କରନ୍ତି । ଆତ୍ମାର ସୌନ୍ଦର୍ଯ୍ୟ) ଆତ୍ମା'ର ସତ୍ୟବାହୀ ସାକ୍ଷୀ ସ୍ୱରୂପ ପ୍ରଣୟୀର ଦୁଇ ବାତାୟନ ଭଳି ନିଷ୍ପାପ, ରସମୟ, ସ୍ୱପ୍ନମୟ ବିମଳ ଦୁଇ ଆଖିର ଆତ୍ମସମର୍ପଣ ଲାଭ କରିବା ପାଇଁ, ସେଇ ସତ୍ୟର ଆସ୍ୱାଦନ ଲାଗି ଯୁଗେ ଯୁଗେ ପ୍ରେମିକ କବି ସତେ ଯେପରି ଧରାବତରଣ କରନ୍ତି । (ଧରାବତରଣ) 'ହେମଶସ୍ୟ' କବିତାଗୁଚ୍ଛରେ ଜୀବନର ଏହି ପରିପୂର୍ଣ୍ଣ ଦୃଷ୍ଟି ଆମେ ପ୍ରଥମେ ଆବିଷ୍କାର କରୁଁ । ଏଥିରେ ତାରୁଣ୍ୟର ଉଚ୍ଛୃଙ୍ଖଳ, ଗମ୍ଭୀର ଆତ୍ମବୋଧରେ ରୂପାନ୍ତରିତ ହୋଇଛି ।

କ୍ରମଶଃ ଏହି ଫଲ୍‌ଗୁ ଧାରା ତାଙ୍କ କାବ୍ୟର ବେଳାଭୂମିରେ ନିକ୍ଷିପ୍ତ ହୋଇ ଯାଇଛି । 'କୃଶ' କବିତା ଗୁଚ୍ଛରେ ଆମେ ଯେଉଁ ଚେତନାକୁ ସାକ୍ଷାତ କରୁ ତାହା ମଧୁସୂଦନୀୟ ରହସ୍ୟବାଦରେ ପୂର୍ଣ୍ଣ ଓ ଅତୀନ୍ଦ୍ରିୟ ଭାବ ସଙ୍କୁଳ । ଏଥିରେ ଅଛି ଜିଜ୍ଞାସା ଓ ଅନୁସନ୍ଧାନ—ପ୍ରେମ ପ୍ରତି ନାହିଁ ସେହି ମୁଗ୍ଧ ଭୃଙ୍ଗ ଦୃଷ୍ଟି, ଗୋଟିଏ ପ୍ରାଣରେ ଯାହାର କୋଟିଏ ସଖୀର ଆହ୍ୱାନ । ପ୍ରେମ ହେଉଛି ଏକ ବ୍ୟାପକ ଆଧ୍ୟାତ୍ମିକ ସତ୍ତା । ଏକ ଦୁର୍ଲ୍ଲଭ ବିଦେହୀ ରୂପକାନ୍ତ ନେପଥ୍ୟରେ ସେହି ଅରୂପର

ଅନୁସନ୍ଧାନ କରୁଁ କରୁଁ ତାଙ୍କର ଗଣ୍ଡ ଏକ ଅବ୍ୟକ୍ତ ପୁଲକରେ ଧୋଇ ଯାଉଛି । (ନୂତନ ପ୍ରଣୟ । ମନେ ଅପୂର୍ଣ୍ଣ ବୋଲି ସ୍ନେହ ମଧୁର ପୂର୍ଣ୍ଣତା ପଥରେ କବିଙ୍କର ଯାତ୍ରା (ପୂର୍ଣ୍ଣତା ପ୍ରାପ୍ତି) । କବିଙ୍କର ମନେ ହୋଇଛି ଏ ଯାତ୍ରା ଯେପରି 'ଯୁଗ ଯୁଗର' ଜନ୍ମଜନ୍ମାନ୍ତରର, ବ୍ୟାପ୍ତି ଏହାର ସୀମାହୀନ ଭବିଷ୍ୟତକୁ—

'ମନେ ହୁଏ କାହାରେ ମୁଁ ଖୋଜୁଛି ଅନ୍ତରେ
ବହୁ ଜନ୍ମେ, ବହୁ ଲୋକେ ଅନାଦି କାଳରୁ
ଉତ୍କଣ୍ଠେ ଧାଇଁଛି ତେଣୁ ସହସ୍ର ସଙ୍ଖ୍ୟରେ
ସେ ଜନ୍ମ ଶ୍ୟାମଳ ନାହିଁ କଲ୍ପ ତରୁ ମରୁ ।''

(ଏକାନ୍ତ ଏକାକୀ)

କବି ଏହି ଅନୁସନ୍ଧାନରେ ଏକ ମହାର୍ଘ ସତ୍ୟରେ ଉପନୀତ ହୋଇଛନ୍ତି । ତାହା ହେଉଛି କସ୍ତୁରୀ ମୃଗ ଭଳି ସେ ବାଟ ଅବାଟରେ ଯେଉଁ ଗନ୍ଧ ଲୋଭରେ ଘୂରି ବୁଲୁଥିଲେ, ସେ ଆବୃତ ହୋଇ ନିଜ ଅନ୍ତଃସ୍ଥଳରେ ଅବସ୍ଥିତ (କସ୍ତୁରୀ ମୃଗ) । ସେ ପରମପ୍ରିୟ ଭଗବାନ ତ ଭିତରେ ଅଛନ୍ତି, ତାଙ୍କୁ ଅନୁଭବ କଲେ ଅପୂର୍ଣ୍ଣ ହୁଏ ପୂର୍ଣ୍ଣ, ଭିକାରୀ ହୁଏ କୁବେର । (ଦର୍ଶନ ଗୌରବ) । ତେଣୁ ଏଠାରେ ପ୍ରେମର ଆକୃତି, ଭଗବତ୍ ପ୍ରାର୍ଥନାରେ ରୂପାନ୍ତରିତ ହୋଇ ଯାଇଛି । କାରଣ ମଣିଷର ଏହି ପ୍ରେମ ତ ସେହି ପ୍ରେମମୟ ମହାସମୁଦ୍ରର ତରଙ୍ଗ ମାତ୍ର । କବି ପ୍ରାର୍ଥନା କରିଛନ୍ତି—

'ହେ ପରମପ୍ରିୟ ମମ, ଭ୍ରମର ପ୍ରଣୟ
ଏକାନ୍ତ ଭରସା ଆଜ, ଏକଇ ସମ୍ପଦ
ସର୍ବଶକ୍ତି ମୁହିଁ ଆଜ, ସେ ଲଗି ନିର୍ଭୟ
ନ ନିଅ ସେ ଗରବର ପବିତ୍ର ଆନନ୍ଦ ।

( ଭ୍ରମର ଅହଙ୍କାର )

ମାନସିଂହ 'ମୁଁ କାହିଁକି ଲେଖେ' ଶୀର୍ଷକ ଆତ୍ମ ଲିପିରେ କହିଥିଲେ — ''ଜୀବନର ଯାହା ସୁନ୍ଦର, ଯାହା ସତ୍ୟ ମୁଁ କେବଳ ତାହାର ଉପାସକ ଓ ଭକ୍ତ ।'' (ଡଗର, ୧୪ଶ ବର୍ଷ, ୧ମ ସଂଖ୍ୟା) । କବି ମାନସିଂହଙ୍କ କାବ୍ୟ ଚେତନା ବହୁ ବିଚିତ୍ର ଭୂମିରେ ବିଚରଣ କରିଛି । ମାତ୍ର ଏହି ଶାଶ୍ୱତ ପ୍ରେମ ହିଁ ତା'ର ଶ୍ରେଷ୍ଠ ବିଭବ । ଏହି ଭାବଧାରା ତାଙ୍କୁ ସମକାଳୀନ ଯୁଗରେ ଏକ ମହାନ୍ ପ୍ରତିଭା ଭାବରେ ଚହ୍ନିତ କରିଛି । ଏଥିପାଇଁ ସେ କାଳକାଳକୁ ମଧ୍ୟ ଜନ ହୃଦୟରେ ସୁପ୍ରତିଷ୍ଠିତ ରହିବେ ।

# ରୋମାଣ୍ଟିକ୍ କବି ମାନସିଂହ

## ଅଧ୍ୟାପିକା ପ୍ରତିଭା ଶତପଥୀ

ସବୁଜ ଗୋଷ୍ଠୀର ସମସାମୟିକ ଭାବେ କବି ମାନସିଂ ସାହିତ୍ୟ ସାଧନା କରିଥିଲେ ହେଁ ସ୍ୱକୀୟ ମୌଳିକତା ଓ ନିଜସ୍ୱ ବିଶ୍ୱର ଧାରାରେ ତାଙ୍କ ସୃଷ୍ଟି ସ୍ୱତନ୍ତ୍ର ଭାବେ ଚିହ୍ନିତ ହୋଇଥାଏ । ତାଙ୍କ କବିତା ଗୁଡ଼ିକରେ ପ୍ରେମ, ସୌନ୍ଦର୍ଯ୍ୟ ଚେତନା, ପ୍ରକୃତି ପ୍ରୀତି, ଦେଶ ପ୍ରୀତି ଆଦି ବିଭାବ ଗୁଡ଼ିକ ପ୍ରଚୁର ରୋମାଣ୍ଟିକ୍ ପ୍ରବଣତାରେ ପରିପୁଷ୍ଟ । ଏହି ରୋମାଣ୍ଟିକ୍ ପ୍ରବଣତା କବି ପ୍ରାଣର ନିଜସ୍ୱ ଦୃଷ୍ଟିଭଙ୍ଗୀ ହେଲେ ହେଁ ପାଶ୍ଚାତ୍ୟ ରୋମାଣ୍ଟିକ୍ କବିମାନଙ୍କ ଅନୁଭୂତି ଓ ଅଭିଜ୍ଞତା ଦ୍ୱାରା ଏହା ପ୍ରଭାବିତ ବୋଲି କହିବାକୁ ହେବ । ଏ ସମ୍ପର୍କରେ କବି ମାନସିଂଙ୍କ ମତାମତ ପ୍ରମାଣ ଦିଏ— "କାବ୍ୟ ଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ, ଇଂରେଜ କବିମାନଙ୍କ ସଙ୍ଗେ ପରିଚୟ ଘଟି ନ ଥିଲେ ସେ ଅନୁଭୂତି ଏ ପ୍ରକାର ଆତ୍ମପ୍ରକାଶ କରି ନ ଥାନ୍ତା । ଆମ ସାହିତ୍ୟରେ ପ୍ରେମ କବିତାର ଅରଣ୍ୟ ରହିଛି, କିନ୍ତୁ ସେଥିରେ ବିଚିତ୍ରତା ନାହିଁ, ସେ ଜଙ୍ଗଲ ଯେପରି ଗୋଟିଏ ଜଙ୍ଗଲ । କିନ୍ତୁ ଇଂରେଜୀ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ । ୧ । ବସ୍ତୁତଃ ମାନସିଂଙ୍କ ରଚିତ କାବ୍ୟ କବିତା ଗୁଡ଼ିକ ମଧ୍ୟରେ ରୋମାଣ୍ଟିକ୍ ପ୍ରେମଚେତନା ମୁଖ୍ୟ ଏବଂ ଏହି ପ୍ରେମ ଚେତନା ସହିତ ସୌନ୍ଦର୍ଯ୍ୟ ଦୃଷ୍ଟି, ସ୍ୱପ୍ନ ପ୍ରବଣତା, ଦୂରର ଆକର୍ଷଣ ଓ ଗଭୀର କଳ୍ପନା ଶକ୍ତି ଓତଃପ୍ରୋତ ହୋଇ ରହିଛି ।

କବି ମାନସିଂହଙ୍କ କବିତାରେ ପ୍ରେମ ଓ ପ୍ରଣୟ ଚେତନା ଅତ୍ୟନ୍ତ ସ୍ୱାଭାବିକ ଓ ଲୌକିକ ଭିତ୍ତିରେ ପ୍ରକାଶ ପାଇଛି । ସମସାମୟିକ ସବୁଜ ଗୋଷ୍ଠୀର ପରି ରାଇଜର କୌଣସି କାଳ୍ପନିକା ତାଙ୍କର ପ୍ରେମିକା ନୁହେଁ । ରକ୍ତ ମାଂସର ଶରୀର ଧାରିଣୀ, ସୁନ୍ଦରୀ, ପ୍ରେମ ପ୍ରବଣା ନାରୀ ନିକଟରେ ସେ ପ୍ରେମ ପ୍ରଣୟର ନୈବେଦ୍ୟ ବାଢ଼ିଛନ୍ତି । ସବୁଜ କବିମାନଙ୍କର ଦେଶ ରାଣୀର କଳ୍ପନାକୁ ସେ ଗ୍ରହଣ କରିପାରି ନାହାନ୍ତି । ୨ । କବିଙ୍କ ପ୍ରେମ ଓ ପ୍ରଣୟ ପରକୀୟା, ସ୍ୱକୀୟା ଓ ମାନସୀ ପ୍ରତିମା ପ୍ରତି ବିଭିନ୍ନ କାଳରେ ନିବେଦିତ । ଏହି ପ୍ରେମ ଚେତନାର ଦୁଇଟି ପରିସର ସ୍ପଷ୍ଟ ଚିହ୍ନିତ ହୋଇଯାଏ . ଗୋଟିଏ ସ୍ପୃହା ଓ ଅନ୍ୟଟି ହୃଦୟ ସ୍ପୃହା ।

ତରୁଣ କାଳର ସୃଷ୍ଟିରେ ପରକୀୟା ପ୍ରୀତିର ସ୍ପର୍ଶପ୍ରବଣତା ନିବିଡ଼ ଭାବେ ପ୍ରକାଶ ଲାଭ କରିଛି । ପ୍ରଣୟିନୀର ସ୍ପର୍ଶ ଓ ଆଲିଙ୍ଗନ ପାଇଁ ଅପରିସୀମ ଆକୁଳତା ଏ କାଳର କବିତାଗୁଡ଼ିକରେ ଲକ୍ଷଣୀୟ । ୩ । କନ୍ଦୁଗୃହ, କୁଞ୍ଜ ଓ ନିର୍ଜନତା ପ୍ରେମିକାର ସଙ୍ଗଲାଭ ନିମନ୍ତେ କବିଙ୍କୁ ଅଧୀର କରିଛି । ପ୍ରିୟାର ଆବେଗ ଆକୁଳ ବାହୁ, ଓଷ୍ଠାଧର, ଚକ୍‌କଣ ଚକୁର, ନିଃଶ୍ୱାସର ସୁଗନ୍ଧ କବିଙ୍କ ଦେହ ଓ ମନକୁ ଆଚ୍ଛନ୍ନ କରି ପକାଇଛି । ଯୌବନକୁ ପ୍ରେମର ଅବଲମ୍ବନ ରୂପେ ସେ ସ୍ୱୀକାର କରିଛନ୍ତି । ଏପରିକି ବାର୍ଦ୍ଧକ୍ୟରେ ଶରୀର ତୃଷ୍ଣା ବିଲୁପ୍ତ ପ୍ରାୟ ହୋଇ ଯାଉଥିବାରୁ ବାର୍ଦ୍ଧକ୍ୟରେ କବି ତାଙ୍କର ପ୍ରଣୟିନୀକୁ ଦେଖିବାକୁ ଚାହାନ୍ତି ନାହିଁ । ୪ । ଅଙ୍ଗ ଆଭରଣ ତେଜିବା ପାଇଁ କେଉଁଠି ସ୍ୱକୀୟାକୁ ମଧ୍ୟ ଅନୁରୋଧ କରିଛନ୍ତି । ୫ । ଏହି ଦୃଷ୍ଟି ସହିତ ଗ୍ରୀସୀୟ ନଗ୍ନନାରୀ ମୂର୍ତ୍ତି ସନ୍ଦର୍ଶନରେ ବାଇରନ୍‌ଙ୍କ ରସିକତାରେ ଯୋଗାଯୋଗ ପରିଦୃଷ୍ଟ ହୁଏ ଏବଂ ଏହା ସହିତ କବି କୀଟସଙ୍କ ସୌନ୍ଦର୍ଯ୍ୟ-ତତ୍ତ୍ୱର ସମ୍ମିଶ୍ରଣ ଉପଲବ୍ଧି କରିହୁଏ । ଏହି ହେତୁ କବି ମାନସିଂହଙ୍କ ପ୍ରେମ ବିଦେହ ଅପେକ୍ଷା ଅଧିକ ଦେହାଶ୍ରୟୀ, ସ୍ପର୍ଶ ପ୍ରବଣ ଓ ସମ୍ଭୋଗକାମୀ ହୋଇଥିବା'ର ଜଣାଯାଏ । ତାଙ୍କ ପ୍ରେମୋପଲବ୍ଧି ଚିରନ୍ତନତାର ସ୍ତରକୁ ଉତ୍ତୀର୍ଣ୍ଣ ହୋଇପାରି ନାହିଁ ।୬। ଏହି ଶରୀର ସ୍ପୃହା 'ଧୂପ'ରେ ସଙ୍କଳିତ କବିତାଗୁଡ଼ିକରେ ଉଗ୍ରଭାବେ ପ୍ରକାଶ ଲାଭ କରିଛି । ଦେହର ଆକର୍ଷଣକୁ ଏଡ଼ାଇ ପାରି ନ ଥିବାରୁ କବି ଜରାଗ୍ରସ୍ତ ଦେହ ମନରେ ପ୍ରେମ ଆଉ ସମ୍ଭବ ନୁହେଁ ବୋଲି କହିଛନ୍ତି । ପୃଥିବୀକୁ ସେ ବାରମ୍ବାର ଫେରି ଆସିବାକୁ ଚାହିଁଛନ୍ତି, ପୃଥିବୀର ଗୋଟିଏ ମାତ୍ର ଆକର୍ଷଣ ରହିଛି ତାଙ୍କ ପାଇଁ ମୁଗ୍‌ଧା କିଶୋରୀର ପ୍ରେମ ଓ ଲାଜମିଶା ମଧୁର ଚାହାଣୀ ।୭।

କିନ୍ତୁ ପରବର୍ତ୍ତୀକାଳରେ ସ୍ୱକୀୟାର ପ୍ରୀତି ମଧ୍ୟଦେଇ କବି ତାଙ୍କର ପ୍ରେମକୁ ଦେହରୁ ବିଦେହ ସ୍ତରକୁ ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଦିଗକୁ ଅଗ୍ରସର କରାଇଛନ୍ତି । ବାର୍ଦ୍ଧକ୍ୟ ବା ଜରାକୁ ଅସ୍ୱୀକାର କରିଥିବା କବିର ଚେତନା ପୁଣି ଦେହାତୀତକୁ ଆଦରି ନେଇଛି—ମୃତ୍ୟୁ ପରେ ପ୍ରଣୟିନୀର ପଦରଜ ସ୍ପର୍ଶର ଅଭିଳାଷ ପୋଷଣ କରିଛି ଓ ତାର ଅଦ୍ଭୁତ ପ୍ରଭାବରେ କବି ପୁନର୍ଜୀବନ ପାଇବାର ବିଶ୍ୱାସ ପୋଷଣ କରିଛନ୍ତି । ଅନୁରୂପ ଅଭିଳାଷର ପରିଚୟ କବି ଟେନିସନ୍‌ଙ୍କ କବିତାରୁ ମଧ୍ୟ ମିଳିଥାଏ । ୮ । କବି ଦୃଷ୍ଟିରେ ପ୍ରେମ ଆତ୍ମା ମଧ୍ୟରେ ସଞ୍ଚରିତ ହୁଏ । କିନ୍ତୁ ଦେହ ଦେଇ ତାହା ଆତ୍ମାକୁ ସ୍ପର୍ଶ କରେ । ତାଙ୍କର ଏହି ଦୃଷ୍ଟିଭଙ୍ଗୀ ସହିତ କବି Donne ଙ୍କ ଦୃଷ୍ଟିଭଙ୍ଗୀର ସାମଞ୍ଜସ୍ୟ ଦେଖାଯାଏ । ୯ ।

ଆତ୍ମାର ବନ୍ଧନକୁ କବି ସବୁଠି ସ୍ୱୀକାର କରିଥିଲେ ମଧ୍ୟ ତାଙ୍କ କବିତା ଦେହ ଭୋଗ ଅନ୍ୱେଷଣ ରହିତ ନୁହେଁ । ୧୦ । ବିରହରେ ପ୍ରାଣର ଶକ୍ତି ଦୃଢ଼ୀଭୂତ ହୁଏ; କବି ମାନସୀ ପ୍ରତିମାକୁ ପ୍ରାଣରେ ପୂଜା କରନ୍ତି । ୧୧ । ଦେହରୁ ବିଦେହ ପ୍ରତି ସ୍ନେ

କମେ ସମ୍ମୋହିତ ହୋଇଛନ୍ତି ଓ ଅତୀନ୍ଦ୍ରିୟ ପ୍ରେମର ଜୟଗାନ କରିଛନ୍ତି । ୧୨ । ତେଣୁ ତାଙ୍କର ପ୍ରେମ ଚେତନା ଦେହଠାରୁ ବିଦେହକୁ ଅଗ୍ରସର ହୋଇଛି ଓ ରୂପ ମଧ୍ୟରେ ଏକ ଅରୂପ ଜ୍ୟୋତିର ସନ୍ଧାନରେ ସେ ବ୍ୟାପୃତ ରହିଛନ୍ତି । ଏହି ସମ୍ପର୍କରେ କବି ନିଜେ ନିମ୍ନମତେ ସ୍ପଷ୍ଟୀକରଣ ଦେଇଛନ୍ତି—"ପ୍ରେମର ଭିତ୍ତି ହୋଇପାରେ ଦେହ । ମାତ୍ର ଏହାର ପରିସୀମା ଦେହାତୀତ । ଏହାର ପ୍ରକୃତି ସ୍ଥୂଳ, ମାତ୍ର ପ୍ରତିକ୍ରିୟା ସୂକ୍ଷ୍ମ, ଏହାର ଅନୁଭୂତି ବ୍ୟକ୍ତିଗତ, ମାତ୍ର ଅଭିବ୍ୟକ୍ତି ନିରପେକ୍ଷ । ୧୩ ।

## ପ୍ରେମ ଓ ସୌନ୍ଦର୍ଯ୍ୟବୋଧ

କବି ମାନସିଂହଙ୍କ ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା ପରସ୍ପର ସହିତ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ । ପ୍ରେମରେ ଦେହ ଓ ବିଦେହକୁ ସ୍ୱୀକାର କରିଥିବାରୁ ରୂପ ଓ ସୌନ୍ଦର୍ଯ୍ୟ ପ୍ରତି କବିଙ୍କର ବିସ୍ମୟ, ସମ୍ମାନସୂଚକ ଦୃଷ୍ଟି ଓ ଆକର୍ଷଣ କବିତାଗୁଡ଼ିକର ଛନ୍ଦେ ଛନ୍ଦେ ପ୍ରକଟିତ । ନାରୀର ରୂପ ଓ ପ୍ରକୃତିର ଶୋଭା ସମ୍ଭାର ଉଭୟ ତାଙ୍କୁ ଆକୃଷ୍ଟ କରିଛି ଓ ଲେଖନୀକୁ ବିମୁଗ୍ଧ ଭାବ ସମ୍ଭାରରେ ଚଞ୍ଚଳ କରିଛି । ୧୪ । ସୌନ୍ଦର୍ଯ୍ୟ ସନ୍ଧାନୀ ପ୍ରାଣ ତାଙ୍କର କଳ୍ପନାର ପକ୍ଷ ବିସ୍ତାର କରି ଉଡ଼ି ବୁଲିଛି । ତାଙ୍କ ମତରେ ସୌନ୍ଦର୍ଯ୍ୟ ହିଁ ସତ୍ୟ । ତାର ମୃତ୍ୟୁ ନାହିଁ । ୧୫ । ତାଙ୍କ ସୌନ୍ଦର୍ଯ୍ୟ ଚେତନା କବି କୀଟସଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିସହ ନିବିଡ଼ ଯୋଗାଯୋଗ ସ୍ଥାପନ କରେ । ୧୬ । ତାଙ୍କର ରୂପଦୃଷ୍ଟି ସର୍ବଦା ନାରୀର ସୂକ୍ଷ୍ମ ସୌନ୍ଦର୍ଯ୍ୟ ପ୍ରତି ଲକ୍ଷ୍ୟଶୀଳ । ତରୁଣୀର ପଦତଳ କପୋଳ ଓ ନୟନ ଶୋଭାରେ ସେ ମୁଗ୍ଧ ହୁଅନ୍ତି । ୧୭ । ରୂପ ସହିତ ପ୍ରଣୟର ଅବିଚ୍ଛେଦ୍ୟ ବନ୍ଧନ କେବଳ ନିଜଠାରେ ନୁହେଁ ପ୍ରକୃତିଠାରେ ମଧ୍ୟ କବି ଉପଲବ୍ଧି କରିଛନ୍ତି । ରୂପର ଦେବତା ହିଁ ପ୍ରୀତିର ପ୍ରିୟ ସହଚର । ୧୯ । ନାରୀର ଚିକୁର, କେଶଚର୍ଯ୍ୟା ଏତେ ମୁଗ୍ଧକର ଯେ ମୃତ୍ୟୁ ମଧ୍ୟ କ୍ଷଣେ ଗୁହିଁ ରହିବ । ୨୦ । ତାଙ୍କ ରୂପ ରଚନାରେ ଇନ୍ଦ୍ରିୟଗ୍ରାହ୍ୟ ପ୍ରୀତି ପ୍ରତିମାର ଆଭାସ ଚିତ୍ର ଅନବଦ୍ୟ । ଅସାମାନ୍ୟ କଳ୍ପନାର ଅଶରୀରୀ ମାନସୀର ସ୍ୱରୂପ ସେ ଆଙ୍କି ନାହାନ୍ତି । ୨୧ । ରୂପାଲୋକରେ ଅନ୍ଧକାର ଗୃହାଙ୍ଗନ ଆଲୋକିତ ହୁଏ, ରସିକ କବିଙ୍କ ଦେହ, ମନ ସେହି ଆଲୋକରେ ଉଦ୍ଭାସିତ ହୋଇ ଉଠେ । ୨୨ । ଚପଳ କୁବଳୟ ନୟନ ( ରୂପର ପୂଜା ) କବିଙ୍କୁ ମୁଗ୍ଧ କରେ । ଯୌବନୋଚ୍ଛଳ ରୂପରେ ମୁଗ୍ଧ କବି ତେଣୁ ଜରାକୁ ଭୟ କରନ୍ତି । ସୌନ୍ଦର୍ଯ୍ୟ ଜରାଗ୍ରସ୍ତ ହୋଇ ବିନଷ୍ଟ ହୋଇଯାଏ, ନୀଳକେଶ ଶୁକ୍ଳ ପାଲଟେ, ତେଣୁ କବି ନିଜ ମାନସୀ-ପ୍ରତିମାକୁ ଜରାଗ୍ରସ୍ତ ରୂପହୀନା ଭାବରେ ଦେଖିବାକୁ ଚାହାନ୍ତି ନାହିଁ । ୨୩ । କିନ୍ତୁ ଦୈହିକ ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ କବି କ୍ରମଶଃ ଆତ୍ମାର ସୌନ୍ଦର୍ଯ୍ୟ ସନ୍ଧାନ କରନ୍ତି ଓ ଶାରୀରିକ ସୌନ୍ଦର୍ଯ୍ୟଠାରୁ ଆତ୍ମାର ସୌନ୍ଦର୍ଯ୍ୟ ମହାର୍ଘତର ବୋଲି ଉପଲବ୍ଧି କରନ୍ତି । ଆତ୍ମାର ସେ

ସୌନ୍ଦର୍ଯ୍ୟ ନିକଟରେ ମଣିଷ ମଥାନତ କରେ । କବି ସୌନ୍ଦର୍ଯ୍ୟର ଭକ୍ତ—ସୌନ୍ଦର୍ଯ୍ୟ ଦର୍ଶନ କରି ସେ ବିମୁଗ୍ଧ ସ୍ରଷ୍ଟାର ମହିମାରେ ଚମତ୍କୃତ ହୁଅନ୍ତି ।୨୪।

ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା ସହ ଆଉ ଯେଉଁ ରୋମାଣ୍ଟିକ୍ ଭାବର ଅବିଚ୍ଛେଦ୍ୟ ସମ୍ପର୍କ ସ୍ଥାପନ କରେ ତାହା ହେଉଛି କବିଙ୍କ ସ୍ୱପ୍ନ ପ୍ରବଣ ମନୋଭାବ । ପ୍ରିୟା ସହ ମିଳନ ପାଇଁ ଓ ସୌନ୍ଦର୍ଯ୍ୟର ଅବିରତ ଦର୍ଶନ ପାଇଁ ବାସ୍ତବରେ ସୁଯୋଗ ମିଳେ ନାହିଁ । ଆଶାୟୀ କବିପ୍ରାଣ ସ୍ୱପ୍ନକୁ ଅବଲମ୍ବନ କରି ଅଭିଳାଷ ଚରିତାର୍ଥ କରିବାକୁ ଶ୍ରେୟ ମନେକରେ । ବାସ୍ତବ ପରିବେଶ କବିର ଆଶା ପୂରଣ କରିପାରେ ନାହିଁ । କବି ନିଜ ସ୍ୱପ୍ନପ୍ରବଣ ମାନସର ଚିତ୍ର ଆଙ୍କନ୍ତି—'ଭାବିଥିଲି ଅବା ବକୁଳ ତଳେ । ସୁରଭି କୁସୁମ ଶୟନ ପରେ/ଯାପିବି ଜୀବନ ପ୍ରେୟସୀ ଧରି/ସ୍ୱପନ ପରି" ।୨୫। ସ୍ୱପ୍ନର ସରସତା କିନ୍ତୁ ବାସ୍ତବର ନିଷ୍ଠୁର ଆଘାତରେ ମଉଳିଯାଏ । କବି ସ୍ୱପ୍ନ ନିମିତ୍ତ ଏକ ମନୋମତ ପରିବେଶ ପାଇଁ ବ୍ୟାକୁଳ ହୁଅନ୍ତି । ତେଣୁ ଅଙ୍ଗରୁ ଯୌବନ ଖସିଗଲେ ମଧ୍ୟ ମନ ଚେତନାରେ ସେ ସ୍ୱପ୍ନଲୋକର ସରସତାକୁ ବଞ୍ଚାଇ ରଖିବାକୁ ଆଗ୍ରହ ପ୍ରକାଶ କରନ୍ତି । ୨୬ । ତାଙ୍କର ସ୍ୱପ୍ନ-ପ୍ରୟାସୀ କଳ୍ପନାପ୍ରବଣ, ପ୍ରେମମୟ ଅନ୍ତର ସର୍ବଦା ଦୂରର ଆକର୍ଷଣ ପ୍ରତି ଉନ୍ମୁଖତା ପ୍ରଦର୍ଶନ କରିଛି । ଅପରିଚିତ ପାଇଁ ନାରୀର ହୃଦୟାବେଗ, ଅପରିଚିତା ପାଇଁ କବି ପ୍ରାଣର ଆସକ୍ତି ପୁନଶ୍ଚ ଦୂରର ଅଚିହ୍ନା, ଅଜଣା ଆହ୍ୱାନ ନିମିତ୍ତ ସମ୍ମୋହିତ ଭାବ ତାଙ୍କ କବିତାଗୁଡ଼ିକରେ ସ୍ପଷ୍ଟ ପ୍ରକାଶ ଲାଭ କରିଛି । ସାଧବ ଝିଅ ବିଦେଶୀ ଅପରିଚିତ ଯୁବକକୁ ହୃଦୟ ଅର୍ପଣ କରିଛି । ଏହି ସମର୍ପଣ ପୁଣି ପ୍ରେମିକର ଅଙ୍ଗୀକାର ବା ସ୍ୱୀକାରକୁ ଅପେକ୍ଷା ରଖିନାହିଁ, ତେଣୁ ପ୍ରେମାକୁଳ ଯୁବତୀ ଅନ୍ତର ବିଳପି ଉଠିଛି—"ବିଦେଶୀ ଯୁବକ ଜାଣିବେ କିସ ବାହିଲେ ତରୀ/କାହିଁ ଗଲେ ବେଳା କାହିଁ ଗଲେରେ/ତା ବିନା କେମନେ ଜୀବନ ଧରି" । ୨୭ । ପୁନଶ୍ଚ ଏକ ଦୂର ରାଜ୍ୟକୁ ଯିବା ପାଇଁ କିଶୋର ମାନସର ଦ୍ୟୁତିଗ୍ରତା 'ସାଧବ ପୁଅ' କବିତାରେ ସ୍ପଷ୍ଟ । ଅଚିହ୍ନା ସାଧବ ପୁଅ ସହିତ ସମୁଦ୍ର ପଥରେ ଦେଶରୁ ଦେଶକୁ ବୁଲିବା ଓ ମାଣିକ୍ୟ ପର୍ବତ, ରୂପାର ନଈ ଦେଖିବା ପାଇଁ ଗୋଟିଏ କିଶୋରୀ ପ୍ରାଣର ବ୍ୟାକୁଳତା ଏଥିରୁ ପ୍ରତୀତ ହୁଏ । ୨୮ । ଏକ ଅଜଣା, ଅପରିଚିତା ବାଳିକାର ରୂପ ମାଧୁରୀରେ ମୁଗ୍ଧ କବି ତାକୁ ମାନସୀ-ପ୍ରତିମା ରୂପେ ଗ୍ରହଣ କରିଛନ୍ତି । ରୂପ ଓ ସୌନ୍ଦର୍ଯ୍ୟର ଆକର୍ଷଣ ପାଇଁ ହୃଦୟଦାନ କରାଯାଇପାରେ ଓ ଏଥିନିମିତ୍ତ ପରିଚୟ ଗ୍ରହଣର ଆବଶ୍ୟକତା ନାହିଁ ବୋଲି କବିଙ୍କର ମତ—"ଅଜଣା ଦୂରେ ତମେ/ମୁହିଁ ଅପରିଚିତ/ପ୍ରକାଶି ସମ ବସି ରଚିବା ସ୍ତୁତି ଗୀତ × × × ପୂଜାରୀ ମାଗେ ନାହିଁ ଦେବତା ପରିଚୟ/କେବଳ ଆରାଧନେ ତା ସୁଖ ସଞ୍ଚୟ/ତେଣୁ ଅପରିଚିତ/ବିଦେଶୀ ଗାଏ ଗୀତ/ତୋ ଲାଗି ବିଦେଶିନୀ କିଶୋରୀ/ସେ ରୂପ ନିକ ହୁଏ ପାଶୋରି" ? (ଇରାନୀ କିଶୋରୀ)

## କଳ୍ପନା ପ୍ରବଣତା

କବିଙ୍କର କଳ୍ପନା-ପ୍ରବଣତା ସର୍ବଦା ବାସ୍ତବ ପରିବେଶରୁ ଦୂରକୁ ପକ୍ଷ ସଂଚାଳନ କରି ଉଡ଼ିଯାଇଛି । ପ୍ରେମ ଓ ସୌନ୍ଦର୍ଯ୍ୟାନୁଭବ ପାଇଁ, ସ୍ୱଦେଶ ଗୌରବର ସନ୍ଦର୍ଶନ ପାଇଁ ସର୍ବଦା କଳ୍ପନା ହିଁ ମୁଖ୍ୟ ପ୍ରକ୍ରିୟା ରୂପେ କାର୍ଯ୍ୟ କରିଛି । ଅଧିକାଂଶ କବିତା ଏହି ସୁଦୂରପ୍ରସାରୀ ରୋମାଣ୍ଟିକ୍ କଳ୍ପନାର ରଙ୍ଗରେ ଅନୁରଞ୍ଜିତ । ପ୍ରଣୟିନୀ ନିକଟକୁ 'ମଳୟ' ହୋଇ ଉଡ଼ି ଯିବାକୁ କବି ଆଶାପୋଷଣ କରିଛନ୍ତି । ୨୯ । କୋଣାର୍କର ସୁନ୍ଦରୀ ପ୍ରସ୍ତର ମୂର୍ତ୍ତିଗୁଡ଼ିକୁ ଦେଖି କବି କଳ୍ପନାରେ ସେମାନଙ୍କୁ ଜୀବନ୍ନ୍ୟାସ ଦେଇଛନ୍ତି । ମୁରଜବାଦିକା, ବେଣୁ-ବାଦିକା, ସୁନ୍ଦରୀ ନର୍ତ୍ତକୀଗଣ ପ୍ରସ୍ତରୀଭୂତା ହେବା କବି ସହ୍ୟ କରିପାରି ନାହାନ୍ତି । କଳ୍ପନା ବଳରେ ସେମାନଙ୍କୁ ଜୀବ୍ୟନ୍ୟାସ ଦେଇଛନ୍ତି । କବିଙ୍କର କଳ୍ପନାଶକ୍ତି ପ୍ରସ୍ତର ବିଗ୍ରହ ମୁଖରେ ଭାଷା ଫୁଟାଇବାକୁ ସମର୍ଥ ହୋଇଛି । ୩୦ । ଗୋଟିଏ ପରେ ଗୋଟିଏ ବିଗ୍ରହ କଥାଭାଷା ହୋଇ ନୃତ୍ୟ ଆରମ୍ଭ କରିଛନ୍ତି । ପୁନଶ୍ଚ ଜ୍ୟୋତ୍ସ୍ନା ଜଡ଼ିତ ରଜନୀରେ ମହାନଦୀ ବକ୍ଷରେ ବିହାର କରୁ କରୁ କବି କଳ୍ପନା ଚକ୍ଷୁରେ ଅତୀତ ଉତ୍କଳର ଗର୍ବଗାରିମା ଦର୍ଶନ କରିଛନ୍ତି । ମହାନଦୀରେ ଅତୀତରେ ରାଜାମାନେ ନୌକାବିହାର କରୁଥିବେ, ରାଜକନ୍ୟାମାନେ ଅଲକ୍ତକ ରଞ୍ଜିତ ଚରଣ ଥାପିଥିବେ ଏହାର ତଟଭୂମିରେ । ଏହି ମଞ୍ଜୁଳ ରୂପଶୋଭା କବି କଳ୍ପନାରେ ଅଙ୍କିତ—

> "ସେ ଦିନ ଏ ଶିଳା ପରେ ଅବଗାହେ ଆସି
> ସୁକୁମାରୀ ରାଜବାଳା ଆଙ୍କିଥିବ ତା'ର
> ଲାକ୍ଷାରକ୍ତ ପଦଛବି, କରି ମନ୍ଦକାଶୀ
> କଠିନ ପାଷାଣ-ଦେହେ ଆନନ୍ଦ ସଂଚାର ।"

'ମହାନଦୀରେ ଜ୍ୟୋତ୍ସ୍ନା ବିହାର' (ପୃ-୩୧୪)

କଳ୍ପନାକୁ ବାନ୍ଧବୀ ରୂପେ ସମ୍ବୋଧନ କରି ଅତୀତର ମଧୁର ଐଶ୍ୱର୍ଯ୍ୟମୟ ଛବି ଦର୍ଶନ କରିବାରେ ତାହାର ସାହଚର୍ଯ୍ୟ କବି କାମନା କରିଛନ୍ତି—

> "ଏମନ୍ତ ଜ୍ୟୋଛନା ରାତେ ସେଦିନ ଏ ସ୍ଥଳୀ
> କି ଶୋଭା ଧରିଲା, ଅୟି କଳ୍ପନା ସଜନି !
> କହ ମତେ, ଶତ ଶତ ନାଗରିକେ ଭରି
> ବାହି କେତେ କରୁଥିବେ ମୁଖରି ରଜନୀ ।"

'ମହାନଦୀରେ ଜ୍ୟୋତ୍ସ୍ନା ବିହାର' (ପୃ-୧୩୫)

କବିଙ୍କର ଏହି କଳ୍ପନା-ଶକ୍ତି ସୌନ୍ଦର୍ଯ୍ୟ ଦର୍ଶନ ପାଇଁ, ପ୍ରେୟସୀର ସଙ୍ଗ ଲାଭପାଇଁ ପରିବେଶ ସୃଷ୍ଟି କରେ । ପୁନଶ୍ଚ ଏହି କଳ୍ପନାର ଯାଦୁ ବଳରେ କବି ଅତୀତ ଇତିହାସ ଓ ଗୌରବାବହ ଘଟଣାଗୁଡ଼ିକୁ ମାନସ ପଟରେ ଆଙ୍କିବାକୁ ସମର୍ଥ ହୋଇଥାନ୍ତି ।

କବି ମାନସିଂହଙ୍କ ପ୍ରେମ ଓ ସୌନ୍ଦର୍ଯ୍ୟଚେତନା ସହ ପ୍ରକୃତି ପ୍ରୀତି ଓତଃପ୍ରୋତ ମିଶି ରହିଛି । ନାରୀ ରୂପ ଓ ପ୍ରାକୃତିକ ଶୋଭା ଉଭୟେ କବିଙ୍କୁ ସମଭାବରେ ମୁଗ୍‌ଧ କରିଛନ୍ତି । ପ୍ରେମ ଜନିତ କେତେବେଳେ ପ୍ରକୃତି ଶୋଭାକର ହୋଇଛି । ଆଉ କେବେ ପ୍ରକୃତିର ସୌନ୍ଦର୍ଯ୍ୟ ଅନ୍ତରରେ ପ୍ରେମଭାବ ଉଦ୍ରେକ କରିଛି । ପ୍ରକୃତିରେ ପ୍ରାଣ ପ୍ରତିଷ୍ଠା କରି କବି ପ୍ରକୃତିକୁ ବନ୍ଧୁଭାବେ ଗ୍ରହଣ କରିଛନ୍ତି । 'ପ୍ରାବୃଟ ସମ୍ଭାଷଣ' କବିତାରେ ମେଘଠାରେ ପ୍ରେମ ସନ୍ଧାନ କରିଛନ୍ତି । ବସନ୍ତ ଋତୁରେ ସୌନ୍ଦର୍ଯ୍ୟ ମଣ୍ଡିତ ପ୍ରକୃତି ସହ ବସନ୍ତ କବିଙ୍କର ଅତି ପ୍ରିୟ ହୋଇପାରିଛି । 'ବସନ୍ତୋତ୍ସବ', 'ରୂପ ଦେବତା' ଆଦି ବସନ୍ତ ବର୍ଣ୍ଣନାରେ ମୁଖର କେତୋଟି କବିତା । ପ୍ରେମାବେଗର ଆତିଶଯ୍ୟରେ ଚୂତ ଓ ମଳୟକୁ କବି ବନ୍ଧୁ ରୂପେ ଗ୍ରହଣ କରି ନିଜ ଦୁଃଖ ବର୍ଣ୍ଣନା କରିଛନ୍ତି । ୩୧ । ଦୂର ଦେଶରେ ଥିବା ପ୍ରେମିକାର ଅଶ୍ରୁ ପୋଛି ନ ପାରି କବି ମଳୟକୁ ଦୂତରୂପେ ପ୍ରେରଣ କରିଛନ୍ତି । ୩୨ । ପ୍ରକୃତିର ବିଭିନ୍ନ ସତ୍ୟ ମଧ୍ୟରେ କବି ପ୍ରେମ ଓ ପ୍ରଣୟଲୀଳା ସନ୍ଦର୍ଶନ କରିଛନ୍ତି । ଆମ୍ବ ବଉଳ ଉପରେ ଭ୍ରମର ଉଡ଼ିବୁଲିବା, କୋଇଲି ଗହଳ ଶାଖାରେ ଗୀତ ଗାଇବା ଆଦି ଶାଶ୍ୱତ ପ୍ରେମର ନିୟମ । ୩୩ । ପ୍ରକୃତିରେ ପ୍ରାଣ ସଞ୍ଚାରର ଅନୁଭୂତି କବିଙ୍କର ଯେତିକି-ବେଳେ ଆସିଛି ସେତେବେଳେ ସେ ପ୍ରଣୟ ବିଭୋର ହୋଇଛନ୍ତି । ୩୩କ । 'ଦକ୍ଷିଣା ପ୍ରତି', 'ପ୍ରାବୃଟ ସମ୍ଭାଷଣ' ଆଦି କବିତାରେ ସାର୍ବଭୌମ ପ୍ରକୃତି ସୁନ୍ଦରୀର ନିର୍ଜନ ଅତି ଚମତ୍କାର ଭାବରେ ପ୍ରକାଶିତ ହୋଇଛି । ଦକ୍ଷିଣା ପବନ ଏଠାରେ ଗୋଟିଏ ଅଭିସାରିକା ପ୍ରମଦା, ବସନ୍ତର ପ୍ରେମିକା ସେ । ତା' ଉଦ୍ଦେଶ୍ୟରେ କବି ପ୍ରଶ୍ନ କରନ୍ତି "ଦକ୍ଷିଣରେ ବାସ ତବ ? କାହା କନ୍ୟା ? କାହା ଗୃହବଧୂ ?
ବସନ୍ତ ପ୍ରେୟସୀ କିଗୋ !—ସଙ୍ଗେ ତା'ର ଭ୍ରମ ଯେ ସର୍ବଦା !

"ଦକ୍ଷିଣ କବାଟ ଫେଇ ସୁକୁମାରି, ଗୁଲ୍‌ଆସ ଲଘୁ
ସାଗର ପର୍ବତ ଡେଇଁ ଅଭିସାରେ ତା ପାଇଁ ପ୍ରମଦା ।"

ସେହି ଚଞ୍ଚଳା, ଶୀତଳାର ହିଲ୍ଲୋଳରେ ଭାସିଯିବାକୁ କବି ପ୍ରାଣ ଆକୁଳ ହୋଇ ଉଠିଛି । ତାଙ୍କର ଏତାଦୃଶ ମନୋଭାବ ସହିତ କବି ଶେଲିଙ୍କ 'Ode to the westwind' ମନୋଭାବ ସାମ୍ୟ ପ୍ରତିଷ୍ଠା କରିପାରେ । ୩୪ ।

'ମହାନଦୀରେ ଜ୍ୟୋତ୍ସ୍ନାବିହାର'ରେ ନିସର୍ଗ ପ୍ରକୃତି ପ୍ରୀତି ଏକ ମୂର୍ତ୍ତିମନ୍ତ ବିଗ୍ରହ ଲାଭ କରିଛି । ରୂପପ୍ରାଣ ରାଧାନାଥ 'ଚିଲିକା' ପ୍ରତି ଯେଉଁଭଳି ବିମୁଗ୍‌ଧ ହୋଇଥିଲେ ଜ୍ୟୋତ୍ସ୍ନାଲୋକିତ ମହାନଦୀ ପ୍ରତି କବି ମାନସିଂହ ସେହି ପରିମାଣରେ ମୁଗ୍‌ଧ ଓ ବିହ୍ୱଳ । ୩୫ । ତାଙ୍କର ପ୍ରାକୃତିକ ବିଭବ ପ୍ରସ୍ତରରେ ପ୍ରାଣସଞ୍ଚାର କରିପାରେ । ଜ୍ୟୋତ୍ସ୍ନାର କୁହୁକ ସ୍ପର୍ଶରେ ପ୍ରସ୍ତରୀଭୂତା କୋଣାର୍କନଟୀ ଜୀବନ୍ୟାସ ପାଇ କହୁଛି—"ଚନ୍ଦ୍ରର କାନ୍ତି ଏ/କର ଛୁଇଁ ଦେହରେ/କଙ୍କନ ଝଙ୍କାର/ଘଟାଏ କି

ସ୍ନେହରେ''—'କୋଣାର୍କର ଲସ୍ୟଲୀଳା' ପୃ-୨୪୭ । ପ୍ରକୃତିର ଯେଉଁ ବିଭବ କବିଙ୍କୁ ସର୍ବାଧିକ ମୁଗ୍ଧ କରିଛି— ତାହା ଚନ୍ଦ୍ରାଲୋକ, ଦକ୍ଷିଣା ପବନ ଓ ବର୍ଷା । ଚନ୍ଦ୍ରାଲୋକ, ମହାନଦୀ ଓ ତାର ତୀରବର୍ତ୍ତୀ ସ୍ଥାନକୁ ସ୍ୱପ୍ନପୁରୀରେ ପରିଣତ କରିଛି—ସତ୍ୟ, କିନ୍ତୁ ଦିଗର ମହିମା ଅନୁଭବ ଦେଇଛି; ତେଣୁ କବି ମୃତ୍ୟୁଯାଏ ତାହାର ଉତ୍ସଙ୍ଗରେ ବିହାର କରିବାକୁ ଆଶାପୋଷଣ କରିଛନ୍ତି । ତାଙ୍କ ଗଭୀର ନିସର୍ଗ ପ୍ରୀତିର ଏହା ଚରମ ନିଦର୍ଶନ ହୋଇପାରେ । ୩୬ । ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନାରେ ତାଙ୍କ କବିତା ମନୋଜ୍ଞ । ଏହି ବର୍ଣ୍ଣନାରୁ ତାଙ୍କର ରୋମାଣ୍ଟିକ୍ ଭାବଧାରା ସ୍ପଷ୍ଟ ହୋଇପଡ଼େ । ବହୁ ରୋମାଣ୍ଟିକ୍ ଶବ୍ଦାବଳୀର ସଂଯୋଗରେ ତାଙ୍କ କବିତା ସଜ୍ଜିତ । ସନ୍ଧ୍ୟା ଓ ପ୍ରଭାତର ନିସର୍ଗ ଶୋଭା ସମ୍ଭାର ଭିତରେ କବି 'ଅମ୍ବର ରଞ୍ଜିତ', 'ରକ୍ତ, ନୀଳନଭ' 'ସୁବର୍ଣ୍ଣ ବିଭାସେ', 'କନକିତ ନଭେ', 'କନକ ରଞ୍ଜିତ', 'ସ୍ୱର୍ଣ୍ଣକର', 'ଶ୍ୟାମଳ ପ୍ରକୃତି ଅଙ୍ଗ', 'ସ୍ୱର୍ଣ୍ଣ ହେମନ୍ତର', ଚଳିକାର ଶୋଭା ବର୍ଣ୍ଣନାରେ 'ନୀଳ ଚକ୍ରବାଳ', 'ନୀଳଜଳରାଶି' ଆଦି ଶବ୍ଦପୁଞ୍ଜ ପ୍ରତି ଅଧିକ ଆସକ୍ତି ପ୍ରକାଶ କରିଛନ୍ତି । ଏଠାରେ କଳ୍ପନା ଯେ ଏକାନ୍ତ ମୁକ୍ତ-ପକ୍ଷ, ତାହା ନିମ୍ନ ପଙ୍କ୍ତି ମାନଙ୍କରୁ ସ୍ପଷ୍ଟ ହେବ । ୩୭ । ଅସ୍ତରବି କର ନିଶାନ୍ତ ପ୍ରଦୀପ ପରି ଲିଭିଆସେ, ସ୍ୱର୍ଣ୍ଣାଭ ଆକାଶରେ ସ୍ୱର୍ଣ୍ଣ-ରଞ୍ଜିତ ପକ୍ଷ ମେଲାଇ ଉଡ଼ିଯାନ୍ତି ପକ୍ଷୀମାନେ, ସନ୍ଧ୍ୟାର ଚିତ୍ର ସଂପୂର୍ଣ୍ଣ ହୁଏ । ୩୮ । ସଦ୍ୟସ୍ନାତା ପ୍ରେୟସୀ ହେମନ୍ତ ପ୍ରଭାତର ଏକ ଅଂଶ ରୂପେ କବିଙ୍କୁ ପ୍ରତୀତ ହୋଇଛି । ୩୮କ । ପ୍ରକୃତିର ନିୟମାନୁଯାୟୀ ଫୁଲ ଫୁଟେ, ସୌରଭ ବିତରଣ କରେ—ପ୍ରେମ-ପ୍ରବଣ କବି ହୃଦୟ ତହିଁରେ ପ୍ରଣୟୀର ସଭାଗ ଉପସ୍ଥିତ ଥିବାର ଚିହ୍ନିପାରେ । ୩୯ । ଜ୍ୟୋତ୍ସ୍ନା-ବିଜଡ଼ିତ ରଜନୀରେ ନଦୀବକ୍ଷରେ କବି ପ୍ରକୃତିର ନାନାବିଧ ଶୋଭା ଦର୍ଶନ କରି ସମ୍ମୋହିତ ହୋଇ ପଡ଼ନ୍ତି । ସେତେବେଳେ ନଦୀ ଏକ କ୍ଳାନ୍ତ ଶିଶୁଭଳି ଶାନ୍ତ ଓ ନିଶ୍ଚଳ ମନେହୁଏ । ୪୦ । ବିପୁଳଶୋଭା ରାଶିର ପ୍ରସାର ମଧ୍ୟରେ ମହାନୀରବ ମୁହୂର୍ତ୍ତରେ କବି ସତ୍ୟ, ଶିବ, ସୁନ୍ଦର ଭୂମାର ସତ୍ତା ଉପଲବ୍ଧି କରନ୍ତି । ରାଧାନାଥ ଓ ମଧୁସୂଦନଙ୍କ ପରି ପ୍ରକୃତିରେ ଅଚିନ୍ତ୍ୟନୀୟ, ପରମସତ୍ତାର ଭାବ ଉପଲବ୍ଧି କରିଛନ୍ତି କବି ମାନସିଂହ । ୪୧ ।

ଏହି ମାନବ ପ୍ରେମ କ୍ରମଶଃ ଊର୍ଦ୍ଧ୍ୱଲୋକକୁ ପ୍ରଧାବିତ ହୋଇଛି । ଚିର-ମରୁ ମାନବ ପ୍ରେମରେ ଶ୍ୟାମଳ ହୋଇ ପାରିନାହିଁ । ତେଣୁ ଅଜ୍ଞାତ ସେହି ସଖାର ଅଲୌକିକ ସ୍ପର୍ଶପାଇଁ କବି ବ୍ୟାକୁଳ । ତାଙ୍କପାଇଁ କବି ଗାଆନ୍ତି,

> "ହେ ଅଜ୍ଞାତ ସଖା ମମ, ଅଛ ତମେ କାହିଁ ?
> ଦିଅ ମୋରେ ତବ ସ୍ପର୍ଶ, ପ୍ରଣୟୀ କୋମଳ,
> କ୍ଳାନ୍ତ ମୁଁ—ସନ୍ଧାନେ ମୋର ଆଉ ଶକ୍ତି ନାହିଁ—
> ତୁମକୁ ନ ପାଇ କିନ୍ତୁ ଜୀବନ ବିଫଳ ।"

ଭୂପୃଷ୍ଠରୁ ତାରକାଯାଏ ଯେଉଁ କବିଙ୍କର ପ୍ରେମ ବନ୍ଧନରେ ବାନ୍ଧ ହୋଇଛି ଓ ଅନୁଗତ ଭାବେ ରହିଛି, କବି ମାନସିଂହଙ୍କ ଆତ୍ମା-ବଧୂ ତାଙ୍କର ସ୍ପର୍ଶପାଇଁ ବ୍ୟାକୁଳ । ତାଙ୍କୁ କବି କହନ୍ତି, 'ଦୁର୍ଲ୍ଲଭ-ବଲ୍ଲଭ' । କୌଣସି ମୂର୍ତ୍ତି ବା ପୌତ୍ତଳିକତାରେ କବି ବିଶ୍ୱାସୀ ନୁହନ୍ତି । ଏକ ଅଦୃଶ୍ୟ, ଦୁର୍ଲ୍ଲଭ ଶକ୍ତିଙ୍କୁ ସେ ସର୍ବମସ୍ତ କର୍ତ୍ତା ଓ ସତ୍ୟସ୍ୱରୂପ ବୋଲି ଗ୍ରହଣ କରିଛନ୍ତି । ସେହି କର୍ତ୍ତା, ସେହି ସତ୍ୟବସ୍ତୁ ଅଟନ୍ତି ଓ କବି ତାଙ୍କର ସ୍ରଷ୍ଟା । ଅନ୍ତରଠାରୁ ଅନ୍ତରୀକ୍ଷ ଯାଏ ବ୍ୟାପୀ ରହିଥିବା ସେ ଭୂମାର ସ୍ପର୍ଶ କବି ନିଜ ଜାଗ୍ରତ ସତ୍ତ୍ୱରେ ଅନୁଭବ କରିଛନ୍ତି । ନିଜକୁ ଦୁଃଖାନଳରେ ଜାଳି, ଚରମ ପ୍ରତ୍ୟାଶା ମଧ୍ୟରେ ସେଇ ସତ୍ତ୍ୱର ପ୍ରକାଶପାଇଁ ସେ ଉଜାଗର ହୋଇ ବସିଛନ୍ତି । ଏକ ପବିତ୍ର ନିର୍ମଳ ହୃଦୟର ଅଭିବ୍ୟକ୍ତି ଏଠାରେ ପରିସ୍ଫୁଟ ହୋଇଅଛି । ସେଇ ସମ୍ରାଟଙ୍କପାଇଁ କବି ବିହ୍ୱଳ, ବ୍ୟାକୁଳ । ତାଙ୍କ ନିକଟରେ ନିଜେ ସେ ଅକିଞ୍ଚନ - ତାଙ୍କ ଦର୍ଶନ ମାତ୍ରେ କବିଙ୍କ ପ୍ରାଣର ଦୈନ୍ୟ ଐଶ୍ୱର୍ଯ୍ୟ ମଣ୍ଡିତ ହୋଇଯାଏ ।

**ସ୍ୱଦେଶ ପ୍ରୀତି :**

କବି ମାନସିଂହଙ୍କ ବିପୁଳ ସୃଷ୍ଟି ସମ୍ଭାର ମଧ୍ୟରେ ଭାବଚେତନାର ବିବିଧ ପରିସ୍ଫୁରଣ ଲକ୍ଷ୍ୟ କରିହୁଏ । ସ୍ୱଦେଶପ୍ରୀତି ଏଗୁଡ଼ିକ ମଧ୍ୟରେ ଅନ୍ୟତମ । ଏହି ସ୍ୱଦେଶ ପ୍ରୀତିର ସ୍ୱରୂପ ସ୍ୱାଧୀନାର୍ଥୀ ଓ ସତ୍ୟବାଦୀ ସ୍ୱଦେଶ ବତ୍ସଳତାର ଅନୁରୂପ । ବର୍ତ୍ତମାନର ଅନ୍ତଃସାର ଶୂନ୍ୟତା ଓ ଅଧୋପତନ ଜନିତ ଖେଦ, ଅତୀତ ଗୌରବର ଉଦ୍‌ବୋଧନ, ପଲ୍ଲୀ ପ୍ରୀତି ଓ ଦେଶର ସୁଯୋଗ୍ୟ ବ୍ୟକ୍ତିଗଣଙ୍କ ନୀରାଜନ ରୂପରେ ତାଙ୍କର ସ୍ୱଦେଶପ୍ରୀତି ପ୍ରକାଶ ଲାଭ କରିଛି । ଏ ସମ୍ପର୍କରେ ଆଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ମତାମତ ଯଥାର୍ଥ ମନେହୁଏ । ତାଙ୍କ କାବ୍ୟ-ଚେତନାରେ ସ୍ୱାଧୀନାର୍ଥୀ ରୂପପ୍ରାଣତା ଓ ସତ୍ୟବାଦୀର ଉଗ୍ର ଜାତୀୟ-ଆଭିମୁଖ୍ୟ ସମନ୍ୱିତ ହୋଇ ଏକ ଚମତ୍କାର କଳାତ୍ମକ ରୂପ ଗ୍ରହଣ କରିଛି ।'' ୪୨ ।

ତାଙ୍କର ଜାତୀୟଚେତନା 'କୋଣାର୍କ'ରୁ ଆରମ୍ଭ ହୋଇ 'ବିଭାବରୀ', 'ସାଧବ ଝିଅ', 'ଉତ୍କଳ ବନ୍ଦନା' ମଧ୍ୟ ଦେଇ 'କମଳାୟନ'ରେ (୧୯୪୭) ସମ୍ପୂର୍ଣ୍ଣ ବିକଶିତ ହୋଇଅଛି । ଏ ସବୁ କବିତାରେ ରୋମାଂଟିକ୍ ଓ ଜାତୀୟବାଦୀ ଚେତନାର ଚମତ୍କାର ସହାବସ୍ଥାନ ଘଟିଛି । 'ମା ଓଡ଼ିଆ', 'ଉତ୍ତିଷ୍ଠ ଉତ୍କଳ', 'ବନ୍ଦେ ଉତ୍କଳ ଜନନୀ', 'ବୋଇତ ବନ୍ଦାଣ', 'ତଅପୋଇ ବିଳାପ', 'ବିଜୟଲକ୍ଷ୍ମୀ' ଆଦିରେ ସ୍ୱଦେଶ ବତ୍ସଳତା ପ୍ରକାଶ ଲାଭ କରିଛି । ଅତୀତ କୀର୍ତ୍ତି ଓ ବୀରତ୍ୱର ଉତ୍ତରାଧିକାରୀ ଓଡ଼ିଆଙ୍କ ଭୀରୁତା ଓ ଅଧୋପତନକୁ ଲକ୍ଷ୍ୟ କରି କବି 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ ଖେଦ ପ୍ରକାଶ କରିଛନ୍ତି । ୪୩ । ଅତୀତର ବୀରତ୍ୱ ଓ ଐଶ୍ୱର୍ଯ୍ୟ ଯେ ଆଉ ଏହି ହତଶ୍ରୀ ଉତ୍କଳର ଗୌରବ ବୃଦ୍ଧି କରିବାପାଇଁ ଦେଖା ଦେବନାହିଁ ତାହା ହୃଦୟଙ୍ଗମ କରି କବି ମରଣାନ୍ତକ ଯନ୍ତ୍ରଣା ଭୋଗିଛନ୍ତି—

"ଏହ ସୌଭାଗ୍ୟ ଶେଷେ ହାୟ
ଏ ଜାତିର ଶେଷ
ବଞ୍ଚିବା ଧନ ଏ ଖାଲ କଙ୍କାଳ ବିଶେଷ
ବିଶ୍ୱ ଆଗେ ମରଣରୁ ଶତଗୁଣେ ବଳେ ।
ମାନସିଂହ ଗ୍ରନ୍ଥାବଳୀ ପୃ-୩୧୫

ସ୍ୱପ୍ନସମ ଅତୀତ ବିଳୟ ଭଜୁଛି, ମହତ୍ତ୍ୱ ଗରିମା ହଜେଇ ଯାଇଛି, ଏକ ମହାଜାତି ଭୂତଳରେ ପତିତ ହୋଇଛି । ହତ୍‌ଭାଗ୍ୟ ଜାତି ସେ ଆଉ ଫେରି ଆସୁନାହିଁ, ପର ଦ୍ୱାରରେ ଭିକ୍ଷା ମାଗୁଛି । କବିଙ୍କ ଅନ୍ତର ଏଥିନିମିତ୍ତ ଦୁଃଖରେ ଭାଙ୍ଗି ପଡୁଛି । ୪୪ । ହୃତସର୍ବସ୍ୱ, ପରାଧୀନ, ସ୍ଳାନମନା ଜାତିପାଇଁ କବି ଦୁଃଖପ୍ରକାଶ କରିଛନ୍ତି,

"ସବୁ ତ ଯାଇଛି ମାଟି ତଳେ ମିଶି
ରାଜ୍ୟ ଓ ଇତିହାସ
ଅଛି ଖାଲି ଆଜ 'ଅସଭ୍ୟ' ବୋଲି
ଜଗତର ପରିହାସ ।"
'ହରିଶ୍ଚ ଉତ୍କଳ'

ତତ୍କାଳୀନ ଓଡ଼ିଶାରେ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ ଜାଗରଣ ସୃଷ୍ଟି ହୋଇଥିଲା । କବି ନିଜେ ଏହି ଆନ୍ଦୋଳନର ପୁରୋଧାଗଣଙ୍କ ଦ୍ୱାରା ପ୍ରଭାବିତ ହୋଇଥିବାର କଥା ସ୍ୱୀକାର କରିଛନ୍ତି । ୪୫ । ସେହି ଚିନ୍ତାଧାରାରେ ପ୍ରଭାବିତ କବି ଉତ୍କଳୀୟମାନଙ୍କୁ ଆହ୍ୱାନ କରିଛନ୍ତି । ସେ ଉଦ୍‌ବୋଧନ ଓ ଆହ୍ୱାନରେ ତୀବ୍ରତା ଓ ତୀକ୍ଷ୍ଣତା ନଥିଲେ ହେଁ ସମ୍ବେଦନଶୀଳ, ସମମର୍ମୀର କାତରତା ସ୍ପଷ୍ଟ ବାରି ହୋଇଯାଏ । ୪୬ ।

ଅତୀତ ବୀରତ୍ୱ ଓ ରାଜ୍ୟଜୟର ସ୍ମୃତି ହତଚେଷ୍ଟ ଉତ୍କଳୀୟଙ୍କ ସମକ୍ଷରେ ଶୁଣାଇବାକୁ କବି ଆଗ୍ରହ ପୋଷଣ କରିଛନ୍ତି । ଗଙ୍ଗବଂଶର ରାଜ୍ୟଜୟ, ଓଡ଼ିଆ ପାଇକମାନଙ୍କର ବୀରତ୍ୱ କାହାଣୀ ଶୁଣାଇ ଉତ୍କଳୀୟଙ୍କ ମନରେ ଉଦ୍ଦୀପନା ସଞ୍ଚାର କରିଛନ୍ତି । ୪୭ । ବହୁଧର୍ମର ସମନ୍ୱୟ ପୀଠ ଏହି ଜଗନ୍ନାଥ ଧର୍ମସ୍ଥଳୀ ଓଡ଼ିଶାକୁ କବି 'ଧର୍ମ ତତ୍ତ୍ୱରତ୍ନର ଖଣି' ରୂପେ ଅଭିହିତ କରିଛନ୍ତି ।

ଜନ୍ମଭୂମି ପ୍ରତି କବିଙ୍କର ମମତ୍ୱବୋଧ ତାଙ୍କୁ ପଲ୍ଲୀଜୀବନ ପ୍ରତି ଶ୍ରଦ୍ଧାଶୀଳ କରାଇଛି । ପଲ୍ଲୀର ଅଗଣିତ ସୁଖଦୁଃଖର ସ୍ମୃତି, ପଲ୍ଲୀର ସାଧାରଣ ଚରିତ ଆଦି ତାଙ୍କ ଲେଖାରେ ମହିମାନ୍ୱିତ ହୋଇଛନ୍ତି । 'ରେଂଗୁନ ଚିଠି', 'ପଲ୍ଲୀସ୍ନାନ ଘାଟ' 'ପଲ୍ଲୀସନ୍ଧ୍ୟା', 'ବର୍ଷାସନ୍ଧ୍ୟା', 'ଘରପଣା' (ଗୃହମାୟା) 'ବାଲଲକ୍ଷ୍ମୀ', 'ଜଣ୍ଣକାତ',

'ବୋଇତ ବନ୍ଦାଣ', 'ନଷ୍ଟପଲ୍ଲୀ' ଆଦି କବିତାରୁ ତାଙ୍କ ପଲ୍ଲୀପ୍ରେମର ନିବିଡ଼ତା ଚହ୍ନିତ ହୋଇପାରେ । ପଲ୍ଲୀସ୍ନାନ ଘାଟର କୋମଳ ମଧୁର ସୌନ୍ଦର୍ଯ୍ୟ ଓ ଜୀବନସତ୍ତ୍ୱ ପଲ୍ଲୀରେ ସନ୍ଧ୍ୟାକାଳୀନ କୁଳବଧୂ, ଶିଶୁ ଓ କୃଷକ ଆଦିଙ୍କର ନିତ୍ୟନୈମିତ୍ତ ଜୀବନର କୋଳାହଳ ତାଙ୍କ ଲେଖନୀରେ ଚମତ୍କାର ଫୁଟି ଉଠିଛି । ୪୮ । ଉତ୍କଳୀୟ ଦରିଦ୍ର କୃଷକର କରୁଣ ଜୀବନଯାତ୍ରା ପ୍ରତି କବିଙ୍କର ସମବେଦନା ଅପରିସୀମ । ଚିର ଅଭାବଗ୍ରସ୍ତ କୃଷକ 'ଗ୍ରିମି' ଅଧିକ ଅର୍ଥ ଆଶାରେ ରେଙ୍ଗୁନ ଗଲା, କିନ୍ତୁ ତା'ର ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିଲା । ଗ୍ରାମର ସେ ସୁକୁମାର ମଣିଷଟି ସହରର କୃତ୍ରିମତା ତଳେ ରୁଗଣ ହୋଇ ପଡ଼ିଲା । 'ବଳଲକ୍ଷ୍ମୀ' ଓ 'ରେଙ୍ଗୁନ ଚିଠି'ରେ ଦରିଦ୍ର କୃଷକର ଦୁଃଖ ପ୍ରକଟିତ ହୋଇଛି । କବିଙ୍କ ଜନ୍ମମାଟି ପ୍ରତି ପ୍ରୀତି ସମ୍ବଳିତ କବିତାମାନ ତାଙ୍କର 'ମାଟିବାଣୀ' ସଙ୍କଳନରେ ସଙ୍କଳିତ ।

ବ୍ୟକ୍ତି ନିର୍ବାଚନ ତାଙ୍କ ସ୍ୱଦେଶପ୍ରୀତିର ଅନ୍ୟ ଏକ ଦିଗ । 'ବାପୁତର୍ପଣ' ମହାଭାରତୀୟ ପ୍ରୀତିର ନିଦର୍ଶନ ଦିଏ । 'ଗୋପ-ପ୍ରୟାଣ', 'ଗୋପତର୍ପଣ' ସହିତ ସ୍ୱଭାବ କବି ଗୋପାଳକୃଷ୍ଣ', ଭଗବତୀ ଚରଣ ପାଣିଗ୍ରାହୀ ଓ ରାଧାନାଥଙ୍କ ସମ୍ପର୍କୀୟ କେତେକ କବିତା ତାଙ୍କର ଉତ୍କଳ ପ୍ରୀତିର ଜ୍ୱଳନ୍ତ ନିଦର୍ଶନ ଦିଏ । ଜନ୍ମମାଟିର ହିତାର୍ଥେ ଜୀବନ ଉତ୍ସର୍ଗ କରିଥିବା ବ୍ୟକ୍ତିଙ୍କୁ କବି ଶ୍ରଦ୍ଧାପୂର୍ଣ୍ଣ ଅର୍ଘ୍ୟ ଅର୍ପଣ କରିଛନ୍ତି । ଉତ୍କଳମଣି ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନ ପ୍ରତି କବିଙ୍କ ସମ୍ମାନବୋଧ ବିପୁଳ । ଗୋପବନ୍ଧୁ ଚିରନ୍ତନ ଭାରତର କବି ଓ ସାଧକ । ସେ ଯେତେବେଳେ ସ୍ୱର୍ଗରେ ଅମୃତ-ପାନ କରିବେ, ଜନ୍ମମାଟି ତାଙ୍କର ସ୍ମୃତିକୁ ଆସିବ ନିଶ୍ଚୟ । କାରଣ ସ୍ୱର୍ଗଠାରୁ ଜନ୍ମଭୂମି ତାଙ୍କର ଅଧିକ ପ୍ରିୟ । ବୀର ଓ ସାଧକର ପୂଜାକରି ଓଡ଼ିଆଜାତି ନିଜେ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ କବି ଆଶା ପ୍ରକାଶ କରିଛନ୍ତି । ୪୯ । ମହା-ଭାରତୀୟ ବ୍ୟକ୍ତିତ୍ୱ-ପୂଜାରେ ସେ ଧ୍ୟାନଶୀଳ । ଗାନ୍ଧିଜୀଙ୍କ ମୃତ୍ୟୁରେ କବିପ୍ରାଣର ଦରଦ 'ବାପୁତର୍ପଣ'ରେ ଉଚ୍ଚାରିତ ହୋଇଛି । ଅଚ୍ଛୁତ ପ୍ରାଣର ବ୍ୟଥା ବୁଝିଥିବା ଏହି ବ୍ୟକ୍ତିତ୍ୱକୁ କବି 'ବ୍ରାହ୍ମଣରେ'ର ସମ୍ମାନ ଅର୍ପଣ କରିଛନ୍ତି । ୫୦ । ଅଗଷ୍ଟ ପନ୍ଦର ଗାନ୍ଧିଜୀଙ୍କ ସ୍ୱପ୍ନ ସଫଳ କରିବାକୁ ଦେଶବାସୀଙ୍କୁ ଉତ୍ସାହିତ କରି, ଭାରତ ପୁଣି ତା'ର ଶାଶ୍ୱତବାଣୀ ଶୁଣାଇ ବିଶ୍ୱ ସଭ୍ୟତାକୁ ଦିଗ୍‌ଦର୍ଶନ ଦେଉ, ଏହା କବିଙ୍କର କାମନା । ୫୧ । ରାଧାନାଥଙ୍କ ପ୍ରଗାଢ଼ ଉତ୍କଳପ୍ରେମ କବିଙ୍କୁ ଉଦ୍‌ବୁଦ୍ଧ କରିଛି । ରାଧାନାଥଙ୍କ ପ୍ରତି ଅନ୍ତରର ଭକ୍ତି ନିବେଦନ କରି ସେ ଗାଇଛନ୍ତି—

"ଉତ୍କଳର ନଈ, ବଣେ, ହ୍ରଦେ, ଗିରିମାଳେ
ଯେ ରୂପ ନ ଫୁଟି କାହା ଲେଖନୀର ଗାରେ
ଥିଲା ରହି ଯୁଗ ଯୁଗ ମୌନ ଅଭିମାନେ
ପୂଜା ସେ ପାଇଲା; ରାଧାନାଥ, ତବଗାନେ ।" ପୃ ୩୭୩

**ବିଷାଦବାଦ :**

ରୋମାଣ୍ଟିକ୍ ବିଷାଦବାଦ କବିଙ୍କ ଚେତନାକୁ ବହୁ ସ୍ଥଳରେ ଆକ୍ରାନ୍ତ କରିଥିବାର ଜଣାଯାଏ । 'କୃଷ୍ଣ'ରେ ସଙ୍କଳିତ କବିଙ୍କ ଅଧିକାଂଶ କବିତାରେ ଦୁଃଖ, ବିଷାଦ ଜର୍ଜରିତ ଅନ୍ତରର ପ୍ରତିଚ୍ଛବି ଦେଖିବାକୁ ମିଳେ । ଏ ସମ୍ପର୍କରେ କବି ନିଜେ କାବ୍ୟସୂଚନାରେ କହନ୍ତି—"ପ୍ରତ୍ୟେକଟି ସନେଟ୍ ସ୍ୱୟଂ ସମ୍ପୂର୍ଣ୍ଣ ହେଲେ ହେଁ ସବୁଗୁଡ଼ିକୁ ସମ୍ପର୍କିତ କରି ଏକ ଶୋକ ବିକ୍ଷୁବ୍ଧ ଅଶ୍ରୁ-ଦଗ୍ଧ ପ୍ରାଣର କାତରବାଣୀ ଓ ତତ୍ତ୍ୱଜିଜ୍ଞାସା ଓତଃପ୍ରୋତ ଭାବରେ ସୂତ୍ରରୂପେ କାର୍ଯ୍ୟ କରୁଥିବାର ସହୃଦୟପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ । ହୁଏତ କେହି କେହି କ୍ଳାନ୍ତ, କ୍ଷତପଦ, କରୁଣ ପଥିକ ଏଥିରୁ ସାମାନ୍ୟ ଆଶା ଓ ଆଶ୍ୱାସନା ବି ପାଇ ପାରନ୍ତି ।" ଏହି କବିତାମାନଙ୍କରେ କେତେକ ସ୍ଥଳରେ ବିଷାଦ ସହ ଆନନ୍ଦବୋଧର ସମନ୍ୱୟ ଘଟିବାର ଲକ୍ଷ୍ୟ କରିଯାଏ । ବିଷାଦ ଭାବର ପୃଷ୍ଠଭୂମିରେ କବିଙ୍କ ଜୀବନ ଓ ଚେତନାର ବହୁ ଘଟଣା ବିଦ୍ୟମାନ । ଏହାର ସ୍ୱରୂପକୁ ନିମ୍ନଲିଖିତ ବିଭାଗରେ ଚିହ୍ନିତ କରିଯାଇପାରେ । (କ) ପ୍ରେମ-ବିଚ୍ଛେଦରୁ ଉଦ୍ଭୁତ ବିଷାଦ (ଖ) ଜୀବନ ସଂଗ୍ରାମର ସଙ୍କଟରୁ ଜାତ ଦୁଃଖ ଓ ବିଷାଦ (ଗ) ସନ୍ତାନ ମୃତ୍ୟୁ ଜନିତ ବିଷାଦ (ଘ) ଈଶ୍ୱର ପ୍ରାପ୍ତି ନିମିତ୍ତ ଅଭିଳାଷର ଅପୂର୍ଣ୍ଣତାରୁ ବିଷାଦ (ଙ) ପ୍ରକୃତିର ସଂସର୍ଗରୁ ବିଚ୍ଛେଦ ଜନିତ ବିଷାଦ ।

ଗଭୀର ପ୍ରେମାନୁଭୂତିରେ ରସାଣିତ କବିଙ୍କ କବିତାଗୁଡ଼ିକ ବେଳେବେଳେ ପ୍ରିୟା ବିଚ୍ଛେଦଜନିତ ବେଦନାରେ ଆକ୍ରାନ୍ତ ହୋଇପଡେ । ସମାଜର ସମ୍ବେଦନ ହୀନ ଆଚରଣରେ କବି ହତାଶ ହୋଇ ପଡ଼ନ୍ତି । ୫୨ । ଜୀବନ ସଂଗ୍ରାମର ବିଭିନ୍ନ ସଙ୍କଟ ଏହି ରୋମାଣ୍ଟିକ ପ୍ରେମପ୍ରବଣ କବିଙ୍କୁ ବାରବାର ଆଘାତ କରେ । ବସ୍ତୁବାଦୀ ଜଗତରେ ଅଶାନ୍ତଃଶ୍ୱାସୀ ପ୍ରତିଯୋଗିତା ନିମିତ୍ତ କବି ଅସମର୍ଥ । ତେଣୁ ମହା କନ୍ଦଳରେ ପଡ଼ି କବିପ୍ରାଣ ବିକଳ ଆର୍ତ୍ତନାଦ କରି ଉଠେ, ଲହୁଲୁହାଣ ହୋଇଯାଏ । ଜୀବନର ଏହି କ୍ରୁର କଶାଘାତରେ କବି ବ୍ୟଥିତ ସ୍ୱରରେ ଗାଆନ୍ତି "କ୍ଳେଶିତ ଜୀବନ ସ୍ତୁଚ୍ଛେ ଜୟଟୀକା ପାଇଁ / ଶ୍ରଦ୍ଧା, ଶକ୍ତି, କିଛୁ ହେଲେ ମୋର ଥିଲା ନାହିଁ / କେ ଦେଲା କପାଇଁ ଠେଲି ଏ ମହା କନ୍ଦଳେ / ଚେଣ୍ଡି ଚୂର୍ଣ୍ଣ, ବିକଳ ମୁଁ ବାହାରେ ଅନ୍ତରେ ।" ୫୩ । ଜୀବନ ପ୍ରତି କବିଙ୍କ ଜୀବନପ୍ରତି ବିମୁଖ କରିଏ କମ୍ୱା ସମାଜ ପ୍ରତି ଅସହିଷ୍ଣୁ କରିଏ । ତାଙ୍କ ମତରେ

"କାଞ୍ଚନ ସମରେ ପଶି ଜୀବନ ଲାଞ୍ଛିତ
କରିବାକୁ ନାହିଁ ମୋର ମାନସ କଞ୍ଚିତ"—ସମର ବିମୁଖ

ତେଣୁ ସେ ସମାଜ ଓ ଜୀବନକୁ ସାମ୍ନା କରିବ କୁ ପରାଙ୍ମୁଖ ହୁଅନ୍ତି । ଦୂରବନ ଓ ନିର୍ଜନତାରେ କାଳ କାଟିବାକୁ ଚାହାନ୍ତି । ୫୪ । କବିଙ୍କର ଏହି

ପଳାୟନବାଦୀ ମନୋବୃତ୍ତି ଜୀବନ ଯୌବନର, ପ୍ରେମ ଓ ସୌନ୍ଦର୍ଯ୍ୟ-ପିପାସାର ଅସଫଳତାରୁ ଜାତ ଏବଂ ଜୀବନ ସଂଗ୍ରାମରେ ପରାଜୟର ଆଶଂକାରୁ ଉଦ୍ଭୂତ । ଜୀବନ ପ୍ରତି କବିଙ୍କ କୁଣ୍ଠିତ ଭାବ 'ସମର ବିମୁଖ' କବିତାର ଛନ୍ଦେ ଛନ୍ଦେ ପ୍ରକାଶିତ । ୫୫ ।

ତାଙ୍କର 'ମୋ ଧନରେ', 'ଯାଇଛୁ ସେ', 'ଶିଶୁର ଦାନ', 'ରୂପାନ୍ତର' ଆଦି କବିତା ସନ୍ତାନବିୟୋଗ ବିଧୁର ଆହତ ଅନ୍ତରର ଅଶ୍ରୁ ବହନ କରେ । ବାଞ୍ଛିତ ସନ୍ତାନର ମୃତ୍ୟୁରେ ପିତୃମାନସ କରିଉଠେ ହାହାକାର ।

"ଅନ୍ତରାଳ ହୋଇଛୁ ଏବେ ଘୋର ଅନ୍ଧକାରେ
ଅକାଞ୍ଚନ ନିଧି ହଜିଗଲ କେଉଁଠାରେ
ହେଲେ ଗତ ହୁଏ କାଳ/ତୋ ସ୍ମୃତି ପ୍ରବଳ
ଝିଟିକର ହୋଇ ମନେ କରୁଛୁ ବିକଳ, ମୋ ଧନରେ ।" ପୃ ୩୦୬

କବି ପ୍ରାଣର ଆଶା ଅଭିଳାଷର ଅପୂର୍ଣ୍ଣତାରୁ ବିଷାଦ ସଂଜାତ ହୋଇ 'ଆକାଂକ୍ଷିତ ଶୂନ୍ୟତା', 'ଏକାନ୍ତ ଏକାକୀ', 'ଉଦ୍‌ଗମନ' ଆଦି କବିତାରେ ପ୍ରକାଶ ପାଇଛି । ଏହି ଆଶା ଅଭିଳାଷ କେବେ ଈଶ୍ୱର ପ୍ରାପ୍ତି ଦିଗକୁ ପ୍ରଧାବିତ ତ କେବେ ଦେଶର ଅଧୋପତନରେ ମର୍ମାହତ । ତେଣୁ ବନ୍ଧୁ କୁଟୁମ୍ବ ସଙ୍ଗରେ ମଧ୍ୟ କବି ନିଃସଙ୍ଗ । ୫୬ । ଏହି ସ୍ୱର କବି ରାଧାନାଥଙ୍କ "ସଂସାରୀ ସଙ୍ଗତେ ସଙ୍ଗୀ ହେବାପାଇଁ/ କେବେ ହେଁ ମୋହର ମନବଳେ ନାହିଁ" ସହି ସାମ୍ୟ ପ୍ରତିଷ୍ଠା କରେ ।

ପ୍ରକୃତି ଉତ୍ସଙ୍ଗରୁ ବିଚ୍ଛେଦ ଜନିତ ବିଷାଦ ମଧ୍ୟ ସ୍ଥାନେ ସ୍ଥାନେ କବିଙ୍କୁ ହତାଶ କରିଛି । ଜ୍ୟୋତ୍ସ୍ନାଚର୍ଚ୍ଚିତ ମହାନଦୀରେ ବିହାର କରୁଥିବା କବି ଅନ୍ଧକାରି ଗୃହାଙ୍ଗନକୁ ଫେରିବାକୁ ଚାହାନ୍ତି ନାହିଁ । କିନ୍ତୁ ଫେରିବା ଅବଶ୍ୟମ୍ଭାବୀ । ତେଣୁ କବି କହନ୍ତି—

"ଫେରିବା କହୁଛ ବନ୍ଧୁ ! ପୁଣି ଅନ୍ଧକାରେ ?
ଫେରିବାକୁ ହେବ ସତେ ? ହାୟ ଏ ଜୀବନ ?
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର ପ୍ରାଣର ଦହନ ।"
'ମହାନଦୀରେ ଜ୍ୟୋସ୍ନା ବିହାର'

ଏତାଦୃଶ ବିଷାଦ ଜର୍ଜରିତ ପ୍ରାଣ ପଳାୟନ ନିମିତ୍ତ ବ୍ୟାକୁଳ ହେବା ଅସ୍ୱାଭାବିକ ନୁହେଁ । ପ୍ରେମ ଓ ରୋମାନ୍ସ ଭିତରେ ଯୌବନକାଳ ବିତାଇଥିବା କବି ଜୀବନ ସଂଗ୍ରାମ ତ୍ରସ୍ତ ହୋଇ ପଳାୟନ ପଥ ଖୋଜିବାରେ ଲାଗିଛନ୍ତି । ୫୭ । ଏ ସମ୍ପର୍କରେ ଆଲୋଚକ ନବକିଶୋର ଦାଶ ଯଥାର୍ଥରେ କହନ୍ତି—"ଯେଉଁ କବିର

ଜୀବନ ଯୌବନ ପ୍ରେମାନସ ଭିତ୍ତିରେ ଗଢ଼ିଉଠିଛୁ ସେ କବି ବାସ୍ତବ ପଳାୟନବାଦୀ ହେବ ହିଁ ହେବ । × × ପ୍ରେମ ଓ ସୌନ୍ଦର୍ଯ୍ୟର ଉପାସକ ଏକବି, ଜୀବନ ସଂଗ୍ରାମ କଥାଭାବି ଆହତ ସୈନିକ ଭଳି ଭୀତ, ତ୍ରସ୍ତ, ମୁହ୍ୟମାନ ହୋଇପଡ଼ନ୍ତି । × × 'ସମର ବିମୁଖ' କବିତା ପଳାୟନ ମନୋଭାବର ଶ୍ରେଷ୍ଠ ନିଦର୍ଶନ ରୂପେ ସମାଲୋଚକର ଦୃଷ୍ଟିପଥରେ ପଡ଼େ ।" ୫୮ । କବି ମାନସିଂହଙ୍କ ଗୀତିକବିତା ଗୁଡ଼ିକରେ ଭାବ ବୈଚିତ୍ର୍ୟ ଉପଲବ୍ଧ କରିଯାଇ ପାରେନାହିଁ । ଅଧିକାଂଶ କବିତାରେ ଏକପ୍ରକାର ବର୍ଣ୍ଣନା ବେଳେ ବେଳେ ଅନାଗ୍ରହ ସୃଷ୍ଟି କରେ । ବିଶେଷତଃ 'କୃଷ୍ଣ' ଓ 'ହେମଶସ୍ୟ' ରେ ବିଚ୍ଛୁରିତ ବିଭୂପ୍ରେମ ଓ ମାନବ ପ୍ରେମରେ ଗୋଟିଏ ଭାବର ବର୍ଣ୍ଣନାକୁ ନେଇ ଏକାଧିକ କବିତା ରଚିତ ହୋଇଥିବାର ଲକ୍ଷ୍ୟ କରିଯାଏ । ଈଶ୍ୱର ଅନ୍ୱେଷଣ ଜନିତ କବି ପ୍ରାଣର ବ୍ୟାକୁଳତା ଏକାଧିକ କବିତାରେ ବୈଚିତ୍ର୍ୟହୀନ ରୂପ ବହନ କରିଛି ।

"ଅଗ୍ନିଜାଳ ରଖ ପ୍ରଭୁ, ପ୍ରାଣ ଅଭ୍ୟନ୍ତରେ
ବାହାରେ ଯା ଘଟୁପଛେ ଉତ୍‌ଥାନ ପତନ......
ରଖ ମୋ ଆସନ ପଛେ ସର୍ବର ପଛରେ
ଭୁଲିବାକୁ ନ ଦିଅ ମୋ ଦୈବତ ଧରମ"
'ହୋମାଗ୍ନି'—'କୃଷ୍ଣ' ଗ୍ରନ୍ଥାବଳୀ ପୃ ୪୫୦

ଏବଂ "ଜୀବନର ସୁଖ, ଦୁଃଖ ଆଲୋକ ଅନ୍ଧାରେ
ମାନ ଅପମାନେ, ଚିର ଉତ୍‌ଥାନ ପତନେ
ହେ ପିତ, ମୋ ଲକ୍ଷ୍ୟ ଥାଉ ଧ୍ରୁବ ତାରକାରେ...
'କୃଷ୍ଣ' ଗ୍ରନ୍ଥାବଳୀ ପୃ ୪୫୧

ପୁନଶ୍ଚ "ଯେ ଜ୍ୟୋତିରେ ଅଛ ଗଢ଼ି ଚନ୍ଦ୍ର, ସୂର୍ଯ୍ୟତାରି
ତାହାର କଣିକା ଥାପି ରଖିଛ ଅନ୍ତରେ
ତାକୁ ଭୁଲି, ଭ୍ରମି ହେଲି ଏ ଜୀବନ ସାରି
ଆଲୋକ ଖୋଜିଲି ବୁଲି ସହସ୍ର ବର୍ତ୍ମରେ ।"
'ହୋମାଗ୍ନି' (କୃଷ୍ଣ)

ସେହି ଅଚିନ୍ତ୍ୟମୟ ସତ୍ତାକୁ ଖୋଜି କବି ସର୍ବଦା ଘୂରି ବୁଲୁଛନ୍ତି । ଏସବୁ କବିତ ରେ ଥିବା ଗୋଟିଏ ଅନୁଭୂତିରୁ ଅନ୍ୟଟିକୁ, ଗୋଟିଏ ଉପଲବ୍‌ଧିରୁ ଅନ୍ୟଟିକୁ, ଗୋଟିଏ ଦର୍ଶନରୁ ଅନ୍ୟଟିକୁ ଉତ୍‌କ୍ରାନ୍ତି କରି ଦେଖିହୁଏ ନାହିଁ ।

"ଜନ୍ମେ ଜନ୍ମେ କରିଛୁ ଯା' ଯେତେ ଅନ୍ୱେଷଣ
ତୃପ୍ତି ଖୋଜି ଏଣେ ତେଣେ ଧାଇଁଥିବି, ଯାହା

ବାସନାର ଚରିତାର୍ଥେ ଯେତେକ ସାଧନ
ସେ ସବୁ ହେ ନାଥ, ତୋତେ ଖୋଜିବାର ସ୍ପୃହା"
'ଜନ୍ମ ଜନ୍ମାନ୍ତର' (କୃଷ୍ଣ)

ଏବଂ "ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ
ଆଜି ଦେଖେ ହତଭାଗ୍ୟ, ଉତ୍ସ ଆନନ୍ଦର
ଆପଣା ଅନ୍ତରେ ସ୍ଥିତ, ଆବୃତ୍ତ ଅଜ୍ଞାନେ
ସର୍ବ-ଅନୁଭୂତି-ମୂଳ, ପରମ ସୁନ୍ଦର"
'କସ୍ତୁରୀମୃଗ', (କୃଷ୍ଣ)

ପ୍ରେମାନୁଭୂତିରେ ରଚିତ କବିତାଗୁଡ଼ିକରେ ମଧ୍ୟ ଏତାଦୃଶ ବୈଚିତ୍ର୍ୟମାନ ବର୍ଣ୍ଣନା ଦେଖିବାକୁ ମିଳେ । ୫୧ ।

ସେଦିନ ନୀରବ-ଶାନ୍ତ ନିଶୀଥ ବଲ୍ଲରୀ
(ପରିପୂର୍ଣ୍ଣ-ଆଲୋକିତ, ଚନ୍ଦ୍ର-କର ଲଭି)
ସହସା କାହାର ମୃଦୁ କଙ୍କଣ···ଝଙ୍କାରେ
ହୋଇଲା ଝଂକୃତ ଧୀରେ ।"···'ପ୍ରେମ ସ୍ୱର୍ଣ୍ଣ' 'ହେମ ଶସ୍ୟ'
(ପୃ-୮୮)

ଏବଂ "ସେଦିନ ପୂର୍ଣ୍ଣିମା ନିଶା;—ରଜତ ଶର୍ବରୀ
ହସୁଥିଲା ଧରଣୀର ସର୍ବାଂଗ ଆବରି;
ଅର୍ଦ୍ଧରାତ୍ରେ ବଲ୍ଲରୀରେ ଶୀତ-ସମୀରଣେ
ସହସା ଭାଙ୍ଗିଲା ନିଦ୍ରା ।" 'ସରମ' (ହେମ ଶସ୍ୟ)

'ହେମଶସ୍ୟ', 'କୃଷ୍ଣ' ସଂକଳନରେ ସନ୍ନିବିଷ୍ଟ ଚତୁର୍ଦ୍ଦଶପଦୀ କବିତା ଓ 'ଦକ୍ଷିଣା ପ୍ରତି' ଆଦି ସମ୍ବୋଧ ଗୀତିର ରଚୟିତା କବି ମାନସିଂ ଆଙ୍ଗିକରେ ରୋମାଣ୍ଟିକ୍ ଗୀତି କବିତାର ଆକାରକୁ ଗ୍ରହଣ କରିଛନ୍ତି । କିନ୍ତୁ ତାଙ୍କର ଚତୁର୍ଦ୍ଦଶପଦୀ କବିତାଗୁଡ଼ିକରେ ଭାବ ଓ ରୂପର କ୍ଳାନ୍ତିକର ପୌନଃପୌନିକ ବର୍ଣ୍ଣନା ଦେଖିବାକୁ ମିଳେ ।

ରାଧାନାଥ ସାହିତ୍ୟ ଓ ସତ୍ୟବାଦୀ ସାହିତ୍ୟ ମଧ୍ୟ ଦେଇ ସବୁଜ ଚେତନା ସଂବଳିତ ସାହିତ୍ୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ରୋମାଣ୍ଟିକ୍ ଚିନ୍ତାଧାରାର ପ୍ରବାହରେ କାବ୍ୟ କବିତା କ୍ଷେତ୍ରରେ ଯେଉଁ ବିଭିନ୍ନ ବିଭାବ ଆତ୍ମପ୍ରକାଶ କରିଥିଲା, କବି ମାନସିଂଙ୍କ କବିତାରେ ସେଗୁଡ଼ିକ ଏକତ୍ର ସମନ୍ୱିତ ହୋଇଅଛି । ରାଧାନାଥଙ୍କ ପ୍ରକୃତି ପ୍ରୀତି, ରାଧାନାଥୀ ଓ ସତ୍ୟବାଦୀ ଜାତୀୟତା, ରୋମାଣ୍ଟିକ୍ ପ୍ରେମ ଓ

ସୌନ୍ଦର୍ଯ୍ୟ ଚେତନା, ସର୍ବୋପରି ସବୁଜ ଚେତନା ସମ୍ପର୍କିତ ସମରବିମୁଖ, ପଳାୟନ ମନୋଭାବ ଏକଦିତ ହୋଇ ତାଙ୍କ ସୃଷ୍ଟି ସମ୍ଭାରକୁ ରୋମାଣ୍ଟିକ୍ କାବ୍ୟ କବିତାର ସଫଳତା ପ୍ରଦାନ କରିଅଛୁ ।

---

୧ । 'ଧୂପ'ର ମୁଖବନ୍ଧ ।

୨ । "ଉଚ୍ଛଳ ଯଉବନ/କେତେକାଳ ଥିବ ଉଚ୍ଛଳ
ପଙ୍କ୍ତିଶ୍ରେଣୀ ଦେଉଥିବ କେତେକାଳ/ଚୁମ୍ବନ କୋମଳ,
କେତେଦିନ ଖେଳିବା କରି ସ୍ୱପ୍ନ ସଙ୍ଗେ ତେଜି ବାସ୍ତବତା
ଲଘୁ ମଧୁରତା
ପାଉଥିବ ଜ୍ୟୋତ୍ସ୍ନା ସଙ୍ଗେ ରତିକ୍ରୀଡ଼ା ନୀରବ ତରଳ ?"—
'ଉଚ୍ଛଳ ଯୌବନ

୩ । "ସେ ମୋହନ-କର କଣ୍ଠେ ମୋ ଢାଳି/ବନ୍ଧୁକି ଅଧରେ ଗାଢ଼େ ଦେଇ ଢାଳି
ସମ୍ରାଟ ଯାହା କରିଦେଲ ରାଣୀ ! ମତେ/ଜଗତ ଯାଏନା ପ୍ରତେ ।"
—'ଅପ୍ରତ୍ୟୟ' (ଧୂପ)

୪ । "ହାସ୍ଯ ସଖି, ଯଉବନ ଗତେ/ପ୍ରେମର ଉଷ୍ଣତା ତୁଟେ, କହୁଛନ୍ତି ମତେ
ଅଭିଜ୍ଞ ଜନେ ଗୋ ନିତ; ତେବେ କହ ସଖି/ସେ ପ୍ରେମ କେମନ୍ତେ ଆଉ
ପାରିବା ଗୋ ରଖି
ଶୀତ-ରକ୍ତ ପ୍ରୌଢ଼ ଦେହେ ? ପଳିତ କପୋଳେ ପ୍ରଣୟ ଫୁଟଇ କାହିଁ ?"
—'ପ୍ରେମ ଓ ଜରା' 'ଧୂପ' ପୃ: ୧୨୭

୫ । "ଠିଆ ହୁଅ କକ୍ଷ ମଧ୍ୟେ ଧୀରେ ଧୀରେ ଧୀରେ
ଅଙ୍ଗ ଆଭରଣ ତେଜି ଏ ମଞ୍ଚରେ
ପଡ଼ୁ ଶାନ୍ତ ଊର୍ମିସମ, ସ୍ଫୁରିତ ପୃଷ୍ଠରେ
କୃନ୍ତ ଆଭରଣ ଦେଇ ମୂର୍ଚ୍ଛିତା କେ କରେ
ଦେଖିଛ କେଉଁଠି ସଖି ? ହୁଅ ଦିଗମ୍ବରୀ
ମେଘମୁକ୍ତ ଉଷାସମ..."— 'ରୂପାଲୋକ' ପୃ: ୧୮୩

୬ । "ମାନସିଂହଙ୍କର ପ୍ରେମ କବିତାରେ ଅନୁଭୂତିର ସ୍ୱାକ୍ଷର ଉତ୍କୀର୍ଣ୍ଣ ହୋଇଛୁ, ସନ୍ଦେହ ନାହିଁ । କିନ୍ତୁ ସେହି ଅନୁଭୂତି ଚିରନ୍ତନତାର ସ୍ତରକୁ ଉତ୍ତୀର୍ଣ୍ଣ ହୋଇ ପାରିନାହିଁ । କାରଣ ମାନସିଂହ ପ୍ରେମ କବିତାରେ ଅନୁଭୂତିର ଜଟିଳତା (Complexity) ଓ ଗଭୀରତା ନାହିଁ ।"—'ପ୍ରେମ କବିତାର ପରମ୍ପରାରେ କବି ମାନସିଂହ' ଅଧ୍ୟାପକ ବନମାଳୀ ମିଶ୍ର ('ମାନସିଂହ ସୃଷ୍ଟି ଓ ସମୀକ୍ଷା' ପୃ: ୧୪)

୭ । "ସବୁଯାଇ ରହୁଯାଏ କେବଳ ସେ କେମନ୍ତେ କେଜାଣି
ମୁଗ୍‌ଧା ଏକ କିଶୋରୀର ଲଜ୍ଜା ପ୍ରେମ ମଧୁର ଗୃହାଣି ।
ନିଷ୍ପାପ ସେ ସ୍ୱପ୍ନମୟ, ରସମୟ, ବିମଳ ଦ' ଆଖି
ପ୍ରାଣର ଦ' ବାତାୟନ, ଅନ୍ତରର ସତ୍ୟ-ବାର୍ତ୍ତା ସାକ୍ଷୀ,
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମ ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧରିତ୍ରୀଚରଣ !"
(ଧରିତ୍ରୀଚରଣ ପୃ: ୨୩—'ହେମଶସ୍ୟ')

୮ । "ଶୁଣିବ ଯେବେ ପ୍ରିୟା ଗୋ ମୋର/ପ୍ରଣୟୀ ତବ ଜଗତେ ନାହିଁ
ଆସିବ ମୋର ଭସ୍ମପାଶେ/ଦେବ ଗୋ ତାରେ ଦେହର ଛାଇ
ପାରିବ ଯଦି ଭସ୍ମ ପରେ/ପଦ୍ମପାଦ ଘୁଞ୍ଚିବ ଧୀରେ
ଜୀବନ ତେବେ ଲଭିବି ସଖି/ନିଶ୍ଚୟ ମୁଁ ମରଣ ପାରେ ।"
ସନ୍ଧିତ ତୁଳନୀୟ
"She is coming, my own, my sweet
Were it even so airy a tread
My heart would hear her and beat
Were it earth in an earthly bed
My dust would hear her and beat
Had I lain for a century dead
Would start and tremble under her feet
Ane blossom in purple red"
Maud. Part I by—A. Tennyson

୯ । "Love is mysterious in souls do grow
But yet the body is his book" –
'The Ecstasy' John Donn

୧୦ । "ମତେ ଏଥି ରଖି/ଯାଅ ଯଦି ପରପାରେ, ପ୍ରେମ ମୃତ୍ୟୁଞ୍ଜୟ
ଶକ୍ତି ଦେବ ବିରହରେ । ମରଣରେ ଜୟ
କରିବି ମୁଁ ଚିତା-ଭସ୍ମେ ଗ୍ରୁଜି ଦେହ-ସୀମା
ଦେହ ତଳେ ପୂଜି ତବ ମାନସୀ ପ୍ରତିମା."— ହେମପୁଷ୍ପ (ପୃ: ୧୯)

୧୧ । "ପ୍ରିୟାର ସରସ ସ୍ନେହ ଦେହ ଅବସାନ/କରିଅଛି ଶେଷେ ମୋର ।
ଆତ୍ମା ପରିତ୍ରାଣ

ଲଭିଛୁ ବନ୍ଧନ ଦେଇ, ଇନ୍ଦ୍ରିୟର ଶେଷେ
ଅତୀନ୍ଦ୍ରିୟ ସୁଖଲଭି ଆଜ ଅବଶେଷେ/ହୋଇଛୁ ମୁଁ ଜଡେନ୍ଦ୍ରିୟ ।,'
—'ଦେହ ଓ ସ୍ନେହ'

୧୨ । "ଦେହର ଜଡ଼ ଅନୁଭୂତିରୁ ଆତ୍ମାର ଚେତନାଲୋକକୁ, ରୂପର ପୁଷ୍ପିତ ପ୍ରାଙ୍ଗଣରୁ ଅରୂପର ଅଳକାପୁରୀକୁ ଏବଂ ସୀମାର ସଙ୍କୀର୍ଣ୍ଣ ନଗଡ଼ରୁ ବୃହତ୍ତର ଭୂମା ପରିସରକୁ ଅନ୍ତରର କବି ମନୁଷ୍ୟଟି କ୍ରମଶଃ ଗତିଶୀଳ ହୋଇଛି ଓ ପ୍ରଣୟିନୀର ରୂପାଲୋକରେ ମଧ୍ୟ ଅରୂପର ସନ୍ଧାନ କରିଛି । କବି ପ୍ରାରେ ପ୍ରଣୟାଭିସାର ଦେହ କାରାଗାରର ଇନ୍ଦ୍ରିୟ ବନ୍ଧନୀ ମଧ୍ୟରେ ଆରମ୍ଭ ହୋଇଥିଲେ ହେଁ ପରିଣତିରେ ଏକ ସିଦ୍ଧି ଧାମରେ ଆସି ପହଞ୍ଚିଛି, ଯେଉଁ ଧାମ କ ମୁକ୍ତି, ସୌନ୍ଦର୍ଯ୍ୟ ଓ ନିତ୍ୟ ଆନନ୍ଦର ଗୋଲୋକ ।"
—'ମାନସିଂହଙ୍କ କାବ୍ୟ ପ୍ରତିଭା', 'ଡଗର' ଅଗଷ୍ଟ ୧୯୫୭
ଅଧ୍ୟାପକ ଚନ୍ଦ୍ରାମଣି ବେହେରା

୧୩ । 'ମୁଁ କାହିଁକି ଲେଖେ'— ଡଃ ମାନସିଂ 'ଡଗର ୧୪।୧ ସଂଖ୍ୟା

୧୪ । "ରୂପ ଓ ସୌନ୍ଦର୍ଯ୍ୟର ଶବ୍ଦ ହିଁ ତାଙ୍କର ଶବ୍ଦ । ସୌନ୍ଦର୍ଯ୍ୟ ମୋହ ତାଙ୍କୁ କରିଛି କୁଣ୍ଠିତତା ପ୍ରତି ବିଦ୍ୱିଷ୍ଟ ଏବଂ ସୌନ୍ଦର୍ଯ୍ୟର ସନ୍ଧାନ ହିଁ ତାଙ୍କର କବିତାରେ ଘଟାଇଛି ମହତ୍ କଳ୍ପନା ଓ ରୋମାଣ୍ଟିକ୍ ସ୍ୱପ୍ନର ସଙ୍ଗମ । ତାଙ୍କ ସୌନ୍ଦର୍ଯ୍ୟବୋଧ କିନ୍ତୁ ସର୍ବଦା ସତ୍ୟ, ଆନନ୍ଦ ଓ ମଙ୍ଗଳର ନିୟନ୍ତ୍ରଣାଧୀନ ।"—'ନିସର୍ଗର ଉଦ୍‌ଗାତା ମାନସିଂହ'-ଶ୍ରୀ ଦାଶରଥି ଦାସ
'ମାନସିଂ ସୃଷ୍ଟି ଓ ସମୀକ୍ଷା' ପୃ: ୩୮

୧୫ । "ସେ କିନ୍ତୁ ମର ସେ ନାହିଁ—ମିଥ୍ୟା ସେ ବଚନ
ବିଶ୍ୱେ ନାହିଁ ରୂପ ଆଉ ସ୍ନେହର ମରଣ ।"
ଗ୍ରନ୍ଥାବଳୀ ପୃ: ୩୦୮

୧୬ । "O I wish I was as certain of the end of all your troubles as that of your momentary start about the authenticity of the Imagination. I am certain of nothing but of the holiness of the Heart's affections and the truth of Imagination—what the imagination seizes as Beauty must be truth—whether it existed or before or not—for I have the same idea of all

our passions as of Love they are all in their sublime, creative of essential beauty···" John Keats 'letter to Benjamin Bailey—"The letter of John Keats" **1814—1821** Vol I Edited by Hyder Edward Rellins, Harvard Univ. Press Cambridge, Mass P. P. **182-187. Post marks** Leatherhead **022** No. **22-1817**

୧୭ । "ତରୁଣୀ ପଦତଳ/ଶୋଣିତ-କମଳ/କପୋଳେ ଫୁଟେ ଆଜ ପଲାଶ
ଦକ୍ଷିଣ ବାତାୟନ/ମେଲି କରୁଁ ଶୟନ/ହୃଦୟେ ପାଏ କି ସେ ପରଶ ।"
'ରୂପଦେବତା' (ହେମପୁଷ୍ପ)

୧୯ । "ରୂପର ଦେବତା ସେ ଭୁବନେ ପ୍ରୀତି-ପାଶେ/
ଭିଡ଼ିବା ପାଇଁ ବୁଲେ ଭୁବନେ
ତେଣୁ ରୂପର ମେଳା ଭୁବନେ କରେ ଖେଳା/
ତେଣୁ ପ୍ରଣୟ ଲୀଳା ଜୀବନେ ।"
ହେମ ପୁଷ୍ପ (ପୃ-୧୩୧)

୨୦ । "ରୂପ କି ହୁଏ ଭୁଲ/ଅଲକ୍ତ ରେଖା ରଚେ ବୁକୁରେ ତାର ତୂଳୀ
ସ୍ଵର୍ଣ୍ଣବେଣୀ ଶୋଭା କନକ ଗଳାବାହୁ/ମରଣ କଲେ ସହୁ ରହିବ କ୍ଷଣେ ଚାହିଁ"
—"ଇସ୍ରାମୀ କଣେସ୍ତ"

୨୧ । "ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ" ଡଃ. ଖଗେଶ୍ଵର ମହାପାତ୍ର
'ମାନସିଂ ସୃଷ୍ଟି ଓ ସମୀକ୍ଷା' (ପୃ-୧୫୧)

୨୨ । "ପ୍ରଦୀପ ଜଳୁଛୁ କିଆଁ ଲଭିଅ ତାହାରେ
ତବ ରୂପ ଶିଖା ଜଳୁ ଘନ ଅନ୍ଧକାରେ ···"

୨୩ । "···ଜଗତେ ପ୍ରାଣ ତାର ଜୁହାରେ ନଇଁଦୂରୁ/ତେଣୁ ଗୋ ବିଦେଶିନୀ,
ଘନନୀଳ-କେଶିନୀ ଧବଳ-କେଶେ ଦେଖା ପାଇଁ ଗୋ
ଟଳେ ହେଁ ଅଭିଳାଷ ନାହିଁ ଗୋ"—ଇସ୍ରାମୀ କଣୋସ୍ତ" (ପୃ-୧୩୬)

୨୪ । "···ନର ସୌନ୍ଦର୍ଯ୍ୟରେ
ଭକ୍ତ ସମ ଅଛୁ ଚାହିଁ ମୁଗ୍‌ଧ ନୟନରେ
କେତେ ବାର ସଖି ମୁହିଁ, ବିଦଗ୍‌ଧ ସ୍ରଷ୍ଟାର
ସୃଷ୍ଟିର ମହିମା ସ୍ମରି । କିନ୍ତୁ ଗୋ ଆତ୍ମାର

ସୌନ୍ଦର୍ଯ୍ୟ ଉର୍ଦ୍ଧ୍ୱରୁ ବଳି, ଯାର ସମ୍ମୁଖରେ
ମନୁଷ୍ୟ ନୁଆଁଏ ମଥା ।"

୨୫ । "ତରୁଣ କବର ଆଶା"—(ଐ,ପ)

୨୬ । "ଯେ ସ୍ୱପନ ଦେଇଥିଲ ଆଖେ/ଯାଦୁକରୀ କଳ୍ପନା-ଅଞ୍ଜନ,
ଲାଗୁଥିଲ କଳ୍ପଲୋକ ସମ/ମୃତ୍ତିକାର ରୂଢ଼ ଏ ଭୁବନ ।
କୃଷ୍ଣକେଶ ଶୁକ୍ଳ ହେଉ ପଛେ/ଅଙ୍ଗ ହେଉ ବଗତ-ଯୌବନ,
ଖେଳୁଥାଉ ସ୍ୱପ୍ନିଳ ଅନ୍ତରେ/ସେ ଦିନର ଗୀତମୟ ମନ ।
—'ପଳାତକ ହେ ମୋର ଯୌବନ' ପୃ-୫୧୫

୨୭ । "ବ୍ରଜର ବେଳା'—ସାଧବଝିଅ

୨୮ । "ସାଧବ ପୁଅ/କୁଆଡ଼େ ଯାଅ/ହୋଇ ଦରିଆ ପାରି
ତମ ବୋଇତ/ନେବ କି ମତେ/ଯିବି ମୁଁ ଘରଛାଡ଼ି···
× × ନୀଳ ମାଣିକ/ପବଂତ ଶିଖ/ଉପରୁ ରୂପା ନଈ
ଆସଇ ବହି/ସଙ୍ଗୀତ ଗାଇ ?—କି ସୁଖ ଏଠି ରହି ?
'ସାଧବ ପୁଅ' ପୃ ୭୫୧-୭୫୨

୨୯ । "ଦେବତା କେ ଅଛ ଦେବ କିକ/ଦେହ ମୋହର ମଳୟ କରି,
ପ୍ରିୟତମା ପାଶେ ଉଡ଼ି ମୁଁ ଯାଆନ୍ତି/କାରି ବାତାୟନ ଧରି ।
ଗଣ୍ଡେ ଅଶ୍ରୁ-ଧାର,/ପୋଛି ମୁଁ ଦିଅନ୍ତି/ଘୋଡାଇ
ରଖନ୍ତି/କପାଳେ ବିନ୍ଦୁ-ଝାଳ ।" —'ବନ୍ଦିନୀ ପ୍ରିୟା' ପୃ-୮୯

୩୦ । "ଜାଗ୍ରତ ମୁଁ ଯେ ସଖି/ବିନା ଡାକେ ଅରେ ଯେ
ଜୋଛନାର ଚୁମ୍ବନେ/ଅଜ୍ଞାତ ଡରେ ଯେ" —'କୋଣାର୍କର ଲାସ୍ୟଲୀଳା'

୩୧ । "କହ ଚନ୍ଦ୍ର । କହ ସେପରି କି ଆଉ
ଦେଖିଛ କାହାର ଚକ୍ଷେ
ଗୁରୁ ସୁରାମୟ ସେପରି ପ୍ରଣୟ
ଗଭୀର କାହାର ବକ୍ଷେ ? —'ବନ୍ଦିନୀ ପ୍ରିୟା' ପୃ-୯୧

୩୨ । "ମୋ ପାଇଁ ମଳୟ ! ପ୍ରିୟାର କପୋଳେ
ବୁଲାଇ ଦେବୁରେ ହାତ,
ପୋଛି ଦେବୁ ଧୀରେ ଖରୀ ତୋହର
ଗଣ୍ଡ ଅଶ୍ରୁ-ସ୍ନାତ" —ତତ୍ରୈବ

୩୩ । "ରସାଳ-ମଞ୍ଜରୀ ଚୁମଇ ଗୁଞ୍ଜରି/ମଧୁପ ମଧୁପାନ ଅଧୀର
ନବକୁ-ପଲ୍ଲବେ ଲୁଚ ଲଳିତ ରବେ/ମୁଖର ବନ କରେ କୋକିଲ"
—'ରୂପ ଦେବତା' ପୃ-୧୨୯

୩୩ କ। "ନବୀନ ପ୍ରଶସ୍ତ ନବଦୃଷ୍ଟି ଦିଏ ନେତ୍ରେ/
ନିଗ୍ରନନ୍ଦମନ୍ଦ୍ର ଧରଣୀ, ଲାଗଇ ମତେ ଆନନ୍ଦ ସଂସାର
ପ୍ରାଣହୀନ ପ୍ରକୃତିରେ ଚୈତନ୍ୟ ସଞ୍ଚାର/ଦେଖୁଛୁ ପ୍ରଥମ କରି
—'ନବ ଦୃଷ୍ଟି' ପୃ-୧୮୦

୩୪। "ବକ୍ଷ ପାତି ନିଅମତେ ହେ ଚଞ୍ଚଳା ! ହେ ଶୀତଳ ଦେହି ।
ତୁମରି ସେ ଦୂର ଦେଶେ" —'ଦକ୍ଷିଣା ପ୍ରତି' ପୃ-୩୯୫
"Oh ! lift mea wave, a leaf, a cloud"
'Ode to the west wind—P. B. Shelley

୩୫। "ପ୍ରାକୃତିକ ସୁଷମା ସହ ଦୁର୍ଲ୍ଲଭ ମିଳନ ଘଟିଛି ଏକ ତରୁଣ, ସରସ, ରୂପ ବୁଭୁକ୍ଷୁ ସୂକ୍ଷ୍ମ ଦୃଷ୍ଟି ବିନ୍ତ ପ୍ରତିଭାର—ଯେପରିକି, ଶହେ ବର୍ଷ ତଳେ ଘଟିଥିଲି ଚିଲିକା ଓ ରାଧାନାଥଙ୍କ ଭିତରେ ।"
—'ନିସର୍ଗର ଉଦ୍ଗାତା ମାନସିଂହ'
—ଶ୍ରୀ ଦାଶରଥି ଦାସ—ମାନସିଂ ସୃଷ୍ଟି ଓ ସମୀକ୍ଷା ପୃ-୩୯

୩୬। "ଇଚ୍ଛା ମୋ ହୁଅନ୍ତା ଏହି ନିର୍ମଳା ରଜନୀ
ଅସରା, ମୁଁ ଖୋଜୁଥାନ୍ତି ସତ୍ୟ, ଶୁଭ୍ର ତା'ରେ
ଏ ସୁନ୍ଦର ଜ୍ୟୋତ୍ସ୍ନା ତଳେ, ବାହି ଏ ତରଣୀ
ମୁଖ୍ୟ ଯାଏଁ, ନ ଫେରି ସେ ମନ୍ଦା ଅନ୍ଧକାରେ ।
'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ପୃ-୩୧୭

୩୭। "ରହିରେ ଆଗ୍ନେୟ ରଥ, ଦେଖିବ ସୁନ୍ଦରୀ
ତା' ନୀଳ ଲୋଚନେ; ନୀଳ-ଚକ୍ରବାଳ ଧରି
ନୀଳ ଜଳରାଶି କେତେ ଉନ୍ମୁକ୍ତ ଶୋଭାରେ
ଉର୍ମିନେ ରହିଛୁ ଶୋଇ ।"—ଚିଲିକା' (ହେମଶସ୍ୟ) ପୃ-୧୭୯

୩୮। "ଦିବା ହୁଏ ଅବସାନ, ଅସ୍ତ ରବି-କର/ଅମ୍ବର ରଞ୍ଜିତ କରି ଅର୍କମାଳାମ୍ବର
ନିଶାନ୍ତ ପ୍ରଦୀପ ଶିଖା ସମ ଲିଭିଆସେ/
ପ୍ରଭାହୀନ କ୍ରମେ କ୍ରମେ । ସୁବର୍ଣ୍ଣ ବିଭାସେ···
କନକିତ ନଭେ, କନକ ରଞ୍ଜିତ ପକ୍ଷ ମେଲାଇଣ ଯେବେ
ଉଡ଼ିଥା'ନ୍ତି ପକ୍ଷୀଦଳ ··· ··· 'ସନ୍ଧ୍ୟା' ପୃ-୪୭

୩୮ କ। "ହେମନ୍ତ ପ୍ରଭାତ କାଳ, ନବୋଦିତ ରବି
ସୃଜିଅଛି ସ୍ୱର୍ଣ୍ଣକରେ ଅନୁପମ ଛବି

ଶ୍ୟାମଳ ପ୍ରକୃତ ଅଙ୍ଗେ । × × ପ୍ରବେଶିଲା ସଦ୍ୟସ୍ନାତା ପ୍ରେୟସୀ ମୋହର ଭାବିଲି ସେ ଏକ ଅଂଶ ସ୍ୱର୍ଣ୍ଣ ହେମନ୍ତର ।”

—‘ହେମନ୍ତ ପ୍ରଭାତ’ ପୃ-୮୩

୩୯ । “ପ୍ରଥମ-ପ୍ରଣୟ-ସରାଗ ଭରା/କୁସୁମ ରାଣୀ,
ଲକ୍ଷବୋକ ସେ ଢାଏ ଭ୍ରମରା/ବକ୍ଷେ ହାଣି ।
× × ନବୋଢ଼ ପ୍ରେମର ପ୍ରସାଦ ପରା/ସୌରଭଟି
ପ୍ରଭାତ ବାୟୁର ଅଙ୍ଗେ ଚରା/ଯାଏ ଚହଟି ।”

—ପ୍ରଣୟିତ ପୁଷ୍ପ’ ପୃ-୩୭

୪୦ । “ଚନ୍ଦ୍ରମା ଉଠିଛି ଊର୍ଦ୍ଧ୍ୱ-ବିରାଟ ଧରଣୀ/ନୀରବ, ନିସ୍ତବ୍ଧ-ଶାନ୍ତ ମହାନଦୀ ଜଳ/କ୍ଲାନ୍ତ ଶିଶୁ ସମ ଶାନ୍ତ । ଉଜ୍ଜ୍ୱଳ ରଜନୀ/ପକ୍ଷପାତ ଆବରିଛି ନଭ, ଜଳ, ସ୍ଥଳ”

—‘ମହାନଦୀରେ ଜ୍ୟୋତ୍ସ୍ନା ବିହାର’

୪୧ । “ଏହି ବିପୁଳ ଶୋଭାରେ / ଅନୁଭବେ ଆହା କା’ର ସ୍ପର୍ଶ ଏ ଅନ୍ତରେ ବଚନ୍ତୁ ଅତୀତ ମୂର୍ତ୍ତି ପ୍ରଣମେ ତାହାରେ / ସେ ଯେ ସତ୍ୟ ଶିବ ସେହି ଏକା ସେ ସୁନ୍ଦର / ଭୂମା ସେ ରହିଛି ପୂରି ରେଣୁ ରେଣୁ ଭେଦ / ଅନନ୍ତ ଲୀଳାର ହେତୁ, ଅସୀମ ସୁନ୍ଦର / କ୍ଷଣକେ ସୃଜେ ସେ ।”—

—‘ତନ୍ନୈବ ପୃ-୩୧୭

୪୨ । ‘ସବୁଜରୁ ସାଂପ୍ରତକ’—ଉତ୍କଳ ବିଶ୍ୱବିଦ୍ୟାଳୟ ପି. ଏଚ୍. ଡ଼ି ନିବନ୍ଧ ।

୪୩ । “ହାୟ ଲୋ ଉତ୍କଳ ଭୂମି ! ପ୍ରକୃତ ସୁନ୍ଦର
ମନ୍ଦାକିନୀ ସମ ନଦୀ ଶିବ ସମ ଗିରି
କାନନେ କେଦାରେ ଲକ୍ଷ ଶୋଭାର ବହର
ଆଉଁ ତୋର କହ କମା ଏତେ ହତଶିରୀ ?”

୪୪ । “ସବୁ ଆଜ ସ୍ୱପ୍ନସମ ଯାଇଛି ହେ ଋଷି— / ମହତ୍ତ୍ୱ ଗରମା / ହୃଦୟ ଭଙ୍ଗିମା / ଭ୍ରମର ପତନ ସଙ୍ଗେ ମହାଜାତ ମିଶିଛି ଭୂତଳେ / ମହାରାଜା ମହାସାଜେ ମଞ୍ଚ ଜିଣି ନ ଫେରଇ ଦେଶେ / ଗୃହ ପ୍ରିୟ ଜାତ ଦୀନବେଶେ/ ଗୃହ ତେଜ ଭିକ୍ଷାପାଇଁ ଲେଟେଯାଇ କାହାପଦ ତଳେ !”

—‘ବାରବାଟୀ’ ପୃ ୩୨୦

୪୫ । “ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ । ୧୧।୧୨ ବର୍ଷ ବାଳକର ଅନ୍ତରତମ ଗହନତଳେ ଫୁଏଡ

ସ୍ୱପ୍ନ ଗଳୁର ଉଠିଥିବ ଏଇମାନଙ୍କ ପରି ଜଣେ ହେବାକୁ । × × ×
ଜାତୀୟ ଜୀବନର ପୁଣ୍ୟସ୍ରୋତରେ ପୂର୍ଣ୍ଣ ଅବଗାହନର ଆଶା ।"
—'ଶିକ୍ଷାବତ୍ରର ଗାଥା' ଡଃ ମାନସିଂହ ପୃ ୧୭-୧୮

୪୬ । "କାପୁରୁଷ ପରି ଦେଖିଲୁ ନେବାର ଏକେ ଏକେ ପ୍ରବାସୀ
ପୈତୃକ ଭୂମି; ଦୁର୍ବଳ ଦେଖି ଶାସିଲେ ଭିନ୍ନ-ଭାଷୀ
ଖାଲି ଉଠିପଡ଼ ଏକାଠି ହୁଅରେ ଗଭୀର ନିଦ୍ରା-ଭୋଳ
ଅବୁଝ ଯାଇଛୁ ନିଜଘରେ ନିଜ ଇଜ୍ଜତ ରହୁ ତୋର ।"
—'ଭବିଷ୍ୟ ଉତ୍କଳ'

୪୭ । "ଭୁଭଙ୍ଗେ ଲୁଟିଲା ଶତ ନୃପ ଶିର ତୋ ଚରଣ ପାଶେ
ଗଙ୍ଗା, କୃଷ୍ଣା, ଗୋଦାବରୀ ସେବିଲେ ତୋ'ଚରଣ ପୁଲକେ
ସେ ମହା ପଲକେ"—'ମା ଓଡ଼ିଶା' ଗ୍ରନ୍ଥାବଳୀ ପୃ ୨୭
ଏବଂ "ଗଙ୍ଗାକୂଳରୁ ଗୋଦାବରୀଯାଏ ଥିଲା ଉତ୍କଳଧରା
ପିତା-ପିତାମହ-ରକ୍ତାଙ୍କିତ/ଜୟ-ଗଜପତି-ଜୟ-ଗର୍ଜିତ
ଓଡ଼ିଆ ପାଇକ--ବାହୁ-ସର୍ଜିତ/ପୂର୍ଣ୍ଣ-ଶସ୍ୟ-ଫଳା ।"
—'ଭବିଷ୍ୟ ଉତ୍କଳ'

୪୮ । "ନ ଶୁଣି ଉତ୍ତର ଚଳଇ ଖରେ ନାରୀ/
ସନ୍ଧ୍ୟା ହେଲପରା ଆଣିବ ବୋଲି ବାରି × ×
କୃଷକ ପଛେ ଆସେ ବାହୁଡ଼ା ଗୋରୁପଲ
ହମ୍ବାରଡ଼ି ଘନ, କର୍ମେ ଶ୍ରାମତଲ × ×
ହଳଦୀ ଲେପେ ତରୀ ଶିଶୁ ଗୋଦଇ କାନ୍ଦି/,
ବିଲୁଆ ଡାକଦେଲା ରଜନୀ ହେଲା ଭାଇ"  —"ପଲ୍ଲୀ ସନ୍ଧ୍ୟା' ପୃ ୩୨୩

୪୯ । "ଶବପଛେ ତାର କୋଟି ମସ୍ତକ ନୁଆଁଇ ଓଡ଼ିଆ ଜାତି
ସମ୍ମାନ କରି ତାରେ ଯେ କରିଲା ପୁଣ୍ୟ ତୋହର ମାଟି"
—'ଗୋପ ପ୍ରୟାଣ' ଗ୍ରନ୍ଥାବଳୀ ପୃ ୩୪୦

୫୦ । "ବ୍ରାହ୍ମଣ ତମେ, ଉପବୀତ ତବ/ଅସ୍ପୃଶ୍ୟ ପ୍ରାଣର ଗହନ ବ୍ୟଥା,
ପୁରୁଷୋତ୍ତମ ଜୀବନ ତମର/ବିରାଟ ଜାତିର ମରମ କଥା ।"
—'ବାପୁ ତର୍ପଣ' ପୃ ୨୭୧

୫୧ । "ଭାରତ ହୋଇବ ପୁଣି ଅଗ୍ରଣୀ ବିଶ୍ୱର / ଜଗତ ଶୁଣିବ ତା'ର ବାଣୀ
ଅନଶ୍ୱର / ଅଶୋକ-କେତନ ତଳେ ନିଖିଳ ଜଗତ / ହିଂସାଭୁଲି ପ୍ରେମେ

ହେବ ଶାସିତ, ସଂହତ / ବାପୁଜୀ, ହେବାକୁ ତବ ସେ ସ୍ୱପ୍ନ ସଫଳ /
ଉନ୍ମାଦିତ କରୁ ସର୍ବେ ଅଗଷ୍ଟ ପନ୍ଦର ।"
—'ଅଗଷ୍ଟ ପନ୍ଦର' ଗ୍ରନ୍ଥାବଳୀ ପୃ ୨୮୭

୫୨ । "ଜନତା କି କେବେ ସୁଖ ଦୁଃଖ ମୋର ଜାଣିବ
ନୟନୁ ଲୋତକ ପୋଛିବାକୁ କର ଆଣିବ ?"

କମ୍ବା "ହେ ସମବୟସୀ ଭ୍ରମର ମୋର ଯେ ପୀରତି
ନଷ୍ଟୁର କେତେ ବୋଲୁଛନ୍ତି ପାପକାରତି
ବ୍ୟବହାର ଦେଖି ନବୋଧ ଜନତାର ଗୋ
ତୁମ୍ଭେ ନାହିଁ କିବା ବଞ୍ଚିବା ଅଧିକାର ଗୋ" —'ଧୂପ'

୫୩ । 'ସମର ବିମୁଖ' ପୃ ୪୧୨

୫୪ । "ଯାଏ ଗୁଳି ସେହିସ୍ଥାନେ ପାଇବ ନିସ୍ତାର
ନ ଥିବ ଯେଉଁଠି ଜୀବନର ଅତ୍ୟାଚାର" 'ସମର ବିମୁଖ'

୫୫ । "ଆଶାହୀନ, ଆଶ୍ରାହୀନ ଆଜି ପଥପରେ
ଛିନ୍ନ ହୋଇ ମୁହିଁ ଜନନେଏ ଭସ୍କରେ !
ଯାଏଁ ଗୁଳି ସେହିସ୍ଥାନେ ପାଇବ ନିସ୍ତାର
ନଥିବ ଯେଉଁଠି ଜୀବନର ଅତ୍ୟାଚାର ?" —ତଦୈବ ପୃ ୪୧୫

୫୬ । "ନିଖିଳ ସଂସାର ମଧ୍ୟେ, କୁଟୁମ୍ବ ସଙ୍ଗତେ
ଏକାନ୍ତ ଏକାକୀ ମୁହିଁ, ସଙ୍ଗହୀନ ପ୍ରାଣୀ,
ଜାହାର ପରମ ସଖ୍ୟ ଖୋଜେ ଅନ୍ତର୍ଗତେ
ତିର ବିରହିତ ମୁହିଁ କେମନ୍ତେ କେଜାଣି ।
ମନେହୁଏ କାହାରେ ମୁଁ ଖୋଜୁଛି ଅନ୍ତରେ
ବହୁଜନ୍ମେ, ବହୁଲୋକେ ଅନାଦି କାଳରୁ,
ହତ୍‌କଣ୍ଠେ ଧାଇଁଛି ତେଣୁ ସହସ୍ର ସଖ୍ୟରେ—
କେ ଜାନୁ ଶ୍ୟାମଳ ନାହିଁ କଲି ଚିତ୍ତ-ମରୁ ।"
—'ଏକାନ୍ତ ଏକାକୀ' ପୃ ୪୪୧

୫୭ । "ତେଣୁ ଆଜି ସେ ଆଡ଼୍ ମୋ ବଦନ ଫେରାଇ
ସୁଦୂର ସାଗରତୀର ଦେଲାବନେ କାହିଁ,
ଭ୍ରମନେ ବାସନା ମମ, ଭୁଞ୍ଜ ବ୍ୟଥା ସହ
ଜୀବନ-ଯନ୍ତ୍ରଣା ଯେଣୁ ହେଲାଣି ଦୁର୍ବହ ।" —'ସମର ବିମୁଖ' ପୃ ୪୧୪

୫୮ । "ସାହିତ୍ୟରେ ପଳାୟନବାଦ"
—ଶ୍ରୀ ନବକିଶୋର ଦାସ 'ଶଙ୍ଖ' ନଭେମ୍ବର ୧୯୪୭

୫୮ । 'ପ୍ରେମସ୍ପର୍ଶ' ଏବଂ 'ସ୍ୱରମ'—(ହେମଣସ୍ୟ)

କମ୍ବା ''ଚେଣ୍ଡ୍ରୁ ଆଜି ମୋ ବାସନା, ଯାଇ ଦୂରବନେ
ତୃଣ ଶେଯେ ବସି ନିଜ ସ୍ୱପ୍ନ ନିକାଞ୍ଜନେ
ରଚିବ ଗାଇବ ଗୀତ-ଇଚ୍ଛା ଅନୁସରି'', —'ସମର ବିମୁଖ' ପୃ୪୧୫



# ମାନସିଂହ ସାହିତ୍ୟରେ ଜାତୀୟ ଚେତନା

**ଶ୍ରୀ ଚରଣ ମହାନ୍ତି**

ଗବେଷକ, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

"ଖ୍ରୀ : ୧୯୧୭ ରେ ପୁରୀରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ବସିଥିଲା । × × × ଏହି ସମ୍ମିଳନୀର ସଭାପତି ଥିଲେ ସ୍ୱର୍ଗତ ଚନ୍ଦ୍ରଶେଖର ବେହେରା, × × ମୋର ପିଲା ଦିନେ ସାହିତ୍ୟରେ ଜନରଞ୍ଜନୟ ଆଗ୍ରହ ଦେଖି ସାନ୍ତବାପା ମୋତେ ସାଥିରେ ନେଇ ଯାଇଥିଲେ । ଏହି ସମ୍ମିଳନୀ ଦେଖାଇ ଆଣିବା ପାଇଁ ଏ ସୁଯୋଗ ସତ୍ତ୍ୱେ ଯେପରି ନେଇ ଏକ ସୁନ୍ଦର ସଂସାରରେ ପହଞ୍ଚାଇ ଦେଲା । କାରଣ ସେଥର ସେହିଠାରେ ହିଁ, ଓଡ଼ିଶାରେ ସେ କାଳର ସକଳ ବିଖ୍ୟାତ ଲୋକଙ୍କୁ ଦେଖିବାର ସୁଯୋଗ ପାଇଲି । ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀ ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ । ୧୧।୧୨ ବର୍ଷ ବାଳକର ଅନ୍ତରତମ ଗହନ ତଳେ ହୁଏତ ସ୍ୱପ୍ନ ତରଙ୍ଗ ଉଠିଥିବ । ଏମାନଙ୍କ ପରି ଜଣେ ହେବାକୁ । × × × ଜାତୀୟ ଜୀବନର ପୁଣ୍ୟ ସ୍ରୋତରେ ପୂର୍ଣ୍ଣ ଅବଗାହନର ଆଶା ।" ମାନସିଂହଙ୍କ 'ଶିକ୍ଷାବନ୍ତର ଗାଥା'ର ଏହି ଅଂଶ, ମାନସିଂହ-ମାନସର ଗଠନରେ ଜାତୀୟବାଦୀ ଚେତନାର ପ୍ରଭାବ ସମ୍ପର୍କରେ ସ୍ପଷ୍ଟ ଆଲୋକପାତ କରିଥାଏ । ଏହି ପ୍ରେରଣାର କାର୍ଯ୍ୟକାରିତା ତାଙ୍କ ଜୀବନ ଓ ସାହିତ୍ୟ-ଉଭୟ କ୍ଷେତ୍ରରେ ଦେଖିବାକୁ ମିଳିବ । ମାନସିଂହଙ୍କ ଜାତୀୟ-ଚେତନାର ମୁଖ୍ୟତଃ ଦୁଇଟି ଦିଗ, ଉତ୍କଳୀୟ ଜାତୀୟତା ଓ ମହା-ଭାରତୀୟ ଜାତୀୟତା ।

ଏଥିମଧ୍ୟରୁ ତାଙ୍କ ହୃଦୟରେ ଉତ୍କଳୀୟ ଜାତୀୟ ଚେତନା ଅତ୍ୟନ୍ତ ତୀବ୍ର । ମାନସିଂହ ଉତ୍କଳୀୟ ଜାତୀୟ ଚେତନାର ପ୍ରେରଣା ଉତ୍କଳ ସମ୍ମିଳନୀ, ସତ୍ୟବାଦୀ ଗୋଷ୍ଠୀ ଓ କବିବର ରାଧାନାଥ, ଫକୀର ମୋହନ, ମଧୁସୂଦନଙ୍କଠାରୁ ପାଇଥିଲେ । ସ୍ୱାଧୀନତା ସଂଗ୍ରାମ, ବିଭିନ୍ନ ସ୍ଥାନ ଭ୍ରମଣ ଓ ଅଧ୍ୟୟନରୁ ତାଙ୍କର ମହା-ଭାରତୀୟ ଜାତୀୟ ଚେତନାର ରୂପ ଲାଭ କରିଥିଲା ।

ବାସ୍ତବବେତ୍ତା, ସତ୍ୟନିଷ୍ଠ, ସାହିତ୍ୟିକ ମାନସିଂହ ଓଡ଼ିଶାର ରାଜନୈତିକ ସ୍ୱାଧୀନତା ସହିତ ଓଡ଼ିଆ ପ୍ରାଣର ସ୍ୱାଧୀନତା, ଆମ ସଂସ୍କୃତିର ସ୍ୱାଧୀନତା, ଆମ କଳାର ସ୍ୱାଧୀନତା ତଥା ଆମ ପରମ୍ପରାର ସ୍ୱାଧୀନତା ଓ ଧର୍ମର ସ୍ୱାଧୀନତା ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କ ଜାତୀୟବାଦୀ ସାହିତ୍ୟରେ ଆମେ ସ୍ୱାଧୀନତା ପାଇଁ ଗୋପବନ୍ଧୁଙ୍କ ଲୋତକ ବର୍ଷଣ, ବାଞ୍ଛାନିଧିଙ୍କ ଭବିତାର ଅଗ୍ନି ଉତ୍ତାପ, ଗୋଦାବରୀଶଙ୍କର ରକ୍ତ ଝରା ଆହ୍ୱାନ ବା ଲକ୍ଷ୍ମୀକାନ୍ତଙ୍କର ଭର୍ତ୍ସନା ଶୁଣିବାକୁ ପାଉନାହିଁ । ସେଠି ପାଉ ଓଡ଼ିଆମାନଙ୍କ ଉପରେ ଶ୍ଳେଷ ଏବଂ ଗାଳି ବର୍ଷଣ । କିନ୍ତୁ ସେ ଗାଳି ପ୍ରତିହିଂସାର ନୁହେଁ କି ଅସୂୟାର ନୁହେଁ, ସେ ଗାଳି ଅନ୍ତରଙ୍ଗ ବନ୍ଧୁର ସାବଧାନୀ, ଆତ୍ମୀୟର ଡାକରା । ମାନସିଂହଙ୍କର ପରିଚୟ; ପ୍ରଥମେ ସେ ଜଣେ ଓଡ଼ିଆ । ଓଡ଼ିଶାର ଅବନତି ଦେଖିଲେ ତାଙ୍କ ପ୍ରାଣ କାନ୍ଦି ପକାଉଥିଲା । ଓଡ଼ିଶାର ଅତୀତ ଇତିହାସ, ଚାଲିଚଳନ, ଧର୍ମଧାରା, କ୍ରିୟାକଳାପ, ଉଦାରତା ସବୁ ଉନ୍ନତ ଥିଲା, ମାତ୍ର ତାହା ଆଜି ନାହିଁ । ଆମେ ଅନ୍ୟର ପୋଷାକ, ଖାଦ୍ୟ ଆଦର ସ୍ଥାନ ଦାଗକୁ ଅନୁକରଣ କରୁଛୁ । କିନ୍ତୁ ସେମାନଙ୍କର ମହାନ ଗୁଣ ଉନ୍ନତିର ବାଟ ମହତ୍ ଆଦର୍ଶକୁ ଅନୁକରଣ କରିବାକୁ ଭୁଲିଯାଉ, ତେଣୁ ମାନସିଂହ ଜଣେ ସଫଳ ଚିକିତ୍ସକ ଭାବରେ ଜାତିର ଶରୀରକୁ ଆଘାତ ଦେଇ ସଫଳ ଅସ୍ତ୍ରୋପଚାର କରିବା ପାଇଁ ଚେଷ୍ଟା କରିଛନ୍ତି । ସେଥିପାଇଁ ସେ ବହୁ ସ୍ଥାନରେ ଅସନ୍ତୁଷ୍ଟ ହୋଇ ତାଙ୍କ ରଚନାକୁ ଶାଣିତ କରିଛନ୍ତି । ଶ୍ରୀ କେଶବ ମେହେର ସ୍ୱଭାବ କବି ଗଙ୍ଗାଧରଙ୍କ ଉଦ୍ଦେଶ୍ୟରେ ଯେଉଁ ବାକ୍ୟ ବ୍ୟବହାର କରିଛନ୍ତି ତାହାକୁ ଆମେ ମାନସିଂହଙ୍କ ସ୍ଥଳରେ ମଧ୍ୟ ଲଗାଇ ପାରିବା "ସେ ଥିଲେ ସ୍ପଷ୍ଟ ବକ୍ତା, କିନ୍ତୁ କି ପ୍ରାଣ ଓ ଜାତିର ଉପଚିକିତ୍ସା । ତେଣୁ କାହାର ଦୋଷ ଦୁର୍ବଳତାକୁ ସେ ଘୋଡ଼ାଇ ଦେଇ ନାହାନ୍ତି । ଜାତିର ଦୁର୍ଗନ୍ଧ, ଦୂଷିତ, ଦୁରାରୋଗ୍ୟ ବ୍ରଣ ଉପରେ ମୋଟା ମଇଳା କପଡ଼ାର ଲୁଗା ବାନ୍ଧି ତା ଉପରେ ସେ ମଲମ ପ୍ରଲେପ କରିନାହାନ୍ତି । ଏ ଜାତିର ଦୁର୍ବଳତାର ଠିକ୍ ସ୍ଥାନମାନଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ବାକ୍ୟବାଣ ପ୍ରୟୋଗ କରିଛନ୍ତି ।"(୬)

ମାନସିଂହଙ୍କୁ ଯଦି ଆମ୍ଭେ କେବଳ ଉତ୍କଳୀୟ ଜାତୀୟ ଚେତନାରେ ସୀମାବଦ୍ଧ କରିଦେଉଁ ତେବେ ଗୋଟିଏ ଅମ୍ଳାନ ବ୍ୟକ୍ତିତ୍ୱର ଅବମାନନା ହୋଇଯିବ । କାରଣ ଉତ୍କଳୀୟ ପ୍ରୀତି ଥିଲେ ମଧ୍ୟ ଏ ସଙ୍କୀର୍ଣ୍ଣ ପ୍ରାଦେଶିକ ଗଣ୍ଡି ମଧ୍ୟରେ ସେ ଆବଦ୍ଧ ନ ଥିଲେ । ତାଙ୍କ ସାହିତ୍ୟରେ ସେ ମହାଭାରତୀୟ ଚେତନାର ଆଲେଖ୍ୟ ରଖି ଯାଇଛନ୍ତି । ଏହି ଉଭୟ ଦିଗରୁ ତାଙ୍କ ଜାତୀୟବାଦୀ ସାହିତ୍ୟର ବିଚାର କରାଯାଇପାରେ ।

ମାନସିଂହ ପ୍ରତିଭା ବହୁମୁଖୀ । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ଯାଇଛନ୍ତି । କାବ୍ୟ କବିତା, ନାଟକ-ନାଟିକା, ପ୍ରବନ୍ଧ ଓ ସନ୍ଦର୍ଭ, ଭ୍ରମଣ କାହାଣୀ, ଜୀବନୀ, ଉପନ୍ୟାସ ତଥା ସମାଲୋଚନା,—ବିଭିନ୍ନ କ୍ଷେତ୍ରରେ

ତାଙ୍କ ଲେଖମାନ ଶକ୍ତ ପ୍ରମାଣିତ ହୋଇଅଛି । ଇଂରାଜୀରେ ମଧ୍ୟ ତାଙ୍କ ରଚନାର କୃତିତ୍ୱ ଅଳ୍ପ ନୁହେଁ । Kalidas and Shakespear, Sage of the Land of Jagannatha ଏବଂ History of oriya literature ରୁ ଏହା ପ୍ରତିପାଦିତ ହେବ । ପ୍ରତ୍ୟେକ କ୍ଷେତ୍ରରେ ତାଙ୍କ ଜାତୀୟତାବାଦୀ ବ୍ୟକ୍ତି-ମାନସର ମୂର୍ତ୍ତି ରୂପ ଉପଲବ୍ଧ ହେଉ ସୃଷ୍ଟି ରୂପରେ ଏହି ସମସ୍ତ ରଚନାରେ ମାନସିଂହଙ୍କର ସ୍ୱଦେଶ ପ୍ରୀତିର କିଞ୍ଚିତ୍ ଉଦ୍ଘାଟନ ଏଠାରେ କରାଯାଉଛି ।

**(କ) କାବ୍ୟ କବିତାରେ ଜାତୀୟ ଚେତନା—**

'ମା ଓଡ଼ିଶା' ଉତ୍କଳୀୟ ଜାତୀୟ ଚେତନାର ଏକ ମହାନ ଦୃଷ୍ଟାନ୍ତ । ଏହି କବିତାରେ କବି 'ମା' ଓଡ଼ିଶାର ବର୍ଣ୍ଣନା କରିବାକୁ ଯାଇ ତାହାର ଐତିହ୍ୟ ଦର୍ଶାଇଛନ୍ତି । ବୀରମାତା ଉତ୍କଳ ଜନନୀ କବି-ଭୂମି ଶିଳ୍ପଧାତ୍ରୀ । ତା'ର କୋଳରେ ପବିତ୍ର ସନ୍ତାନ ଜନ୍ମଲଭି କରି ବିଶ୍ୱକର୍ଣ୍ଣରେ ତାର ମଧୁର ଗାଥା ଶୁଣାଇଲେ । ତା'ର ସନ୍ତାନଙ୍କର ଉଦାର ହୃଦୟ ପାଇଁ ବିଶ୍ୱ ସତୃଷ୍ଣ ନୟନରେ ଚାହିଁ ରହିଥିଲା । ସାଗର ବକ୍ଷରେ ଉତ୍କଳୀୟ ସାଧବଙ୍କର ସହସ୍ର ବୋଇତ ଧାବମାନ ହେଲେ । ଅମୃତ ପ୍ରସବିନୀ ମା' ଉତ୍କଳ ଜନନୀ ତା'ର ଅମୃତର ସନ୍ତାନ ଢାଲ ତରବାରୀ ଧରି ସ୍ୱାଧୀନତା ପାଇଁ ଭୀଷଣ ଚିତା ଜାଳିଲେ । ତା'ର ନୀଳାଚଳ ପୀଠ ବିଶ୍ୱରେ ଶ୍ରେଷ୍ଠ ସ୍ଥାନ ଅଧିକାର କଲା ।

ପ୍ରଜାଗଣେ ଦେବାକୁ ମା' ସ୍ୱରଗର ଅମୃତ ସନ୍ଦେଶ
ରଜା ତୋର ଧରିଅଛି ଦରିଦ୍ରର, ସନ୍ନ୍ୟାସୀର ବେଶ,
ନୀଳାଚଳ ପୁଣ୍ୟତଳେ ମନୁ ତେଜି ଗର୍ବ ଅହଙ୍କାର
ସହସ୍ର ଜୀବନ ସଙ୍ଗେ ମିଶାଇଛି ତା' ହୃଦ ଉଦାର
ଚଣ୍ଡାଳର ବେଶେ ବିପ୍ରେ ମିଶାଇଛି ସର୍ବ ଗର୍ବସ୍ଥାନ
ସମସ୍ତେ ସମାନ ।"

ମା' ଓଡ଼ିଶା-ସେବକର କବିତା (ପୃ-୨୫)

ଏହି ଉତ୍କଳମାତାର କୋଳରେ ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ବୌଦ୍ଧ, ଜୈନ-ସମସ୍ତଙ୍କର ଆଦର ଥିବାରୁ ବିଧାତା ସହିଲା କିପରି ? ଶ୍ରେଷ୍ଠ ବିଦେଶୀର ନିର୍ମମ ଶାସନରେ ଦାରିଦ୍ର୍ୟର କ୍ରୂର ନିଷ୍ପୀଡ଼ନରେ ତାର ସିଂହ ଶିଶୁ ଆଜି ଶୃଗାଳରେ ପରିଣତ । 'ବନ୍ଦେ ଉତ୍କଳ ଜନନୀ' କବିତାରେ ମଧ୍ୟ ତାହାର ଯଶଗାନ କରି ଉତ୍କଳର ଗୌରବ ବର୍ଣ୍ଣନା କରିଛନ୍ତି । 'ଉଚ୍ଛିଷ୍ଟ ଉତ୍କଳ' ସୀମା ଆନ୍ଦୋଳନ ସମୟର ଲେଖା । ଯେଉଁ ଉତ୍କଳ ପାଇକମାନଙ୍କର ଜୟ ଗଜପତି ଜୟ ଜଗନ୍ନାଥ ସ୍ୱରରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା ସେ ଆଜି 'ଉଡ଼େ', 'ଅସଭ୍ୟ', 'ବନ୍ୟ' ନାମରେ ଲାଞ୍ଛିତ ।

"ଉତ୍ତରେ ଅଛୁ, ଚତୁର ବଙ୍ଗ
ଦକ୍ଷିଣେ ରହିଛୁ ଝାଙ୍କ ତେଲଙ୍ଗ
ଗୃଧ୍ର ସମାନ ଖୁମ୍ପିବେ ଅଙ୍ଗ
× × ×
ନେବେ ଆନନ୍ଦେ ବାଣ୍ଟି"

ତେଣୁ ସେ ଡାକ ଦେଲେ :—

ଉଠରେ ସୁପ୍ତ ଜାତି
କନ୍ଦ୍ରା ବଶେର ଦେଖି ତୋ ସଚ୍ଚୋର୍ଣ୍ଣ
ନେବେ ତୋ ଅଙ୍ଗକାନ୍ତି ।

('ଉତ୍ତିଷ୍ଠ ଉତ୍କଳ'-ମାଟିବାଣୀ) (ପୃ-୬୨୦)

ତୀର୍ଥ ଧୂଳି କବିତାରେ ନୀଳାଚଳ ପୀଠର ଜୟଗାନ କରି କହିଛନ୍ତି, "ଏ ଧୂଳି ପଡ଼ୁ ମୋ ମୁଣ୍ଡେ ଜନ୍ମ ଜନ୍ମାନ୍ତରେ" ସେ ସାଂସ୍କୃତିକ ଚେତନା ପରିଦୃଷ୍ଟ । 'କୋଣାର୍କ' କବିତା ସଙ୍କଳନରେ କବିଙ୍କର ଜାତୀୟ ଚେତନା ଅତି ଉଗ୍ର । ବିଗତ ଯୌବନା କୋଣାର୍କର ଅଙ୍ଗ ଚୁମ୍ବନ କରିବାକୁ ବିଶ୍ୱ ଏବେ ମଧ୍ୟ ଲାଳାୟିତ । ଦିନ ଥିଲା ଯେତେବେଳେ ବାର ଶତ କବି ବା ଶିଳ୍ପୀଙ୍କ କଳ୍ପନାରେ କୋଣାର୍କ ଯୌବନର ମାଧୁରିମା ଚହଟାଇ ଦେଇଥିଲା । କୋଣାର୍କର ଅଙ୍ଗରୁ ରାଜାର ଯୁଦ୍ଧ ଅଭିଯାନ, ପାତ୍ରମନ୍ତ୍ରୀର ମନ୍ତ୍ରଣାଦାନ, ପ୍ରେମିକ ପ୍ରେମିକାଙ୍କ ପ୍ରେମ, ବୀର ଯୁଦ୍ଧର କୌଶଳ, ଅବଧାନର ଶାସନ, କବି କବିତାର ସ୍ୱର ଦେଖିବାକୁ ପାଇଲା । କୋଣାର୍କ ଯୌବନ ସମୟରେ ବିଶ୍ୱ ନୟନର ଦୃଷ୍ଟି ପଥାରୂଢ଼ ହୋଇଥିଲା । କିନ୍ତୁ ତାହାର ବିଳୟ ଘଟିଲା ।

ଲୁଚି ହେଲା କାନ୍ତି କାଳ ଜାଲ
କମେ ହେଲା ପ୍ରକୃତ କରାଳ ।
ଗଉରବ ଅସହିଷ୍ଣୁ ଭୁଲାଇଲେ ନୟନ ବିଭ୍ରମ
× × × ×
ବିଶ୍ୱ ଦେଖେ ଆଜ ମାତ୍ର ସେ ଶୋଭାର ଖଣ୍ଡିତ କଙ୍କାଳ,
ଲାବଣ୍ୟର ନଷ୍ଟ ଅସ୍ଥିମାଳ ।

କୋଣାର୍କ—ପୃ: ୬୩୨

କିନ୍ତୁ ସେହି କୀର୍ତ୍ତି ବେଶ ମଧ୍ୟ ଆଜ ବିଶ୍ୱକୁ ସ୍ତମ୍ଭିତ କରେ । 'ଶିଳ୍ପୀ ବନ୍ଦନା' କବିତାରେ ବାରଶତ ଶିଳ୍ପୀଙ୍କର ଜୟଗାନ କରିଛନ୍ତି ସେମାନଙ୍କର ଦାରିଦ୍ର୍ୟର ସତ୍ତ୍ୱେ ପାଷାଣରେ କବିତାର ବନ୍ଦନା କରିଛନ୍ତି । "ମୁମୂର୍ଷୁ କୋଣାର୍କ" କବିତାରେ

ଜାତୀୟବାଦୀ କବିଙ୍କର ପ୍ରାଣ କୋଣାର୍କର ଜୀର୍ଣ୍ଣାବସ୍ଥା ପାଇଁ କାନ୍ଦି ପକାଉଛି । ତାହାର ବିଲୟପାଇଁ ପଞ୍ଚ ମହାଭୂତଙ୍କୁ ଦାୟୀ କରିଛନ୍ତି ।

"ମାଟି ବାଣୀ" କବିତା ସଂକଳନରେ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ କବି ଉତ୍କଳୀୟ ପ୍ରକୃତିର ବର୍ଣ୍ଣନା କରିଛନ୍ତି । ପ୍ରଥମାଂଶରେ ପ୍ରାକୃତିକ ଶୋଭା ବର୍ଣ୍ଣନା କରି ଦ୍ୱିତୀୟାଂଶରେ ଉତ୍କଳରେ ମନ୍ଦାକିନୀ ସମାନ ନଦୀ ଓ ଶିବସମ ଗିରି, କାନନ ଆଦି ଶୋଭାର ଭଣ୍ଡାର ଥାଇଁ ଆଉ ତାହାର ଦୁର୍ଦ୍ଦଶାପାଇଁ କ୍ଷୋଭ ପ୍ରକାଶ କରିଛନ୍ତି, ଯାହା ସ୍ୱର୍ଗର ସୁଷମା, ଅନନ୍ୟ ଶୋଭାର ଆଧାର ସେ ପୁଣି ଅଭିଶପ୍ତା । ମହାନଦୀ ନୌବାଣିଜ୍ୟର ଆଧାର ଥିଲା । ଗଜପତିଙ୍କର ମହିମାଗାନ କରୁଥିଲା । ସେ ଆଜି ନୀରବ, ପରିହାସ କରି ବ୍ୟଥା ଦେଉଛି । ଯାହାର ଶିଳାରେ ଗଜବାଳାର ଲକ୍ଷାପଦ ରଞ୍ଜିତ ହୋଇଥିବ, ତେଜସ୍ୱୀ ପୁତ୍ରର ମଙ୍ଗଳ କାମନା କରି କେଉଁ ଯାଇଥିବ, ସିଂହଳର ମୁକ୍ତା ଆନୟନ କରି ବୋଇତ ଆଣିଥିବ, ବୀର ରମଣୀଙ୍କ ଚକ୍ଷୁର ଆନନ୍ଦାଶ୍ରୁରେ ସିକ୍ତ ହୋଇଥିବ । ସେହି ନଦୀର ସୋପାନ ପ୍ରସ୍ତରରେ ମୁଣ୍ଡ ଲଗାଇ ଅପଦାର୍ଥ ପ୍ରାଣ କୃତ୍ୟ କୃତ୍ୟ କରିବାକୁ କବି ପ୍ରୟାସ କରିଛନ୍ତି, ଆଜି ସେ ଗୌରବ ନ ଥିବାରୁ କବି ମର୍ମାହତ । କାଞ୍ଚି ଅଭିଯାନର ଚିତ୍ର ଦେଇ କବି ପୁରୁଷୋତ୍ତମ ଦେବଙ୍କର ଜୟଯାତ୍ରା ବିଷୟ ଚିନ୍ତା କରିଛନ୍ତି ।

'ବାରବାଟୀ' ଉତ୍କଳ ଇତିହାସର ଶିରରେ ରାଜଟୀକା ସଦୃଶ । ବୀର ରକ୍ତରେ ସିକ୍ତ ବାରବାଟୀର ପ୍ରସ୍ତର ଖଣ୍ଡ ଏବେ ମଧ୍ୟ ତାହାର ପୂର୍ବ ବୀରତ୍ୱର ମୂକ-ସାକ୍ଷୀ । ବୀର ଓଡ଼ିଆର ଅତୀତ ଗୌରବ ବାରବାଟୀର ଅତୀତ ବର୍ଣ୍ଣନା କରିବାକୁ ଯାଇ ସାମ୍ୟବାଦୀ ଚିନ୍ତାରେ ଉତ୍କଳର କୃଷକ ସେନା, ନାରୀ ସୈନିକ, ବିଜୟ ଉତ୍ସବବେଳେ ନାରୀ ମନସ୍ୱିନୀ ନୂପୁର କଙ୍କଣରେ ହୁଳହୁଳି ସ୍ୱନକୁ ବର୍ଣ୍ଣନା କରିଛନ୍ତି । ଉତ୍କଳ ରମଣୀଙ୍କର ଯୁଦ୍ଧକୌଶଳ ବର୍ଣ୍ଣନା କରି ମହାନ୍ ଜାତୀୟ ଚେତନାର ପରିଚୟ ଦେଇଛନ୍ତି । କବିଙ୍କର କିଶୋର ବୟସର କବିତା ସାବଧ ପୁଅ, ସାଗର ତୀରେ, ଶୁକଦେଇ କବିତାରେ ଉତ୍କଳୀୟ ଜାତୀୟ ଚେତନାର ସ୍ୱର ପ୍ରଥମରୁ ହିଁ ଶୁଣା ଯାଇଥିଲା : ତଥପୋଇ ବିଳାପ ଓ ବୋଇତ ବନ୍ଦାଣ କବିତାରେ ମଧ୍ୟ ଉତ୍କଳର ସାଧବ ବୋଇତ ଜଳଯାତ୍ରା ଆଦି ବର୍ଣ୍ଣିତ । ଏ କବିତାରେ ଉତ୍କଳୀୟ ବାଣିଜ୍ୟ ପ୍ରସଙ୍ଗରେ ବିଭିନ୍ନ ସ୍ଥାନମାନଙ୍କରେ ନାମ ଉଲ୍ଲେଖ ଚହିଛି । ରିଣପୁର, ବିଣପୁର, ଚେଲିତାଳୋ ଆଦି କବିଙ୍କର ଜନ୍ମସ୍ଥାନର ନିକଟବର୍ତ୍ତୀ । ସେଥିପାଇଁ ସେ ପ୍ରୀତିର ସ୍ୱରୂପ ବୋଇତ ବନ୍ଦାଣର ପ୍ରଥମା, ଦ୍ୱିତୀୟା ଓ ତୃତୀୟା ମୁଖରେ ସ୍ଥାନର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ସୋହାଗ କବିତାରେ କବିଙ୍କର ଉତ୍କଳୀୟ ଭାଷା ପ୍ରୀତି ଫୁଟି ଉଠିଛି ।

'ଗୋପବନ୍ଧୁ' ଓ 'ଚନ୍ଦ୍ରଶେଖର' କବିତାରେ ଗୋପବନ୍ଧୁ ଦରିଦ୍ର ବନ୍ଧୁ ତଥା ଚନ୍ଦ୍ରଶେଖରଙ୍କୁ ଜ୍ଞାନଯୋଗୀ ତପସ୍ୱୀ ଭାବରେ ବର୍ଣ୍ଣନା କରିଛନ୍ତି । 'ଗୋପ ତର୍ପଣ' କବିତାରେ ଶାନ୍ତ, ସତ୍ୟର ପୁରୋହିତ, ସନ୍ୟାସୀ, ତ୍ରସ୍ତ ନିଖିଳ ପତିତ ଜନର ବନ୍ଧୁ, ଓଡ଼ିଆର ଅତି ଆପଣାର ଗୋପବନ୍ଧୁଙ୍କ ବିୟୋଗରେ ତାଙ୍କର ମହାନ ଚରିତ୍ରର ଧାରାକୁ ବର୍ଣ୍ଣନା କରିଛନ୍ତି । ଜାତିର ଇତିହାସ-ନିର୍ମାତା ବରିଷ୍ଠ ପୁରୁଷଙ୍କ ପ୍ରତି ଶ୍ରଦ୍ଧାର୍ପଣ ମାଧ୍ୟମରେ ଜାତୀୟ ଚେତନାର ସୃଷ୍ଟି ମାନସିଂହ ସାହିତ୍ୟର ଏକ ବିଶିଷ୍ଟ ଦିଗ ।

ଭାରତର ସ୍ୱାଧୀନତା ଆନ୍ଦୋଳନର ସ୍ୱର କବିଙ୍କ 'କବିତା'ରେ ପ୍ରତିଫଳିତ ; କେତେକ ସ୍ଥଳରେ ଇତିହାସ ଏବଂ ଧର୍ମ ଚିନ୍ତା ତଥା ମାନବ ପ୍ରୀତିର ଧାରା ପ୍ରବାହିତ । ଏହା କିନ୍ତୁ ଉତ୍କଳୀୟ ଚେତନା ପରି ବିଶେଷ ଉଗ୍ର ନୁହେଁ । ୧୯୩୦-୩୧ ମସିହାରେ କବିଙ୍କ 'ଭାରତ ଗୀତି' ସେ ସମୟର ଲବଣ ଆନ୍ଦୋଳନକୁ ଲକ୍ଷ୍ୟକରି ଲେଖା ଯାଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କର 'ଜନଗଣ ମନ'ର ପ୍ରଭାବ ପଡ଼ିଥିଲେ ମଧ୍ୟ ଏହା କବିଙ୍କର ଜାତୀୟ ଚେତନାର ପ୍ରତୀକ । ନିଦ୍ରିତ ଭାରତ ଜନନୀ ଜାତି, ଧର୍ମ, ପ୍ରାଦେଶିକ ସଙ୍କୀର୍ଣ୍ଣତା ଭେଦ ଭାବ ଭୁଲି ନରନାରୀ ନିର୍ବିଶେଷରେ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ପରାଧୀନ ଅନ୍ଧକାରକୁ ଦୂର କରିବାକୁ କବିଙ୍କର ଜାତି ପ୍ରତି ଆହ୍ୱାନ ଥିଲା ।

'ନବ ଅଭିଯାନ' କବିତା କବିଙ୍କର ପ୍ରାଥମିକ ସ୍ତରର ଲେଖା । କବି ଶିବ, ଶଙ୍କର ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି । ତ୍ରିଶୂଳ ପ୍ରହାର କରି ପରାଧୀନ ଭାରତର ଦୁଃଖ ଦୂର କରିବାପାଇଁ କବିଙ୍କ 'ଚାଲରେ ଚାଲ' କବିତାରେ ମଧ୍ୟ ମହାଭାରତୀୟ ଚେତନାର ଦୃଷ୍ଟାନ୍ତ ପାଇଥାଉଁ । ଯେପରି :—

ଆମେ ମନୁଷ୍ୟ ରାଜା ଧରାର
ଧରଣୀ ଆମର ଭୋଗ ଆଗାର ।
ଦୈନ୍ୟ ଦୁଃଖ କରି ଚୂରମାର
ଆଗେଇ ଚାଲ·········
ସନ୍ତାନ ଆମେ ଏକା ମାଆର
ରଖିବା ମହତ ସଭିଏଁ ତାର
ପକ୍ଷେ ଟାଳିବା ସ୍ୱାର୍ଥ ଧାର
ଚାଲରେ ଚାଲ···········

'ଚାଲରେ ଚାଲ'—(କିଶୋର କବିତା) ପୃ: ୬୭୮

'କୃଷକ' କବିତା ସଙ୍କଳନର 'ସିଏ କାଲି ତୁମର ପ୍ରଭୁର', 'ଅଗ୍ରଣୀ ଭାରତ', 'ଭବିଷ୍ୟତ ଭାରତବର୍ଷ' କବିତାରେ ସ୍ୱାଧୀନ ଭାରତର ମହିମାଗାନ କରିବା ସଙ୍ଗେ

ସଙ୍ଗେ ପ୍ରାଚୀନ ଭାରତର ଐତିହ୍ୟକୁ ଫେରାଇ ଆଣିବାର ସ୍ୱପ୍ନ ଦେଖିଛନ୍ତି । 'ଚିର ଭାରତୀୟ' 'ଗୃହ ସଂସ୍କାର' 'ମାତୃଦ୍ରୋହୀ' କବିତାରେ ମହାଭାରତୀୟ ଚେତନା ଦେଖାଯାଏ । ଦେଶ ମାଆର ଆହ୍ୱାନ ମଧ୍ୟ ଏହି ଶ୍ରେଣୀର ।

ପ୍ରାଚୀନ ଭାରତର ଗୌରବ ଚିତ୍ରକଳାରେ ଶ୍ରେଷ୍ଠସ୍ଥାନ ଅଧିକାର କରିଥିବା ଅଜନ୍ତା, ଏଲିଫେଣ୍ଟାର ଛବି କବିଙ୍କ ପ୍ରାଣରେ ଏକ ବିଶେଷ ରେଖାପାତ କରିଛି । ସିନ୍ଧୁ ଓ ବିନ୍ଦୁର କେତେକ କବିତା ଏବଂ 'ଜାତୀୟାତ୍ମା ଛବିଶ'ରେ ଦେଶାତ୍ମବୋଧର ରୂପ ସ୍ପଷ୍ଟ ।

ତାଙ୍କ କବିତାଗ୍ରନ୍ଥମାନଙ୍କ ମଧ୍ୟରେ 'ବାପୁତର୍ପଣ' ସଂକଳନର ସ୍ଥାନ ସ୍ୱତନ୍ତ୍ର । ତନ୍ମଧ୍ୟରୁ ବାପୁଜୀ, ଗାନ୍ଧିଜୀ କବିତା ବିଶେଷ ଉଲ୍ଲେଖଯୋଗ୍ୟ । ମହାମାନବ ମହାତ୍ମାଗାନ୍ଧୀଙ୍କ ଉଜ୍ଜ୍ୱଳ ଦିଗକୁ ଆଲୋଚନା କରି ତାଙ୍କୁ ବୁଦ୍ଧ, ଖ୍ରୀଷ୍ଟ, କୃଷ୍ଣ, ନିମାଇଁ, ରସୁଲ୍ ଆଦିଙ୍କ ସହିତ ତୁଳନା କରିବା ସଙ୍ଗେ ସଙ୍ଗେ ସେ ସମସ୍ତଙ୍କଠାରୁ ମହତ୍ତର ବୋଲି ଦର୍ଶାଇଛନ୍ତି । ପତିତ, ଦଳିତମାନଙ୍କର ତ୍ରାଣକର୍ତ୍ତା ଗାନ୍ଧିଜୀ କବିଙ୍କ ଆଖିରେ ଅତ୍ୟନ୍ତ ମହାନ । ପୃଥିବୀରେ ନୂତନ ଉପାୟରେ, ନୂତନ ନୂତନ ଅସ୍ତ୍ରରେ ସଂଗ୍ରାମ କରିଥିବାରୁ ସେ ବାପୁଜୀଙ୍କଠାରେ ମହାମାନବତ୍ୱ ଅର୍ପଣ କରିଛନ୍ତି । 'ସଂକଳ୍ପ', 'ତାହାରେ ସ୍ମରଣେ ଯାଇ', 'ଅଗଷ୍ଟ ପନ୍ଦର' (୧୯୪୮), 'ଯେବେ ହେ ଆସିବ ଫେରି', 'ଆସିବ ଫେରି ହେ ଶୀଘ୍ର', 'ଭାରତ ପୁତ୍ର', 'ଦିଅ ଗୁଡ଼ା ଦିଅ ତାରେ', 'ପାପ ନିର୍ବାପିତ', 'ବଳପୁତ୍ର କାହିଁପାଇଁ', 'ପ୍ରାଣରେ ବାପୁଜୀ', 'ନିର୍ମମ ଭଗବାନ' 'ନାହାନ୍ତି ଗାନ୍ଧିଜୀ', 'ମହାଯାତ୍ରା', 'ନାପିତରୁଣୀର ଗାନ୍ଧୀପୂଜା', ଆଦି କବିତାରେ ତାଙ୍କ ଜାତୀୟ ଭାବନା ସ୍ପଷ୍ଟ ପ୍ରତିଫଳିତ ।

ନିଜ ଦେଶର ଗୌରବମୟ ଐତିହ୍ୟ ଓ ପରମ୍ପରା ପ୍ରତି କବି ଜୀବନର ପ୍ରଥମ ପର୍ଯ୍ୟାୟରୁ ଆକୃଷ୍ଟ । "କେଣ୍ଟ ମାନସିଂହଙ୍କ କାବ୍ୟ ଦରବାରରେ ଏ ଦେଶର ମଧ୍ୟଯୁଗୀୟ ଇତିହାସର ଗୌରବମୟ ଐତିହ୍ୟ ପୁଣି ପୁନର୍ଜୀବିତ ହୋଇ ଉଠିଛି । ଏ ଦେଶର ସାଧବ ଝିଅର ଅଶ୍ରୁ ବେଦନା ଯାହାକି ଆକାଶ ବତାସରେ ଭାସି ଭାସି ଶୂନ୍ୟ ମନରେ ନିଜର ରୂପ ପ୍ରକାଶପାଇଁ ଶିଳ୍ପୀ ପ୍ରାଣରେ ଆସନ ଖୋଜି ବୁଲୁଥିଲା, ସେ ପୁଣି କବି ପ୍ରାଣର ସହାନୁଭୂତିପାଇ ମୂର୍ତ୍ତି ପରିଗ୍ରହ କରି ଆମ ସମ୍ମୁଖରେ ତାର ଅଶ୍ରୁ ଅର୍ଘ୍ୟ ଧରି ଛିଡ଼ା ହୋଇଛି"—(୭) କାବ୍ୟଗୁଡ଼ିକର ବାହ୍ୟରୂପ ପ୍ରେମ, ପ୍ରଣୟ ମୂଳକ ହେଲେ ହେଁ ତାହାର ଅନ୍ତଃସ୍ୱର ଜାତୀୟ ପ୍ରୀତିମୂଳକ । ଓଡ଼ିଆ ପରିବାରରେ ସାଧବ ଘରର ବୋହୂ ଓ ଝିଅମାନଙ୍କୁ ନେଇ କରୁଣ ରସାଶ୍ରିତ ଲୌକିକ କାହାଣୀମାନ ରହିଛି , ମାତ୍ର ଏହା କାବ୍ୟ ଗୌରବରେ ଅଧିକାରୀ ହେବାର ସୌଭାଗ୍ୟ ପାଇ ନଥିଲା । କବି ଉତ୍କଳର ନୌବାଣିଜ୍ୟର ଚିତ୍ର ଦେବାକୁ ଯାଇ ସାଧବ ଝିଅ କାବ୍ୟରେ ଲେଖିଛନ୍ତି :—

"ସାଧବ ପୁଅ ମୁଁ ବୋଇତରେ ମୋ ଜୀବନ
ସାଗର ଲହରୀ ଗଣି ସରେ ଯଉବନ
ଧ୍ରୁବ ତାରା ଗୃହିଁ ଶୁଖଇ ଆଖିର ପାଣି
ଜାନେ ତର କରୁ ସୁନା ରୂପା ଝୁଣ ଝୁଣ ।"
ସାଧବ ଝିଅ—ମା: ଗ: ୨ୟ ଭାଗ ପୃ: ୧୩୪

ଉପକୂଳ ଅଞ୍ଚଳର ବାଲୁକା ଲିଙ୍ଗ ପୂଜାର ଚନ୍ଦ୍ରାଧାରା "ମାଟିର ଶିବ ଯେ ନଡ ନଡ ପୂଜେ ମନାସିଲ ଦେବା ଦେଈ"ରେ ସ୍ପଷ୍ଟ । (୮) ଏହା ସଙ୍ଗେ ସଙ୍ଗେ ଅତ୍ୟାଚାରୀ ଖିଆଲ ରାଜାମାନଙ୍କର ଅତ୍ୟାଚାରର ଚିତ୍ର ଦେବାକୁ ଯାଇ ଲେଖିଛନ୍ତି—

"ଗର୍ଭିଣୀକୁ ଚିର ଦେଖିଛୁ ଶିଶୁ ଖେଳେ କପର
ଅଞ୍ଜଳୀରୁ ଫିଙ୍ଗି ମହନ୍ତ ଦେଖେ ପତନ ଶିରୀ ।
(ମା. ଗ. ୨ୟ ଭାଗ, ସାଧବ ଝିଅ ପୃ: ୧୪୩)

କାବ୍ୟର ନାୟକକୁ କବି କଳିଙ୍ଗର ସାଧବ ପୁଅ ରୂପେ ଚିତ୍ରଣ କରିଛନ୍ତି । ତାହାର କଳା କୁଶଳତାକୁ ମଧ୍ୟ 'କହିବୁ ମାଳୀ କଳିଙ୍ଗର' ପଦରେ ପରିସ୍ଫୁଟ କରିଛନ୍ତି । ପରେ ତାହାର ସାହସିକତାର ସ୍ୱର ଶୁଣାଇ କହିଛନ୍ତି, 'ତରୁଣ କହଇ ମୁଖ ଲେହଟାଇ ଭୟ ନାହିଁ' ।

'ଜେମା' କାବ୍ୟ ପ୍ରେମ ମୂଳକ ହେଲେ ହେଁ ତାହାର ଅନ୍ତରାଳରେ ଆମ୍ଭର ଜାତୀୟ ଜୀବନର ଅଧୋଗତିର ସ୍ୱର ଝଙ୍କାରିତ ହୋଇଛି । ଓଡ଼ିଶାର ଜାତୀୟ ଚରିତ୍ରକୁ ପ୍ରକାଶ କରିବାପାଇଁ କବି ଚେଷ୍ଟିତ ।

'କମଳାୟନ' ମାନସିଂହଙ୍କର କାବ୍ୟକୃତି ମଧ୍ୟରେ ସର୍ବବୃହତ୍ତ । କବି ଆଧୁନିକ ଯୁଗର ବିଷୟ ବସ୍ତୁକୁ ନେଇ ଏକ ମହାକାବ୍ୟ ରଚନାପାଇଁ ପ୍ରୟାସ କରିଛନ୍ତି । ଧମସାମୟିକ ଜୀବନର ବୃହତ୍ତର ରୂପ ଆମେ କମଳାୟନ କାବ୍ୟରେ ଦେଖିବାକୁ ପାଉଁ । କବି ଭାରତର ସ୍ୱାଧୀନତା ସଂଗ୍ରାମର ଅତୀତ ଓ ବର୍ତ୍ତମାନ ଏବଂ ବିପର୍ଯ୍ୟସ୍ତ ମାନବ ଜୀବନର ବର୍ତ୍ତମାନ ଓ ଭବିଷ୍ୟତ ଏହି କାବ୍ୟରେ ସଚେତନତା ପ୍ରଦର୍ଶନ କରିଛନ୍ତି । ମହାଭାରତୀୟ ଜାତୀୟ ଚେତନା ସହିତ ବସୁଧୈବ କୁଟୁମ୍ବକମ୍‌ର ସ୍ୱପ୍ନ ମଧ୍ୟ ଦେଖିଛନ୍ତି ।

ଦୁର୍ଭିକ୍ଷର ନିପୀଡ଼ନରେ 'ଡକ୍ଟର'ର ଜନ ଜୀବନ ବିପନ୍ନ । ଅନ୍ନଂ ଦେହି ଚିତ୍କାର ଦେଖି ଗୋପବନ୍ଧୁଙ୍କର ପ୍ରାଣର ବେଦନାକୁ ପ୍ରକାଶ କରିଛନ୍ତି କବି— ଏହିପରି,

"କମଳ, କଉଳ ଯାକୁ ଭୂମି ଉପସ୍ଥାର
ଓଡ଼ିଆ ଜାତିର ତାକୁ ପ୍ରତୀକ ବିସ୍ତର ।

ସେଇମାନେ ଗଢ଼ିଥିଲେ ଉତ୍କଳ ସାମ୍ରାଜ୍ୟ
ଗଙ୍ଗାଠାରୁ ଗୋଦାବରୀ ବିସ୍ତୃତ ସେ ରାଜ୍ୟ ।
ପାହାଡ଼କୁ ଚୂନାକରି ଗଢ଼ିଲେ ଦେଉଳ
ସାଗରକୁ ଲଙ୍ଘି କଲେ ଦୂର ଉପକୂଳ ।
× × ×
ରାଜ୍ୟ ତା'ର ଛିନ୍ନଭିନ୍ନ ଅନ୍ୟ ଅଧିକୃତ,
ଘୃଣିତ ସେ ପ୍ରକାଶ୍ୟରେ ହୁଏ ତିରସ୍କୃତ ।
ଦାରିଦ୍ର୍ୟ ଅଜ୍ଞତା ପାଇଁ ବିଦେଶୀ ଶାସନ
ନିଶ୍ଚିନ୍ତେ ଦେଖୁଛୁ ଆମ ଜୀବନ ମରଣ ।"
(ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ—କମଳାୟନ ପୃ: ୧୬୫)

ଶେଷରେ କବି ମନର କଥା କହୁଛନ୍ତି ।

"ସର୍ବେ ମତ୍ତ କ୍ଷଣିକର ଆଶୁ ସୁଖସ୍ୱାଦେ,
ଜାତିର ମରମ ବ୍ୟଥା କା'ରେ ନାହିଁ ବାଧେ ।
ଆଶା ଖାଲି ତୁମ ପରି ତରୁଣ ହୃଦରୁ,
ହଏ ଯଦି ହୋଇପାରେ ଜାତି କଳ୍ପତରୁ ।
ହୃଦର ସମସ୍ତ ଦେଇ ମାନବ ସେବାରେ
ଇଚ୍ଛା ଥିଲେ ନରପୁଙ୍ଗ ସବୁ କରିପାରେ ।"
(କମଳାୟନ ପୃ: ୧୭୮)

ଉଦ୍ଧୃତାଂଶରୁ ତାଙ୍କର ମହନୀୟ—ପ୍ରାଣ ଓ ଜାତୀୟବାଦୀ ବ୍ୟାକୁଳତାର ପରିଚୟ ମିଳେ ।

## (ଖ) ନାଟ୍ୟ ସାହିତ୍ୟରେ ଜାତୀୟ ଚେତନା :

'ବୁଦ୍ଧ ଦୂତୀ' ନାଟିକାରେ କଳିଙ୍ଗର ରାଜବାଳା ହେମ ମାଳାର ସାହସିକତା ବର୍ଣ୍ଣନା କରିଛନ୍ତି । ବୌଦ୍ଧ ଧର୍ମର ପ୍ରସାର ଦିଗରେ କଳିଙ୍ଗ ହିଁ ମହାନ୍ ଗୌରବର ଅଧିକାରୀ । 'ଦୁର୍ଭିକ୍ଷ' କାବ୍ୟ ନାଟିକାର ବିଷୟବସ୍ତୁ ନ'ଅଙ୍କ ଦୁର୍ଭିକ୍ଷର ପଛଭୂମିରେ ରଚିତ ହୋଇଥିଲେ ମଧ୍ୟ ଏହାର ଚରିତ୍ରଗୁଡ଼ିକ କାଳ୍ପନିକ ବୋଲି ନାଟ୍ୟକାର ଦର୍ଶାଇଛନ୍ତି । କେବଳ ବିଷୟବସ୍ତୁ ଓ ସନାତନ ଚରିତ୍ରଟି ସତ୍ୟ । ଏହି ଦୁର୍ଭିକ୍ଷ ସମୟରେ ପତିତପାବନ ଦେଶର ସନାତନ ମୁଖରେ ନାଟ୍ୟକାର ମାନବିକତାର ସ୍ୱର ତୋଳିଛନ୍ତି । ଅନ୍ୟ ଏକ ବିଶିଷ୍ଟ ନାଟକ 'ବାରବାଟୀ'ରେ ମାନସିଂହଙ୍କର ଉଗ୍ର ଜାତୀୟ-ଚେତନା ଦେଖା ଦେଇଛି । ନାଟକର ବିଭିନ୍ନ ଦୃଶ୍ୟରେ ଚରିତ୍ରମାନଙ୍କ ମାଧ୍ୟମରେ ଉତ୍କଳର ଗୌରବାବହ ଅତୀତ ରୂପାୟିତ କରିଛନ୍ତି । ପ୍ରଥମ ଅଙ୍କ

ତୃତୀୟ ଦୃଶ୍ୟରେ ଥିବା ଗୀତ 'ଜୟ ଉତ୍କଳ ପାଟରାଣୀ'ରେ ଉତ୍କଳର ଗୌରବଗାନ କରାଯାଇଛି । ପ୍ରଥମ ଅଙ୍କ ଚତୁର୍ଥ ଦୃଶ୍ୟରେ ବଙ୍ଗ ରାଜା ଲକ୍ଷଣ ସେନଙ୍କୁ ଆଶ୍ରୟ ଦେଇ ଉଦାର ଉତ୍କଳୀୟ ଭାବଧାରା ସହିତ ଅନଙ୍ଗଭୀମଦେବଙ୍କ ସଂଳାପ ମାଧ୍ୟମରେ ଓଡ଼ିଆଙ୍କର ଓ ନୀଳାଚଳ ପୀଠର ମହନୀୟତା ବର୍ଣ୍ଣନା କରିଛନ୍ତି । ଉତ୍କଳୀୟ ସମ୍ରାଟ ମନେକରେ, 'ରାଜ ସିଂହାସନ ଏକ ତୁଳୀତଳ୍ପ ନୁହେଁ, ସେ ଏକ ପ୍ରକାର ଭୃଶଶଯ୍ୟା । ରାଜ୍ୟ ଶାସନ ଓ ରାଜ୍ୟ ପାଳନ ରାଜାର କଠୋର ତପୋସାଧନ । (୯) ସେଥିପାଇଁ ସେ ରାଜ୍ୟ ଶାସନ ସଙ୍ଗେ ସଙ୍ଗେ ଜନହିତକର କାର୍ଯ୍ୟ କରି ଚାଲନ୍ତି । ଓଡ଼ିଆର ପାଇକ ସୈନିକ ମଧ୍ୟ କୃଷକ, ସେ ଆଗେ ବୁଝେ ଦେଶ, ତା'ପରେ ତା'ର ରାଜା ଓ ଜଗନ୍ନାଥ, ତା' ପରେ ନିଜ କଥା । ସେ ଦୁର୍ଦ୍ଦମ, ସେ ଦୁର୍ଦ୍ଧର୍ଷ । (୧୦) ବକ୍ତିଆର ଖିଲଜି ସଂଳାପରେ, 'ଜନ୍ତୁ ଲକ୍ଷ୍ମଣସେନ ଯେଉଁ ଦେଶରେ ଆଶ୍ରୟ ନେବାକୁ ପଳାଇଲା ସେ ରାଜ୍ୟ ନୁହେଁ ଗ୍ରେଟ ଆକାରରେ, ନୁହେଁ ଦୁର୍ବଳ ଶକ୍ତିରେ, ଗ୍ରେଟ ବଡ଼ ପଥର ସବୁଯାକ ହୋଇ ଯେପରି ପ୍ରକାଣ୍ଡ ପାହାଡ଼ ଦୃଢ଼ତର ସହିତ ଠିଆ ହୋଇଯାଏ । ପ୍ରକୃତିର ଶକ୍ତି ସମୂହକୁ ତାଚ୍ଛଲ୍ଯ କରେ । ବନ୍ଧୁ ସାମନ୍ତ ପରିବେଷ୍ଟିତ ଉତ୍କଳ ରାଜ୍ୟ ସେହିପରି ଦୁର୍ଜ୍ଜୟ ।" (୧୧) ସିରାଜ ଖାଁ ଓ ସେନାପତିଙ୍କ ସଂଳାପରେ, "କିଏ ଭାବିଥିଲା ଓଡ଼ିଆ ରାଜା ଏତେ ଟାଣୁଆ ବୋଲି । ଖଣ୍ଡାୟତମାନେ ଆମ୍ଭମାନଙ୍କର ଜାନ୍ ଛୁଟାଇ ଦେଲେ ।" (୧୨) ସାମନ୍ତ ବିକ୍ରମ ଭଞ୍ଜ ଜଲେଶ୍ୱର ଦୁର୍ଗର ପାଇକମାନଙ୍କୁ ଉତ୍ସାହବାଣୀ ଶୁଣାନ୍ତି । "ଶେଷ ପାଇକ ବଞ୍ଚିଥିବା ଯାଏ ଦୁର୍ଗର ମାନ ରକ୍ଷିବ ।" (୧୩) ପାଇକମାନେ ମଧ୍ୟ ଶପଥ ନିଅନ୍ତି, "ପ୍ରତି ହାତ ଭୂମିପାଇଁ ଲଢ଼ିବୁ ଆଉରେ ରାଜା ଓ ଧର୍ମ ଲାଗି ଦେବୁ ଏ ପରାଣ, ଜୟ ଜଗନ୍ନାଥଙ୍କ ଜୟ ।" (୧୪) ନାଟକର ପ୍ରଥମ ଅଙ୍କ ଚତୁର୍ଥ ଦୃଶ୍ୟରେ ଅନଙ୍ଗଭୀମ ଦେବଙ୍କ ମୁଖରେ କବିଙ୍କର ଉଗ୍ର ଜାତୀୟବାଦ ପ୍ରକାଶ ପାଇଛି । ନାଟକର ଶେଷ ଦୃଶ୍ୟରେ ଅନଙ୍ଗଭୀମ ଦେବଙ୍କ ମୁଖରେ ମଧ୍ୟ ଉତ୍କଳର ଗୌରବ ନେଇ ଓ ଉଦାରତା ନେଇ ଏକ ଦୀର୍ଘ ସଂଳାପ ରହିଛି । ନାଟ୍ୟକାର କେବଳ ସଂକୀର୍ଣ୍ଣ ପ୍ରାଦେଶିକତାରେ ଅନ୍ଧ ନଥିଲେ । ଜାତୀୟ ସଂହତି ରକ୍ଷାପାଇଁ ଅନଙ୍ଗଭୀମଦେବଙ୍କ ମୁହଁରେ କହିଛନ୍ତି, "ଏକ ଦୁର୍ଦ୍ଧର୍ଷ, ଦୁର୍ଜ୍ଜୟ ଶତ୍ରୁ ଆର୍ଯ୍ୟାବର୍ତ୍ତରେ ରାଜ୍ୟ ପରେ ରାଜ୍ୟ ନେଇ ଯାଉଥିଲାବେଳେ ଆମେ ପରସ୍ପରକୁ ହାଣକାଟ କରିବା ବଜ୍ଜତାର କାର୍ଯ୍ୟ ନୁହେଁ ।" (୧୫) କାଞ୍ଚନ ପ୍ରଭାଙ୍କ ସଂଳାପ, "ଏକ ବିଧର୍ମୀ ଶତ୍ରୁ ଯେତେବେଳେ ଦ୍ୱାର ଦେଶରେ ଛିଡ଼ା ହେଲାଣି ସେତେବେଳେ ନିଜ ଲୋକଙ୍କ ସଙ୍ଗେ କଳିଦ୍ୱନ୍ଦ୍ୱ ସୁନ୍ଦର ଦିଶୁନାହିଁ । ଜାତିଭାଇମାନଙ୍କୁ ଦମନ କରି କି ଯଶ ପାଇବା ? ଯଦି ନୁହେଁ ଦିନେ ଯବନର ଦାସ ହେବା ।" (୧୬) ଅସ୍ପୃଶ୍ୟତା ଆମ ସମାଜର କଳଙ୍କ । ତେଣୁ ଐତିହାସିକ ନାଟକରେ ମଧ୍ୟ ନାଟ୍ୟକାର ଅସ୍ପୃଶ୍ୟତା ଦୂରୀକରଣପାଇଁ, ଶ୍ରୀକ୍ଷେତ୍ର ସର୍ବଧର୍ମ ସମନ୍ୱୟପୀଠ, ମହାପୁଣ୍ୟ ଭେଦାଭେଦ

ଭୁଲି ଏଠି ସୌର, ଗାଣପତ୍ୟ, ଶାକ୍ତ, ଶୈବ, ବୈଷ୍ଣବ, ବେଦାନ୍ତ ଗୃହୀଙ୍କ ସକଳେ ପୂଜିବେ ଇଷ୍ଟେ ଆପଣା ବିଶ୍ୱାସେ । ଆଜ ମଧ୍ୟ ଏହି ସିଂହଦ୍ୱାରେ ପ୍ରଭୁଙ୍କ ମୂର୍ତ୍ତିସମ ଆଜି ଏକ ଦର୍ଶନ ଫଳ ପାଇ ହେବେ ଧନ୍ୟ ।" (୧୭) "ଜାତୀୟ-ଚେତା ନାଟ୍ୟକାର ଲୋକ ସଂସ୍କୃତି ଓ ଲୋକଗୀତକୁ ମଧ୍ୟ ଏହି ଐତିହାସିକ ନାଟକରେ ସ୍ଥାନ ଦେଇଛନ୍ତି ।" (୧୮) ମାନସିଂହଙ୍କ ମହୋଦାର ଧର୍ମଚେତନା ଓଡ଼ିଆ ଜାତିର ମହାସମନ୍ୱୟବାଦୀ ଜଗନ୍ନାଥ ଧର୍ମ ଚେତନାର ଏକ ରୂପାନ୍ତର ଭାବରେ ଆତ୍ମପ୍ରକାଶ କରିଥିବା ମଧ୍ୟ ଲକ୍ଷ୍ୟ କରାଯାଇପାରେ ।

**(ଗ) ଗଦ୍ୟସାହିତ୍ୟରେ ଜାତୀୟ ଚେତନା—**

ମାନସିଂହଙ୍କ ଭ୍ରମଣ କାହାଣୀ 'ପଶ୍ଚିମ ପଥିକ' କେବଳ ଭ୍ରମଣ କାହାଣୀ କହିଲେ ହୁଏତ ଭୁଲ ହେବ ; ଏ ବହିର ଛତେ ଛତେ ବିଭିନ୍ନ ପରିବେଶ, ବିଭିନ୍ନ ଜାତି ତଥା ବିଭିନ୍ନ ଦେଶ ସହିତ ସେ ଭାରତ ଓ ଭାରତୀୟ ତଥା ଓଡ଼ିଶା ଓ ଓଡ଼ିଆ-ମାନଙ୍କର ତୁଳନାତ୍ମକ ବିଶ୍ଳେଷଣ କରିଛନ୍ତି । ଯାତ୍ରା ସମୟରେ ପଥ ମଧ୍ୟରେ ନାନା ଅଭିଜ୍ଞତାରୁ ତାଙ୍କ ପ୍ରାଣ ଜାତି ଉଦ୍ଦେଶ୍ୟରେ ବିଳାପ କରି ଉଠିଛି, ବିଭିନ୍ନ ପଙ୍କ୍ତିରୁ ଆମେ ତାଙ୍କର ଜାତୀୟ ଚେତନାର ସ୍ୱର ଶୁଣିବାକୁ ପାଉଁ । "ଆମ ଦେଶରେ ଦି'ପଦ ଇଂରେଜୀ ଜାଣିଲେ ଲୋକଙ୍କ କମ୍ ଅହଂକାର ?? ଏଇଟା ଯେ ଦାସତ୍ୱର ଚିହ୍ନ, ଏ କଥା ବୁଝିବାକୁ ଆମ ଦେଶର ଲୋକଙ୍କ କଳ୍ପନାର ଅଭାବ ।" (୧୯) ତାଙ୍କର ବିଦେଶ ଯାତ୍ରାର ସମୟ ୧୯୩୭ ମସିହା ଅଗଷ୍ଟ ମାସ କୋଡ଼ିଏ ତାରିଖ, ସେତେ-ବେଳେ ଭାରତ ପରାଧୀନ । ଭାରତର ସ୍ୱାଧୀନତା ପାଇଁ ତାଙ୍କ ଅନ୍ତରର ସ୍ୱର ଆମେ ନିମ୍ନୋକ୍ତ ପଂକ୍ତିରୁ ସ୍ପଷ୍ଟ ଶୁଣିବାକୁ ମିଳେ । "ମୋ ଦେଶରେ ମାନବ ସଭ୍ୟତାର ପ୍ରଥମ ପ୍ରଭାତ ହେଲାବେଳେ ହୁଏତ ସମସ୍ତ ଜଗତ ନିଦ୍ରିତ ଥିଲା, କିନ୍ତୁ ଆଜି ? ଆଜି ଯେ ସମସ୍ତ ଜଗତ ଜାଗ୍ରତ ହୋଇ ଯେ ଆମର ବହୁ ଆଗରେ ଆମେ ପଛରେ ପଡ଼ିଛେ ।" (୨୦) ଜାହାଜରେ ଭାରତୀୟ ବୁଲାବିକାଳୀଙ୍କ ପ୍ରତି ଦରଦ ଆଣି କହିଥିଲେ, 'ମୋ ଦେଶ ସ୍ୱାଧୀନ ହୋଇଥିଲେ ଏମାନେ ବୁଲାବିକା ନ ହୋଇ ଭଦ୍ର ବଣିକ ହୋଇ ଆଆନ୍ତେ ।" (୨୧) ସେଥିପାଇଁ ସେ ଗର୍ବିତ ହେବା ସଙ୍ଗେ ସଙ୍ଗେ ଆଶା ପ୍ରକାଶ କରିଛନ୍ତି ବିଭିନ୍ନ ଜାତିର ଭଲ ଜିନିଷ ଆମକୁ ଗ୍ରହଣ କରିବାକୁ ପଡ଼ିବ । ନହେଲେ ଆମେ ପ୍ରତିଯୋଗିତାରେ ପାରିହୋଇ ଉଠିବା ବଡ଼ କଠିନ । କ୍ଷୁଦ୍ର ଜାପାନ (ସେତେବେଳେ) ସ୍ୱାଧୀନ ମାତ୍ର ଆମର ବିରାଟ ଭାରତବର୍ଷ ପରାଧୀନ ।" (୨୨)

ମାନସିଂହଙ୍କର ପ୍ରବନ୍ଧ ଓ ସମାଲୋଚନା ମୂଳକ ପୁସ୍ତକ ଗୁଡ଼ିକ ମଧ୍ୟରୁ 'କବି ଓ କବିତା', 'ମାଟିର ମହାକବି ସାରଳାଦାସ', 'ଓଡ଼ିଆ ସାହିତ୍ୟ ଓ ସମାଜ', 'ଜୀବନ ଯଥ' 'ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନ', ତଥା 'ଜୀବନୀ ଓ ପ୍ରବନ୍ଧ' ବିଭିନ୍ନ ସମୟରେ

ରଚନ ହୋଇଥିଲେ ମଧ୍ୟ ପ୍ରବନ୍ଧ ଗୁଡ଼ିକର ଅଧିକାଂଶ ସ୍ଥଳରେ ଜାତୀୟତାର ସ୍ୱର ଶୁଣିବାକୁ ମିଳେ । 'ଜୀବନ ପଥ' ପ୍ରବନ୍ଧ ପୁସ୍ତକର 'ସୁସ୍ଥ ଶରୀର' ଓ 'କୁଞ୍ଚମୁଁ' ପ୍ରବନ୍ଧରେ ଓଡ଼ିଶାର ସାମାଜିକ ଜୀବନର ଅଧୋଗତି ପାଇଁ ପାଶ୍ଚାତ୍ୟ ଶିକ୍ଷା ଓ ଆଧୁନିକ ସଭ୍ୟତାକୁ ଦାୟୀ କରିଛନ୍ତି । ଓଡ଼ିଆର ଜାତୀୟ ଖାଦ୍ୟ, ପୋଷାକ, ଆସ୍ୱାର ବ୍ୟବହାର ଖୁବ୍ ଉନ୍ନତ ଥିଲା, ମାତ୍ର ପଡ଼ୋଶୀ ବଙ୍ଗଳା ପ୍ରଭାବରେ ପଡ଼ି ତାର ଅବନତି ହେଲା । 'ଶିକ୍ଷାବିତ୍ତର ଗାଥା' ମାନସିଂହଙ୍କର ଏକ ଅଭିନବ ସୃଷ୍ଟି । ଏହା ଏକାଧାରାରେ ଆତ୍ମ ଜୀବନୀ ଓ ସନ୍ଦର୍ଭ । ଏଥିରେ ଜାତୀୟ ଜୀବନରେ ଶିକ୍ଷକର ଭୂମିକା ସହିତ ଆମ ଜାତିର ଶିକ୍ଷା କ୍ଷେତ୍ରରେ ବହୁ ଦୋଷ ଦୁର୍ବଳତାକୁ ଦେଖାଇ ତା'ର ସମାଧାନର ବାଟ ମଧ୍ୟ ଦେଖାଇଛନ୍ତି । "ଆମେ ଯେ ପର୍ଯ୍ୟନ୍ତ ଶିକ୍ଷକ ଏଇ ଶ୍ରେଣୀର ସମ୍ମାନ ଦେବାପାଇଁ ପ୍ରସ୍ତୁତ ନ ହୋଇଛୁ ସେ ପର୍ଯ୍ୟନ୍ତ ଆମ ଜାତୀୟ ଚରିତ୍ରର ମୂଳପତ୍ତନ ଦୁର୍ବଳ ରହିବ ହିଁ ରହିବ । (୨୪) 'ସରସ୍ୱତୀ ଫକୀର ମୋହନ, ତାଙ୍କର ଏକ ଉଚ୍ଚକୋଟୀର ଜୀବନୀ ଗ୍ରନ୍ଥ । ଏଥିରେ ସେ ଫକୀର୍ ମୋହନଙ୍କ ସମୟରେ ବଙ୍ଗାଳୀ ମାନଙ୍କର ଭାଷା ବିଲୋପୀ ଆନ୍ଦୋଳନର ବର୍ଣ୍ଣନା ଦେଇ କହିଛନ୍ତି । "ଆତତାୟୀମାନେ ହୁଏତ କେତୋଟି ଲୋକଙ୍କ ହତ୍ୟା କରନ୍ତି ମାତ୍ର ବଙ୍ଗାଳୀମାନେ ସେ ଓଡ଼ିଆ ଭାଷାକୁ ଉଠାଇ ଦେବାକୁ ଚେଷ୍ଟା କରିଥିଲେ ଓ ମେଦିନୀପୁରରୁ ଓଡ଼ିଆ ଭାଷାକୁ ଉଠାଇ ଦେଇ ଏକ ମହାଜାତିର ଆତ୍ମାକୁ ହତ୍ୟା କଲେ ।" ଏଥିରୁ ମାନସିଂହଙ୍କର ଜାତି ପ୍ରୀତିର ଦୃଷ୍ଟାନ୍ତ ଦେଖାଯାଏ । କେବଳ ଏହି ଗ୍ରନ୍ଥଗୁଡ଼ିକ ନୁହେଁ, ଗ୍ରନ୍ଥାକାରରେ ତଥାପି ପ୍ରକାଶ ପାଇଥିବା ତାଙ୍କର ଅନ୍ୟ କେତେକ ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ମଧ୍ୟ ଏଠି ସ୍ମରଣୀୟ । 'ନବରବି' ତୃତୀୟ ବର୍ଷ ପଞ୍ଚମ ସଂଖ୍ୟାରେ ପ୍ରକାଶିତ 'ଜୀବନର ଚରମ ପ୍ରଶଂସନୀୟତା କେଉଁଠି ?' ଶୀର୍ଷକ ପ୍ରବନ୍ଧରେ ଭାରତୀୟ ଜାତୀୟ ଜୀବନର ଅଧୋଗତି ବିଷୟ ବର୍ଣ୍ଣନା କରି ସେ ଆମର ଧର୍ମ ଚେତନାହୀନ ଅବସ୍ଥା ପ୍ରଦର୍ଶନ କରିଛନ୍ତି । ବୁଦ୍ଧ, ଶଙ୍କର, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧୀଙ୍କ ଭାରତରେ ଆଜି ନୈତିକ ଅଧଃପତନ ଦେଖାଦେଇଛି । ତାର କାରଣ ଆମେ ଆମର ପରମ୍ପରା ଓ ଧର୍ମଧାରାକୁ ଭୁଲିଯାଇଛୁଁ । ମାତ୍ର ବିଦେଶୀମାନେ ସେହି ଧର୍ମଧାରାକୁ ନେଇ ଉନ୍ନତିର ଚରମ ସୀମାରେ ପହଞ୍ଚିଛନ୍ତି । 'ଇଂଗ-ଭାରତୀୟ-ସାହିତ୍ୟ ପ୍ରବନ୍ଧର ପାଦଟୀକାରେ ସେ ଜାତୀୟ ସାହିତ୍ୟ ରଚନା କରିବାକୁ ହେଲେ ନିଜ ମାତୃଭାଷାରେ ହିଁ ଲେଖିବାକୁ ପଡ଼ିବବୋଲି ଦର୍ଶାଇଛନ୍ତି । ଇଂରାଜୀ ଭାଷାରେ ଭାବ ପ୍ରକାଶ ପାଇଁ ଉପଯୁକ୍ତ କ୍ଷମତା ନ ଥାଇ ଲେଖିଲେ କେବଳ ଆମର ବନ୍ଧୁମାନେ ପ୍ରଶଂସା କରିବେ ମାତ୍ର ସମାଲୋଚକମାନେ କରି ନ ପାରନ୍ତି । (୨୭) 'ଭାରତରେ କର୍ତ୍ତବ୍ୟବୋଧ' ପ୍ରବନ୍ଧରେ ତାଙ୍କର ବକ୍ତବ୍ୟ ହେଲା, ଯେ ଜାତି ବଡ଼ହୁଏ ତାର ଔଦାର୍ଯ୍ୟ ଓ କର୍ତ୍ତବ୍ୟବୋଧକୁ ନେଇ । ଯେଉଁମାନେ ବଡ଼ ହୋଇଛନ୍ତି ସେମାନଙ୍କର ମୂଳମନ୍ତ୍ର ସତ୍ୟର ଅନୁସନ୍ଧାନ, ସଂସ୍କୃତି—ସଚେତନତା ଓ କର୍ତ୍ତବ୍ୟନିଷ୍ଠା । ଭାରତୀୟ

ଜୀବନର ଅଧୋଗତିର କାରଣ ଆପଣା ସଂସ୍କୃତି ବିମୁଖତା ବୋଲି ସେ ମନେ କରନ୍ତି । (୨୭)

'ନବରବି'ରେ ପ୍ରକାଶିତ ତାଙ୍କର ପ୍ରବନ୍ଧ 'ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି ?' ରେ ସେ ତାଙ୍କ ପ୍ରାଣର ଏକ ଗଭୀର ଭାବାବେଗକୁ ଉପସ୍ଥାପନ କରିଛନ୍ତି । ସ୍ୱାଧୀନତା ଲାଭର ପଚିଶ ବର୍ଷ ମଧ୍ୟରେ ସେ ତାଙ୍କର ସ୍ୱପ୍ନର ଓଡ଼ିଶାକୁ ଦେଖିପାରି ନାହାନ୍ତି । ବଳକା ରାଜ୍ୟ ଓଡ଼ିଶାର ଲୋକେ ବର୍ଷେ ଫସଲ ନ ହେଲେ ଖାଇବାକୁ ପାଉନାହାନ୍ତି । ଓଡ଼ିଶା କେବଳ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ନୁହେଁ, ଖଣିଜ, ବନଜ ଜଳଜ—ଏହି ତ୍ରିବିଧ ଜାତୀୟ ସମ୍ପଦରେ ମଧ୍ୟ ଓଡ଼ିଆ ଭାରତବର୍ଷରେ ଅନ୍ୟାନ୍ୟ ପ୍ରଦେଶଠାରୁ ଏକ ଉଚ୍ଚକୋଟିର ମାଲିକ । କିନ୍ତୁ ଏସବୁ ପ୍ରକାର ପ୍ରାକୃତିକ ଅନୁକୂଳତା ଥାଇ ମଧ୍ୟ ଓଡ଼ିଆ କେବଳ ଲୋକ ଚକ୍ଷୁ ଓ ଲୋକଚନ୍ଦ୍ରାରେ ନୁହେଁ, ସରକାରୀ ଗଣନାରେ ମଧ୍ୟ ଭାରତବର୍ଷର ଦରିଦ୍ରତମ ଜାତି ।" (୨୮) ଏହିପରି ବିଭିନ୍ନ ସମସ୍ୟା ଉତ୍ଥାପନ କରି ତାର ପ୍ରତିକାର ସ୍ୱରୂପ ଆମକୁ ମନ୍ତ୍ରୀ କିମ୍ବା ନେତାଙ୍କ ଭାଷଣ ପରି କଥା ନ କହି ଅତି ଆପଣାର ପରି ବାସ୍ତବବାଦୀ କଥା କହିଛନ୍ତି । "ହେ ମୋର ଓଡ଼ିଆ ଭାଇ ଭଉଣୀମାନେ, ତୁମେମାନେ, ଅନ୍ତତଃ ଏହି ପଞ୍ଜାବୀମାନଙ୍କୁ ଅନୁକରଣ କର । ନାରୀ ଓ ପୁରୁଷ ସେହିମାନଙ୍କ ପରି କର୍ମଠ ହୁଅ, ବିତ୍ତବାନ ହୁଅ ଓ ସେମାନଙ୍କ ପରି ଖାଅ ଓ ରହ । ଆଳସ୍ୟ ଓ ଅଜ୍ଞତା ହୋଇ ରହିବାଠାରୁ ଲଜ୍ଜାକର ଅପମାନ କିଛିଥାଇ ନପାରେ ।" (୨୯)

'The Saga of the Land of Jagannath' ପୁସ୍ତକରେ ତାଙ୍କର ସ୍ୱଦେଶ ପ୍ରୀତିର ସ୍ୱାକ୍ଷର ମିଳେ । ଏହା ପୂର୍ବରୁ ତାଙ୍କ ଲିଖିତ History of Oriya Literature କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଥିଲା; ତାହାର ମଧ୍ୟ ଏକ ଓଡ଼ିଆ ସଂସ୍କରଣ କବି ମାନସିଂହ କରିଛନ୍ତି । ଜାତୀୟ ଇତିହାସ ପ୍ରଣୟନ ସମ୍ବନ୍ଧେ ମାନସିଂହ କହନ୍ତି, "ଓଡ଼ିଆ ସାହିତ୍ୟର ଇତିହାସକୁ ଓଡ଼ିଆ ଜାତିର ଆତ୍ମାର ଇତିହାସ କରି ଗଢ଼ିବାର ମୂଳରୁ ମନସ୍ଥ କରି ରଖିବାର କେବଳ କାଳ ସମ୍ପୃକ୍ତ ସାହାଯ୍ୟ ଛଡ଼ା ଅନ୍ୟ କେଉଁଥିରେ ଏହି ବରେଣ୍ୟ ପୂର୍ବସୂରୀମାନଙ୍କୁ ଅନୁସରଣ ନ କରି, ମୁଁ ନିଜର ସାମାନ୍ୟ ଗ୍ରନ୍ଥଟିକୁ ସମ୍ପୂର୍ଣ୍ଣ ନିଜ ଭାବରେ ହିଁ ଲେଖି ଗ୍ଭଲିଲି ଏବଂ ଗ୍ରନ୍ଥଟି ଓଡ଼ିଶା ବାହାରେ ସମାଦୃତ ହେବାର ବିଶେଷ କାରଣ ବୋଧହୁଏ ଏହି ଯେ ଏହା ଏହିପରି ଭାବରେ ଏକ ଐତିହାସିକ ଜାତିର ଆତ୍ମାର ଇତିହାସ ରୂପେ ହିଁ ଲିଖିତ ।" (୩୦) ନାମ, ଧାମ ତାଲିକାରୁ ଏହି ଇତିହାସ ସ୍ୱତନ୍ତ୍ର । ତାଙ୍କ ଭାଷାରେ ସାହିତ୍ୟ ବା ଜାତିର ଇତିହାସ ଯଦି ନାମ, ଧାମ ଘଟଣାର ତାଲିକା ମାତ୍ର ବୋଲି ଧରାଯାଏ, ତେବେ ତାହା ଯେ କୌଣସି ଲୋକ ପାରନ୍ତେ । ସେଥିପାଇଁ ଲେଖକ ବାଛିବା ଦରକାର ପଡ଼ନ୍ତା କାହିଁକି ? କିନ୍ତୁ ଏକ ସାହିତ୍ୟର

ଇତିହାସ ବା ଏକ ଜାତିର ଇତିହାସ ସମ୍ପୃକ୍ତ ଜାତିର ଆତ୍ମାର ଇତିହାସ । ସେଠି ଲେଖକ ପାଞ୍ଜିକାର ମାତ୍ର ନୁହେଁ । ଏ କ୍ଷେତ୍ରରେ ନିଜ ଜାତି ବା ସାହିତ୍ୟର ଗୁଣାଗୁଣର ପରୀକ୍ଷକ, ଗ୍ରାହକ, ପ୍ରଚାରକ ଏବଂ ଦରକାର ପଡ଼ିଲେ ନିନ୍ଦୁକ ମଧ୍ୟ । ଯେ କୌଣସି ଇତିହାସ କେବଳ ଏହି ଦୃଷ୍ଟିକୋଣରୁ ହିଁ ମୂଲ୍ୟବାନ ।" (୩୧) ଇତିହାସର ବିଭିନ୍ନ ପୃଷ୍ଠାରେ ମାନସିଂହ ନିଜ ଜାତିର ଲେଖକ, କବିମାନଙ୍କର ସ୍ୱାତନ୍ତ୍ର୍ୟ ଓ ବିଶେଷତ୍ୱ ଦେଖାଇ ଜାତୀୟ ଦରବାରରେ ଗୌରବାନ୍ୱିତ କରିବାକୁ ଚେଷ୍ଟା କରିଛନ୍ତି । ସେଥିପାଇଁ ବି ଧିହୋଇ ସେ କେତେକ ଅନାମଧେୟ ସାହିତ୍ୟିକଙ୍କୁ ବାଦ ଦେଇଛନ୍ତି ଓ କେତେକ ସ୍ଥାନରେ ଗତାନୁଗତିକତାରୁ ମୁକ୍ତ ହୋଇ ମତ ପ୍ରଦାନ କରିଛନ୍ତି । ସେଥିପାଇଁ ଏ ଗ୍ରନ୍ଥର ବହୁ ଲୋକ ତାଙ୍କ ବିରୁଦ୍ଧରେ କୁତ୍ସା ରଟନା କରିଥିଲେ । ତାଙ୍କ ପାଇଁ ମାନସିଂହଙ୍କର ଉତ୍ତର ଥିଲା, "ଏହା ଚିତ୍ରଗୁପ୍ତର ପାଞ୍ଜି ନୁହେଁ ଯେ ଅଗା, ବଗା, ଖଗାଙ୍କ ନାଆଁ ଏଥିରେ ରହିବ । ଏହା ଏକ ଓଡ଼ିଆ ଜାତିର ଚରିତ୍ର ଇତିହାସ । ସେଥିକି ଯଦି କିଛି ମୌଳିକ ଦାନ କେହି ଦେଇଥିବେ ତେବେ ତାଙ୍କ କଥା ସେଥିରେ ବଳେ ଆସିବ ।" (୩୨)

॥ ତିନି ॥

ମାନସିଂହ ଜଣେ ନିଷ୍ଠାପର ସ୍ୱଦେଶ ପ୍ରେମୀ, ଜାତୀୟତାବାଦୀ କବି । ପ୍ରାଚୀନ ଉତ୍କଳର ସଭ୍ୟତା ଓ ସଂସ୍କୃତିର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ଆମକୁ ଗୌରବ ମଣ୍ଡିତ ଅତୀତ ପ୍ରତି ସଚେତନ କରାଇ ଦିଅନ୍ତି । ଓଡ଼ିଆ ସାହିତ୍ୟରେ ଏହି, ସ୍ୱଦେଶାନୁରାଗର ପ୍ରଥମ ବାଣୀ ଶୁଣାଇଥିଲେ ଯୁଗ ସ୍ରଷ୍ଟା ରାଧାନାଥ । ଏହାକୁ ବ୍ୟାପ୍ତତର କରିଥିଲେ ସତ୍ୟବାଦୀ ବନ ବିଦ୍ୟାଳୟର ଜାତୀୟତାବାଦୀ ଶିକ୍ଷକ ସାଧକ କବି ଲେଖକ ଗଣ । ସତ୍ୟବାଦୀର ଜାତୀୟ ପ୍ରେରଣା, ସେବା, ସଂସ୍କାର, ଆଦର୍ଶ ତଥା ଉପଦେଶାତ୍ମକ ଭାବଧାରା ଉପରେ ଆଧାରିତ । କବି ମାନସିଂହ କଳାର-ପୂଜାରୀ । କଳାକୁ ଆଧାର କରି ତାଙ୍କ ଜାତୀୟ ଭାବ ବିକଶିତ । ସେ କଳାକୁ କଳା ଭାବରେ ଦେଖିଛନ୍ତି । ସୁନ୍ଦର ବସ୍ତୁର ଯଥାଯଥ ବିଶ୍ଳେଷଣ ଓ ବିନ୍ୟାସ ତାଙ୍କ ଲେଖାର ବୈଶିଷ୍ଟ୍ୟ । ମାନସିଂହ ଦେଶର ଦୁର୍ଗତିରେ ପ୍ରାଣରେ ବେଦନା ପାଇଥିଲେ ମଧ୍ୟ ଭବିଷ୍ୟତର ଉନ୍ନତି ପାଇଁ ଆଶାୟୀ ଥିଲେ । ତାଙ୍କ ଦେଶାତ୍ମବୋଧକ କବିତା ରାଜନୀତି ପ୍ରଭାବିତ ନୁହେଁ; ସୌନ୍ଦର୍ଯ୍ୟବୋଧ ପ୍ରାପ୍ତ ସ୍ପନ୍ଦନ ତାଙ୍କ କବିତାର ବୈଶିଷ୍ଟ୍ୟ । ଦୃଷ୍ଟାନ୍ତ ସ୍ୱରୂପ 'କୋଣାର୍କ' ଉପରେ ଓଡ଼ିଶାର ବହୁତଗୁଡ଼ିଏ କବିତା ତଥା କାବ୍ୟ ଲେଖା ହେଲଣି । ସଚି ରାଉତରାୟ, ମାନସିଂହ, ନୀଳକଣ୍ଠ, ଗୋପବନ୍ଧୁ, ରାଧାନାଥ, ରବି ସିଂ, ରାଧାମୋହନ ଗଡନାୟକ ଆଦି ସମସ୍ତ କବିଙ୍କର ଚିନ୍ତାଧାରାକୁ ବିଚାର କରି ଜଣେ ଆଧୁନିକ ସମାଲୋଚକ ମତ ଦିଅନ୍ତି, "ନୀଳକଣ୍ଠୀୟ କାବ୍ୟ ଜଗନ୍ନାଥଙ୍କ ରଥ ଦଉଡ଼ି, ଗୋପବନ୍ଧୁଙ୍କ କୃତି ତୁଳସୀ ମାଳ ସଦୃଶ, ରାଧାନାଥଙ୍କ ରଚନା

ବିଦେଶୀ ଡେଜି ବା ଡାଲିଆ ଫୁଲର ମାଳା, ଯାହା ଏ ଦେଶର ମାଟିରେ ପ୍ରତିଭାର ସବୁଜ ସାର ପାଇ ବିକଶିତ । ସଚ୍ଚି ରାଉତରାୟଙ୍କ ଲେଖା ଲଗିଲ ଦଉଡ଼ି ବା ଫେନର ଲୁହା ଜଞ୍ଜିର ପରି ଓ ରବି ସିଂହଙ୍କର ଲେଖା ସମ୍ବାଦ ବେକରେ ଫାଶୀ ଦଉଡ଼ି । ମାତ୍ର ମାନସିଂହଙ୍କ ( କୋଣାର୍କ ) କବିତା ତାରକସି ସୁନାଚେନ ପରି ।"

ମାନସିଂହଙ୍କର ଦେହାନ୍ତ ପରେ ତାଙ୍କର ପ୍ରକାଶିତ ପ୍ରବନ୍ଧ 'ମଲ୍ଲି ଓ ମୋଜେସ ମଧୁସୂଦନ'ରେ ସେ ମଧୁସୂଦନଙ୍କ ସମ୍ପର୍କରେ ଲେଖିଥିଲେ, "ବସ୍ତୁତଃ, ମଧୁସୂଦନଙ୍କ କର୍ମ ଓ ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏ ପର୍ଯ୍ୟନ୍ତ ଉତ୍ତମ ରୂପେ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । (୪୩) ମାନସିଂହଙ୍କ ନିଜ ଉକ୍ତିକୁ ଆମେ ମଧ୍ୟ ଏହି ଭାବରେ ପ୍ରକାଶ କରି ପାରୁ ଯେ ମାନସିଂହଙ୍କ କର୍ମ, ବ୍ୟକ୍ତିତ୍ୱ ଓ ଜାତୀୟ ଚେତନାର ମୂଲ୍ୟ ଓଡ଼ିଆମାନେ ଏ ପର୍ଯ୍ୟନ୍ତ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ବୋଧହୁଏ, ଏହିପରି ଏକ ବିରାଟ ଅବଶୋଷ ମନରେ ନେଇ କବି ମାନସିଂହ ତାଙ୍କର ପ୍ରିୟ ମାଟିରୁ ବିଦାୟ ନେଇଛନ୍ତି ।

## ସହାୟକ ଗ୍ରନ୍ଥ ଓ ପତ୍ର-ପତ୍ରିକା


୧ । ଶିକ୍ଷାବିତ୍ତର ଗାଥା—ଡ଼ଃ ମାୟାଧର ମାନସିଂହ ପୃ-୧୭-୧୮
୨ । ମେହେର ସାହିତ୍ୟ—ଶ୍ରୀ କେଶବ ମେହେର ପୃ-୧୭୦
୩ । ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ, କୋଣାର୍କ ପୃ-୨୩୭
୪ । ,, ,, ଗୋପ ପ୍ରୟାଣ ପୃ-୩୩୯
୫ । ,, ,, ,, ପୃ-୩୪୩
୬ । ,, ,, ଗୁଲରେ ଗୁଲ ପୃ-୬୭୮
୭ । ମାନସିଂହଙ୍କ କାବ୍ୟ ପ୍ରତିଭା—ଅଧ୍ୟା. ଚନ୍ଦ୍ରମଣି ବେହେରା ଡଗର, ୧୯୫୭ ଅଗଷ୍ଟ
୮ । ମାନସିଂହ-ଗ୍ରନ୍ଥାବଳୀ—୨ୟ ଭାଗ ପୃ-୧୩୪
୯ । ବିରବାଟୀ (ନାଟକ)-ମାନସିଂହ-ଗ୍ରନ୍ଥାବଳୀ ୨ୟ ଭାଗ ୧ମ ଅଙ୍କ ତୃତୀୟ ଦୃଶ୍ୟ
୧୦ । ,, ,, ,, ,, ୧ମ ଅଙ୍କ ୪ର୍ଥ ଦୃଶ୍ୟ
୧୧ । ,, ,, ,, ,, ୨ୟ ଅଙ୍କ ୪ର୍ଥ ଦୃଶ୍ୟ
୧୨ । ,, ,, ,, ,, ୩ୟ ଅଙ୍କ ୮ମ ଦୃଶ୍ୟ
୧୩ । ବାରବାଟୀ (ନାଟକ)—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ୩ୟ ଅଙ୍କ ୧ମ ଦୃଶ୍ୟ
୧୪ । ,, ,, ,, ,,
୧୫ । ,, ,, ,, ୨ୟ ଅଙ୍କ ୫ମ ଦୃଶ୍ୟ
୧୬ । ,, ,, ,, ୩ୟ ଅଙ୍କ ୫ମ ଦୃଶ୍ୟ
୧୭ । ବାରବାଟୀ (ନାଟକ)—ମାନସିଂହ ଗ୍ରନ୍ଥାବଳୀ ୨ୟ ଭାଗ ୨ୟ ଅଙ୍କ ୧ମ ଦୃଶ୍ୟ
୧୮ । ,, ,, ,, ,, ,, ୨ୟ ଦୃଶ୍ୟ

୧୯ । ପଶ୍ଚିମ ପଥିକ ଡ: ମାନସିଂହ ୩ୟ ସଂ ପୃ-୮୧
୨୦ । ,, ,, ପୃ-୨୨
୨୧ । ,, ,, ପୃ-୪୦
୨୨ । ,, ,, ପୃ-୨୨
୨୩ । ଗୀତା ମାହାତ୍ମ୍ୟ ଡ: ମାନସିଂହ-୨ ଗ୍ରନ୍ଥସାଥି ପ୍ରେସ, ମୁଖବନ୍ଧ
୨୪ । ଶିକ୍ଷାବ୍ରତର ଗାଥା— ଡ: ମାନସିଂହ ପୃ-୨
୨୫ । ଜୀବନରେ ଚରମ ପ୍ରଶଂସନୀୟତା କେଉଁଠି-ମାନସିଂହ, ନବରବି-୩ୟ ବର୍ଷ ୫ମ ସଂଖ୍ୟା
୨୬ । ଇଙ୍ଗ-ଭାରତୀୟ ସାହିତ୍ୟ-ମାନସିଂହ ନବରବି-ପୂଜାସଂଖ୍ୟା ଅକ୍ଟୋବର ୧୯୭୨
୨୭ । ଭାରତରେ କର୍ତ୍ତବ୍ୟ ବୋଧ ମାନସିଂହ—,, ୨ୟ ବର୍ଷ— ଏକାଦଶ ସଂଖ୍ୟା
୨୮ । ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି—,, —ଡିସେମ୍ବର—୧୯୭୨
୨୯ । ,, ,, ,, ,, ,,
୩୦ । ଓଡ଼ିଆ ସାହିତ୍ୟର ଇତିହାସ ଡଃ: ମାନସିଂହ ପୃ-୧୧
୩୧ । ,, ,, ,, ପୃ-୭
୩୨ । ,, ,, ,, ପୃ-୧୧



# ଓଡ଼ିଆ ଗୀତିନାଟ୍ୟ ଓ
# କବି ମାନସିଂହ

ବିଜୟ କୁମାର ଚୌଧୁରୀ

ଓଡ଼ିଆ ଭାଷା ସାହିତ୍ୟରେ ଗୀତାଭିନୟର ଉନ୍ମେଷକାଳ କେବେ ଘଟିଥିଲା ତାହା ଏ ପର୍ଯ୍ୟନ୍ତ ସଠିକ୍ ଭାବରେ ସ୍ଥିରୀକୃତ ହୋଇପାରି ନାହିଁ । ତେବେ ସମ୍ଭବତଃ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀରେ ମୁସଲମାନ ଶାସନ କାଳରେ ଏହା ଜନ୍ମ ନେଇଥିବ ବୋଲି ଅନୁମାନ କରାଯାଏ । ପୂର୍ବେ ଲୀଳା, ସୁଆଙ୍ଗ, ଗୀତାଭିନୟ ଓ ଗୀତିନାଟ୍ୟ ସମୂହକୁ ଓଡ଼ିଆ 'ଯାତ୍ରା' ସାହିତ୍ୟର ଅନ୍ତର୍ଭୁକ୍ତ କରାଯାଉଥିଲା । କିନ୍ତୁ ସେଗୁଡ଼ିକ ମଧ୍ୟରେ ସ୍ଥୂଳତଃ କୌଣସି ପାର୍ଥକ୍ୟ ଥିଲା ଭଳି ବୋଧ ହେଉ ନ ଥିଲେ ହେଁ ସୂକ୍ଷ୍ମତଃ ଭିନ୍ନ ଜଣାଯାଏ । ସୁଆଙ୍ଗଗୁଡ଼ିକ ସଙ୍ଗୀତ-ସର୍ବସ୍ୱ, ଏଥିରେ ଗଦ୍ୟର ସମାବେଶ ନଥାଏ । ଲୀଳାଂଶ ଓ ବିଭିନ୍ନ ଚରିତ୍ର ମଧ୍ୟରେ କଥୋପକଥନ ମଧ୍ୟ ସଙ୍ଗୀତରେ ହୋଇଥାଏ । ରାଜା, ରାଣୀ, ଦ୍ୱାରୀ ପ୍ରଭୃତି ଯଥାସମ୍ଭବ ଅଳ୍ପ-ସଂଖ୍ୟକ ଚରିତ୍ରମାନଙ୍କୁ ନେଇ ଗୋଟିଏ ଗୋଟିଏ ସୁଆଙ୍ଗ ଅଭିନୀତ ହୋଇଥାଏ । କିନ୍ତୁ ଗୀତାଭିନୟରେ ପ୍ରତ୍ୟେକ ଭୂମିକା ଲାଗି ଭିନ୍ନ ଭିନ୍ନ ପାତ୍ର ପାତ୍ରୀ ଆବଶ୍ୟକ । ଏଥିରେ ସଙ୍ଗୀତର ପ୍ରାଧାନ୍ୟ ରହିଲେ ମଧ୍ୟ ଗଦ୍ୟ ବଚନିକାର ବ୍ୟବହାର ହୋଇଥାଏ । ଗୀତିନାଟ୍ୟ ବା 'ଅପେରା'ରେ ସଙ୍ଗୀତ ଓ ଗଦ୍ୟ କଥୋପକଥନ ପ୍ରାୟ ସମାନ ଭାବରେ ଥାଏ । ଆଧୁନିକ ନାଟକ ଦ୍ୱାରା ଗୀତିନାଟ୍ୟ ବିଶେଷଭାବେ ପ୍ରଭାବିତ । ତେଣୁ ଏଥିରେ ଅଙ୍କ ଓ ଦୃଶ୍ୟ ବିଭାଗ ଏବଂ ଅଭିନୟ କାଳରେ ସ୍ଥାନେ ସ୍ଥାନେ ଅଳ୍ପ ବହୁତେ ଦୃଶ୍ୟପଟ୍ଟ ମଧ୍ୟ ବ୍ୟବହୃତ ହୋଇଥାଏ । ଏହି ପରିପ୍ରେକ୍ଷୀରେ ସଂସ୍କୃତ ଓ ପାଶ୍ଚାତ୍ୟ ନାଟ୍ୟ ସାହିତ୍ୟର ଭିତ୍ତି ଭୂମି ପ୍ରାଥମିକ ସ୍ତରରେ କିପରି ଥିଲା ଓ ଏହାର ବିକାଶଧାରା ସମ୍ପର୍କରେ କିଞ୍ଚିତ ଆଲୋକପାତ କରାଗଲା ।

(କ) **ସଂସ୍କୃତ ନାଟକରେ** କେତେକ ଗବେଷକଙ୍କ ମତରେ ଗ୍ରୀକ୍ ଶବ୍ଦ 'Drame' (ଅନୁକରଣ କରିବା)ରୁ 'ଅବସ୍ଥାନୁକୃତି ନାଟ୍ୟମ୍' (ଅର୍ଥାତ୍-ଅବସ୍ଥାକୁ ଅନୁକରଣ କରିବା ହିଁ 'ନାଟ୍ୟ') ଉଦ୍ଭୂତ ହୋଇଅଛି । କିନ୍ତୁ ଗମ୍ଭୀରଭାବେ

ଅନୁଧ୍ୟାନ କଲେ ଦେଖାଯାଏ ଯେ ସଂସ୍କୃତ ନାଟକର ଉତ୍ପତ୍ତି ଗ୍ରୀକ୍ ନାଟକର ଉତ୍ପତ୍ତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଗ୍ରୀକ୍ ନାଟକ ପ୍ରଧାନତଃ 'ଦୁଃଖାନ୍ତ' କିନ୍ତୁ ସଂସ୍କୃତ ନାଟକ ମୁଖ୍ୟତଃ 'ସୁଖାନ୍ତ' । ୧ । 'ଅନୁକରଣମ୍' ପ୍ରସଙ୍ଗରେ 'ଧର୍ମୀ' ଶବ୍ଦର ବ୍ୟବହାର କରାଯାଇ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ଅଛି—'ଲୋକଧର୍ମୀ' ଓ 'ନାଟ୍ୟଧର୍ମୀ' । "ଲୋକଧର୍ମୀ ନାଟ୍ୟଧର୍ମୀ ଧର୍ମେତି ଦ୍ୱିବିଧଃସ୍ମୃତଃ ।" ୨ । ଏଇଭଳି ଭାବରେ ଆମେ ସଂସ୍କୃତ ନାଟ୍ୟସାହିତ୍ୟର ଇତିହାସକୁ ଅନୁଧ୍ୟାନ କଲେ ଜାଣିପାରିବା ଯେ, ଏହା ମଧ୍ୟ ଲୋକନାଟ୍ୟରୁ ସୃଷ୍ଟ ହୋଇ ଜନସାଧାରଣଙ୍କ ରସତୃଷ୍ଣା ମେଣ୍ଟେଇବାରେ ସାହାଯ୍ୟ କରି ଆସିଅଛି ଓ ପରବର୍ତ୍ତୀ କାଳରେ ଏହାର ସଂସ୍କାର ହୋଇ ନାଟ୍ୟରୂପ ଗ୍ରହଣ କରିଛି । ସୁତରାଂ 'ଅନୁକରଣମ୍'କୁ ପ୍ରଚ୍ଛଦ ପଟରେ ରଖି 'ନୃତ୍ୟ' ଓ 'ନାଟ୍ୟ' ଏହି ତିନଗୋଟି ଶବ୍ଦର ସଂଜ୍ଞା ବିଭିନ୍ନ ନାଟ୍ୟଶାସ୍ତ୍ରମାନଙ୍କରେ ରହିଅଛି । କିନ୍ତୁ ଅଧ୍ୟାପକ D. R. Mankadଙ୍କ ନିରୂପଣ ଅନୁସାରେ 'ନୃତ୍ତ', 'ନୃତ୍ୟ' ଓ 'ନାଟ୍ୟ' ଉପରୋକ୍ତ ତିନଗୋଟି ଶବ୍ଦକୁ ଆଶ୍ରୟ କରି ଭାରତରେ ତିନପ୍ରକାର କଳାର ସୃଷ୍ଟି ହୋଇଥିଲା । ଯଥା :—'ନୃତ୍ତାଶ୍ରିତ କଳା—କେବେ-ହେଲେ 'ନାଟକ'ର ସମ୍ମାନ ପାଇପାରି ନଥିଲା, କାରଣ ଏହା କେବଳ ତାଳ ଲୟକୁ ଆଶ୍ରୟ କରି 'ଗାତ୍ର ବିକ୍ଷେପ'ରେ ପର୍ଯ୍ୟବସିତ ଥିଲା । 'ନୃତ୍ତ' କେବଳ ରାଜ ଦରବାର ଓ ଦେବମନ୍ଦିରମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । କ୍ରମେ ସମାଜ ଯେତେବେଳେ ଶିକ୍ଷା ସଂସ୍କୃତି ଦ୍ୱାରା ଆକର୍ଷିତ ଓ ମାର୍ଜିତ ହୋଇ ନୂତନ ରୂପରେଖ ନେଲା, ସେତେବେଳେ ଜନସାଧାରଣ କେବଳ ତାଳ ଲୟକୁ ଆଶ୍ରୟ କରି ଗାତ୍ର ବିକ୍ଷେପରେ ସନ୍ତୁଷ୍ଟ ରହିପାରି ନଥିଲେ । ସୁତରାଂ ଭାବ, ରସ ଓ ଅଭିନୟକୁ ଆଶ୍ରୟ କରି କ୍ରମଶଃ 'ନୃତ୍ୟ' ଓ 'ନାଟ୍ୟ'ର ପ୍ରବର୍ତ୍ତନ ହେଲା ଏବଂ 'ନାଟ୍ୟ'ରୁ ହେଲା 'ନାଟକ'ର ସୃଷ୍ଟି ।" ୩ । ସଂସ୍କୃତ ସାହିତ୍ୟରେ ଏହି 'ନାଟକ'ର ଉତ୍ପତ୍ତିକୁ ଅଶ୍ୱଘୋଷଙ୍କଠାରୁ ଗଣିତ କରାଯାଉଅଛି ଏବଂ ଅଶ୍ୱଘୋଷଙ୍କ ରଚିତ 'ଶାରିପୁତ୍ର ପ୍ରକରଣ'କୁ ପ୍ରଥମ ନାଟ୍ୟକୃତି ହିସାବରେ ସଂସ୍କୃତ ସାହିତ୍ୟରେ ଗ୍ରହଣ କରାଯାଉଅଛି । ଏହାଙ୍କ ପରବର୍ତ୍ତୀ କାଳରେ ଭାସ, କାଳିଦାସ, ଭବଭୂତି, ଶୂଦ୍ରକ, ବିଶାଖାଦତ୍ତ, ଭଟ୍ଟନାରାୟଣ, ମୁରାରି, ରାଜଶେଖର, ଶ୍ରୀହର୍ଷ, କ୍ଷେମୀଶ୍ୱର, ଦାମୋଦର ମିଶ୍ର, ପରମାନନ୍ଦ ସେନ୍ ଏବଂ କବି କର୍ଣ୍ଣପୁର ପ୍ରମୁଖ ନାଟ୍ୟକାରମାନେ ସଂସ୍କୃତ ନାଟ୍ୟ ସାହିତ୍ୟକୁ ବିଭିନ୍ନ ଦିଗରୁ ପରୀକ୍ଷା ନିରୀକ୍ଷା କରି ସମୃଦ୍ଧିଶାଳୀ କରାଇ ପାରିଛନ୍ତି ।

---

୧ । The Indian Theatre—Chandrabhan Gupta—Page-9.

୨ । 'ନାଟ୍ୟଶାସ୍ତ୍ରମ୍' ପ୍ରଥମଖଣ୍ଡ ୪ର୍ଥ ଅଧ୍ୟାୟ ଚବିଶତିକାରିକା ପୃ: ୨୭୧ ।

୩ । ସଂସ୍କୃତ ସାହିତ୍ୟର ଇତିହାସ—ଡକ୍ଟର ସାବିତ୍ରୀ ରାଉତ ପୃ: ୨୦୬-୨୦୭ ।

**(ଖ) ପାଶ୍ଚାତ୍ୟ ନାଟକରେ**—ପାଶ୍ଚାତ୍ୟ ନାଟ୍ୟ ସାହିତ୍ୟର ଆଦିକାଳକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସେକ୍ସପିଅରଙ୍କ ବହୁ ପୂର୍ବରୁ ୟୁରୋପୀୟ ଦେଶମାନଙ୍କରେ 'ବାଇବେଲ' ଓ ସାଧୁ ସନ୍ଥଙ୍କର ଅଲୌକିକ ପ୍ରତିଭାକୁ ନେଇ ନାଟକ ରଚନା କରାଯାଉଥିଲା । କାଳକ୍ରମେ ସେଥିରେ ହାସ୍ୟରସର ଅବତାରଣା କରାଯାଇ ତାହାକୁ ରମଣୀୟ କରାଗଲା । ଫଳରେ ଏହି ପ୍ରକାର ନାଟକକୁ 'ରହସ୍ୟ' ବା 'ଚମତ୍କାର' ନାଟକ (Mistry and Miracle Plays) ନାମରେ ଅଭିହିତ କରାଯାଉଥିଲା । ଏହି ଶ୍ରେଣୀର ନାଟକରୁ ଆଜିର ଆଧୁନିକ ନାଟକର ସୃଷ୍ଟି ସମ୍ଭବ ହୋଇପାରିଅଛି । 'Black Friars Theatre' ସ୍ଥାପନ କରାଯିବାର ପରବର୍ତ୍ତୀ କାଳରେ ବହୁ ଇଂରେଜୀ ନାଟକ ଲିଖିତ ହୋଇ ପରିବେଷଣ ହୋଇଥିଲା । ସେକ୍ସପିଅରଙ୍କ ଯୁଗରେ ବାସ୍ତବାନୁଭୂତିମୂଳକ ନାଟକମାନ ସୃଷ୍ଟି ହୋଇ ଇଂରାଜୀ ନାଟ୍ୟ ସାହିତ୍ୟକୁ ସଫଳତାର କୋଠୀରେ ପହଞ୍ଚାଇ ପାରିବାକୁ ସକ୍ଷମ ହୋଇ ପାରିଥିଲା । ଏହାର ପରବର୍ତ୍ତୀ ସମୟରେ ବହୁ ପ୍ରତିଭା ସମ୍ପନ୍ନ ଇଂରେଜୀ ନାଟ୍ୟକାର ସେମାନଙ୍କ ଶିଳ୍ପାନ୍ୱିତ ଦୃଷ୍ଟିକୋଣ ନେଇ ଇଂରେଜୀ ନାଟ୍ୟ ସାହିତ୍ୟକୁ ସମୃଦ୍ଧିଶାଳୀ କରିପାରିଛନ୍ତି ।

ଏହିପରି ଭାବରେ ଯଦି ଆମେ ପ୍ରତ୍ୟେକ ଦେଶର ସାହିତ୍ୟର ଉନ୍ମେଷ କାଳକୁ ଲକ୍ଷ୍ୟ କରିବା ତେବେ ଏହା ସ୍ୱୀକାର କରିବାକୁ ହେବ ଯେ ସବୁ ସାହିତ୍ୟ ପ୍ରାରମ୍ଭିକ ଅବସ୍ଥାରେ ଲୋକଧର୍ମୀ ହୋଇ ରହିଥିଲା । କିନ୍ତୁ ପରେ ଜନମାନସର ବୌଦ୍ଧିକ ଚିନ୍ତାର ଅଭ୍ୟୁଦୟ ଫଳରେ ଏହା ମାର୍ଜିତ ଓ ନୂତନ ରୂପ ଗ୍ରହଣ କରିଅଛି ।

**(ଗ) ଓଡ଼ିଆ ନାଟକରେ**—

ପ୍ରାୟ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀରେ ମୁସଲମାନ ଶାସନକାଳରେ ଓଡ଼ିଆ ତଥା ବଙ୍ଗଳା ସାହିତ୍ୟରେ ଲୀଳା, ସୁଆଙ୍ଗ ଓ ଗୀତାଭିନୟ ପ୍ରଭୃତିର ସୃଷ୍ଟି ହୋଇଥିବା ଅନୁମାନ କରାଯାଇପାରେ । କାରଣ ସେ ସମୟରେ ଶାସକମାନଙ୍କର ମନୋରଞ୍ଜନ ପାଇଁ ସୁରା, ସାକୀ ଓ 'ବାନ୍ଦୀ'ମାନଙ୍କର ପ୍ରୟୋଜନ ଅତ୍ୟନ୍ତ ଆବଶ୍ୟକ ହୋଇ ଉଠିଥିଲା । ଫଳରେ ବାନ୍ଦୀମାନେ ସେମାନଙ୍କର ଅନିଚ୍ଛାସତ୍ତ୍ୱେ ଶାସନର ନିର୍ମମ ଯନ୍ତ୍ରଣା ଓ ଜୀବନ ଉପରେ ନଗ୍ନ ଶରୀରରେ ନାଚ ଗୀତ ପରିବେଷଣ କରି ସେମାନଙ୍କର ମନକୁ ଆମୋଦିତ କରୁଥିଲେ । କିନ୍ତୁ ଏହାର ବହୁ ପୂର୍ବରୁ ଓଡ଼ିଶାର ଦେବ ମନ୍ଦିରମାନଙ୍କରେ 'ଦେବଦାସୀ' ପ୍ରଥା ପ୍ରଚଳିତ ଥିବାର ବହୁ ପ୍ରମାଣ ମିଳେ । ଏପରିକି ବିଭିନ୍ନ ଶିଳାଲେଖ ଓ ପ୍ରାଚୀନ ଦେବ ଦେବୀମନ୍ଦିରମାନଙ୍କ ଗାତ୍ରରେ ଏହାର ଜ୍ୱଳନ୍ତ ପ୍ରମାଣ ଅଦ୍ୟାପି ଜାଜ୍ୱଲ୍ୟମାନ । ସେ ଯାହା ହେଉନା କାହିଁକି କାଳକ୍ରମେ ଏହା ବିଭିନ୍ନ ପର୍ଯ୍ୟାୟ ମଧ୍ୟ ଦେଇ ଶେଷରେ 'ଗୀତିନାଟ୍ୟ' ରୂପ ଗ୍ରହଣ କଲା ଏବଂ

ଏହାର ପ୍ରଥମ ସ୍ରଷ୍ଟା ଭାବରେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭଦ୍ରକ ନିକଟସ୍ଥ ନଳାଙ୍ଗ ଗ୍ରାମର କବି ଜଗନ୍ନାଥ ପାଣିଙ୍କୁ (୧୮୩୨-୯୨) ଗ୍ରହଣ କରାଯାଇପାରେ । ପରବର୍ତ୍ତୀ କାଳରେ ଗୀତିନାଟ୍ୟ କବି ଭାବରେ କେନ୍ଦ୍ରାପଡ଼ାର ଗୋପାଳ ଦାସ (୧୨୨୩-୧୩୪୫ ସାଲ), ଭିକାରି ଚରଣ ନାୟକ ଓ ମାଗୁଣୀ ଦାସ ପ୍ରଭୃତିଙ୍କୁ ଗ୍ରହଣ କରାଯାଇଥାଏ । କିନ୍ତୁ ଚଳିତ ଶତାବ୍ଦୀର ଚତୁର୍ଥ ଦଶକରେ ସୁଆଙ୍ଗ ଓ ଗୀତିନାଟ୍ୟାଦି ରଚନାରେ ପୂର୍ବସୂରୀମାନଙ୍କୁ ଅତିକ୍ରମ କରି 'ଗୀତିନାଟ୍ୟ'କୁ ଆଧୁନିକ ନାଟକାଭିମୁଖୀ କରାଇ ପାରିଥିବା ଗଣକବି ବୈଷ୍ଣବପାଣି (୧୮୮୨-୧୯୫୨) ନାମ ଉଲ୍ଲେଖଯୋଗ୍ୟ । ଏହାଙ୍କ ସମସାମୟିକ କବି ବାଳକୃଷ୍ଣ ମହାନ୍ତି (୧୯୦୦-୫୮) ମଧ୍ୟ ଚିର ସ୍ମରଣୀୟ ।

## ଗୀତିନାଟ୍ୟ ଓ କାବ୍ୟ ନାଟିକା :
## ଓଡ଼ିଆ ସାହିତ୍ୟରେ ଏହାର ବିକାଶଧାରା :

ଗୀତିନାଟ୍ୟ ବା ଅପେରାରେ ସଙ୍ଗୀତ ଓ ଗଦ୍ୟ-କଥୋପକଥନ ପ୍ରାୟ ସମାନ ଭାବରେ ଥାଏ । ଆଧୁନିକ ନାଟକ ଦ୍ୱାରା ଗୀତିନାଟ୍ୟ ବିଶେଷଭାବେ ପ୍ରଭାବିତ । ତେଣୁ ଏଥିରେ ଅଙ୍କ ଓ ଦୃଶ୍ୟ ବିଭାଗ ଏବଂ ଅଭିନୟ କାଳରେ ସ୍ଥାନେ ସ୍ଥାନେ ଅଳ୍ପ ବହୁତେ ଦୃଶ୍ୟପଟ୍ଟ ମଧ୍ୟ ବ୍ୟବହୃତ ହୋଇଥାଏ । ପ୍ରହସନ (Farce)ଗୁଡ଼ିକୁ ଗୀତିନାଟ୍ୟ ମଧ୍ୟରେ ସଂଯୋଜନା କରାଯାଇଥାଏ । ଗୀତିନାଟ୍ୟ ଏକ ମିଶ୍ର କାବ୍ୟ । ଅର୍ଥାତ୍ ଶ୍ରାବ୍ୟ ଏବଂ ଦୃଶ୍ୟ ।

'କାବ୍ୟ ନାଟିକା' ବା 'କାବ୍ୟ ନାଟକ' ଏକାର୍ଥବୋଧକ । ଏହା କେବଳ ପଦ୍ୟରେ ରଚିତ । ଏହାର ସାହିତ୍ୟିକ ମୂଲ୍ୟ ଗୀତିନାଟ୍ୟଠାରୁ ଯଥେଷ୍ଟ ଶୀର୍ଷରେ । ଏଥିରେ ଗୀତିନାଟ୍ୟ ଭଳି ବହୁ ଚରିତ୍ରର ଆବଶ୍ୟକତା ନ ଥାଏ । ଗୀତିନାଟ୍ୟରେ ବିଭିନ୍ନ ଅଙ୍କ ଓ ଦୃଶ୍ୟ ରହିଥିବା ସ୍ଥଳେ ଏଥିରେ ସେ ସବୁର ଆବଶ୍ୟକତା ମଧ୍ୟ ଉପଲବ୍ଧ ହୁଏ ନାହିଁ । କାବ୍ୟନାଟିକା ବୌଦ୍ଧିକ ପାଠକ ପ୍ରାଣକୁ ଅଧିକ ସ୍ପର୍ଶ କରିଥାଏ । ଏଥିରେ ଗୀତିନାଟ୍ୟ ଭଳି ହାସ୍ୟରସର ଅବତାରଣା ବା ପ୍ରହସନ ଇତ୍ୟାଦିର ସଂଯୋଜନା ହୋଇ ନଥାଏ । କାବ୍ୟ ନାଟକ କେବଳ ଶ୍ରାବ୍ୟ କାବ୍ୟ । ଗୀତିନାଟ୍ୟକୁ ମଞ୍ଚସ୍ଥ କରି ସାଧାରଣ ଦର୍ଶକଠାରୁ ଆରମ୍ଭକରି ବିଜ୍ଞ ସୁଧୀମଣ୍ଡଳୀକୁ ସନ୍ତୁଷ୍ଟ କରାଯାଇ ପାରୁଥିଲାବେଳେ 'କାବ୍ୟନାଟିକା' କେବଳ ବୁଦ୍ଧିଦୀପ୍ତ ସମାଜପାଇଁ ଅପେକ୍ଷା ରଖେ । ଗୀତିନାଟ୍ୟ ବହୁ ଘଟଣା ଓ ନାନା ଦ୍ୱନ୍ଦ୍ୱର ଆବର୍ତ୍ତଭୂମି । ଗୀତିନାଟ୍ୟରେ ମୂଳଘଟଣାର କ୍ରମଶଃ ବିସ୍ତାରିତ ରୂପ ନେଇ ନାନା ଚରିତ୍ର ଓ ଘଟନା ମଧ୍ୟରେ ସାର୍ଥକ ଏକ ଅଖଣ୍ଡ ରସରୂପ ଗ୍ରହଣ କରେ । ନାଟ୍ୟକାର ରହିଯାନ୍ତି ନେପଥ୍ୟରେ । ବହୁ ରସ ବିଳାସର ସଂଯୋଜିତ ରୂପନ୍ୟାସ, ବହୁ ଖଣ୍ଡିତାଂଶର ସମବାୟରେ

ଗୀତିନାଟ୍ୟର ଅଖଣ୍ଡିତ ସଷ୍ଟି ବିନ୍ୟାସ । କିନ୍ତୁ କାବ୍ୟନାଟିକାରେ ବର୍ଣ୍ଣିତ ବସ୍ତୁ ବିଚିତ୍ର ବେଦନା, ବିସ୍ମୟ, ଅନୁଭୂତି ଓ ଆବେଗର କେନ୍ଦ୍ରସ୍ଥଳରେ କବି ହୃଦୟର ସ୍ରୋତସ୍ୱିନୀ ଧାରା ପ୍ରବାହିତ । ଗୀତିନାଟ୍ୟ ଘଟଣା ଆଶ୍ରିତ । କିନ୍ତୁ କାବ୍ୟନାଟକ ଘଟଣାର ପରିଣତି ଓ ପ୍ରତିକ୍ରିୟାରୁ ଉଦ୍‌ଭୂତ ।

ଓଡ଼ିଆ ସାହିତ୍ୟରେ ୧୭୮୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା କବିସୂର୍ଯ୍ୟ ବଳଦେବ ରଥଙ୍କୁ କେତେକ ଆଲୋଚକ ଗୀତିନାଟ୍ୟ କବି ଭାବରେ ଗ୍ରହଣ କରି ତାଙ୍କ ରଚିତ 'କିଶୋର ଚନ୍ଦ୍ରାନନ୍ଦ ଚଂପୂ'କୁ ହିଁ ଆଧୁନିକ ଗୀତିନାଟ୍ୟର ମୂଳଉତ୍ସ ବୋଲି ମତବ୍ୟକ୍ତ କରିଥାନ୍ତି । ଏହାର ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ ଲୀଳା ଓ ସୁଆଙ୍ଗକୁ ଭିତ୍ତିକରି ଗୀତିନାଟ୍ୟଧର୍ମୀ ନାଟକମାନ ରଚନା କରିବାରେ ନାଟ୍ୟକାର ରଘୁନାଥ ପରିଚ୍ଛା (୧୭୯୫), ରାମଶଙ୍କର ରାୟ (୧୮୫୭), ରାଧାମୋହନ ରାଜେନ୍ଦ୍ର ଦେବ, ରାଜା ଶ୍ରୀ କିଶୋରଚନ୍ଦ୍ର ଜଗଦେବ, ହରିହର ନାଥ, କାମପାଲ ମିଶ୍ର (୧୮୭୫)ଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । କିନ୍ତୁ ଏ ସମୟର ସୁଆଙ୍ଗ ଓ ଗୀତିନାଟ୍ୟ ଲେଖକମାନଙ୍କ ମଧ୍ୟରେ ସବୁଠାରୁ ପ୍ରତିଭାସମ୍ପନ୍ନ ଓ ବଳିଷ୍ଠତମ କବି ଭାବରେ ଜଗନ୍ନାଥ ପାଣି (୧୮୩୭-୧୯୧୭)ଙ୍କୁ ଗ୍ରହଣ କରାଯାଇଥାଏ । ୧୮୭୭ ରୁ ୧୯୦୦ ମସିହା ମଧ୍ୟରେ ଆମେ ରାମଶଙ୍କର ରାୟଙ୍କୁ ବିଦଗ୍ଧ ନାଟ୍ୟକଳାର ଶ୍ରେଷ୍ଠ ସ୍ରଷ୍ଟା ହିସାବରେ ଗଣନା କରୁଥିଲାବେଳେ ଠିକ୍ ସେଇ ସମୟରେ ଯାତ୍ରା ଓ ଗୀତିନାଟ୍ୟର ବଳିଷ୍ଠ ଦିଗଦ୍ରଷ୍ଟା ଭାବରେ ଜଗନ୍ନାଥ ପାଣିଙ୍କୁ ବିବେଚନା କରୁ । ଊନବିଂଶ ଶତାବ୍ଦୀର ସମାଜ ପୃଷ୍ଠଭୂମିକୁ ଭିତ୍ତି କରି ଗୀତିନାଟ୍ୟକାର ଗୋପାଳ ଦାସ (୧୨୭୩-୧୩୪୫ ସାଲ) ଅନେକ ଗୀତିନାଟ୍ୟ ରଚନା କରିଥିଲେ । ଏହାଙ୍କ ପରବର୍ତ୍ତୀ ଗୀତିନାଟ୍ୟକାର ହିସାବରେ ଗୋବିନ୍ଦ ସୁରଦେଓ (୧୮୮୪), ମୋହନ ସୁନ୍ଦର ଗୋସ୍ୱାମୀ, ଭିକାରୀ ଚରଣ ଦାସ ଓ ମାଗୁଣି ଦାଶଙ୍କ ନାମ ଭୁଲିବାର ନୁହେଁ । କିନ୍ତୁ ଚଳିତ ଶତାବ୍ଦୀର ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଦଶକରେ ସୁଆଙ୍ଗ ଓ ଗୀତିନାଟ୍ୟାଦି ରଚନାରେ କୁଶଳୀ ଶିଳ୍ପୀଭାବେ ପରିଚୟ ଦେଇଥିବା ଗଣକବି ବୈଷ୍ଣବ ପାଣି (୧୮୮୨-୧୯୫୬) ଓ ବାଳକୃଷ୍ଣ ମହାନ୍ତିଙ୍କ ସୃଷ୍ଟି-ସ୍ୱାକ୍ଷରର ଦୀପ୍ତି ଭାସ୍ୱର ହୋଇ ଉଠିଛି । ଆଲୋଚ୍ୟ ସମସ୍ତ ପରିସର ମଧ୍ୟରେ ବାଙ୍କା ବୈଷ୍ଣବ ଚରଣ ଦାସ (୧୮୫୭), କୃଷ୍ଣପ୍ରସାଦ ବସୁ (୧୮୯୮), ରାମଚନ୍ଦ୍ର ସ୍ୱାଇଁ (୧୯୦୫), କାଳିଚରଣ ପଟ୍ଟନାୟକ (୧୯୦୦), ନିଧିରାମ ମହାରଣା (୧୩୨୦ ସାଲ) ପ୍ରମୁଖ ଗୀତିନାଟ୍ୟକାର-ମାନେ ଓଡ଼ିଆ ସାହିତ୍ୟର ଏହି ବିଭାଗକୁ ସେମାନଙ୍କର ଅମୂଲ୍ୟ ସମ୍ପଦମାନ ପ୍ରଦାନ କରି ସମୃଦ୍ଧିଶାଳୀ କରିଅଛନ୍ତି । ସାଂପ୍ରତିକ ଯୁଗରେ ଯେଉଁଠି ନାଟକ ବହୁ ପରୀକ୍ଷା ନିରୀକ୍ଷା ମଧ୍ୟଦେଇ ଏକ ଉନ୍ନତ ଶିଳ୍ପକଳାରେ ପରିଣତ ହେଲାଣି ସେତେବେଳେ ମଧ୍ୟ ଗୀତିନାଟ୍ୟ ରଚନାର ଧାରା ଅବ୍ୟାହତ ରହିଅଛି । ବର୍ତ୍ତମାନ ଜନମାନସରେ

ଏହା ଶୃଙ୍ଖଳା ସୃଷ୍ଟି ନ କରୁଥାଇପାରେ ତଥାପି ଏହାର ଯେ ଏକ ମୌଳିକ ସ୍ୱାଦ ରହିଛି ଏହାକୁ କେହି ଅସ୍ୱୀକାର କରି ପାରିବେନି ।

ଓଡ଼ିଆ ଭାଷା ସାହିତ୍ୟ କ୍ଷେତ୍ରରେ କାବ୍ୟନାଟିକା ଏକ ଅର୍ବାଚୀନ ସୃଷ୍ଟି । ଏହାର ଜନ୍ମ ଜାତକ ପ୍ରାକ୍ ସ୍ୱାଧୀନତା କାଳରୁ ଆରମ୍ଭ ହୋଇଥିବାର ଲକ୍ଷ୍ୟ କରାଯାଇପାରେ । ସାଧାରଣତଃ ଗାନ୍ଧିବାଦୀ ଚନ୍ତାଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇଛି ଓ ଏହାର ସୃଷ୍ଟି ହିଁ ଏଇ ସମୟରୁ ଆରମ୍ଭ ହୋଇଛି । ପ୍ରଥମ କାବ୍ୟ-ନାଟିକା ସ୍ରଷ୍ଟା ଭାବରେ ଓଡ଼ିଆ ସାହିତ୍ୟରେ ଆମେ ଡକ୍ଟର ମାୟାଧର ମାନସିଂହଙ୍କୁ ଗ୍ରହଣ କରିପାରୁ । ଓଡ଼ିଆ ସାହିତ୍ୟ ରାଜ୍ୟରେ ପ୍ରଥମ କାବ୍ୟନାଟିକାର ଗୌରବ ବହନ କରିବାରେ ମାନସିଂହଙ୍କ 'ରାଜ କବି' (୧୯୨୫ ରେ ରଚିତ ୧୯୨୮ ରେ ପ୍ରକାଶିତ) ସମର୍ଥ ହୋଇଥାଏ । ଏଇ ସମୟରୁ ହିଁ ଓଡ଼ିଆ ସାହିତ୍ୟରେ 'କାବ୍ୟ ନାଟିକା' ରଚନାର ଧାରା, ଆରମ୍ଭ ହେବାକୁ ଲାଗିଲା । ଫଳରେ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ 'ସୌମ୍ୟା' (୧୯୩୨), 'ପ୍ରିୟଦର୍ଶୀ' (୧୯୩୩), 'ପଦ୍ମିନୀ' (୧୯୩୩), ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଉପେକ୍ଷିତା', ହରିଶ୍ଚନ୍ଦ୍ର ବଡ଼ାଲଙ୍କ 'ଦେଶର ଡାକ' (୧୯୩୨), ରାଧାମୋହନ ଗଡ଼ନାୟକଙ୍କ 'କାଳିଦାସ' (୧୯୩୩ରେ ରଚିତ ଓ ୧୯୪୦ ରେ ପ୍ରକାଶିତ କିନ୍ତୁ 'ପାଣ୍ଡୁ' କାବ୍ୟ ନାଟିକାଟି ଏ ଅବଧି ମଧ୍ୟ ଅପ୍ରକାଶିତ), ପ୍ରାଣକୃଷ୍ଣ ସାମଲଙ୍କ 'କସ୍ତୁରିକା' (୧୯୪୬) [କିନ୍ତୁ 'ବେଯୋଡ଼', ଜୟଯାତ୍ରା' ପ୍ରଭୃତି ବହୁ କାବ୍ୟ ନାଟିକା ଅପ୍ରକାଶିତ], ସଚ୍ଚିଦାନନ୍ଦ ରାଉତରାୟଙ୍କ 'ପୂର୍ଣ୍ଣିମା' (୧୯୩୨), 'ପୂର୍ବାପର' (୧୯୭୪), କୃଷ୍ଣବିହାରୀ ଦାସଙ୍କ 'ସ୍ମରଣିକା' (୧୯୫୬), 'ପାଷାଣ ଚରଣେ ରକ୍ତ' (୧୯୪୫), ଜ୍ଞାନୀନ୍ଦ୍ର ବର୍ମାଙ୍କ 'ସ୍ୱର୍ଣ୍ଣଯୁଗର ସନ୍ଧ୍ୟା' (୧୯୫୬), 'କଳରେଇ ଫୁଲ' (୧୯୬୦), 'ବୋଲେ ହୁଁ ଟି' (୧୯୪୦) ବିନୋଦଚନ୍ଦ୍ର ନାୟକଙ୍କ 'ଚନ୍ଦ୍ର ଓ ତାରା' (୧୯୫୧), ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ମଧୁଚକ୍ର' (୧୯୭୫) ଶ୍ରୀମତୀ ବୀଣାଦେବୀଙ୍କ 'ଜନକ ନନ୍ଦିନୀ' (୧୯୬୭) ଏବଂ ଅଧ୍ୟାପକ ପୀତାମ୍ବର ପ୍ରଧାନଙ୍କ 'କଳିଙ୍ଗ କବି' (୧୯୭୭ ରେ ପ୍ରକାଶିତ କିନ୍ତୁ ୧୯୫୬ ରେ ରଚିତ) ପ୍ରଭୃତି କାବ୍ୟ-ନାଟିକାଗୁଡ଼ିକର ନାମ ଏ କ୍ଷେତ୍ରରେ ସ୍ମରଣୀୟ ।

## ମାନସିଂହ ସାହିତ୍ୟରେ ଗୀତିନାଟ୍ୟର ବିକାଶପର୍ବ :

ମାନସିଂହଙ୍କ ଗୀତିନାଟ୍ୟ ସମ୍ପର୍କରେ ଆଲୋଚନା କରିବାକୁ ଯିବାପୂର୍ବରୁ ଆମକୁ ସେ ସବୁ ରଚନାକୁ କାଳକ୍ରମ ଅନୁଯାୟୀ ଆଲୋଚନା କରିବାକୁ ପଡ଼ିବ । କାରଣ କୌଣସି ସୃଷ୍ଟିପାଇଁ ଏହାର ପୃଷ୍ଠଭୂମି ଭାବେ ସମୟର ଅଖଣ୍ଡ ପ୍ରଭାବକୁ ଉପେକ୍ଷା କରାଯାଇ ପାରିବନାହିଁ । ୪ । ସେଥିପାଇଁ ମାନସିଂହଙ୍କ ଗୀତିନାଟ୍ୟର କାଳ

୪ । "ସମୟଜ୍ଞାନ ବିରହିତ ହୋଇ ତାର୍କିକ ବିଶ୍ଳେଷଣ କଲେ ସାହିତ୍ୟ ସୌନ୍ଦର୍ଯ୍ୟ ପ୍ରତିଷ୍ଠା କଭୁ ଲଭିବେ ହୋଇ ନ ପାରେ ।" ମାନସିଂହ ସ୍ମରଣିକା —ଡକ୍ଟର ନଟବର ସାମନ୍ତରାୟ ପୃ ୪୮-୪୩ ।

ଜଣ୍ଡିସ୍ତ ଏକାନ୍ତ ଅପରିହାର୍ଯ୍ୟ । 'ଗୁଜକବି' ପୁସ୍ତକର ପ୍ରଥମ ସଂସ୍କରଣର ଭୂମିକାରେ ମାନସିଂହ ଲେଖିଛନ୍ତି "ଏ ଲେଖା ପ୍ରାୟ ତିନିବର୍ଷ ତଳର" । 'ଗୁଜକବି' ୧୯୨୮ ମସିହାରେ ପ୍ରକାଶ ପାଇଲା । ଫଳରେ ଏହା ୧୯୨୫ ମସିହାରେ ନିଶ୍ଚିତ ଲିଖିତ, ହୋଇଥିବ କିନ୍ତୁ ମାନସିଂହଙ୍କ ସାହିତ୍ୟରେ ପ୍ରଥମ ପ୍ରକାଶିତ କବିତା ଭାବରେ 'କୋଣାର୍କ' କବିତାଟି ୧୯୨୨ରେ ପ୍ରକାଶିତ । ଏଣୁ ମାନସିଂହ ପ୍ରଥମରୁ ହିଁ କବି ଭାବରେ ପରିଚିତ ଓ ସୁପ୍ରତିଷ୍ଠିତ । ଧାରାବାହିକ ଭାବରେ ମାନସିଂହ କାବ୍ୟ କବିତାମାନ ରଚନା କରୁଥିଲେ ହେଁ ୧୯୩୦ ମସିହାରେ 'ପୁଷ୍ପିତା' ୧୯୩୨ରେ 'ପୂଜାରିଣୀ, ୧୯୫୫ରେ 'ଦୁର୍ଭିକ୍ଷ', 'ବୃକ୍ଷଦୂତ' ଓ 'ପୁଷ୍ପାଭିନୟ'ଭଳି ଗୀତିନାଟ୍ୟ ଏବଂ କାବ୍ୟନାଟିକାମାନ ରଚନା କରିଯାଇଛନ୍ତି । "ଓଡ଼ିଆ ସାହିତ୍ୟରେ ନାଟକୀୟ ଦ୍ୱନ୍ଦ୍ୱ, ସଂଘାତ ଓ ନାଟକୀୟ ଗତିଶୀଳତାକୁ ରକ୍ଷାକରି ପୂର୍ବରୁ କାବ୍ୟନାଟିକା ରଚିତ ନ ହୋଇଥିଲେ ମଧ୍ୟ କଥୋପକଥନ ଛଳରେ ନାଟକୀୟ କାବ୍ୟ-'ନାବକେଳୀ', 'ନନ୍ଦୁଲେଖା', 'ଭୂତକେଳୀ, 'ଚମ୍ପୂ' ଆଦି ରଚିତ ହୋଇଥିଲା । କିନ୍ତୁ ତାହା ରାଧାକୃଷ୍ଣ ପ୍ରେମୋ-ଖ୍ୟାନକୁ ଅବଲମ୍ବନ କରି ଲେଖା ହୋଇଥିଲା ଏବଂ ଆଧୁନିକ କାବ୍ୟନାଟିକାର ମୌଳିକ ପ୍ରେରଣା ସେ ସବୁରେ ଅନୁଭୂତ ହେଉ ନଥିଲା; କିନ୍ତୁ ରବୀନ୍ଦ୍ରନାଥଙ୍କ କାବ୍ୟନାଟିକା ସମୂହ ପ୍ରକାଶିତ ହେବାପରେ ସାହିତ୍ୟର ଏହି ବିଭାଗପ୍ରତି ବହୁ ଓଡ଼ିଆ କବି ଧ୍ୟାନଶୀଳ ହୋଇଥିଲେ" । * । ଫଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମାନସିଂହ ପ୍ରଥମେ ହିଁ ରବୀନ୍ଦ୍ରନାଥଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଏହିଧାରାର ପ୍ରବର୍ତ୍ତନ କରାଇ-ବାରେ ସଫଳ ହୋଇଥିଲେ । ୧୯୨୫ ମସିହାଠାରୁ ଏହି ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ମାନସିଂହ ସ୍ୱାଧୀନତା ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ ଏହାକୁ ଅବ୍ୟାହତ ରଖି ପାରିଥିଲେ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏଭଳି ରଚନା ଅଙ୍ଗୁଳିମେୟ ହୋଇଥିଲେ ସୁଦ୍ଧା ଆଜି ଅବଧି ଯେ ଏହିଧାରା ପ୍ରଚଳିତ ଅଛି ତାହା ବିସ୍ମୟ ସୃଷ୍ଟି କରେ ।

## ମାନସିଂହ ଗୀତିନାଟ୍ୟର ସଂକ୍ଷିପ୍ତ ସୂଚନା :

ମାନସିଂହ ନିଜ ନାଟକ ରଚନାର ପୃଷ୍ଠଭୂମି ସମ୍ପର୍କରେ ଦେଇଥିବା ମତାମତଗୁଡ଼ିକ ପ୍ରଣିଧାନ ଯୋଗ୍ୟ—'ଗୁଜକବି' ନାଟିକାର ମୁଖବନ୍ଧରେ ସେ ଲେଖିଛନ୍ତି "ଉପେନ୍ଦ୍ରଙ୍କ ସମସ୍ତ ଜୀବନଟା ରହସ୍ୟମୟ ହୋଇ ରହିଛି । ଏହି ରହସ୍ୟହିଁ ମୋତେ ନାଟିକା ଲେଖିବାପାଇଁ ଉଦ୍‌ବୁଦ୍ଧ କରିଥିଲା ।" 'ପୂଜାରିଣୀ'ର ମୁଖବନ୍ଧରେ ଲେଖିଛନ୍ତି "ପିଲାବେଳେ 'ଚଇତା' ପାଠକଲାବେଳୁ ଏ ବିଚିତ୍ର ଘଟଣା ଓ ଏହି ମହିମ୍ବସୀ ବାଳିକା ଲେଖକର କଳ୍ପନାରେ ଗଭୀର ରେଖାପାତ କରିଥିଲେ । ଏହି ନଗଣ୍ୟ ରଚନାରେ ମୁଁ ତାହାକୁ ହିଁ ଯଥାଶକ୍ତି ରୂପଦାନ କରିବାକୁ ଚେଷ୍ଟା କରିଛି × × × × । ସମ୍ଭବତଃ ଏମ୍. ଏ. ପଢୁଥିଲାବେଳେ ଏହି ନାଟିକାଟି

* । ଆଧୁନିକ ଓଡ଼ିଆ ସାହିତ୍ୟ—ଡକ୍ଟର ନିତ୍ୟାନନ୍ଦ ଶତପଥୀ ପୃ ୩୯ ।

ଲେଖିଥିଲି × × × ସେତିକିବେଳେ ଆଇରଶ୍ କବି ଏଇଟ୍ସଙ୍କ କୌଣସି ଏକ ଶ୍ରେଷ୍ଠ ନାଟକରେ ଏଇ ଭାବଟିର ଆଭାସ ପାଇ ମୋର ନିଜର ମାନସିକ କ୍ରିୟାପାଇଁ ମୁଁ ଯେପରି ସମର୍ଥନ ପାଇଲି । ତା'ପରେ ସମ୍ପୂର୍ଣ୍ଣ ଓଡ଼ିଆ ଭୂମିକାରେ ଏଇ ଭାବଟିକୁ କିପରି ରୂପ ଦିଆଯାଇପାରେ ଚିନ୍ତା କରୁକରୁ ମୁଁ ଏହି ସାକ୍ଷୀଗୋପାଳ-ଲକ୍ଷ୍ମୀ କମ୍ଭଦନ୍ତୀକୁ ପରୀକ୍ଷା ପାଇଁ ଗ୍ରହଣ କରିନେଲି ।', ୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯେଉଁ ସର୍ବଗ୍ରାସୀ ନ'ଅଙ୍କ ଦୁର୍ଭିକ୍ଷ ଦେଖାଦେଇଥିଲା ଏବଂ ଏହି ବୀଭତ୍ସିକ ମନ୍ଦ ନ'ଅଙ୍କ ଦୁର୍ଭିକ୍ଷର ଭୀଷଣ ରଙ୍ଗଭୂମିରେ କେନ୍ଦ୍ରାପଡ଼ାର ବାଳକ ସନାତନର ଶ୍ରେଷ୍ଠ ଅଭିନୟଟି ମାନବିକତାରେ ଯେପରି କାରୁଣ୍ୟମୟ, ନରତ୍ୱର ମହିମାରେ ସେହିପରି ଅପୂର୍ବ । ସନାତନର ମହିମାମୟ କାହାଣୀଟି ମୁଁ ପ୍ରଥମେ ଏକ ବଙ୍ଗଳା ପାଠ୍ୟପୁସ୍ତକରେ ପଢ଼ିଥିଲି । × × × ଏଇସବୁ ବୀଭତ୍ସିକାମୟ, ଭୀଷଣ, ନିଷ୍ଠୁର ପଶ୍ଚାତ୍ପଟ ଉପରେ ସନାତନର ବରେଣ୍ୟ ଆତ୍ମତ୍ୟାଗର ବର୍ତ୍ତିକା କ୍ରମେ ମୋ ମାନସ-ଲୋକରେ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଉଠିଥାଏ । ତାହାପ୍ରତି ମୋର ଏଇ ପ୍ରେମ ବର୍ତ୍ତମାନ ପୂଜା ଓ ସମ୍ମାନକୁ ମୁଁ କି ପ୍ରକାରେ ପ୍ରକାଶ କରିବି, ଏହା ଅନେକ ଦିନ ଧରି ଭାବୁଥାଏଁ । ଏଇ ସମୟରେ ପ୍ରଭାତ (୧୯୩୭ ସାଲ ଅଗଷ୍ଟ ମାସ) ପତ୍ରିକାରେ ପ୍ରକାଶ ପାଇଥିବା ଅନନ୍ତ ଦାସଙ୍କ ଆତ୍ମଜୀବନୀଟିକୁ ସେ ତାଙ୍କର କବିବନ୍ଧୁ ପ୍ରାଣକୃଷ୍ଣ ସାମଲଙ୍କଠାରୁ ଶୁଣି ପଢ଼ିଥିଲେ ଓ ଏହାକୁ ପୃଷ୍ଠପଟରେ ରଖି 'ଦୁର୍ଭିକ୍ଷ' କାବ୍ୟନାଟିକାଟି ରଚନା କରିଛନ୍ତି ବୋଲି ମାନସିଂହ ସ୍ୱୀକାର କରିଛନ୍ତି ।

ମାନସିଂହ ଯେଉଁସବୁ ନାଟକ, କାବ୍ୟନାଟିକା ଓ ଏକାଙ୍କିକାମାନ ସୃଷ୍ଟିକରି ଯାଇଛନ୍ତି, ସେସବୁକୁ ନାଟ୍ୟତତ୍ତ୍ୱ ଅନୁଯାୟୀ ବିଗ୍ରହ କଲେ ଦେଖାଯାଏ ଯେ, 'ନଷ୍ଟନୀଡ଼', 'ବାରବାଟୀ' ଓ 'ଗୁଳ୍ଧ' ତିନୋଟିଯାକ ନାଟକ ଏବଂ 'ଶାସନ ଚକ୍ର' ଏକମାତ୍ର ଏକାଙ୍କିକା । କିନ୍ତୁ 'ରାଜକବି', 'ପୁଷ୍ପିତା', ପୂଜାରିଣୀ' 'ଦୁର୍ଭିକ୍ଷ' ପ୍ରଭୃତି କାବ୍ୟନାଟିକା ଶ୍ରେଣୀଭୁକ୍ତ । 'ବୁଦ୍ଧଦୂତୀ' ଓ 'ପୁଷ୍ପାଭିନୟ' ଦୁଇଟି କ୍ଷୁଦ୍ରରଚନାମାତ୍ର, ଏଥିରେ କାବ୍ୟନାଟିକାର ଲକ୍ଷଣମାନ ଅଧିକଥିବାର ଜଣାଯାଉଥିଲେ ହେଁ ଏଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ କାବ୍ୟନାଟିକା କୁହାଯାଇ ପାରିବ ନାହିଁ । ମାନସିଂହଙ୍କ ନାଟକମାନଙ୍କ ମଧ୍ୟରେ 'ନଷ୍ଟନୀଡ଼' ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥାଏ । ମାନସିଂହ ତାଙ୍କ କାବ୍ୟନାଟିକା-ଗୁଡ଼ିକୁ ଗୀତିନାଟ୍ୟରୂପେ ଗ୍ରହଣ କରିଥିବାରୁ ଏଠାରେ ସେଗୁଡ଼ିକୁ ସେଇ ମାନଦଣ୍ଡରେ ରଖି ବିଚାର କରିବାକୁ ପଡ଼ୁଛି । ଆହୁରି ମଧ୍ୟ ଆମର ଆଲୋଚନାର ପ୍ରେକ୍ଷାପଟ ମାନସିଂହଙ୍କ ଗୀତିନାଟ୍ୟ କେବଳ ହୋଇଥିବାରୁ ତାଙ୍କର ନାଟକଗୁଡ଼ିକ ସମ୍ପର୍କରେ ଏଠାରେ ନୀରବ ରହିବାକୁ ପଡ଼ୁଛି । ୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯେଉଁ ସର୍ବଗ୍ରାସୀ ନ'ଅଙ୍କ ଦୁର୍ଭିକ୍ଷ ଦେଖାଦେଇଥିଲା ତାକୁ ଭିତ୍ତିକରି କବିମାନସିଂହ 'ଦୁର୍ଭିକ୍ଷ' କାବ୍ୟ-ନାଟିକା ରଚନା କରିଛନ୍ତି । ଏହାର ନାୟକ ସନାତନର କରୁଣଚିତ୍ର କବିଙ୍କ

ହୃଦୟକୁ ଆଲୋଡ଼ିତ କରିଛି । ଏଥିରେ ବହୁ ଐତିହାସିକ ସତ୍ୟ ରହିଅଛି । ତତ୍‌କାଳୀନ ସମାଜରେ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ଯେଉଁ ହୀନ ଚକ୍ରାନ୍ତ ଓ ଷଡ଼ଯନ୍ତ୍ର ଏବଂ ସର୍ବୋପରି ବସ୍ତୁହରା ମାନବର ଅନ୍ନ ଦେହିଂ ଆର୍ତ୍ତି ଚିତ୍କାର ତାହା କବିପ୍ରାଣ ମାନସିଂହଙ୍କୁ ବିଚଳିତ କରି 'ଦୁର୍ଭିକ୍ଷ'ରେ ରୂପ ନେଇଛି । ସନାତନ, ହିନ୍ଦୁଧର୍ମର ଯେଉଁ ଚରମ ଓ ପରମ ନିଷ୍ଠାର ଅଖଣ୍ଡତ୍ୱ ପ୍ରଦର୍ଶନ କରିଛି ତାହା କୌଣସି ସଚେତନ ବ୍ୟକ୍ତିମାନସ ଭୁଲିବାର ନୁହେଁ । ଏହି ଦୁର୍ଭିକ୍ଷର ତାଡ଼ନାରେ ସ୍ୱାମୀ ସ୍ତ୍ରୀ, ପିତାମାତା, ଭାଇ ଭଉଣୀ ମଧ୍ୟରେ ଯେଉଁ ପବିତ୍ର ସଂପର୍କ ତାହା କ୍ଷୁଣ୍ଣ ହୋଇ ଯାଇଛି । ଏ ସମୟରେ ମାନବର ଜୀବନ ବଞ୍ଚାଇବା କେବଳ ହିଁ ମୁଖ୍ୟବସ୍ତୁ ହୋଇ ଉଠିଛି । ତଥାପି ସେଇ ସ୍ୱଚ୍ଛ ହିନ୍ଦୁ ଧର୍ମର ପବିତ୍ର ସମ୍ପର୍କର କ୍ଷୀଣଧାରାଟି ଅବ୍ୟାହତ ରହିଛି । କବି ମାନସିଂହ ଜଣେ ରୋମାଣ୍ଟିକ କବିଭାବରେ ମୁଖ୍ୟତଃ ବିବେଚିତ ହେଉଥିଲେ ହେଁ ଏଇ କାବ୍ୟ ନାଟିକାରେ ଦୈହିକ ପ୍ରେମର କୌଣସି ସତ୍ତ୍ୱା ଉପଲବ୍ଧ ହୁଏ ନାହିଁ, ବରଂ ଏଠାରେ ସେ ଯେଉଁ ପରମ ନିତ୍ୟ ସତ୍ତ୍ୱାର ଉପଲବ୍ଧି କଥା ଉଲ୍ଲେଖ କରିଛନ୍ତି ତାହା ପ୍ରତ୍ୟେକ ସଚେତନ ପାଠକ ପ୍ରାଣକୁ ମଥିତ କରିଥାଏ । ସନାତନ ଦୁର୍ଭିକ୍ଷ କବଳରେ ପୀଡ଼ିତ ହୋଇ ଭିକ୍ଷାମାଗି ନିଜର ବୃଦ୍ଧ ପିତାମାତାଙ୍କୁ ଏବଂ ଜ୍ୟେଷ୍ଠ ଭଉଣୀ କମଳୀକୁ ଆହାର ଯୋଗାଇଛି । ନିଜେ କଙ୍କାଳସାର ମାତ୍ର, ଭଉଣୀ ପାଇଁ ସ୍ନେହ, ବାପ ମା'ଙ୍କୁ ଖାଦ୍ୟ ଯୋଗାଇବାର ଗୁରୁ ଦାୟିତ୍ୱ ନିକଟରେ ତା' ନିଜ ପାଟିକୁ ଖାଦ୍ୟ ଯାଇନି, ସେ ବହୁ କଷ୍ଟରେ ଦୂର ଗାଁରୁ ଖାଦ୍ୟ ନେଇ ଫେରିଛି । ନିଜ ପାଖରେ ଖାଦ୍ୟ ଥିଲେ ହେଁ ଅନାହାରରେ ସେ ବାଟରେ ପଡ଼ି ମରିଛି ଓ ନିଜ ଜୀବନ ଥିବା ପର୍ଯ୍ୟନ୍ତ ସେ ସ୍ୱଧର୍ମକୁ ଜଳାଞ୍ଜଳି ଦେଇ ସୁଖରେ ରହିବାକୁ ମନ ବଳାଇନି । ତା' ନିକଟରେ ନିଜ ଜୀବନ ଅପେକ୍ଷା ଜାତିର ଧର୍ମ ଓ ରକ୍ତର ସଂପର୍କ ବଳିଷ୍ଠ ହୋଇ ଉଠିଛି । ସନାତନର ମୃତ୍ୟୁପରେ ତା' ସ୍ତ୍ରୀ ଆସି ସନାତନର ଶବକୁ କୋଳ ଧରିଛି ଏବଂ ଶେଷରେ ନିଜେ ମଧ୍ୟ ମୃତ୍ୟୁବରଣ କରିଛି । ସ୍ନେହ ଓ ପ୍ରେମ କିପରି କ୍ଷୁଧାର ତାଡ଼ନାକୁ ବଳିଯାଇଛି ତାହାହିଁ ନାଟିକାଟିର ପ୍ରତିପାଦ୍ୟ ବିଷୟବସ୍ତୁ । 'ଅନନ୍ତ ଦାସଙ୍କ ଆତ୍ମଜୀବନୀ' ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ଉପରେ ଏକ ବଳିଷ୍ଠ ପ୍ରାମାଣିକ ଗ୍ରନ୍ଥ । ସନାତନ ଚରିତ୍ର ବ୍ୟତୀତ ଅନ୍ୟଗୁଡ଼ିକ କାଳ୍ପନିକ ଚରିତ୍ର । କାହାଣୀର ଉପସ୍ଥାପନା ଓ କାହାଣୀ ସହିତ ନାନା କାଳ୍ପନିକ ପରିବେଶ ନାଟିକାଟିକୁ ସୁଖପାଠ୍ୟ କରିବାରେ ସକ୍ଷମ ହୋଇପାରିଛି ।

'ରାଜକବି' କାବ୍ୟନାଟିକାଟି ୧୯୨୫ ମସିହାରେ ରଚିତ ଏବଂ ୧୯୨୮ ମସିହାରେ କଟକ ସତ୍ୟବାଦୀ ପ୍ରେସ୍‌ରେ ମୁଦ୍ରିତ ହୋଇ 'ପ୍ରଗତି ସଂଘ' ଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ମାସିକ ପତ୍ରିକା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏହା ମାନସିଂହ ଗ୍ରନ୍ଥାବଳୀରେ 'ରାଜକବି ଉପେନ୍ଦ୍ର' ନାମରେ

ସ୍ଥାନିତ ହୋଇଛି । ଏହି କାବ୍ୟ ନାଟିକାରେ କାହାଣୀର କୌଣସି ବଳିଷ୍ଠତା ନାହିଁ । ଘୁମୁସର ରାଜ୍ୟର ରାଜସିଂହାସନ ପାଇଁ ବିବାଦ ଦେଖା ଦେଇଛି । କିନ୍ତୁ ଯୁବରାଜ ଉପେନ୍ଦ୍ର ଏଥିରେ ଅଂଶ ଗ୍ରହଣ ନ କରି ରାଜ୍ୟ ବାହାରେ ଥିବା ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ ବିମଣ୍ଡିତ ଅରଣ୍ୟାନୀରେ କୁମାରୀମାନଙ୍କ ସହ ସମୟ ଅତିବାହିତ କରିଛନ୍ତି । ରାଜ୍ୟର ପୁରୋହିତ, ନାଗରିକ ତଥା ସର୍ବୋପରି ରାଜଲକ୍ଷ୍ମୀଙ୍କର ରାଜ୍ୟ ପ୍ରାପ୍ତି ନିମିତ୍ତ ସମସ୍ତ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଉପେନ୍ଦ୍ର ପ୍ରକୃତିର ଶାନ୍ତ ସ୍ନିଗ୍ଧ କୋଳରେ ବସି ବାଣୀ ଆରାଧନା କରିବାରେ ମନୋନିବେଶ କରିଛନ୍ତି । ଏହାର ସବିଶେଷ ଆଲୋଚନା ପ୍ରବନ୍ଧର ଅନ୍ୟ ଏକ ପର୍ଯ୍ୟାୟର ଅପେକ୍ଷା ରଖୁଥିବାରୁ ଏଠାରେ ସେ ସବୁର ଆଲୋଚନା କରାଯାଉ ନାହିଁ ।

'ପୁଷ୍ପିତା'ର କଥାବସ୍ତୁ ମାନସିଂହ ସୃଷ୍ଟିରେ ଏକ ନୂତନ ଦିଗନ୍ତ ଉଦ୍‌ଘାଟିତ କରିଥାଏ । ରାଜା ରଜନୀରେ ପ୍ରେମ ପାଗଳିନୀ ଏକ ଗ୍ରାମ୍ୟ ଅନୂଢ଼ା କିଶୋରୀ ମନର ଆବେଗଦୀପ୍ତ ପ୍ରେମ କାହାଣୀର ବିଷୟବସ୍ତୁ 'ପୁଷ୍ପିତା'ର ଉପଜୀବ୍ୟ ବସ୍ତୁ । ଏହି କିଶୋରୀ ନାମ୍ନୀ ବାଳିକାର ଯୌବନପ୍ରାପ୍ତି ନାଟିକାଟିର କେନ୍ଦ୍ରବିନ୍ଦୁ । ସେଥିପାଇଁ ପରିବେଶ ସୃଷ୍ଟି କରାଯାଇଛି । ସାଙ୍ଗସାଥୀ ଗହଣରେ କିଶୋରୀକୁ ନେଇ ନାନା ପ୍ରକାର ଆଳାପ ଆଲୋଚନା ହୋଇଛି । ଅପ୍ରାପ୍ତ ଯୌବନା କିଶୋରୀ ସେ ସବୁକୁ କିଛି ବୁଝିପାରିନି । କିନ୍ତୁ ବୟସ ବଦଳିବା ବେଳେ ତାକୁ ପ୍ରକୃତି ସାହାଯ୍ୟ କରିଛି । କବି ମାନସିଂହ ଏଇ ପ୍ରସଙ୍ଗଟିକୁ ଦ୍ୱିତୀୟ ଦୃଶ୍ୟରେ ବସନ୍ତ, ମଳୟ, ପରିମଳ ଓ କାମଦେବ ପ୍ରଭୃତିଙ୍କ ସାହାଯ୍ୟରେ ସ୍ପଷ୍ଟ କରି ଦେଇ କିଶୋରୀକୁ ଯୁବତୀ କରିବାରେ ଲାଗିପଡ଼ିଛନ୍ତି । ଏହାପରେ ଯୁବତୀ ଜଣକ ପ୍ରଥମ ଯୌବନପ୍ରାପ୍ତା ହୋଇ ଯୁବା ଅଙ୍ଗ ସଙ୍ଗ ମିଳନ ପାଇଁ ଆନମନା ହୋଇଉଠିଛି । ସେ ଏକ ଅତୃପ୍ତ ହାହାକାର ଓ ନିଃସଙ୍ଗତା ବୋଧରେ ଜର୍ଜରିତ ହୋଇଛି । ମିଳନ ପାଇଁ ଉତ୍କଣ୍ଠିତା ହୋଇ ଉଠିବା ବେଳେ ପ୍ରେମର ଆଦିଦେବ 'ମଦନ' ଓ ଆଦିଦେବୀ 'ରତି' କିଶୋରୀ ପ୍ରାଣକୁ ପ୍ରଶମିତ କରିଛନ୍ତି । ଏହି ପ୍ରେମପୁଷ୍ପ ସଫଳ ଭାବରେ ପୁଷ୍ପାୟିତ ହୋଇ ପାରିଛି ଏବଂ ଏହାର ସୌରଭରେ ଜନମନ ହରଣକରି ନିଜ ଜୀବନକୁ ଧନ୍ୟ କରାଇ ପାରିଛି । ପ୍ରେମିକ କବି ମାନସିଂହ 'ଧୂପ'ରେ ଯେଉଁ ବ୍ୟକ୍ତିଗତ ଅନୁଭୂତ ପରିପୁଷ୍ଟ ପ୍ରେମ କାହାଣୀର ସ୍ରଷ୍ଟା 'ପୁଷ୍ପିତା'ହିଁ ସେହି ଚେତନାର ଏକ ପୂର୍ବ ପ୍ରସ୍ତୁତି ମାତ୍ର । ଏହି କାବ୍ୟନାଟିକାରେ କବି ମାନସିଂହ ଗଙ୍ଗାଧର ମେହେରଙ୍କ 'ପ୍ରଣୟ ବଲ୍ଲରୀ' କାବ୍ୟ ପ୍ରତି ସଚେତନ ଥିବାର ପରିଲକ୍ଷିତ ହୁଏ ।

'ପୂଜାରିଣୀ'ରେ ମାନସିଂହ ପ୍ରତିଭାର କୌଣସି ସ୍ୱାତନ୍ତ୍ର୍ୟ ଥିଲାଭଳି ମନେହୁଏ ନାହିଁ । ଏହା ଏକ କିମ୍ବଦନ୍ତୀକୁ ଆଶ୍ରୟ କରି ରଚିତ ହୋଇଛି । କବି ମାନସିଂହ ଐତିହାସିକ ଘଟଣା କିମ୍ବା ବାସ୍ତବ ପରିବେଶ ପ୍ରତି ସଚେତନ ଥିବା ଲକ୍ଷ୍ୟ କରି

ହୁଏ ନାହିଁ । ଏଥିରେ କେବଳ କବିଙ୍କର କବିତ୍ୱ ଓ ରୋମାଣ୍ଟିକ ଭାବଚେତନାର ଅପୂର୍ବ ପ୍ଲାବନ ସଙ୍ଘଟିତ ହୋଇଛି । ଏଥିରେ ନାହିଁ ସତ୍ୟତା, ମାତ୍ର ଅଛି କାବ୍ୟିକ କମନୀୟତା ଓ ଭାବପ୍ରବଣତା । କବି ପାର୍ଥିବ ପ୍ରେମର କଥା ଏଥିରେ ବର୍ଣ୍ଣନା କରି ନାହାନ୍ତି ବରଂ ଆତ୍ମା ପରମାତ୍ମା କଥା କହିଛନ୍ତି । ଆତ୍ମା ସର୍ବଦା ପରମାତ୍ମା ସହ ମିଳିତ ହେବାକୁ ଉନ୍ମୁଖ ହୋଇ ରହିଥାଏ । ଶତ ବାଧାବନ୍ଧନ ତାକୁ ରୋକିପାରେ ନାହିଁ । ଶେଷରେ ଆତ୍ମା, ପରମାତ୍ମାରେ ମିଳିତ ହୋଇ ପରମଶାନ୍ତି ଲଭ କରେ ଏବଂ ତା'ର ମୋକ୍ଷ ଲଭ ହୁଏ । କବି ଏଇକଥାକୁ ଅତି ସୂକ୍ଷ୍ମଭାବରେ ପାର୍ଥିବ ପ୍ରେମ ସ୍ରୋତର ଅନ୍ତଃସ୍ରାବୀ ପ୍ରବାହ ମଧ୍ୟ ଦେଇ ବର୍ଣ୍ଣନା କରିଛନ୍ତି । ସତ୍ୟବାଦୀର ସାକ୍ଷୀ-ଗୋପାଳ ଜନୈକ ବ୍ରାହ୍ମଣର ସୁନ୍ଦରୀକନ୍ୟା ଲକ୍ଷ୍ମୀର ପ୍ରେମରେ ଆକୃଷ୍ଟ ହୁଅନ୍ତି । ଲକ୍ଷ୍ମୀର ଗୃହରୁ ସାକ୍ଷୀଗୋପାଳଙ୍କର ବେଣ୍ଟ, ମୁଦ୍ରିକା ଓ ଲୁଗା ପ୍ରଭୃତି ଆବିଷ୍କୃତ ହୁଏ । ଫଳରେ ଲକ୍ଷ୍ମୀ ସମାଲୋଚନାର ପାତ୍ରୀ ହୁଏ ଓ ମନ୍ଦିର କର୍ତ୍ତୃପକ୍ଷ ଦେବତାଙ୍କ ରାଧା ବିରହିତା ମନେକରି ଏହାର ସମାଧାନ କରିବାକୁ ଯାଇ ସୁବର୍ଣ୍ଣ ରାଧା ପ୍ରତିମା ଗଢ଼ାଇବାର ପଦକ୍ଷେପ ଗ୍ରହଣ କରନ୍ତି । ରାଧା ପ୍ରତିମା ଗଠନର ଆରମ୍ଭ ଦିନରୁ ଲକ୍ଷ୍ମୀର ଜ୍ୱର ହୁଏ ଏବଂ ପ୍ରତିମା ସମ୍ପୂର୍ଣ୍ଣ ହେବା ମାତ୍ରେ ଲକ୍ଷ୍ମୀ ମୃତ୍ୟୁ ବରଣ କରେ । ଏହାହିଁ 'ପୂଜାରିଣୀ' କାବ୍ୟ ନାଟିକାର ପ୍ରତିପାଦ୍ୟ ବିଷୟବସ୍ତୁ । ମାନସିଂହ ଏ ସମ୍ପର୍କରେ କୁହନ୍ତି—"ପାଠକେ ସ୍ମରଣ ରଖିବେ ଯେ ସାକ୍ଷୀଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ୍ୟ ମାତ୍ର; ହିନ୍ଦୁ ଦେବ ଦେବୀଙ୍କର ମାହାତ୍ମ୍ୟ ବା ବୈଷ୍ଣବ ଭକ୍ତି ମାର୍ଗର ପ୍ରଚାର ପାଇଁ ମୁଁ ଏ ନାଟିକା ଲେଖି ନଥିଲି, ମୁଁ ପ୍ରକୃତରେ ଲେଖିଥିଲି ମାନବୀୟ ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭାବକୁ ରୂପ ଦେବା ପାଇଁ । ସେହି ବିଭାବଟି ହେଉଛି— ମନୁଷ୍ୟ ଚିତ୍ତ ଯେ ବେଳେ ବେଳେ ଉନ୍ମନା ହୋଇ ଉଠେ, ଯାହା ବା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ, ସେଥିପ୍ରତି ଆକୃଷ୍ଟ ନ ରହି, ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହା ଦୂର ଓ ଦୁରଧିଗମ୍ୟ ତାହାର ପାଇଁ ଗୃହ ଓ ସମାଜର ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟନ କରିବା—ତରୁଣ ବୟସର ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ ଊଣା ଅଧିକେ ଦେଖାଦିଏ । ମୋର ମନେହୁଏ ମାନବ ପ୍ରାଣରେ ଏହା ଉଚ୍ଚତର ଆଧ୍ୟାତ୍ମିକ ଜୀବନର ଅନ୍ତଃରାନ୍ୱେଷ ।" (ମାନସିଂହ ଗ୍ରନ୍ଥାବଳୀ, ଦ୍ୱିତୀୟ ଭାଗ ପୃ: ୪୬୦-୪୬୧)

'ବୁଦ୍ଧଦୂତୀ'ରେ ମାନସିଂହ ବୌଦ୍ଧଧର୍ମର ଶ୍ରେଷ୍ଠ ପୂଜାରିଣୀ ରୂପେ କଳିଙ୍ଗର ଲବଣୀପିତୁଳା ରାଜଜେମା ହେମମାଳାକୁ ଯେପରି 'ଦୂତୀ' ଭୂମିକାରେ ବର୍ଣ୍ଣନା କରିଛନ୍ତି ତାହା ଖୁବ୍ ଉଚ୍ଚକୋଟୀର ହୋଇପାରିଛି । ବୈଦିକ ଧର୍ମାବଲମ୍ବୀମାନଙ୍କ କବଳରୁ ବୁଦ୍ଧଦନ୍ତକୁ ରାଜଜେମା ହେମମାଳା ରକ୍ଷା କରିଛି । କଳିଙ୍ଗରେ ବୈଦିକ ଧର୍ମାବଲମ୍ବୀ ଓ ବୌଦ୍ଧଶ୍ରମଣମାନଙ୍କ ମଧ୍ୟରେ ନିଜ ନିଜ ଧର୍ମର ଶ୍ରେଷ୍ଠତ୍ୱକୁ ନେଇ

ସେଇଁ ସଂଘର୍ଷ ଦେଖା ଦେଇଥିଲା ତା'ର ପ୍ରେକ୍ଷାପଟରେ ବୁଦ୍ଧଦନ୍ତ ରହିଅଛି । ଏଇ ବୁଦ୍ଧଦନ୍ତକୁ ଧ୍ୱଂସ କରିପାରିଲେ, ଯଥାର୍ଥରେ ହିଁ ବୌଦ୍ଧଧର୍ମର ମୂଳୋତ୍ପାଟନ ହେବ ଭାବି ବ୍ରାହ୍ମଣମାନେ ସେଦିନ କଳିଙ୍ଗର ରାଜଧାନୀ ଦନ୍ତପୁରରେ ଯେଉଁ ସଂଗ୍ରାମ ଚଳାଇଥିଲେ ସେଇ ଘଟଣାରେ ରାଜକେମା ହେମମାଳା ଅତି ଚତୁରତାର ସହିତ ବୁଦ୍ଧଦନ୍ତକୁ ସ୍ୱକେଶଗୁଚ୍ଛରେ ଲୁକ୍କାୟିତ ରଖି କୌଣସି ବାଧାବିଘ୍ନ ନମାନି ସିଂହଳକୁ ପଳାୟନ କରି ସିଂହଳର ରାଜାରାଣୀଙ୍କୁ ବୁଦ୍ଧଦନ୍ତର ସୁରକ୍ଷା ଓ ବୌଦ୍ଧ ଧର୍ମକୁ ଅବ୍ୟାହତ ରଖିବା ପାଇଁ ବୁଦ୍ଧଦନ୍ତଟିକୁ ତାଙ୍କୁ ପ୍ରଦାନ କରିଥିଲେ । ଏହି ବୁଦ୍ଧଦନ୍ତ ପାଇଁ ରାଜକେମା ଅନ୍ଧକାର ରଜନୀରେ ରାଜପ୍ରାସାଦରୁ ବାହାରି ଅଭିସାରିକା ବେଶରେ ଦନ୍ତପୁରରୁ ବୁଦ୍ଧଦନ୍ତକୁ ଧରି ଦୁର୍ଗମପଥ ଅତିକ୍ରମ କରି ସିଂହଳରେ ପ୍ରବେଶ କରିଛନ୍ତି ଓ ସିଂହଳର ରାଜାରାଣୀଙ୍କୁ ପ୍ରଦାନ କରିବା ପରେ ବୌଦ୍ଧଧର୍ମର ପ୍ଲାବନରେ ଆମୋଦିତା ହୋଇ ନୃତ୍ୟ କରୁ କରୁ ମହାନିର୍ବାଣ ଲାଭ କରିଛି । ରାଜକେମା ଏକ ସାଧିକା ଦୂତୀର ଗୁରୁ ଦାୟିତ୍ୱ ତୁଲାଇଥିବା ଭଳି ମନେହୁଏ । 'ଦୂତୀ' ଯେପରି କୌଣସି କାର୍ଯ୍ୟ ସାଧନ କରିବା ପାଇଁ ବାଧାବନ୍ଧନକୁ ଭ୍ରୂକ୍ଷେପ କରେ ନାହିଁ, ସେହିପରି ଏଥିରେ ରାଜକେମା ହେମମାଳା ବୁଦ୍ଧଦନ୍ତ ଓ ବୌଦ୍ଧଧର୍ମର ସୁରକ୍ଷା ପାଇଁ ଦୁଃସାହସିକ ପଦକ୍ଷେପ ଗ୍ରହଣ କରିଛନ୍ତି । ଏଥିରେ ନାହିଁ ଗର୍ବ କିମ୍ବା ଅହଙ୍କାର, ମାତ୍ର ଅଛି ସରଳପ୍ରାଣା ରାଜକନ୍ୟାଙ୍କର ବୌଦ୍ଧଧର୍ମ ପ୍ରତି ଆସକ୍ତି ଓ ସମ୍ମାନ । ଶେଷରେ ରାଜକନ୍ୟାଙ୍କ ମହାନିର୍ବାଣରେ ବୌଦ୍ଧଧର୍ମର ସେଇ ଶାନ୍ତି ସମାଚାରର ଅମୀୟବାଣୀ ନିନାଦିତ ହୋଇ ଉଠିଛି । ଅର୍ଥାତ୍ ରାଜକେମାର ଆକାଂକ୍ଷା ହିଁ ପୂରଣ ହୋଇପାରିଛି । 'ସ୍ୱପ୍ନଭଙ୍ଗ'ର ଭାବବସ୍ତୁ ପ୍ରକୃତିର ଏକ ମନୋହର ଦୃଶ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହାର କୌଣସି ବିକାଶ କିମ୍ବା ପରିଣତି ଅନୁଭୂତ ହୁଏ ନାହିଁ । ତେଣୁ ଏ ସଂପର୍କରେ ନୀରବ ରହିବାକୁ ପଡ଼ୁଛି ।

**ଶିଳ୍ପ ବିଚାର :**

ବର୍ତ୍ତମାନ ନାଟ୍ୟକଳାର ମାନଦଣ୍ଡରେ ମାନସିଂହଙ୍କ ଗୀତିନାଟ୍ୟଗୁଡ଼ିକୁ ବିଚାର କରି ଭଲ ମନ୍ଦ ଆଲୋଚନା କରାଯାଇପାରେ । ଦୃଶ୍ୟକାବ୍ୟରେ ଚରିତ୍ରର ସ୍ଥାନ ଭାବବସ୍ତୁର ପଛକୁ ହିଁ ରହିଥାଏ । ଚରିତ୍ର ବ୍ୟତିରେକ କଥାବସ୍ତୁ ଆଗେଇପାରେ ନାହିଁ । ତେଣୁ ନାଟକର ପ୍ରଧାନ ଉପାଦାନ ହେଉଛି ଚରିତ୍ର । ଚରିତ୍ର ମାଧ୍ୟମରେ ହିଁ ନାଟକର ବର୍ଣ୍ଣିତ କଥାବସ୍ତୁ ଅଗ୍ରଗତି କରିଥାଏ । ଚରିତ୍ରର ମହନୀୟତା ଓ ବାସ୍ତବ ଧର୍ମିତାରେ ନାଟକର କଥାବସ୍ତୁ ହୁଏ ଜୀବନ୍ତ । ଚରିତ୍ର ଯେତିକି ହୁଏ ବାସ୍ତବଧର୍ମୀ ନାଟକ ସେତିକି ହୁଏ ହୃଦୟସ୍ପର୍ଶୀ । ମାନସିଂହଙ୍କ ନାଟକର ସମସ୍ତ ଚରିତ୍ର ସରଳ ଓ ନିଷ୍ପାପ । ତାଙ୍କ ନାଟକର ନାୟକ ନାୟିକାମାନେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନପାଇଁ ସୃଷ୍ଟ । 'ରାଜକବି ଉପେନ୍ଦ୍ର'ରେ ଉପେନ୍ଦ୍ର ଚରିତ୍ର ଅତି ଦୁର୍ବଳ । ସେ ଗ୍ରାମ୍ୟ

ବାଳିକାମାନଙ୍କ ସହିତ ଉତ୍ସବ କରିବା, ଗୀତ ଶୁଣିବା, ପ୍ରକୃତିକୁ ଉପଭୋଗ କରିବା ବ୍ୟତୀତ ଅନ୍ୟ କିଛି ଜାଣନ୍ତି ନାହିଁ । 'ଦୁର୍ଭିକ୍ଷ'ରେ ସନାତନ ଚରିତ୍ର ସେଇପରି ସ୍ନେହ ଓ ପ୍ରେମର ମହତ୍ତ୍ୱ ପ୍ରକାଶ ପାଇଁ ଅଭିପ୍ରେତ । 'ପୂଜାରିଣୀ'ରେ ସାକ୍ଷୀଗୋପାଳ ଦେବତା ହେଲେ ହେଁ ଜଣେ ପ୍ରେମିକ ପୁରୁଷ, ଲକ୍ଷ୍ମୀ ମାନବୀ ହୋଇ ଦେବତାଙ୍କର ଉପଭୋଗ୍ୟା ପ୍ରେମିକା । ସ୍ତବକ ସ୍ତବକ ସୁଲଭ ଭାଷା ଏହି ଚରିତ୍ର ଦୁଇଟି ମୁହଁରେ ପ୍ରୟୋଗ ହୋଇ ପାରିଛି । 'ପୁଷ୍ପିତା'ର ନାୟିକା କଣେଇ ନିଜେ କିଛି କରିନି, ପ୍ରକୃତିର ପରିବେଶ ଯାହା କରିଛି ସେଥିରେ ସେ ବାଧ୍ୟହୋଇ ଗତି କରି ଯାଇଛି । 'ପୁଷ୍ପାଭିନୟ'ର ଚରିତ୍ରଗୁଡ଼ିକ ପ୍ରକୃତିର ବିଭବ, ଏମାନେ ନିଜେ କିଛି କରି ନାହାନ୍ତି । 'ଭୃଙ୍ଗଦୂତୀ'ରେ ରାଜକେମା ହେମମାଳା ଦୁଃସାହସିକ ପଦକ୍ଷେପ ନେଇ କଳିଙ୍ଗରୁ ସିଂହଳ ଯାତ୍ରା କରିଛି । ନାଟକରେ ମୁଖ୍ୟ ଚରିତ୍ରର ଚାରିତ୍ରିକ ମହତ୍ତ୍ୱ ଓ ମୂଲ୍ୟାୟନ ପାଇଁ ଗୌଣ ଚରିତ୍ରର ଆବଶ୍ୟକ ହୋଇଥାଏ । ଗୌଣ ଚରିତ୍ର ମୁଖ୍ୟ ଚରିତ୍ର ଗୁଡ଼ିକର ବିକାଶ ବା ଅଭିବୃଦ୍ଧିରେ ଉପନଦୀ ସାଜିଥାନ୍ତି । ମାନସିଂହଙ୍କ ନାଟକରେ ମୁଖ୍ୟ ଚରିତ୍ରଗୁଡ଼ିକଠାରୁ ଗୌଣ ଚରିତ୍ରମାନଙ୍କର ମହତ୍ତ୍ୱ ହିଁ ଅଧିକ ସ୍ୱାଦ୍ୟ । 'ଦୁର୍ଭିକ୍ଷ' ନାଟିକାରେ ସନାତନ ଚରିତ୍ରକୁ ଜୀବନାନନ୍ଦ, ଶିବାନନ୍ଦ, କାଶୀ, କାଙ୍ଗାଳ ଦଳ ଓ ପାଦ୍ରୀଦ୍ୱୟ ଅଧିକ ସ୍ପଷ୍ଟ ଓ ପ୍ରଭାବଶାଳୀ କରାଇ ପାରିଛନ୍ତି । ନାଟିକାକୁ ହୃଦୟସ୍ପର୍ଶୀ କରିବା ପାଇଁ ସନାତନର ପିତା ମାତା, କମଳୀ ଓ ପୀତେଇ ନାମୀର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । 'ରାଜକବି ଉପେନ୍ଦ୍ର'ରେ ବାଳକ ବାଳିକାମାନଙ୍କର ଉପସ୍ଥିତି ହିଁ ନାଟକଟିକୁ ଅଧିକ ରସୋତ୍ତୀର୍ଣ୍ଣ କରି ପାରିଛି, ମାତ୍ର ଏଥିରେ ନାଟକର ପ୍ରାଣ ପ୍ରତିଷ୍ଠ ହୋଇପାରି ନାହିଁ । 'ପୂଜାରିଣୀ'ରେ ଦେବତା ଓ ଲକ୍ଷ୍ମୀ ବ୍ୟତୀତ, ବେଳେଶ୍ୱର ମହାପାତ୍ର, ମହାପାତ୍ରୀ, ପୂଜାରୀ, ପୂଜକପତ୍ନୀ, ସୁନାରୀ, ସୁନାରୁଣୀ, ଲକ୍ଷ୍ମୀର ସାଙ୍ଗ ଓ ଦେବଦାସୀ ଚରିତ୍ର ରହିଛି । ପୁଷ୍ପିତା'ରେ କଣେଇର ବନ୍ଧୁ ହେମା, ସରଳା ଓ ଚଣ୍ଡି ପ୍ରଭୃତି ନାୟିକାର ମନୋଭାବକୁ ପ୍ରକାଶ କରିବା ପାଇଁ ଉଦ୍ଦିଷ୍ଟ । 'ଭୃଙ୍ଗ-ଦୂତୀ'ରେ ରାଜକେମା ହେମମାଳା ଚରିତ୍ରକୁ କଳିଙ୍ଗର ବ୍ରାହ୍ମଣ, ବୌଦ୍ଧଶ୍ରମଣ ଏବଂ ସିଂହଳର ରାଜରାଣୀ ଚରିତ୍ରଦ୍ୱୟ ମହନୀୟ କରି ତୋଳିପାରିଛି । ପୁଷ୍ପାଭିନୟ'ରେ କୌଣସି ମୁଖ୍ୟ ଚରିତ୍ର ଥିଲାଭଳି ମନେହୁଏ ନାହିଁ । ଗୌଣ ଚରିତ୍ର ବିନା ସାହାଯ୍ୟରେ ମୁଖ୍ୟ ଚରିତ୍ରଗୁଡ଼ିକ ଜ୍ୟୋତିଷ୍ମାନ ଭଳି ପ୍ରତୀୟମାନ ଏଣୁ ଗୌଣ ଚରିତ୍ରର ଭୂମିକା ନାଟକରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

କେବଳ ବିଷୟବସ୍ତୁ ଓ ଚରିତ୍ର ବିନ୍ୟାସରେ ନାଟକ ବା ନାଟିକାର ସୃଷ୍ଟି ସମ୍ଭବ ନୁହେଁ । ବିଷୟବସ୍ତୁ ଓ ଚରିତ୍ରଗୁଡ଼ିକ ନାଟକର ପ୍ରଧାନ ଉପାଦାନ ସତ, ମାତ୍ର ବିଷୟବସ୍ତୁକୁ ଗତିଶୀଳ ଏବଂ ଚରିତ୍ରକୁ ଜୀବନ୍ୟାସ ଦେବାକୁ ହେଲେ ପାତ୍ରମୁଖୀ ଭାଷାର ନିତାନ୍ତ ଆବଶ୍ୟକ ରହିଛି । ମାନସିଂହ ମୁଖ୍ୟତଃ କବି ଥିବାରୁ ନାଟକଗୁଡ଼ିକ

ଭିଣା ଅଧିକେ କବିତ୍ୱମୟ ଭାଷାରେ ଜଡ଼ିତ । ସଂଳାପ ଦୃଷ୍ଟିରୁ 'ଗଜକବି ଉପେନ୍ଦ୍ର' ଏକ ଅସଫଳ ସୃଷ୍ଟି । ଏହା ନାଟ୍ୟକାରଙ୍କ ପ୍ରଥମ କୃତି ହୋଇଥିବା ହେତୁ କ୍ଷମଣୀୟ, ଏଥିରେ ନାଟକର ଗାମ୍ଭୀର୍ଯ୍ୟ ପରିବର୍ତ୍ତେ ନାଟ୍ୟକାର ନିଜର କବିକୃତି ପ୍ରଦର୍ଶନ କରିଛନ୍ତି । 'ପୁଷ୍ପିତା'ର ପରିବେଶ ସମ୍ପୂର୍ଣ୍ଣ ଗ୍ରାମୀଣ । ଗାଁର ଅନୂଢ଼ା ବାଳିକାମାନଙ୍କର ନିର୍ବୋଳାଷ୍ଟାନର କଥୋପକଥନକୁ ମାନସିଂହ ଲକ୍ଷ୍ୟ କରିଥିବାରୁ ସଂଳାପଗୁଡ଼ିକ ସ୍ୱାଭାବିକ୍ ହୋଇଛି । ତୃତୀୟ ଦୃଶ୍ୟରେ ଦୀର୍ଘ ସ୍ୱଗତୋକ୍ତି ପ୍ରତ୍ୟେକ କିଶୋର କିଶୋରୀଙ୍କର ଅନ୍ତରବାଣୀ । ସେଇ ଦୃଶ୍ୟରେ ହେମା'ର ସଂଳାପରେ ପ୍ରେମର ମୂଳଉତ୍ସ ଖୋଜିବାକୁ ଯାଇଛନ୍ତି । ପୂଜାରିଣୀ'ରେ ସଂଳାପ ଦୀର୍ଘ ଓ କବିତ୍ୱମୟ ହୋଇ ଉଠିଛି । ସ୍ଥାନେ ସ୍ଥାନେ ଏତେ ଦୀର୍ଘ ସଂଳାପ ରହିଛି ଯାହାକି ନାଟକରେ ଦର୍ଶକର ଧୈର୍ଯ୍ୟଚ୍ୟୁତି ଘଟାଇଥାଏ । ମାତ୍ର କାବ୍ୟନାଟିକା ଦୃଷ୍ଟିରୁ ଏହା ସଫଳ ହୋଇ ପାରିଛି । ବଳିଷ୍ଠ ଶବ୍ଦ ସଂଯୋଜନା ଯୋଗୁ ଏହା ହୃଦୟସ୍ପର୍ଶୀ ହୋଇପାରିଛି । ଦୁର୍ଭିକ୍ଷ'ରେ ସେଇପରି ସଂଳାପଗୁଡ଼ିକ ପାତ୍ରମୁଖୀ ହୋଇପାରିଥିବାରୁ ପରିବେଶକୁ ଗୁରୁଗମ୍ଭୀର କରିପାରିଛି । ବୁଭୁକ୍ଷୁ କାଙ୍ଗାଳମାନଙ୍କ ମୁଖରେ ସଂକ୍ଷିପ୍ତ ସଂଳାପ ଦେବା-ବେଳେ ଜୀବନାନନ୍ଦ ଓ ଶିବାନନ୍ଦ ଭଳି ବିଶିଷ୍ଟ ସନ୍ନ୍ୟାସୀଙ୍କ ମୁଖରେ ଦୀର୍ଘ ସଂଳାପ ସଂଯୋଜନା କରାଯାଇଛି । 'ବୃଦ୍ଧ-ଦୂତୀ'ରେ ସଂଳାପ ନାହିଁ । 'ପୁଷ୍ପାଭିନୟ' ମଧ୍ୟ ଅନୁରୂପ, ମାନସିଂହଙ୍କ ସଂଳାପ ସଂଯୋଜନା ଓ ଉପଯୁକ୍ତ ନାଟ୍ୟପ୍ରତିଭା ଉଦ୍‌ଘାଟିତ ହୋଇଥାଏ 'ନଷ୍ଟନୀଡ଼', 'ବାରିବାଟୀ', 'ବୃଦ୍ଧ' ନାଟକ ସମୂହରେ ଏବଂ 'ଶାସନଚକ୍ର' ନାମକ ଏକ ଏକାଙ୍କିକାରେ ।

ଦ୍ୱନ୍ଦ୍ୱ'ହିଁ ନାଟକର ଏକ ପ୍ରଧାନ ଉପାଦାନ । ଏହାର ବ୍ୟତିରେକ ନାଟକ ରସହୀନ ହୋଇପଡ଼େ । ନାଟକ ହେଉଛି ଜୀବନର ପ୍ରତ୍ୟକ୍ଷ କଳା । ଦ୍ୱନ୍ଦ୍ୱ ଏହି କଳାକୁ କରେ ଜୀବନ୍ତ ଓ ରସବନ୍ତ । ଦ୍ୱନ୍ଦ୍ୱ ସୃଷ୍ଟିହୁଏ ବିଷୟ ବସ୍ତୁ ମଧ୍ୟରେ ଏବଂ ମୁଖ୍ୟ ଓ ଗୌଣ ଚରିତ୍ର ଭିତରେ । ନାଟ୍ୟକାର ଅତି ସତର୍କତାର ସହିତ ଏହାକୁ ନାଟକରେ ସଂଯୋଜନ କରିଥାଏ । ମୋଟା ମୋଟି ଭାବରେ ଦେଖିଲେ ନାଟକରେ ଦୁଇପ୍ରକାର ଦ୍ୱନ୍ଦ୍ୱ ରହିଥାଏ । ବହିର୍ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ । ନାଟକରେ ବହିର୍ଦ୍ୱନ୍ଦ୍ୱ ଅପେକ୍ଷା ଅନ୍ତର୍ଦ୍ୱନ୍ଦ୍ୱର ମହତ୍ତ୍ୱ ଅଧିକ । କୁଶଳୀ ନାଟ୍ୟକାରର ଦକ୍ଷତା ଉପରେ ଏହା ସମ୍ପୂର୍ଣ୍ଣ ନିର୍ଭର କରେ । ପ୍ରବୃତ୍ତି ସହିତ ନିବୃତ୍ତିର, ଆଦର୍ଶ ସହିତ ଅନାଦର୍ଶର, ବାସ୍ତବ ସହିତ ଆଦର୍ଶବୋଧ ଓ ନୈତିକତାର, ଚେତନମନ ସହିତ ଅବଚେତନର ସୃଷ୍ଟି ହୁଏ ଦ୍ୱନ୍ଦ୍ୱ । ଜୀବନରେ ଦ୍ୱନ୍ଦ୍ୱ ଅନିବାର୍ଯ୍ୟ, ସେଇପରି ସାହିତ୍ୟରେ ମଧ୍ୟ ଏହାର ଚିରନ୍ତନ ମୂଲ୍ୟ ରହିଛି । ନାଟକ ହେଉଛି ଏକ ସଙ୍କଟର କଳା (Art of crisis) । ଏଇ ପରିପ୍ରେକ୍ଷୀରେ ମାନସିଂହ ଗୀତିନାଟ୍ୟ ଗୁଡ଼ିକୁ ବିଚାର କରାଯାଇପାରେ । 'ଗଜକବି ଉପେନ୍ଦ୍ର'ରେ ରାଜସିଂହାସନକୁ କେନ୍ଦ୍ର କରି ବ୍ୟକ୍ତି ମଧ୍ୟରେ ଲାଗିରହିଛି

ଦ୍ୱନ୍ଦ୍ୱ । କିନ୍ତୁ ଉପେନ୍ଦ୍ରଙ୍କ ମନରେ ରାଜଶକ୍ତି ଓ ବାଣୀ ଆରାଧନା ନେଇ ସୃଷ୍ଟି ହୋଇଛି ଦ୍ୱନ୍ଦ୍ୱ । ନାଟ୍ୟକାରଙ୍କର ସଫଳତା ଏଥିରେ ପରିଲକ୍ଷିତ ହୁଏ ନାହିଁ । ତା ପୁଷ୍ପିତାରେ କୁମାରୀ କିଶୋରୀ ମନରେ ଦେଖା ଦେଇଛି ଅନ୍ତର୍ଦ୍ୱନ୍ଦ୍ୱ । ଏଇ ଦିଗଟିକୁ ପ୍ରଦର୍ଶନ କରିବା ପାଇଁ ନାଟ୍ୟକାର ସମଗ୍ର ରଚନାକୁ ଗ୍ରନ୍ଥରେ ପକାଇଲାପରି ମନେହୁଏ । 'ପୂଜାରିଣୀ'ରେ ହୃଦୟ ହୃଦୟ ମଧ୍ୟରେ ଦ୍ୱନ୍ଦ୍ୱ ଦେଖା ଦେଇଛି । ସମାନ ବ୍ୟକ୍ତିଗତ ପ୍ରେମମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇ ଲକ୍ଷ୍ମୀର ମୃତ୍ୟୁର ଏଇ ସଂଘର୍ଷର ଅବସାନ ହୋଇଛି । 'ଦୁର୍ଭିକ୍ଷ'ରେ ସ୍ନେହ ଓ ସ୍ୱାର୍ଥ ମଧ୍ୟରେ ଦେଖା ଦେଇଛି ଦ୍ୱନ୍ଦ୍ୱ । ସାମୟିକ ଭାବରେ କେତେକ ଦୁର୍ଭିକ୍ଷ ପ୍ରପୀଡ଼ିତ ଚରିତ୍ରରେ ପଶୁ ପ୍ରବୃତ୍ତି ଓ ମାନବିକ ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱ ଦେଖା ଦେଇଛି । 'ବୁଦ୍ଧ-ଦୂତୀ'ରେ ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଯେଉଁ ସଂଘର୍ଷ ସୃଷ୍ଟି ହୋଇଛି ସେଥିରୁ ରାଜବାଳା ହେମମାଳାର ଅନ୍ତର୍ଦ୍ୱନ୍ଦ୍ୱ ଦେଖା ଦେଇଛି ।

ନାଟକର ଅନ୍ୟତମ ଉପାଦାନ ହେଉଛି ନାଟ୍ୟୋତ୍କଣ୍ଠା । ପ୍ରେକ୍ଷାଳୟରେ କିମ୍ବା ମୁକ୍ତ ରଙ୍ଗମଞ୍ଚରେ ଦର୍ଶକ ବସିରହି ଏକନିଷ୍ଠ ଚିତ୍ତରେ ନାଟ୍ୟରସ ଆସ୍ୱାଦନ କରିଥାଏ । ଏହି ରସ ଉପଭୋଗ ଅଖଣ୍ଡ ଭାବରେ ଗତିଶୀଳ କରିବା ଉଚିତ । ଏହା ନ ହେଲେ ଦର୍ଶକର ବିରକ୍ତିଭାବ ପ୍ରକାଶ ପାଏ । ଫଳରେ ନାଟକ ତା'ର ସଫଳତା ହରାଇବସେ । ଏଣୁ ନାଟ୍ୟୋତ୍କଣ୍ଠା ନାଟକର ନାଟକୀୟତାରେ ଅଧିକ ସହାୟକ ହୋଇଥାଏ । ଅଭିନୟ ପ୍ରତି ଦର୍ଶକର ମନକୁ ଏକନିଷ୍ଠ କରି ରଖିବାରେ ନାଟ୍ୟୋତ୍କଣ୍ଠା ସକ୍ଷମ ହୋଇଥାଏ । ଘଟଣାର କ୍ରମଗତିଶୀଳତା ସହିତ ଦର୍ଶକର ମନ ମଧ୍ୟରେ ସ୍ୱତଃ ପରବର୍ତ୍ତୀ ଘଟଣା ପାଇଁ ଉତ୍କଣ୍ଠା ସୃଷ୍ଟି ହୋଇଥାଏ । ଏହି ନାଟ୍ୟୋତ୍କଣ୍ଠା ନାଟକର ଶେଷ ଦୃଶ୍ୟ ପର୍ଯ୍ୟନ୍ତ ରହିପାରିଲେ ନାଟକ ହୁଏ ସଫଳ ଓ ଆଦୃତ । ଏଣୁ ନାଟ୍ୟକାରଙ୍କୁ ଏଥିପାଇଁ ଖୁବ୍ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । ଏଇ ପରିପ୍ରେକ୍ଷୀରେ ମାନସିଂହଙ୍କ ଗୀତିନାଟ୍ୟଗୁଡ଼ିକୁ ଆଲୋଚନା କରାଯାଇ ପାରେ । 'ପୂଜାରିଣୀ'ର ତୃତୀୟ ଦୃଶ୍ୟରେ ଦେବତା ଓ ଲକ୍ଷ୍ମୀଙ୍କର କଥୋପ-କଥନରେ ଯେଉଁ ଉତ୍କଣ୍ଠା ସୃଷ୍ଟି ହୋଇଛି ତା'ର ପରିଣତି ସେଇ ଦୃଶ୍ୟରେ ହିଁ ହୋଇଯାଇଛି । ପଞ୍ଚମ ଦୃଶ୍ୟରେ ଲକ୍ଷ୍ମୀଙ୍କୁ ଜ୍ୱର ହେବା ଓ ସୁନାର ରାଧାମୂର୍ତ୍ତି ଗଢ଼ାହେବା ବିଷୟରେ ଦର୍ଶକ ମନରେ ସାମାନ୍ୟ ଉତ୍କଣ୍ଠା ଯାହା ଉଦ୍ରେକ ହୋଇଛି । ରାଜକବି 'ଉପେନ୍ଦ୍ର'ରେ କୌଣସି ଉତ୍କଣ୍ଠା ନାହିଁ । ପୁଷ୍ପିତା'ରେ ମଧ୍ୟ ଅନୁରୂପ ପରିବେଶ ସୃଷ୍ଟି ହୋଇଛି । 'ବୁଦ୍ଧ ଦୂତୀ'ରେ ସାମାନ୍ୟ ନାଟ୍ୟୋତ୍କଣ୍ଠା ସୃଷ୍ଟି ହୋଇଥିଲେ ହେଁ ତାହା ନିଷ୍ପ୍ରଭ ହୋଇଯାଇଛି । 'ପୁଷ୍ପାଭିନୟ'ରେ କୌଣସି ନାଟକୀୟତା ନାହିଁ । ଦୁର୍ଭିକ୍ଷ'ରେ ନାଟ୍ୟୋତ୍କଣ୍ଠା ସୃଷ୍ଟି କରିବାରେ ମାନସିଂହ ପ୍ରତିଭାର କୌଣସି କଳାଗତ ଦୃଷ୍ଟି ଲକ୍ଷ୍ୟ କରାଯାଏ ନାହିଁ । ଏଗୁଡ଼ିକ 'ନାଟକ' ହୋଇ ନ

ଥିବାରୁ ମାନସିଂହଙ୍କ ଶିଳ୍ପୀମାନସ ପଟରେ ଏଗୁଡ଼ିକ ବିଶେଷ ଉତ୍ତୀର୍ଣ୍ଣ ହୋଇପାରି ନାହାନ୍ତି । ମାନସିଂହଙ୍କ 'ନଷ୍ଟନୀଡ଼', 'ଗୁଛ' ଏବଂ 'ବାରବାଟୀ' ନାଟକ ତ୍ରୟରେ ନାଟ୍ୟୋତ୍କର୍ଣ୍ଣ ସୃଷ୍ଟି ହୋଇଥିଲେ ହେଁ 'ନଷ୍ଟନୀଡ଼' ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଦାବୀ କରେ ।

ମାନସିଂହ ନିଜ ନାଟକଗୁଡ଼ିକରେ ସଙ୍ଗୀତର ବ୍ୟାପକ ପ୍ରୟୋଗ କରିଛନ୍ତି । ଏପରିକି 'ରାଜକବି ଉପେନ୍ଦ୍ର'ରେ ସମୁଦାୟ ୧୬ଟି ସଙ୍ଗୀତର ପ୍ରଯୋଜନା କରିଛନ୍ତି । କିନ୍ତୁ ଏଗୁଡ଼ିକ ବିଶେଷ ଉତ୍କର୍ଷ ଲାଭ କରିଥିଲା ଭଳି ମନେ ହୁଏ ନାହିଁ ବରଂ ନାଟକର ମୂଲ୍ୟ ହ୍ରାସ କରିଥାଏ । ମାନସିଂହଙ୍କ ସମୁଦାୟ ନାଟ୍ୟ ସାହିତ୍ୟର ସଙ୍ଗୀତ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ, ମାନସିଂହ ନିଜର କବିତ୍ୱ ଓ ଦେଶ ପ୍ରେମ ବୋଧର ପ୍ରକାଶ ପାଇଁ ବହୁପରିମାଣରେ ସଙ୍ଗୀତର ପରିକଳ୍ପନା କରିଛନ୍ତି । ସେ ନିଜେ ମୁଖ୍ୟତଃ କବି ଥିବାରୁ କବି ଜନୋଚିତ ସ୍ୱାଭାବିକ ପ୍ରକୃତି ତାଙ୍କର ନାଟ୍ୟକୃତି ଗୁଡ଼ିକରେ ଫଳିଫଳିତ ହୋଇପାରିଛି, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ନାଟକର ସଫଳତା ନିର୍ଭର କରେ ନାଟ୍ୟକାରର ଦେଶ-କାଳ-ପାତ୍ର ବାତାବରଣର ଯଥାର୍ଥ ଜ୍ଞାନ ଉପରେ । ଏଥିପାଇଁ ସ୍ରଷ୍ଟାର ସେଇଭଳି ଦୂର ଦୃଷ୍ଟି ଓ ଗଭୀର ଅଧ୍ୟୟନ ଶକ୍ତି ରହିବା ଉଚିତ । ଜଣେ ସୁଦକ୍ଷ କଳାକାର ଭାବରେ ନାଟ୍ୟକାର ହିଁ ଯଥାର୍ଥ ଭାବରେ ନାଟକରେ ସମୟର ପ୍ରାଣ ସ୍ପନ୍ଦନକୁ ଧରିରଖିବାର ସମର୍ଥ ହୋଇଥାଏ । ଐତିହାସିକ, ସାମାଜିକ, ରାଜନୈତିକ କିମ୍ବା ପୌରାଣିକ ନାଟକ ରଚନା କରିବାକୁ ହେଲେ ସେ ସମୟର ସାମାଜିକ ବାତାବରଣ ଓ ସମୟର ପ୍ରାଣ ସ୍ପନ୍ଦନକୁ ହୃଦୟଙ୍ଗମ କରିବାକୁ ପଡ଼ିଥାଏ । ମୋଟ ଉପରେ ସ୍ଥାନ-କାଳ ଓ ବାତାବରଣର ଐକ୍ୟ ବା ସଙ୍ଗତି ଉପରେ ନାଟକର ସଫଳତା ନିର୍ଭର କରିଥାଏ । ଏଇ ଦୃଷ୍ଟି କୋଣରୁ ବିଚାର କଲେ ମାନସିଂହ ନାଟ୍ୟ ସାହିତ୍ୟରେ ସ୍ଥାନ-କାଳ-ବାତାବରଣର ଐକ୍ୟରକ୍ଷା ପାଇଁ କେବଳ ଚେଷ୍ଟା କରାଯାଇଛି କିନ୍ତୁ ସମୟଗତ ଐକ୍ୟ ରକ୍ଷା କରାଯାଇ ପାରିନି ।

ନାଟକର ମଞ୍ଚମୂଲ୍ୟ ଦୃଷ୍ଟିରୁ ମାନସିଂହଙ୍କ 'ନଷ୍ଟନୀଡ଼', 'ବାରବାଟୀ' ଓ 'ଗୁଛ' ନାଟକତ୍ରୟ ଏବଂ 'ଶାସନଚକ୍ର', ଏକାଙ୍କିକାଟି ସଫଳ ସୃଷ୍ଟି ଭାବେ ବିବେଚିତ ହେବ । କିନ୍ତୁ ମୂକ ରାଣୀ, ଦୁର୍ଭିକ୍ଷ, ପୂର୍ଣ୍ଣିମା ଆଦି ଗୀତିନାଟ୍ୟଗୁଡ଼ିକ ମଞ୍ଚମୂଲ୍ୟ ଦୃଷ୍ଟିରୁ ସଫଳ ହେବେ ନାହିଁ, ଏଗୁଡ଼ିକ ଅଭିନୀତ ହୋଇଥିବା ମାନସିଂହ ନିଜେ ସ୍ୱୀକାର କରିଥିଲେ ମଧ୍ୟ ଏହାର ସଫଳତା ସମ୍ପର୍କରେ ସେ ନିରୁତ୍ତର ରହିଛନ୍ତି । ସେ ଯାହା ହେଉନା କାହିଁକି ଏଗୁଡ଼ିକର ମଞ୍ଚଗତ ମୂଲ୍ୟ ଅପେକ୍ଷା ସାହିତ୍ୟିକ ଉତ୍କର୍ଷ ଯେ ଅଧିକ ରହିଛି ଏହା ସର୍ବସମ୍ମତ ।

## ମାନସିଂହ ନାଟକାବଳୀର ବୈଶିଷ୍ଟ୍ୟ :—

ମାନସିଂହଙ୍କ ସମସ୍ତ ନାଟ୍ୟ କୃତିକୁ ଅନୁଶୀଳନ କଲେ ଜଣାଯାଏ ଯେ, ଏଗୁଡ଼ିକ ତିନୋଟି ବିଷୟ ଉପସ୍ଥାପନା କରିବା ପାଇଁ ଅଭିପ୍ରେତ । ଯଥା :— ଦେଶାତ୍ମବୋଧ ( ନଷ୍ଟନୀଡ଼, ବାରବାଟୀ, ଶାସନଚକ୍ର, ବୁଦ୍ଧ ଓ ବୁଦ୍ଧ-ଦୂତୀ) ନାଟକ । ଏହାକୁ ଐତିହାସିକ ଦୃଷ୍ଟିକୋଣରୁ ବିଗ୍ଚର କଲେ ଜଣାଯାଏ ଯେ, ମାନସିଂହ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ପ୍ରାୟ ଅଧିକାଂଶ ନାଟକ ରଚନା କରିଛନ୍ତି । ଏଣୁ ଉତ୍କଳୀୟ ମାନଙ୍କର ପୂର୍ବ ଐତିହ୍ୟ ଓ ଶୌର୍ଯ୍ୟ ବୀର୍ଯ୍ୟ ସମ୍ପର୍କରେ ସୂଚାଇ ଦେବା ସଙ୍ଗେ ସଙ୍ଗେ ହୃତ ଗୌରବକୁ ଫେରାଇ ଆଣିବା ନିମିତ୍ତ ଆହ୍ୱାନ ଜଣାଇଛନ୍ତି । ପ୍ରେମ ଓ ପ୍ରକୃତି ଚେତନା ମାନସିଂହ ସାହିତ୍ୟର ଅନ୍ୟ ଏକ ବିଶିଷ୍ଟ ବିଭବ, 'ରାଜକବି ଉପେନ୍ଦ୍ର' 'ପୂଜାରିଣୀ', 'ପୁଷ୍ପିତା,' 'ଦୁର୍ଭିକ୍ଷ' ଏବଂ 'ନଷ୍ଟନୀଡ଼' ପ୍ରଭୃତି ସୃଷ୍ଟିଗୁଡ଼ିକ ଏ ଦୃଷ୍ଟିରୁ ଏକ ଏକ ସଫଳ ସୃଷ୍ଟି, ଏପରିକି ରୋମାଣ୍ଟିକ୍ ଚେତନାର ଉଦ୍ଦୀପନ ବିଭାବରୂପେ ଜ୍ୟୋତ୍ସ୍ନାସ୍ନାତ ରଜନୀ ଓ ସୌନ୍ଦର୍ଯ୍ୟ ବିମଣ୍ଡିତ ସବୁଜ ଅରଣ୍ୟାନୀର ଦୃଶ୍ୟ ସବୁର ସଂଯୋଜନା ବେଶ୍ ଲକ୍ଷ୍ୟଣୀୟ । ରୋମାଣ୍ଟିକ ମନର ଆନ୍ତରିକ ଭାବଚେତନାର ସଫଳ ରୂପାୟନ ଏସବୁଥିରୁ ସ୍ପଷ୍ଟ ପ୍ରତିବିମ୍ବିତ ହୋଇଥାଏ । କବି ବ୍ୟକ୍ତିଗତ ଭାବରେ ଜଣେ ବିଦଗ୍ଧ ପ୍ରେମିକ ଥିବାରୁ ଏଭଳି ସୃଷ୍ଟିର ପରିକଳ୍ପନା ସମ୍ଭବ ହୋଇଅଛି । ମାନସିଂହ ସୃଷ୍ଟିରେ ଏକ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ଯେଉଁ ସ୍ରଷ୍ଟା ମାନସରୁ 'ଧୂପ' ଭଳି କବିତା ଗ୍ରନ୍ଥ ସମ୍ଭବ ହୋଇପାରେ ସେ କବି 'ବୁଦ୍ଧ' ଭଳି ଦାର୍ଶନିକ ଚେତନା ସବଳିତ ନାଟକର ବି ପରିକଳ୍ପନା କରିପାରେ; ଏହା ଭାବିଲେ ବିସ୍ମିତ ହେବାକୁ ପଡ଼େ । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ, ମାନସିଂହ ସାହିତ୍ୟରେ ପ୍ରେମର ଯେଉଁ ଉଦ୍‌କୂଳପ୍ଳାବନ ବହିଯାଇଛି ସେଥିରେ ଧର୍ମ ଓ ଦେଶପ୍ରୀତିର ଜୟଗାନ ନିନାଦିତ ହୋଇ ନାହିଁ ବରଂ ନିଷ୍ପ୍ରଭ ହୋଇଯାଇ ରୋମାଣ୍ଟିକ୍ ଚେତନାର ଶୁଭଶଙ୍ଖ ବାଜି ଉଠିଛି । ଏହାହିଁ ମାନସିଂହ ସୃଷ୍ଟିମାନଙ୍କର ବୈଶିଷ୍ଟ୍ୟ ।

## ମାନସିଂହଙ୍କ ଗୀତିନାଟ୍ୟ-ଏକ ତୁଳନାତ୍ମକ ଚିତ୍ର—

ଆଧୁନିକ ଓଡ଼ିଆ ସାହିତ୍ୟରେ କାବ୍ୟ ନାଟିକାର ସୃଷ୍ଟି ଯେ, ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ପ୍ରଭାବରୁ ସମ୍ଭବ ହୋଇ ପାରିଛି ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ଏହାର ପ୍ରମାଣ ସ୍ୱରୂପ ରବୀନ୍ଦ୍ରନାଥଙ୍କ କେତୋଟି ରଚନା ସହିତ ଓଡ଼ିଆ କାବ୍ୟନାଟିକାଗୁଡ଼ିକର ଏକ ତୁଳନାତ୍ମକ ବିଚାର କରାଗଲା । ରବୀନ୍ଦ୍ରନାଥ 'ବାଲ୍ମୀକି ପ୍ରତିଭା'ରେ ବାଲ୍ମୀକିଙ୍କ ପ୍ରତିଭାକୁ ବଳିଷ୍ଠ କରି ଗଢ଼ିଛନ୍ତି । କବି ବାଲ୍ମୀକିଙ୍କ ପ୍ରତି ଚଞ୍ଚଳାଙ୍କର ପ୍ରଲୋଭନ ଓ ସରସ୍ୱତୀଙ୍କର ସ୍ନେହମୟ ସମ୍ଭାଷଣ କଥା ଉଲ୍ଲେଖ

କରିଛନ୍ତି । ଦସ୍ୟୁ ରତ୍ନାକର ସତ୍ୟର ସନ୍ଧାନରେ ଅରଣ୍ୟାନୀରେ ଘୂରି ବୁଲୁଥିବା ସମୟରେ ତାଙ୍କ ଅନୁଚର ସହ-ଦସ୍ୟୁମାନେ ତାଙ୍କୁ ସମାଲୋଚନା କରିବାକୁ ପଛେଇ ନାହାନ୍ତି । ଆହୁରି ମଧ୍ୟ ଏଇ ପରିସ୍ଥିତିର ସୁଯୋଗ ନେଇ ଲକ୍ଷ୍ମୀ ତାଙ୍କୁ ଐଶ୍ୱର୍ଯ୍ୟର ପ୍ରଲୋଭନ ଦେଖାଇଛନ୍ତି କିନ୍ତୁ ସେ ସବୁ ଅପଚେଷ୍ଟା ମାତ୍ର । ଧନଲୁବ୍ଧ ଦସ୍ୟୁପାଖରେ ଧନର ପ୍ରଲୋଭନ ପ୍ରତିହତ ହୋଇଛି । ବାଲ୍ମୀକି କହିଛନ୍ତି :—

"କି,ଏନେଛି ଧନମାନ ତାହା ଯେ ଗୃହିନା ପ୍ରାନ୍‌ଦେବୀ ଗୋ ଗୃହିନା ଗୃହିନା ମଣିମୟ ଧୂଲିରାଶି ଗୃହିନା/ତାହା ଲସ୍ୱେ ସୁଖୀ ଯାରା ହୟ ହୋକ୍ ହୟ ହୋକ୍ ଆମି ଦେବୀ ସେ ସୁଖ ଗୃହିନା,/ଯାଓ ଲକ୍ଷ୍ମୀ ଅଲକାୟ, ଯାଓ ଲକ୍ଷ୍ମୀ ଅମରାୟ ଏ ବନେ ଆସୋନା ଆସୋନା/ଆସୋନା ଏ ଦୀନଜନ କୁଟୀରେ ଯେ ବୀଣା ଶୁନେଛି କାନେ ମନପ୍ରାନ୍ ଆଛେ ଭୋର/ଆର କିଛୁ ଚାହିନା ଚାହିନା ।" (ବାଲ୍ମୀକି ପ୍ରତିଭା)

ଠିକ୍ ଏଇ ସମୟରେ ସରସ୍ୱତୀ ବାଲ୍ମୀକିଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି :—

"ଆମି ବୀଣାପାଣି ତୋରେ ଏସେଛି ଶିଖାତେ ତୋରଗାନେ ଗଲେ ଯାବେ ସହସ୍ର ପାଷାଣ ପ୍ରାଣ/ସେ ରାଗିଣୀ ଶୁନେ ତୋର ଗେଲେଛେ କଠୋର ମନ ସେ ରାଗିଣୀ ତୋରକଣ୍ଠେ ବାଜିବେରେ ଅନୁକ୍ଷଣ,

× × × ×

ଏଇନେ ଆମାର ବୀଣା, ଦିନୁ ତୋରେ ଉପହାର ଯେ ଗାନ ଗାହିତେ ସାଧ, ଧ୍ୱନିବେ ଇହାର ତାର ।"

ସରସ୍ୱତୀ କବିଙ୍କ ଉପରେ ଆଶିଷ ବର୍ଷଣ କରିଛନ୍ତି । ଆତ୍ମହରା ହୋଇ କବି ସରସ୍ୱତୀଙ୍କର ବନ୍ଦନା କରିଛନ୍ତି । ଅନ୍ତର ଭିତରେ ଏକ ବିମଳ ଆନନ୍ଦ ଅନୁଭବ କରିଛନ୍ତି । ସେଠି ଦସ୍ୟୁବୃତ୍ତି ଜନିତ ଧନଧାନ୍ୟର ଆକର୍ଷଣ ନାହିଁ; ସମ୍ପଦ ଲାଭର ଅଭୀପ୍ସା ନାହିଁ । ଅଛି ସତ୍ୟ ସନ୍ଧାନ ଆଉ ସତ୍ୟାଗ୍ରହର ଉତ୍କୂଳ ଆକାଂକ୍ଷା ।

ବଙ୍ଗ କବି ବିହାରୀଲାଲ ଚକ୍ରବର୍ତ୍ତୀଙ୍କ 'Lynio'ର ପ୍ରଭାବରେ ପ୍ରଭାବିତ ହୋଇଥିବା କଥା ରବୀନ୍ଦ୍ରନାଥ ସ୍ୱୀକାର କରିଛନ୍ତି । ରବୀନ୍ଦ୍ରନାଥଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ପରବର୍ତ୍ତୀ କାଳରେ ପଲ୍ଲୀକବି ନନ୍ଦ କିଶୋର ବଳ, ରାଧାମୋହନ ଗଡନାୟକ ଓ କବି ମାନସିଂହ ଯଥାକ୍ରମେ 'ନର୍ତ୍ତକୀ', 'କାଳିଦାସ' ଓ 'ରାଜକବି ଉପେନ୍ଦ୍ର'ର ସୃଷ୍ଟି ପରିକଳ୍ପନା କରିଛନ୍ତି ଏବଂ ଏ ଦିଗରେ ସଫଳ ମଧ୍ୟ ହୋଇଛନ୍ତି । 'ନର୍ତ୍ତକୀ'ର ମୁଖବନ୍ଧରେ କବି ଲେଖିଛନ୍ତି :—

"ଯାଆନ୍ତୁ କମଳା ସୁଖ-ସୌଧେ ସଖୀଗଣ
ଦରିଦ୍ର କୁଟୀରେ ତବ ଯାପିବି ଜୀବନ ।
ସାରସ୍ୱତ ଭଣ୍ଡାରରୁ କବୀନ୍ଦ୍ର ବନ୍ଦିତା
ବାଛି ଦିଅ ଭାରତୀ ଗୋ ଦୁର୍ଲଭ କବିତା ।"

କବି ରାଧାମୋହନ ଗଡ଼ନାୟକଙ୍କ 'କାଳିଦାସ' କାବ୍ୟନାଟିକାରେ ଏହା ଅଧିକ ମାର୍ମିକ ଓ ହୃଦୟସ୍ପର୍ଶୀ ହୋଇପାରିଅଛି । ଏଥିରେ ରବୀନ୍ଦ୍ରନାଥ 'ବାଲ୍ମୀକି ପ୍ରତିଭା'ରେ ଯେପରି ବାଲ୍ମୀକଙ୍କ ପ୍ରତିଭାକୁ ଆଦର୍ଶ କୋଟୀରେ ଉପନୀତ କରାଇ ପାରିଛନ୍ତି ସେଇପରି ଗଡ଼ନାୟକ 'କାଳିଦାସ' ଚରିତ୍ରକୁ ଏକ ମହନୀୟ ଚରିତ୍ର ରୂପେ ବର୍ଣ୍ଣନା କରିଛନ୍ତି । ଧନ ସମ୍ପଦ ମଣିଷକୁ ଶାନ୍ତି ପ୍ରଦାନ କରିପାରେ ନାହିଁ । ଯାହା ଶାଶ୍ୱତ ତାହା ଯେତେ କଷ୍ଟଲବ୍ଧ ହେଲେ ହେଁ ସେଥିରୁ ମଣିଷ ପରମ ତୃପ୍ତି ଲାଭ କରିପାରେ । ଅଳୀକ ସୁଖ ସୌନ୍ଦର୍ଯ୍ୟ ପଛରେ ମଣିଷ ଧାଇଁ "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର"ରେ ପରିଣତ ହୁଏ । କିନ୍ତୁ ସତ୍ୟର ଜ୍ୟୋତି ଚିରଦିନ ଦେଦୀପ୍ୟମାନ ହୋଇ ରହିଯାଏ । କାଳିଦାସ ଦୁଃଖ କଷ୍ଟରେ ପଡ଼ିଥିବା ସମୟରେ ଲକ୍ଷ୍ମୀ ତାଙ୍କୁ ଯେତେ ଐଶ୍ୱର୍ଯ୍ୟର ପ୍ରଲୋଭନ ଦେଖାଇଥିଲେ ହେଁ ସେ ତାକୁ ଉପେକ୍ଷା କରିଛନ୍ତି । କାରଣ ଯାହା ଶ୍ରେୟ ତାକୁ ହିଁ କବି କାଳିଦାସ ବରି ନେଇଛନ୍ତି । ପ୍ରେୟ କେବଳ ସାମୟିକ ଶାନ୍ତି ଦେଇପାରେ କିନ୍ତୁ ଏହା ଶାଶ୍ୱତ ନୁହେଁ । ଏଣୁ କବି ସରସ୍ୱତୀଙ୍କର ଆବାହନ କରିଛନ୍ତି । ସରସ୍ୱତୀ ଏଥିରେ ପ୍ରୀତ ହୋଇ କହିଛନ୍ତି :—

"ବତ୍ସମୋର, ଭକ୍ତମୋର ଭୁଲିନାହୁଁ ମୋତେ
ପ୍ରୀତ ମୁହିଁ ହୋଇଛୁ ତୋ ପରେ,
କହିଥିଲି ଯେଉଁ ବୀଣା ଏଇମୋର କରେ
ଦେଉଅଛୁ ତୋତେ ଆଜି ଯୋଗ୍ୟ ଯେଣୁ ତୁହି
ନେଇ ଏହା ବଜାଅ ମଧୁରେ, ମୁଗ୍‌ଧ ହେଉ ନିଖିଳ ଜଗତ
ତୋର ସେହି ବୀଣାର ଝଙ୍କାରେ ।" (କାଳିଦାସ)

କବି ମାନସିଂହ 'ରାଜକବି ଉପେନ୍ଦ୍ର'ରେ ଠିକ ଅନୁରୂପ ଚିତ୍ର ଆଙ୍କିଛନ୍ତି । କଳୁଷିତ ରାଜସିଂହାସନର ଗୃହଯୁଦ୍ଧରୁ ଶାନ୍ତି ପାଇବା ପାଇଁ ଉପେନ୍ଦ୍ର ଘୋର ଅରଣ୍ୟକୁ ପଳାୟନ କରିଛନ୍ତି ଓ ପ୍ରକୃତିର ସୌନ୍ଦର୍ଯ୍ୟରେ ମୁଗ୍‌ଧହୋଇ ଉଠିଛନ୍ତି । କିନ୍ତୁ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ 'ରାଜଲକ୍ଷ୍ମୀ' ସେଠାରେ ଉପସ୍ଥିତ ହୋଇ ତାଙ୍କୁ ଐଶ୍ୱର୍ଯ୍ୟ ଓ କ୍ଷମତାର ପ୍ରଲୋଭନ ଦେଖାଇଛନ୍ତି । କିନ୍ତୁ କବି ଉପେନ୍ଦ୍ର ଏହାକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଛନ୍ତି । ଏଥିରେ 'ରାଜଲକ୍ଷ୍ମୀ' କ୍ଷୁବ୍‌ଧହୋଇ ପ୍ରତ୍ୟାବର୍ତ୍ତନ କରିଛନ୍ତି, ଏହାପରେ ଉପେନ୍ଦ୍ରଭଞ୍ଜ ଶୁଣିପାରିଛନ୍ତି ବୀଣାପାଣିଙ୍କର

ବୀଣାର ରାଗିଣୀ । ଫଳରେ ସେ ପ୍ରମତ୍ତ ହୋଇ ଉଠିଛନ୍ତି ଓ ଠିକ୍ ଏଇ ସମୟରେ ବୀଣାପାଣି ତାଙ୍କର ନିକଟସ୍ଥ ହୋଇ ତାଙ୍କ ବୀଣାଟିକୁ ଉପେନ୍ଦ୍ରଙ୍କୁ ପ୍ରଦାନ କରିଛନ୍ତି :

"ଦେଲି ଆଜ ତୋତେ ସେଇ ମୋର ବୀଣା
ଆଜ ହେଉ ବାପ ଗୁଞ୍ଜି ତୋ ପ୍ରବୀଣା
ଛାଡ଼ିଅଛୁ ରାଜ୍ୟ ରାଜସିଂହାସନ
ବସିଅଛୁ ସୁଖେ ଦରିଦ୍ର ଆସନ ।" (ରାଜକବି ଉପେନ୍ଦ୍ର)

'ରାଜଲକ୍ଷ୍ମୀ' ଓ ସରସ୍ୱତୀଙ୍କ ମଧ୍ୟରୁ ଉପେନ୍ଦ୍ରଙ୍କ ଜୀବନରେ ସରସ୍ୱତୀଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଛି । କବିର ବିପୁଳ ଗୌରବ ସେଇଠି । ସେଠି ଇନ୍ଦ୍ରପୁରୀର ଆକର୍ଷଣ ନାହିଁ ; ଅଛି ନନ୍ଦନ କାନନର ବିମୋହନ ମନ୍ତ୍ର । କବି ତା'ରି ତାନରେ ହୁଏ ମୁଗ୍‌ଧ, ହୁଏ ଉନ୍ମତ୍ତ । କ୍ଷମତାର ମୋହ, ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ତାହା ପକ୍ଷରେ ଅସାର ହୋଇଉଠେ ।

ରବୀନ୍ଦ୍ରନାଥଙ୍କ 'କଚ ଦେବଯାନୀ', 'ବିଦାୟ ଅଭିଶାପ' 'କର୍ଣ୍ଣ-କୁନ୍ତୀ ସଂବାଦ' 'ଚିତ୍ରାଙ୍ଗଦା', 'ଗାନ୍ଧାରୀର ଆବେଦନ' ପ୍ରଭୃତି ଗୀତିନାଟ୍ୟଗୁଡ଼ିକ ଓଡ଼ିଆ ସାହିତ୍ୟରେ କବିମାନଙ୍କୁ ବହୁଭାବରେ ପ୍ରଭାବିତ କରିଛି । 'କଚ ଦେବଯାନୀ' ଅବଲମ୍ବନରେ ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଉପେକ୍ଷିତା' 'ଗାନ୍ଧାରୀର ଆବେଦନ' ଅନୁସରଣରେ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ଗାନ୍ଧାରୀର ଆଶୀର୍ବାଦ' କବିତା ଓ ରବୀନ୍ଦ୍ରନାଥଙ୍କ ଗୀତିନାଟ୍ୟ 'ଚିତ୍ରାଙ୍ଗଦା' ଦ୍ୱାରା ପ୍ରଲୋଭିତ ହୋଇ ମାନସିଂହ 'ପୁଷ୍ପିତା' କାବ୍ୟ-ନାଟିକାର ପରିକଳ୍ପନା କରିଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଚିନ୍ତାଧାରା ଏପରି ପରିବ୍ୟାପ୍ତ ଯେ, "ଯେଉଁ କବି ଯେଉଁଠି ତାଙ୍କ ସୃଷ୍ଟିର ଯେଉଁ ଅଂଶଟିକୁ ଗୋଟାଇ ଧରିଛନ୍ତି ସେ ସେଥିରେ ଚୂନବାଲି ଗୋଳି ଏକ ସୁନ୍ଦର ସୌଧ ନିର୍ମିତରେ ତୋଳି ପାରିଛନ୍ତି" ଏଇଠି ହିଁ ବିଶ୍ୱକବି ନାମର ସାର୍ଥକତା । ମାନସିଂହ ରବୀନ୍ଦ୍ରନାଥଙ୍କ କାବ୍ୟିକ ଭାବଚେତନା ଦ୍ୱାରା ଉଦ୍‌ବୁଦ୍ଧ ହୋଇ 'ରାଜକବି ଉପେନ୍ଦ୍ର', 'ଉପେକ୍ଷିତ' ଓ 'ପୁଷ୍ପିତା' ଆଦି ସୃଷ୍ଟି କରିଥିଲେ ହେଁ କବିଙ୍କର ମୌଳିକତା କ୍ଷୁନ୍ନ ହୋଇନାହିଁ ।

## ସମଧର୍ମୀ ଓଡ଼ିଆ ଗୀତିନାଟ୍ୟରେ ମାନସିଂହଙ୍କ ସ୍ଥାନ—

ଆଧୁନିକ ଓଡ଼ିଆ ସାହିତ୍ୟରେ ମାନସିଂହଙ୍କ ପ୍ରତିଭା ସର୍ବଜନ ବିଦିତ । ସାହିତ୍ୟର ଏପରି କୌଣସି ବିଭାଗ ନାହିଁ ଯେଉଁଥିରେ କି ମାନସିଂହଙ୍କ ଲେଖନୀ ତାକୁ ସ୍ପର୍ଶ କରି ପାରିନାହିଁ । ସ୍ରଷ୍ଟାର ଧର୍ମ ସୃଷ୍ଟି କରିଯିବା କାହାରି ନିନ୍ଦା ପ୍ରଶଂସାକୁ ଅପେକ୍ଷା ନକରି । ଏଇ ଦୃଷ୍ଟିରୁ ଗଣକବି ବୈଷ୍ଣବ ପାଣି ଓ ସମସାମୟିକ ବାଲକୃଷ୍ଣ ମହାନ୍ତି, କୃଷ୍ଣ ପ୍ରସାଦ ବସୁ, ଗୋପାଳ ଦାସ ପ୍ରଭୃତି ଯେଉଁ କେତେକ ଗୀତିନାଟ୍ୟକାର

ଗୀତିନାଟ୍ୟମାନ ରଚନା କରୁଥିଲେ ସେଥିରେ ସେମାନେ ସାହିତ୍ୟିକ ମୂଲ୍ୟ ଅପେକ୍ଷା ଜନମନ ହରଣ କରିବା ପାଇଁ ନାଟକ ଗୁଡ଼ିକୁ ଅଧିକ ଭାବରେ ଲୋକଧର୍ମୀ କରୁଥିଲେ । କିନ୍ତୁ ଏହାର ପରିବର୍ତ୍ତନ ଆଣି ପ୍ରଥମ ଥର ପାଇଁ ମାନସିଂହ ଓଡ଼ିଆ ସାହିତ୍ୟରେ ଗୀତିନାଟ୍ୟ ଗୁଡ଼ିକୁ ସାହିତ୍ୟିକ ଓ କାବ୍ୟିକ ମୂଲ୍ୟ ଦେବାରେ ସକ୍ଷମ ହେଲେ । ମାନସିଂହ ଏଣୁ ଏହି ଚେତନାର ପ୍ରଥମ ପ୍ରବର୍ତ୍ତକ ଭାବେ ଓଡ଼ିଆ ସାହିତ୍ୟରେ ସମ୍ମାନ ଦାବୀ କରନ୍ତି । ପରେ ଏହି ଧାରାକୁ ଅନୁସରଣ କରି ରାଧାମୋହନ ଗଡ଼ନାୟକ, ଜ୍ଞାନୀନ୍ଦ୍ର ବର୍ମା, କୁଞ୍ଜ ବିହାରୀ ଦାଶ, ପ୍ରାଣକୃଷ୍ଣ ସାମଲ ପ୍ରମୁଖ ସ୍ରଷ୍ଟାଗଣ ବହୁ କାବ୍ୟନାଟିକା ରଚନା କରିଛନ୍ତି । ଏଣୁ ସମଧର୍ମୀ ଆଧୁନିକ ଓଡ଼ିଆ ଗୀତିନାଟ୍ୟ ସାହିତ୍ୟରେ ମାନସିଂହଙ୍କ ସ୍ଥାନ ଯେ ବହୁ ଊର୍ଦ୍ଧ୍ୱରେ ଏହା କହିଲେ ବାହୁଲ୍ୟ ହେବନି ।

## ସହାୟକ ପୁସ୍ତକାବଳୀ :—


୧ । ସଂସ୍କୃତ ସାହିତ୍ୟର ଇତିହାସ—ଡକ୍ଟର ଜାନକୀ ରାହୁତ ।
୨ । ,, ,, ,, —ଡକ୍ଟର ଗୋପୀନାଥ ମହାପାତ୍ର ।
୩ । Survey of Sanskrit Literature—C. Kunhan Raja.
୪ । Advanced Literary Essays—J. N. Mundra and C. L Sahni.
୫ । Quintnessence of Literary Essays—W. R. Goodman.
୬ । ମାନସିଂହ ସ୍ମରଣିକା— ପ୍ରକାଶକ—ଏକାମ୍ର ଥିଏଟର୍ସ ।
୭ । ଗଣକବି ବୈଷ୍ଣବ ପାଣି ସ୍ମରଣିକା—ପ୍ରକାଶକ—କୃତି ଅର୍ଚ୍ଚନା ସଂସଦ ।
୮ । ଆଧୁନିକ ଓଡ଼ିଆ ସାହିତ୍ୟ—ଡକ୍ଟର ନିତ୍ୟାନନ୍ଦ ଶତପଥୀ
୯ । ମାନସିଂହ ଗ୍ରନ୍ଥାବଳୀ (ଦ୍ୱିତୀୟ ଭାଗ)—ଗ୍ରନ୍ଥ ମନ୍ଦିର ।
୧୦ । ଓଡ଼ିଆ ସାହିତ୍ୟରେ ପ୍ରକାଶିତ ବିଭିନ୍ନ 'କାବ୍ୟ ନାଟିକା' ସମୂହ ।




# ପରମ୍ପରାର ଆଲୋକରେ ମାନସିଂହ-ସାହିତ୍ୟ

**କୁଳମଣି ଜେନା**

॥ ୧ ॥

ମାନସିଂହଙ୍କ ପରମ୍ପରା ବିଶ୍ୱାସ ମୁଖ୍ୟତଃ ଇତିହାସ-ଭିତ୍ତିକ । ଅତୀତର ଯାହା କିଛି ସୁନ୍ଦର ତା'ର ଆରାଧନା ହିଁ ମାନସିଂହଙ୍କ ପରମ୍ପରା ବିଶ୍ୱାସର ମୁଖ୍ୟ ବୈଶିଷ୍ଟ୍ୟ । ଇଂରାଜୀ ସାହିତ୍ୟର ରୋମାଣ୍ଟିକ କବିମାନଙ୍କ ପରି ମଧ୍ୟଯୁଗୀୟତା (Medievalism) ମାନସିଂହ ସାହିତ୍ୟକୁ ବହୁଳାଂଶରେ ପ୍ରଭାବିତ କରିଛି । ଅତୀତ ପ୍ରତି ମାନସିଂହଙ୍କ ଦୃଷ୍ଟିଭଙ୍ଗୀର ବର୍ଣ୍ଣନା କରି କବି ସଚ୍ଚିଦାନନ୍ଦ ରାଉତରାୟ କହିଛନ୍ତି—"ସେତେବେଳକୁ ସବୁଜର ମାନଚନ୍ଦ ଫିକା ପଡ଼ି ଆସୁଥାଏ । ଉପା ଉପା ଭାବର ବାଦଲ ଭିତରେ ସେ ଖୋଜି ବୁଲିଲେ ଖାଣ୍ଟି ଓଡ଼ିଆ ଇଡ଼ିୟମ୍ ସନ୍ଧାନରେ । ଠାବ କଲେ, ଖାଲି ଠାବ କଲେ ନୁହଁ, ମଞ୍ଚ ପ୍ରବେଶ କରାଇଲେ କେତୋଟି ଖାଣ୍ଟି ଓଡ଼ିଆଣୀ ମୁହଁକୁ । ସବୁଜ ପତ୍ର, ନୀଳ ପତ୍ର ଓ ଜାଫରାନ୍ ପତ୍ର ବଦଳରେ ଆଣି ଠିଆ କରାଇଲେ ସାଧବ ଝିଅ, କେମା ପ୍ରଭୃତି କେତୋଟି ପରିଚିତ ଅଥଚ ସମ୍ପୂର୍ଣ୍ଣ ମନଗଢ଼ା ଚନ୍ଦ ପ୍ରତିମାକୁ । ସେଉଁମାନେ ଥିଲେ ଏକାନ୍ତ ଭାବରେ କଳ୍ପନାଶ୍ରୟୀ । × × × ସେ ଅତୀତ ଆଡ଼କୁ ଆଖି ପକାଇଲେ, ଯେଉଁ ଦୃଷ୍ଟି ସେ ଶେଷ ପର୍ଯ୍ୟନ୍ତ ଆଉ ଫେରାଇ ଆଣି ପାରିଲେ ନାହିଁ । ମାନସିଂହ ଥିଲେ ସେଇ ମୁହୂର୍ତ୍ତ—ଯାହା ଏକ ଐଶ୍ୱର୍ଯ୍ୟମୟ ଅତୀତକୁ ଏକ ବିଚ୍ଛିନ୍ନ ଦୂରତ୍ୱରୁ ନିରୀକ୍ଷଣ କରିବାର ଆନନ୍ଦ ଓ ଅଭିମାନରେ ପୂର୍ଣ୍ଣ ଅଥଚ ତାହା ବର୍ତ୍ତମାନର ଯନ୍ତ୍ରଣା ଓ ଜଟିଳତାରୁ ଯଥା ସମ୍ଭବ ବିଚ୍ଛିନ୍ନ ହୋଇ ରହିବାକୁ ନିଜର କାବ୍ୟ-ଧର୍ମ ବୋଲି ମନେକରି ଆସିଛି ।"

ମାନସିଂହ ଥିଲେ ପରମ୍ପରାର ଜଣେ ଭାବ ପ୍ରବଣ ପ୍ରେମିକ, ଇତିହାସର ଆବର୍ଜନା ନୁହଁ ଉଦାର ପ୍ରେରଣା ହିଁ ତାଙ୍କୁ ଅତୀତର ଭିଟା ମାଟିକୁ ଭଲ ପାଇବାର ପ୍ରେରଣା ଯୋଗାଇ ଥିଲା । ଏ ସବୁ ସତ୍ତ୍ୱେ ମାନସିଂହ ଯେ ବର୍ତ୍ତମାନର ଚଳଣିରେ

ବିକ୍ଷୁବ୍ଧ ଥିଲେ ତାହା ନୁହେଁ । ବରଂ ସେ ବିଶ୍ୱାସ କରୁଥିଲେ ଯେ ଅତୀତର ପୃଷ୍ଠପୋଷକତାରେ ଭବିଷ୍ୟତ ପ୍ରଗତି ନିର୍ଭରଶୀଳ, ପରଂପରା ଉପରେ ଆଧୁନିକତାର ପ୍ରତିଷ୍ଠା ସମ୍ଭବ ।

ତାଙ୍କ ପରମ୍ପରାର ମୁଖ୍ୟ ବୈଶିଷ୍ଟ୍ୟ ଥିଲା ଐତିହ୍ୟର ପୁନରୁତ୍ଥାନ—ଅତୀତ ପ୍ରତି ଏକ ମୋହଭରା ଗୃହାଣୀ । ବିଶିଷ୍ଟ କବି ଇଲିଅଟ୍‌ଙ୍କ ମତରେ ଏକ କବି ପକ୍ଷରେ ପରମ୍ପରାର ଅର୍ଥ ପ୍ରଥମତଃ ଏକ ଇତିହାସ ଜ୍ଞାନ ଯାହା ଅତ୍ୟନ୍ତ ଅପରିହାର୍ଯ୍ୟ ।' (୧) ପୁନଶ୍ଚ ଇଲିଅଟ କହନ୍ତି-'ଉତ୍ତରାଧିକାର ସୂତ୍ରରେ ଯେଉଁସବୁ ଐତିହ୍ୟ, ସଂସ୍କୃତି, କଳା-କୌଶଳ, ସାମାଜିକ ପ୍ରକୃତି ଓ ଅଭ୍ୟାସ, ଭାବ ପ୍ରକାଶର ରୀତି ପ୍ରଭୃତି ଜଣେ କବି ଅତୀତଠାରୁ ପ୍ରାପ୍ତ ହୋଇଥାଏ । ବ୍ୟାପକ ଅର୍ଥରେ ତାହା ହିଁ ତା'ର ପରମ୍ପରା ଅଟେ ।' (୨) ଓଡ଼ିଶୀ ଭୂଇଁରୁ ଏ ସମସ୍ତଙ୍କୁ ଶିକ୍ଷା କରିଥିଲେ ମାନସିଂହ । ତାଙ୍କ ଭଳି ଜଣେ ଖାଣ୍ଟି ଓଡ଼ିଆ ବାସ୍ତବରେ ବିରଳ ।

ମାନସିଂହଙ୍କର ପରମ୍ପରାନୁରକ୍ତି ମୁଖ୍ୟତଃ ତାଙ୍କର ସ୍ୱାଧୀନ ମନୋବୃତ୍ତି ଓ ଜାତୀୟ ଚେତନାରୁ ଉଦ୍‌ଭବ ହୋଇଥିଲା । ଦେଶ ଓ ଜାତି ପ୍ରତି ତାଙ୍କ ଅନ୍ତରରେ ଉନ୍ମାଦନା ଥିଲା ଖୁବ୍ ବେଶୀ, ଜାତୀୟ ପ୍ରୀତିରୁ ତାଙ୍କ ମନରେ ଅତୀତ ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା । ପୁନଶ୍ଚ ଏହି ଅତୀତ ଥିଲା ପୁରାତନ ଉତ୍କଳର ଗୌରବାବହ ଅତୀତ । ଉତ୍କଳର ନଦନଦୀ କାନନ ପର୍ବତ ସର୍ବୋପରି ଏକ ସମୃଦ୍ଧ ସମାଜର ସୁଖ, ଦୁଃଖ, ଆନନ୍ଦ, ଅଶ୍ରୁ, ବେଦନା ଓ ବେପଥୁର ତରଙ୍ଗାୟିତ ମୂର୍ଚ୍ଛନା ଓ ତତ୍‌ସଂଶ୍ଳିଷ୍ଟ ବହୁ ଶ୍ରେଷ୍ଠ ବଡ଼ ଚରିତ୍ରର ସଫଳ ରୂପାୟନ ମାନସିଂହ ସୃଷ୍ଟିର ଉପଜୀବ୍ୟ ହୋଇ ପଡ଼ିଥିଲା । ଏହା ପୂର୍ବରୁ ଗ୍ରୁଏତ ରାଧାନାଥଙ୍କ କାବ୍ୟକୃତି ଭିତରେ ବିଦେଶୀ କଥାବସ୍ତୁ ସହ ମଧ୍ୟଯୁଗୀୟ ଚରିତ୍ରମାନଙ୍କର ଜଳକ୍ରୀଡ଼ା ଦେଖିବାକୁ ମିଳିଥିଲା । ଏଥିସହ ଚିଲିକା, ମହାନଦୀ ଓ ବାରବାଟୀକୁ ନେଇ କେତେ ଯେ କାବ୍ୟ କବିତା ଲେଖାଗଲା ତାର ଇୟତ୍ତା ନାହିଁ । ଅତୀତର ସିଂହଦ୍ୱାରୁ ଜାଗୃତିର ମନ୍ତ୍ରବାଣୀ ଶୁଣିବାକୁ ମିଳିଲା—ବାରବାଟୀର ପ୍ରେକ୍ଷାପଟ୍ଟରୁ 'ଉଠ କଙ୍କାଳ'ର ଆହ୍ୱାନ ଜରାଗ୍ରସ୍ତ ଓଡ଼ିଆଙ୍କ ପ୍ରାଣରେ ନବ ଉନ୍ମାଦନା ଖେଳାଇ ଦେଲା । ନନ୍ଦ କିଶୋର ପଲ୍ଲୀ ଜୀବନକୁ ନେଇ ସାହିତ୍ୟ ରଚନା କରିଥିଲେ । ସତ୍ୟବାଦୀର ବକୁଳ ତୁରିଥିଲା କୁଞ୍ଜରେ ଅତୀତ ମାୟା ଉଗ୍ର ଜାତୀୟ ଚେତନାରେ ପର୍ଯ୍ୟବସିତ ହୋଇଥିଲା । ଅପର ପକ୍ଷରେ ବଙ୍ଗଳା ସାହିତ୍ୟରେ ରବୀନ୍ଦ୍ରନାଥ ଭାରତୀୟ ପରମ୍ପରା, ବିଶେଷତଃ ଉପନିଷଦୀୟ ଚିନ୍ତା ଚେତନାକୁ ଭିତ୍ତିକରି ଏକ ନୂତନ ମାନବବାଦୀ ଆଦର୍ଶର ଭିତ୍ତି ପକାଇଲେଣି ।

୧-'୨'—କବିତା ଓ ପରମ୍ପରା'—ପ୍ରମୋଦ କୁମାର ମହାନ୍ତି, ସାହିତ୍ୟବୀକ୍ଷା-ଙ: ଅପୂର୍ବ ରଞ୍ଜନ ରାୟ ।

ତାଙ୍କ ସାହିତ୍ୟ ହିନ୍ଦୁ, ମୁସଲମାନ ଓ ବୌଦ୍ଧ ଖ୍ରୀଷ୍ଟିୟାନଙ୍କୁ ଗୋଟିଏ ପ୍ଲାଟଫର୍ମରେ ଏକାଠି କରି କହିବାକୁ ଆରମ୍ଭ କରିଥିଲା ।

"ହେ ମୋର ଚିତ୍ତ ପୁଣ୍ୟ ତୀର୍ଥ ଜାଗରେ ଧୀରେ
ଏଇ ଭାରତେର୍ ମହାମାନବେର୍ ସାଗର ତୀରେ ।"

ମାନସିଂହଙ୍କ ପରମ୍ପରା କିନ୍ତୁ ଏତେ ଦୂର ଆଗେଇ ପାରିଲାନି । ସେ କିନ୍ତୁ ନିଜ ଘରକଡ଼ର ସଂସ୍କୃତି ପ୍ରତି ଦୃଷ୍ଟି ପକାଉଁ ଥାଇଥିଲେ । ନାନା କିମ୍ବଦନ୍ତୀ ଓ ରୂପ କଥାକୁ ନେଇ ସେ ଅତୀତର ମୁହାଣ ନିକଟକୁ ଫେରି ଯାଇଥିଲେ ।

ଅତୀତକୁ ଜାବୁଡ଼ି ଧରିବା ରକ୍ଷଣଶୀଳତା । ଅପର ପକ୍ଷରେ ଅତୀତକୁ ନିରେଖି ଜାଣିବାଟା ବୋକାମୀ ମାନସିଂହ କିନ୍ତୁ ଏ ଦୁଇ ଧାରଣା ଭିତରେ ସାଲିସ୍ ଆଣିଥିଲେ । ଅତୀତକୁ ସେ ଯେପରି ଭାବରେ ଦେଖିଥିଲେ ଠିକ୍ ସେହିପରି ଭାବରେ ସେ ତାଙ୍କର କାବ୍ୟ ଭିତରେ ଫୁଟାଇବାକୁ ଚେଷ୍ଟା କରିଛନ୍ତି । କୋଣାର୍କର ଶୈଳ୍ପିକ ସୌନ୍ଦର୍ଯ୍ୟ ତାଙ୍କୁ ମୁଗଧ କରିଥିଲା ମାତ୍ର ସେ ତା'ର ଅଯଥା ବନ୍ଦନା ଗାଇ ନାହାନ୍ତି । ବେଳେ ବେଳେ ଆମେ ଏହାକୁ ସଚ୍ଚିଦାନନ୍ଦଙ୍କ 'କୋଣାର୍କ' ସହିତ ତୁଳନା କରି ଉତ୍କର୍ଷ ଅପକର୍ଷ ପ୍ରତିପାଦନରେ ଚେଷ୍ଟା କରୁ । କିନ୍ତୁ ଦୁଇଟି ବିପରୀତ-ମୁଖୀ ଲେଖାକୁ ଗୋଟାଏ ନିକିତିରେ ତୁଳନା କରିବା ନିରାପଦ ନୁହଁ । ମାନସିଂହଙ୍କୁ କେହି କେହି ରକ୍ଷଣଶୀଳ ଐତିହ୍ୟର ଅନ୍ଧସ୍ତାବକ ବୋଲି କହିଥାନ୍ତି । ଏ ଧରଣର ମନ୍ତବ୍ୟ ନିହାତି ଏକ ତରଫା । ମାନସିଂହ ଥିଲେ ଆଧୁନିକ । ମାତ୍ର ସଚ୍ଚିଦାନନ୍ଦ-ରାୟଙ୍କର ପ୍ରଗତି ଭାବନା ସହ ଏହା ଯେ ସମତାଳରେ ଆଗେଇବ ଏପରି ବା ଭାବିବା କାହିଁକି ? ସଚ୍ଚି ରାଉତରାୟ ଥିଲେ ଏକ ନିର୍ଦ୍ଦିଷ୍ଟ ଚିନ୍ତାଧାରାର (ଭକ୍ତ) ଆଧୁନିକ ମଣିଷ । ମାନସିଂହ ଥିଲେ ପରମ୍ପରାକୁ ଭଲ ପାଉଥିବା ଜଣେ ଆଧୁନିକପନ୍ଥୀ । ସେହିପରି ମାନସିଂହ ବିଦେଶୀ ସଂସ୍କୃତିକୁ ଘୃଣା କରୁ ନଥିଲେ, ମାତ୍ର ବିଦେଶୀ ସଂସ୍କୃତିକୁ ଭଲ ଭାବରେ ନବୁଝି ତାର ଅନ୍ଧାନୁକରଣକୁ ନିନ୍ଦା କରୁଥିଲେ । ସେ ତାଙ୍କର ପରଧର୍ମ ପ୍ରବନ୍ଧରେ କହନ୍ତି—"ବିଦେଶୀ ଭାବ ଲୋକଙ୍କୁ ବିଦେଶୀ କରାଏ ନାହିଁ । ବିଦେଶୀ ବେଶ ଲୋକଙ୍କୁ ଇତର କରି ପକାଏ ।" ବହୁବର୍ଷ ବିଦେଶରେ କଟାଇଲା ପରେ ତାଙ୍କର ଏ ଧାରଣାର ସ୍ୱାକ୍ଷ ଓ ନିରାକ୍ଷାକୁ ଅସ୍ୱୀକାର କରାଯାଇ ପାରେ ନାହିଁ ।

ମାନସିଂହ ଥିଲେ ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସ୍ରଷ୍ଟା । ସମସାମୟିକ ସାହିତ୍ୟରେ ଯୁଦ୍ଧର ବିଭୀଷିକା ଓ ତତ୍ସମ୍ଭୂତ ବସ୍ତୁବାଦୀ ଚେତନା ପ୍ରଭାବ ବିସ୍ତାର କରିଥାଏ । ପ୍ରେମଚନ୍ଦ୍ର ପ୍ରମୁଖ ମନୀଷୀ ବୃନ୍ଦ ଏହି ଚିନ୍ତାଧାରାର ପ୍ରବର୍ତ୍ତକ ଭାବରେ

ମାର୍କସବାଦକୁ ସାହିତ୍ୟରେ ରୂପ ଦେବାକୁ ଚେଷ୍ଟା କରୁଥାନ୍ତି । ଅପର ପକ୍ଷରେ ଓଡ଼ିଆ ସାହିତ୍ୟରେ ସଚ୍ଚିଦାନନ୍ଦ ଏହି ଆନ୍ଦୋଳନରେ ଯୋଗ ଦେଇଥାନ୍ତି । ସାହିତ୍ୟରେ ନୂତନ ଯୁଗର ସୂଚନା ମିଳିଥାଏ । ଆଗାମୀ ଦିନ ତାଙ୍କ କବିତାରେ ଶପଥ-"ଅତୀତର ସିଂହଦ୍ୱାରୁ ଆସିଅଛୁ ଦୂତ, ଆଣିଅଛୁ ବାର୍ତ୍ତା ଭବିଷ୍ୟର ।" ଅତୀତର ଯାହା କିଛୁ ସାରସାର ତାକୁ ସାଉଁଟି ଭବିଷ୍ୟତର ରଙ୍ଗୀନ ଦଲିଲ ପ୍ରସ୍ତୁତ କରିବାକୁ ପଡ଼ିବ । ମାନସିଂହଙ୍କ ପ୍ରତି ଭବିଷ୍ୟଂତବାଦୀ ସଚ୍ଚିଦାନନ୍ଦଙ୍କ ମନ୍ତବ୍ୟ ଥିଲା—"ମୁଁ ଅତୀତକୁ ରୂପାନ୍ତର ମଧ୍ୟରେ ପାଇବାକୁ ଚାହୁଁଥିଲି ବେଳେ ସେ ଅତୀତକୁ ଅତୀତ ଭିତରେ ଖୋଜୁଥିଲେ ।" ୧୯୨୧ ରେ ବଙ୍ଗ ସାହିତ୍ୟର କଲ୍ଲୋଲ ଯୁଗ ଓ ରବୀନ୍ଦ୍ର ନାଥଙ୍କ ପ୍ରଭାବରୁ ଆଉ ଏକ ନୂଆ ଘଟଣା ଘଟି ଯାଇଥାଏ । କଲ୍ଲୋଲ ଯୁଗ ପ୍ରଭାବିତ ସବୁଜପନ୍ଥୀ ନନ୍‌ସେନ୍‌ସ କ୍ଲବର ପ୍ରତିଷ୍ଠାତାମାନେ ନୂଆ ନୂଆ ଛନ୍ଦରେ କବିତା ଲେଖା ଆରମ୍ଭ କରି ଦେଇଥାନ୍ତି । ତାରୁଣ୍ୟର ଭାବପ୍ରବଣ ଉଚ୍ଛ୍ୱାସରୁ ଭଙ୍ଗାରୁଜାର ମୋହ ସେମାନଙ୍କୁ ଯାହା କିଛି ପୁରୁଣା, ତା'ର ପରିବର୍ତ୍ତନରେ ପ୍ରୟାସୀ କରିଥିଲା । ମାତ୍ର ଚିନ୍ତାଧାରାରେ ଦୃଢ଼ତା ଅଭାବରୁ ସେମାନେ ଭାରସାମ୍ୟ ହରାଇଲେ । ଅନ୍ନଦା ଶଙ୍କରଙ୍କ 'ପ୍ରକୃତ ପ୍ରେରଣା'ର "ଯିବା ପଳାଇ ଦୂରେ ସୁଦୂରେ"ରୁ ଏହା ପ୍ରମାଣିତ ହେବ । ସେମାନଙ୍କ ସଂସ୍କୃତି ପ୍ରତି ମର୍ଯ୍ୟାଦାବୋଧର ଅଭାବ ଓ ପରମ୍ପରାହୀନତାକୁ ଲକ୍ଷ୍ୟ କରି ମାନସିଂହ ଲେଖିଥିଲେ—"ଏ ଦେଶର କିଆ ଫୋଲଙ୍ଗ ଫୁଟି ଝଡ଼ି ପଡ଼ୁଛି । ସେ ଖବର ନ ରଖି ଏମାନେ ଗୁମେଲି, ଗୋଲପ ବେଲଫୁଲ, ହାସ୍ନା, ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ ।" ସବୁଜ ଗୋଷ୍ଠୀର ଆମଦାନୀ-ପ୍ରବଣତା ପ୍ରତି ଏ ଦେଶର ଗୋଡ଼ି ମାଟି ପାଣି ପବନକୁ ଭଲ ପାଉଥିବା ଜଣେ ବ୍ୟକ୍ତିର ଏ ମନ୍ତବ୍ୟ ଯଥାର୍ଥ । ସବୁଜ ସୃଷ୍ଟିର ପରମୁଖାପେକ୍ଷିତା ପ୍ରତି ଏହା ଶ୍ରେକ ଠୋକ୍ ଜବାବ୍ ।

ମାନସିଂହ ଥିଲେ ଆଧୁନିକତା ଓ ରୋମାଣ୍ଟିକ୍ ଉଭୟାନୁଚର ଚିନ୍ତାଧାରାର ବିମୁଗ୍ଧ ଶିଳ୍ପୀ । ତାଙ୍କର ରୋମାଣ୍ଟିକ୍ ପ୍ରବଣତା କିନ୍ତୁ ସବୁଜ କବିର ଖିଆଲକୁ ପରିହାର କରିଥିଲା । କେବଳ ସବୁଜ କନୋଚିତ ସୁଦୂର ପିପାସା ନୁହେଁ, ଅତୀତର ମୋହ ତାଙ୍କୁ ଐତିହ୍ୟରେ ଅବଗାହନ କରିବାର ସୁଯୋଗ ଦେଇଥିଲା । ଯଥାର୍ଥତଃ କହିବାକୁ ଗଲେ ଐତିହ୍ୟର ସିଂହଦ୍ୱାରରୁ ସେ ତାଙ୍କର ଅଭିଯାନ ଆରମ୍ଭ କଲେ । ମଧ୍ୟଯୁଗୀୟ ଜଣେ ସାହିତ୍ୟ ସ୍ରଷ୍ଟାକୁ ସମ୍ମାନ ଦେବାକୁ ଯାଇ ସେ ଲେଖିଲେ 'ରାଜକବି' ନାଟିକା । ତାଙ୍କର ଏହି ପ୍ରଥମ ସୃଷ୍ଟି ୧୯୨୮ ରେ 'ପ୍ରଗତି ସଂଘ' ଦ୍ୱାରା ପ୍ରକାଶିତ ହୁଏ । ଏହାପରେ 'କୋଣାର୍କ', 'ବାରବାଟୀ' ଆଦି ବହୁ ଐତିହ୍ୟ ପ୍ରଖ୍ୟାପକ କାବ୍ୟ, କବିତା ଓ ନାଟକ ରଚନା କରି ସେ ତାଙ୍କର ନିଜସ୍ୱ ମୌଳିକତାରେ ସମସ୍ତଙ୍କୁ ମୁଗ୍ଧ କଲେ । ମାତ୍ର ସଚ୍ଚି ରାଉତରାୟଙ୍କ ଆଖି ଆଗରେ ରହି ମାନସିଂହଙ୍କ ସୃଷ୍ଟି ଜଗତକୁ ପର୍ଯ୍ୟାଲୋଚନା କଲେ ପରମ୍ପରା ପ୍ରବଣତା

ତାଙ୍କ କାବ୍ୟ ଜୀବନର ବିକାଶ ପଥକୁ କେତେକାଂଶରେ ରୁଦ୍ଧ କଲା ବୋଲି କହିବାକୁ ପଡ଼ିବ । ରାଜନୀତିଜ୍ଞଙ୍କର ପରିବର୍ତ୍ତନଶୀଳ ମନ ତାଙ୍କୁ ପ୍ରଗତିର ବନ୍ଧଦାଣ୍ଡରେ ପ୍ରତିଷ୍ଠିତ କଲା । ଏ କ୍ଷେତ୍ରରେ ମାନସିଂହ ପ୍ରତିଭା ଆଉ ମଧ୍ୟ ପଛେଇ ଗଲେ ।

ମାନସିଂହ ଥିଲେ ଜଣେ ଖାଣ୍ଟି ଓଡ଼ିଶୀ କବି । ସେ ଯେ ପରମ୍ପରାକୁ ଭଲ ପାଉଥିଲେ ଏହା ତାଙ୍କର 'ପରଧର୍ମ' ପ୍ରବନ୍ଧରୁ ସୂଚିତ ହୁଏ । ସବୁଜପନ୍ଥୀମାନଙ୍କ ଦୋଷ ବର୍ଣ୍ଣନା କଲାବେଳେ ଏ କଥାଟି ସ୍ପଷ୍ଟ ହୋଇ ଯାଇଛି—"ସାଧବ ଝିଅ ନଈରେ ଗାଧୋଇ ଗଲାବେଳେ ଛୁଣ୍ଟି ପଡ଼ୁଥିବା ବାରହାତ ଲମ୍ବ ବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନାଇ ରହିଛୁ । ସେ ଦୃଶ୍ୟ କବିମାନେ ଦେଖି ପାରୁ ନାହାନ୍ତି ।" ପାରକୁଦର ଅଖ୍ୟାତ ପଲ୍ଲୀର ଏହି ପ୍ରବକଟି ( ବାର ହାତ ଲମ୍ବ ବାଳ ) ଐତିହ୍ୟର ଇତି କଥାଟିକୁ ପାଶୋର ପାରନ୍ତି । ତା ମନରେ ଉଙ୍କି ମାରିଛି ସାତ ସମୁଦ୍ର ତେର ନଈ ପାରି ହୋଇ ବଣିଜ କରି ଆସୁଥିବା ସାଧବ ପରିବାରର ସୁଖ ଦୁଃଖ, କେଉଁ କୃଷକ ଦୁଲାଳୀ କେମାର ମନ କଥା । ମହାନଦୀର ଅନନ୍ତ ଜଳସ୍ରୋତରେ ସେ ଭସାଇ ଦେଇଛି ନିଜକୁ । ପୁନଶ୍ଚ ବାରବାଟୀର ଭୁଜୁ ଫଟା ଚନ୍ଦନ ଭିତରେ ଓ କୋଣାର୍କର ଶିଳ୍ପ ସମ୍ପର୍କ ଭିତରେ ବିରାଟ ଓଡ଼ିଆ ଜାତିର ପ୍ରାଣ ସ୍ପନ୍ଦନକୁ ଅନୁଭବ କରିଛନ୍ତି, ଓଡ଼ିଶାର ପରିବ୍ୟାପ୍ତ ଭୂଗୋଳ ତାଙ୍କୁ ପ୍ରଲୁବ୍ଧ କରିଛି । ମାତ୍ର ଏସବୁକୁ ଉପାଦାନ ଭାବରେ ଯାହା ସେ ଗ୍ରହଣ କରିଛନ୍ତି । ପଛକୁ ଫେରି ଯିବାର ମୋହ ତା ଭିତରେ ନାହିଁ । ପଦ୍ମଚରଣଙ୍କ ଭଳି ଅତି ବାତୁଳ ଅଥବା ସତ୍ୟବାଦୀ ଗୋଷ୍ଠୀର କବିମାନଙ୍କ ଭଳି ଅତି ଜାତୀୟତା (ଉଗ୍ର ଜାତୀୟତା)ରେ ସେ ପୀଡ଼ିତ ହୋଇ ନାହାନ୍ତି । ବୀର ଓଡ଼ିଆ ଜାତିକୁ ନେଇ ସେ ଗର୍ବ କରି ନାହାନ୍ତି, ଶିଳ୍ପୀ ଓଡ଼ିଆ ଜାତିକୁ ନେଇ ସେ ଗର୍ବ କରିଛନ୍ତି, "ମନୁଷ୍ୟର ଶ୍ରେଷ୍ଠତ୍ୱ ଭାଙ୍ଗିବାରେ, ହାଣିବାରେ କଷ୍ଟ ଦେବାରେ ନୁହଁ ତା'ର ଶ୍ରେଷ୍ଠତ୍ୱର ବିକାଶ ହୁଏ, ଗଢ଼ିବାରେ ଯେଉଁଠି କିଛି ନଥିଲା, ସେଠି କିଛି ଗଢ଼ିବାରେ ସେ କହନ୍ତି— ଓଡ଼ିଆ ଜାତିର ବିଜୟ ଅଭିଯାନମାନଙ୍କରେ ଏ ମାନବିକତାର ଚିହ୍ନ ମୁଁ ଦେଖିଲି ନାହିଁ । ତେଣୁ ଓଡ଼ିଆମାନେ ଅତୀତକୁ ନେଇ ଯେଉଁ ଗର୍ବ କରନ୍ତି, ସେ ଗର୍ବ ମୁଁ ଅନୁଭବ କରିପାରେ ନାହିଁ ।"* ଏକ ଉଦାର ମାନବୀୟ ଚିନ୍ତା ଓ ଚେତନାର ପ୍ରଭାବ ଥିଲା ମାନସିଂହଙ୍କ ପରମ୍ପରାବୋଧର ଭିତ୍ତି । ମାତ୍ର ଐତିହ୍ୟର ଉତ୍ଥାପନ ଛଡ଼ା ପରମ୍ପରାର ନବୀକରଣରେ ସେ ପଛେଇ ଗଲେ । ୧୯୩୮ ମସିହା ଡିସେମ୍ବର ୨୭ ତାରିଖ ଦିନ ନନ୍ଦିକେଶରୀ ପଠାରେ ବସି ଉପେକ୍ଷିତା ନନ୍ଦିକାର ଭଗ୍ନ ସମାଧି ଦେଖି ସଚ୍ଚିଦାନନ୍ଦ ଯେଉଁ 'ଅସମାପିକା' ରଚନା କଲେ ସେଠି ଆମେ ରାଜଜେମା ନନ୍ଦିକାକୁ ଦେଖିବାକୁ ପାଇଲୁ । ସେଠି ଆମେ ଦେଖିବାକୁ ପାଇଲୁ ଯୁଗ ଯୁଗ

---

* ଓଡ଼ିଆ ସମାଜ ଓ ସାହିତ୍ୟ-ମାୟାଧର ମାନସିଂହ, ପୃଷ୍ଠା-୬୭-୬୮ ।

ଧର ଯୌବନର ପ୍ରତିନିଧିତ୍ୱ କରୁଥିବା ନାରୀକୁ ଯିଏ ଥିଲା 'ନାରୀ ସଦାନାରୀ' ଯିଏ ଗ୍ରହିଁଥିଲା ଅନେକ କିଛି ପାଇବାକୁ କିନ୍ତୁ ପାଇନ ।

ସବୁ ଲେଖକଙ୍କ ପରମ୍ପରାବୋଧ ସମାନ ନୁହେଁ । ଆଲୋଚ୍ୟ କବିତାରେ ଅତୀତ ଅପେକ୍ଷା ସାଂସ୍କୃତିକ ମନନଶୀଳତା ବେଶୀ ଭାବରେ ଫୁଟି ଉଠିଛି । ଠିକ ସେହିପରି ମାନସିଂହଙ୍କ କୋଣାର୍କ ଅତୀତ ଆଡ଼କୁ ମୁହାଁଇଲା ବେଳେ ରାଉତରାୟଙ୍କ 'କୋଣାର୍କ' ଭବିଷ୍ୟତ ଅଭିମୁଖୀ । କିନ୍ତୁ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' (ମାନସିଂହ) ଓ 'ପୂର୍ଣ୍ଣିମାରେ ମହାନଦୀ କୂଳେ' ଉଭୟ କବିତାରେ ଅତୀତ ପ୍ରତି ଦାର୍ଶନିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାଟି ସିଧା ସଳଖ ଓ ବର୍ଣ୍ଣନାଧର୍ମୀ ହୋଇଥିବାବେଳେ 'ପୂର୍ଣ୍ଣିମାରେ ମହାନଦୀ କୂଳେ' କବିତାଟି ପ୍ରତୀକ ଓ ଚିତ୍ରକଳ୍ପମୟ । ଏଠାରେ ଶ୍ରୀ ରାଉତରାୟ ନୌକା ଉପରେ ତାଙ୍କ ମା'କୁ ବସେଇ ଦେଇଛନ୍ତି, ସେ ମା' ଆଉ କେହି ନୁହଁ । ଏସିଆ ଜନନୀ । 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ କବି ନିଜେ ନୌକାସୀନ । ମୋଟ ଉପରେ କହିବାକୁ ଗଲେ ମାନସିଂହଙ୍କ 'ପରମ୍ପରା'ରେ ଅତୀତର ସିଧା ସଳଖ ଆତ୍ମପ୍ରକାଶ ଘଟିଛି । ପୁରାତନ ଉତ୍କଳର ଐତିହ୍ୟର ପାଣ୍ଡୁଲିପିଟିକୁ ଅବସ୍ଥା ପରିବର୍ତ୍ତନ ଅନୁସାରେ ବଦଳାଇବାକୁ ଚେଷ୍ଟା ନକରି ଜଣେ ସଚ୍ଚୋଟ ପ୍ରକାଶକ ଓ ନିର୍ଭୁଲ ମୁଦ୍ରାକର ସାଜିଛନ୍ତି । ତାଙ୍କ 'ସାଧବ' ମଧ୍ୟ ପ୍ରାଚୀନ ସାଧବ । ତାଙ୍କ 'ଜେମା' ଉତ୍କଳୀୟ ପଲ୍ଲୀବାଳା ଜେମା । ଏସବୁ ପାଠକଲେ ଅତୀତ ପ୍ରତି ଅନୁରକ୍ତି ଆସେ ।

॥ ୨ ॥

## ଜାତୀୟବାଦ ଓ ପରମ୍ପରା—

ସଭ୍ୟତା ଗଠନ କ୍ଷେତ୍ରରେ ପରମ୍ପରାର ମୂଲ୍ୟ ବୁଝି ସେ ତାଙ୍କ କାବ୍ୟ କବିତାରେ ଐତିହ୍ୟର ଜୟଗାନ କରିଛନ୍ତି । ଏହି ଐତିହ୍ୟର ଜୟଗାନ ହିଁ ତାଙ୍କ ସ୍ୱଦେଶ ପ୍ରେମର ମୂଳଭିତ୍ତି । ବର୍ତ୍ତମାନକୁ ଭଲ ପାଇବା କେବଳ ଜାତୀୟତା ନୁହଁ । ପିତୃ ପୁରୁଷଙ୍କୁ ପିଣ୍ଡଦାନ ହିଁ ପ୍ରକୃତ ଜାତୀୟତା । Tradition ପ୍ରତି ସମ୍ମାନ ହିଁ ଇଂରେଜ ଜାତିର ଶ୍ରେଷ୍ଠ ଜାତୀୟତା ବୋଲି ସେମାନେ ମନେ କରନ୍ତି । ମାନସିଂହଙ୍କର ସ୍ୱଦେଶ ପ୍ରେମର ପ୍ରଥମ ସ୍ୱାକ୍ଷର ବହନ କରି ଜୁନ୍ ୧୯୨୬ ରେ ପ୍ରକାଶ ପାଏ 'କୋଣାର୍କ' କବିତା । ଏହା ଥିଲା କବିଙ୍କ ପ୍ରଥମ ସାର୍ଥକ ସୃଷ୍ଟି । ଐତିହ୍ୟର ଭଗ୍ନ ନିଦର୍ଶନ ପ୍ରତି ଗଭୀର ମମତ୍ୱବୋଧ, କମ୍ରଗଧ ଦର୍ଶକର ଶିଳ୍ପ ମୂଲ୍ୟାୟନ ଚମତ୍କାର ଭାବରେ ଆତ୍ମ ପ୍ରକାଶ କରିଛି କବିତାଟିରେ । କୋଣାର୍କକୁ ହୃତ ଯୌବନା ବୋଲି କହିଲା ବେଳେ ପରମ୍ପରା ଏହି ପ୍ରାଚୀନ ଗୌରବଟି କାଳର କରାଳ

କବଳରେ ଧ୍ୱଂସ ପ୍ରାପ୍ତ ହୋଇଥିବାରୁ ଦୁଃଖ ପ୍ରକାଶ କରିଛନ୍ତି କବି । ପ୍ରକୃତିର ନିଷ୍ଠୁର ଉପହାସରେ କବି ବିଚଳିତ —

"ନୃତ୍ୟ ହେଲା କାନ୍ତି-କାଷ୍ଠକାଳ
କ୍ରମେ ହେଲା ପ୍ରକୃତି କରାଳ
ଗହ୍ୱରର ଅସହିଷ୍ଣୁ-ବୁଲାଇଲେ ନୟନ ରକ୍ତିମ
ସୁକୋମଳ ଗ୍ରୀବା ତୋର ତ୍ରସ୍ତ ଭୟେ ହୋଇଲା ବଙ୍କିମ
ଯାଦୁକାରୀ ହାସ୍ୟ ତୋର ସେ ନିଷ୍ଠୁର କରୁଣାର କ'ଣ
ନ ପାରିଲା ଉପୁଜାଇ ଚୂର୍ଣ୍ଣି କଲେ କ୍ରୂର ପ୍ରହରଣ
ବିଶ୍ୱ ଦେଖେ ଆଜ ମାତ୍ର ସେ ଶୋଭାର ଖଣ୍ଡିତ କଙ୍କାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ !"

ମାନସିଂହ ଗ୍ରନ୍ଥାବଳୀ (୧ମ ଖଣ୍ଡ)

ସ୍ୱଦେଶ ପ୍ରେମ ଭିତ୍ତିରୁ ଆନ୍ତରିକତାର ଆନୁସଙ୍ଗିକ ଯୋଗ ହିଁ କବିଙ୍କୁ ବେଦନାର୍ଦ୍ର କରିଛି । 'କୋଣାର୍କ' କବିତା ଗୁଚ୍ଛର ଅନ୍ୟତମ କବିତା 'ଶିଳ୍ପୀ ବନ୍ଦନା' । ଯେଉଁ ଶିଳ୍ପୀମାନଙ୍କର ତ୍ୟାଗ ଓ ତିତିକ୍ଷା ବଳରେ ପ୍ରତିଭାର ଆସ୍ୱାଦନ ସ୍ୱରୂପ କୋଣାର୍କ ସୃଷ୍ଟି ହେଲା, ତାଙ୍କୁ ସେ ଜାତୀୟ ଜୀବନର ଗର୍ବ ଓ ଗୌରବ ଭିତରେ ଏକାକାର କରି ଦେବାକୁ ଚାହିଁଛନ୍ତି ଏ କବିତାଟିରେ । ଯେହେତୁ ଏହା ଏକ ଜାତୀୟ ଗୌରବ ଏଠି ବ୍ୟକ୍ତିଗତ ସୁନାମ ବଡ଼ ପ୍ରଶ୍ନ ହୋଇ ରହିନ । ଏ ଜାତି ହୁଏତ (ସମୟର ବ୍ୟବଧାନରେ) କାରିଗରକୁ ଭୁଲି ଯାଇଛି ମାତ୍ର ତା'ର କାରିଗରୀକୁ ଭୁଲି ଯାଇନ । ସେ ହୁଏତ ଶିଳ୍ପୀକୁ ଭୁଲି ଯାଇଛି କିନ୍ତୁ ତାର ଶିଳ୍ପକଳାକୃତି ଭୁଲି ଯାଇନ । ସମସ୍ତ ଶିଳ୍ପୀ କୁଳକୁ ସେ ପ୍ରବୋଧନା ଦେଇଛନ୍ତି ।

"ତୁମରେ ଭୁଲିଛି ଜାତି ସେଥିରେତ କିଛି କ୍ଷତି ନାହିଁ
ଗୀତ ତବ ଇତିହାସ ଏ କବିତା ବଡ଼ନିକ ଗାଇ ।"

କୋଣାର୍କର ମୃଣ୍ମୟ ନୃତ୍ୟଗୀତ ଦେଖି ମାନସିଂହ ଯେତିକ ପ୍ରଗଲ୍‌ଭ ହୋଇଛନ୍ତି ମୁମୂର୍ଷୁ କୋଣାର୍କର ଲାବଣ୍ୟର ନଷ୍ଟ ଅସ୍ଥିମାଳ ଦେଖି ତତୋଧିକ ବ୍ୟଥା ଅନୁଭବ କରିଛନ୍ତି ।

**ବାରବାଟୀ :**

ଏଇ ମାଟି ପାଣି ପବନକୁ ଭଲ ପାଉଥିବା ସ୍ରଷ୍ଟା ବାରବାଟୀର ବିରାଟ ପରମ୍ପରା ନିକଟରେ ଦଣ୍ଡାୟମାନ ହୋଇ ଇତିହାସର ରୋମନ୍ଥନ କରିଛନ୍ତି । ଉପରୋକ୍ତ କାବ୍ୟ ନାଟିକାଟି ପାରିବେଶିକ ବିସ୍ତାର ଅଥବା ଲୁପ୍ତ ଗୌରବ ବର୍ଣ୍ଣନାରେ ପରିବ୍ୟାପ୍ତ ହୋଇନ । ଏଠାରେ ସ୍ରଷ୍ଟା ମାନସିଂହ ବାରବାଟୀକୁ ଉପଲକ୍ଷ୍ୟ ଭାବରେ

ଉପସ୍ଥାପିତ କରି ଗଙ୍ଗବଂଶର ବୀରତ୍ୱ ଓ ପ୍ରଜାନୁରଞ୍ଜକ ଶାସନର ଜୟଗାନ କରିଛନ୍ତି । ସମର ପଟୁ ଓଡ଼ିଆ ଜାତି କାହାର ବଶ୍ୟତା ସ୍ୱୀକାର କରିନ । ଗଙ୍ଗାଠାରୁ ଗୋଦାବରୀ ତଟ ଯାଏଁ ବିରାଟ ଭୌଗୋଳିକତା ଯାହାର ଦାବୀ —ବାରମ୍ବାର ମୋଗଲ ମରହଟ୍ଟା ମାନଙ୍କୁ ଯେ ଯୁଦ୍ଧରେ ବ୍ୟତିବ୍ୟସ୍ତ କରିଛି ସେଇ ଦୁର୍ଦ୍ଧର୍ଷ ଜାତିର ନିରବଚ୍ଛିନ୍ନ ସଂଗ୍ରାମର ମୂକସାକ୍ଷୀ ହେଉଛି ବାରବାଟୀ । ଏହାର ଭିତରେ ୧୨ ଶହରୁ ୧୬ ଶହ, ଦୀର୍ଘ ଚାରିଶହ ବର୍ଷ ଇତିହାସର ଉପସ୍ଥିତାକୁ ଅନୁଭବ କରି ହୁଏ । ଉକ୍ତ 'ବାରବାଟୀ' ନାଟିକାଟି ୩ଟି ପର୍ଯ୍ୟାୟରେ ଶେଷ ହେବାର ଥିଲ ମାତ୍ର ତା'ର ଗୋଟିଏ ପର୍ଯ୍ୟାୟ ଆମ ଆଖି ଆଗରେ ପଡ଼େ । ତୁଳନାତ୍ମକ ଭାବରେ ସେକ୍ସପିୟରଙ୍କୁ ସ୍ମରଣ କରାଯାଇ ପାରେ । ବିଶ୍ୱ ସାହିତ୍ୟରେ ଇତିହାସକୁ ନେଇ ସାହିତ୍ୟ ସୃଷ୍ଟି କରିବାର ମୋହ ସେକ୍ସପିୟରଙ୍କଠାରେ ସର୍ବାଧିକ ଥିଲ । ରୋମାନ୍ ଇତିହାସକୁ ନେଇ ସେ କାଳଜୟୀ ନାଟକ ସୃଷ୍ଟି କଲେ । ସ୍ରଷ୍ଟାର ଗଭୀର ଅନ୍ତର୍ଦୃଷ୍ଟି ବଳରେ ତାଙ୍କର ସମସ୍ତ ନାଟକ ମାନବ ମନସ୍ତତ୍ତ୍ୱର ଜଟିଳ ଭାବରାଜିକୁ ଦ୍ୱନ୍ଦ୍ୱ ସଂଘାତମୟ କରି କହିବାର ଚିରନ୍ତନତା ଲାଭ କରିଛି । କିନ୍ତୁ ମାନସିଂହ ସେଭଳି ଉତ୍କୃଷ୍ଟ ଚରିତ୍ର ଚୟନ ଅଥବା ନାଟକୀୟ ଉତ୍କଣ୍ଠା ସୃଷ୍ଟିରେ ସଫଳ କାମ ହୋଇ ପାରିନାହାନ୍ତି ।

**ମାଟିବାଣୀ :—**

'କୋଣାର୍କ' ଓ 'ବାରବାଟୀ'କୁ ବାଦ୍‌ଦେଲେ ମାଟିବାଣୀ କବିତା ସଂକଳନରେ ଅଧିକାଂଶ କବିତା ସ୍ୱଦେଶ ପ୍ରେମ ଓ ଜାତୀୟ ଜୀବନ ଭିତ୍ତିକ । 'ମାଟି ବାଣୀ'ର 'ମହାନଦୀରେ ଜ୍ୟୋତ୍ସ୍ନାବିହାର' କବିତାଟି ଏହାର ଏକ ଉତ୍କୃଷ୍ଟ ଉଦାହରଣ ।

ମହାନଦୀରେ ଜ୍ୟୋତ୍ସ୍ନାବିହାର ଏକ ଐତିହ୍ୟ ସଚେତନ କବିତା । ମହାନଦୀକୁ ଉପଲକ୍ଷ୍ୟ କରି କବି ଅତୀତ ଉତ୍କଳର ଚିତ୍ରପଟ୍ଟକୁ ଆଙ୍କିବାକୁ ଚେଷ୍ଟା କରିଛନ୍ତି । ଯୁଗ ଯୁଗ ଧରି ନଦୀହିଁ ସଭ୍ୟତାର ଧାରାସହ ଯୋଗସୂତ୍ର ରକ୍ଷା କରି ଆସିଛି । ବିଭିନ୍ନ ଉପନଦୀକୁ ଏକାଠିକରି ମହାନଦୀ ଯେଭଳି ବିରାଟ ସମୁଦ୍ରାଭିମୁଖୀ ବିଭିନ୍ନ ସଭ୍ୟତାର ଏକତ୍ରୀକରଣରେ ସେହିପରି ବିଶାଳ ମାନବ ସଭ୍ୟତା ଗଠିତ । ଅତୀତରେ ଦିନେ ଦୟାନଦୀର ଜଳଧାରା କଳିଙ୍ଗ ଯୁଦ୍ଧରେ ଏକଲକ୍ଷ ଉତ୍କଳୀୟ ସୈନିକଙ୍କ ରକ୍ତରେ ଲଲେଲଲ ହୋଇଥିଲ, ତାକୁ ଇତିହାସ ପାଶୋରି ଦେଇନି । ଏବେବି ଅତୀତର ସେ ସ୍ମୃତି ଆମ ମନରେ କୌତୂହଳ ସୃଷ୍ଟି କରିଏ । ଠିକ୍ ସେହିପରି ମହାନଦୀକୁ ଦେଖିଲେ ସୁକୁମାରୀ ରାଜବାଳାର ଅବଗାହନ ଠାରୁ ଆରମ୍ଭ କରି ସିଂହଳ ଦେଶରୁ ମୁକ୍ତା ଆନୟନ ପର୍ଯ୍ୟନ୍ତ ଗୋଟି ଗୋଟି କଥା ମନେ ପଡ଼ିଯାଏ । ଅତୀତର ମୋହ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତାରେ କବିଙ୍କୁ ସ୍ୱପ୍ନ ପ୍ରବଣ କରିଛି । ପ୍ରକୃତ ଭିତରେ କବି ନିଜକୁ ହଜାଇ ଦେବାକୁ ଚାହିଁଛନ୍ତି । ମାତ୍ର ମଧ୍ୟଯୁଗୀୟ ସ୍ରଷ୍ଟାଙ୍କ ଭଳି

ସେ ଏଠାରେ ଖଣ୍ଡିକାଣ୍ଡି ପ୍ରକୃତିକୁ ଦେଖିବାର ଚେଷ୍ଟା କରି ନାହାନ୍ତି, ବରଂ ରୂପେଲି କଳ୍ପ ଆଲୁଅରେ ପ୍ରକୃତିର ଶୋଭା ସନ୍ଦର୍ଶନ କରୁ କରୁ ସେ ଅତୀତ ଆଡ଼କୁ ମୁହାଁଇଛନ୍ତି ।

'ମହାନଦୀର ଜ୍ୟୋତ୍ସ୍ନାବିହାର' କବିତା ପରେ 'ମାଟିବାଣୀ'ର, 'ବାରବାଟୀ' କବିତାରେ ଐତିହ୍ୟ ପ୍ରତି କବି ମନର ସହଜାତ ଅନୁପ୍ରେରଣା ଲକ୍ଷ୍ୟଣୀୟ । ମୂକ ଦୁର୍ଗକୁ ସେ ଏକ ଜୀବନ୍ତ ଇତିହାସର ପୃଷ୍ଠା ଭିତରକୁ ଟାଣି ଆଣିଛନ୍ତି । ମାତ୍ର ମାନସିଂହଙ୍କ ବାରବାଟୀରେ ଗୋଦାବରୀଶୀୟ ଗୁରୁ ଗମ୍ଭୀରତା ଲକ୍ଷ୍ୟ କରାଯାଏନା ।

'ସ୍ୱପ୍ନର କବି ଗୋପାଳକୃଷ୍ଣ', 'ଚଅପୋଇ ବିଳାପ', 'ଗୋପ ପ୍ରସ୍ଥାଣ' 'ବୋଇତ ବନ୍ଦାଣ' ପ୍ରଭୃତି କବିତାରେ ମାନସିଂହଙ୍କର ଐତିହ୍ୟ ସଚେତନତା, ସ୍ୱଦେଶ ପ୍ରେମ ଓ ପରମ୍ପରା ପ୍ରୀତି ବେଶ୍ ବାରି ହୋଇପଡ଼େ । '୨୬ ଜାନୁୟାରୀ' 'ବନ୍ଦେ ମାତରମ୍', 'ଉତ୍କଳ ଜନନୀ' ଆଦି କବିତା ସ୍ୱଦେଶ ପ୍ରେମର ଜ୍ୱଳନ୍ତ ବହ୍ନିରେ ଝାଳୁଛିମାନ ।

ମୋଟା ମୋଟି ଭାବରେ ଇତିହାସ କମ୍ବଦନ୍ତୀ ଓ ସତ୍ୟ କଳ୍ପନାକୁ ନେଇ ମାନସିଂହ ଉତ୍କଳୀୟ ପଲ୍ଲୀ ପ୍ରକୃତି, କଳା ଭାସ୍କର୍ଯ୍ୟ ଓ ଭାରତୀର ଏକ ସମୁଜ୍ଜ୍ୱଳ କାବ୍ୟକ ଇତିହାସ ରଚନା କରିଛନ୍ତି ।

**ପ୍ରଣୟ ଚେତନା ଓ ପରମ୍ପରା :—**

ମାନସିଂହଙ୍କ କାବ୍ୟ ମାନସ ମୁଖ୍ୟତଃ ପ୍ରେମ ଓ ପ୍ରଣୟ ଭିତ୍ତିକ । ତାଙ୍କ କବିତାରେ ରୋମାଣ୍ଟିକ୍ ପ୍ରବଣତା ଥିଲା ପ୍ରବଳ । କବିଙ୍କ ବହୁ କବିତାରେ ରୂପ ପିପାସା ଦେହ ଓ ମନ ପ୍ରତି ଅତୃପ୍ତ ଆକାଙ୍କ୍ଷା ପରିଦୃଷ୍ଟ । 'ସାଧବଝିଅ', 'ପୂଜାରିଣୀ' 'ଉପେକ୍ଷିତା', 'କଙ୍କଣ', 'ଶୁଭଦୃଷ୍ଟି', 'ହେମା' ଠାରୁ ଆରମ୍ଭ କରି 'ଧୂପ', 'ହେମପୁଷ୍ପ', ହେମଶସ୍ୟ'' ସମସ୍ତ କାବ୍ୟ ନାଟକାଦିରେ କଳ୍ପନା ପ୍ରବଣ ମାନସିଂହ ପ୍ରେମ ପ୍ରଣୟର ସାର୍ଥକ ରୂପକାର ସାଜିଛନ୍ତି । ଉପରୋକ୍ତ ସମସ୍ତ ଗ୍ରନ୍ଥର ନାୟକ ନାୟିକା ଏକ ପରମ୍ପରା ଧର୍ମୀ ସମାଜରୁ ଗୃହୀତ । କେହି କେହି ହୁଏତ ସମାଜର ଅନ୍ଧ ଅନୁଶାସନକୁ ଅସ୍ୱୀକାର କରି ବିଦ୍ରୋହିଣୀର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । 'ଧୂପ'ର ନାୟିକା ବ୍ୟକ୍ତିଗତ ପ୍ରେମ ନିକଟରେ ଦୁନିଆର ନୀତି ନିୟମକୁ ତୁଚ୍ଛ ମଣେ କରି ପରକୀୟା ଉତ୍ସରେ ମାତି ଯାଇଛି । ବୈଷ୍ଣବ ସାହିତ୍ୟ ପରମ୍ପରାରୁ ପ୍ରାପ୍ତ ଏହି ନାୟିକାକୁ ମାନସିଂହ ଆପ୍ରତିକ ସମାଜ ଚକ୍ଷୁରେ ମହୀୟସୀ କରି ଗଢ଼ିବାକୁ ଚେଷ୍ଟା କରିଛନ୍ତି । ହେମଶସ୍ୟରେ କବି ନିଜର ପତ୍ନୀ ସହ ପାରମ୍ପରିକ ବନ୍ଧନରେ ବାନ୍ଧି ହୋଇ ପଡ଼ିଛନ୍ତି ।

'ପ୍ରଦୀପ ଜାଳୁଛ କିଆଁ ଲଜ୍ଜିଅ ତାହାରେ
ତବ ରୂପ ଶିଖା ଜଳୁ ଘନ ଅନ୍ଧକାରେ
ଠିଆ ହୁଅ କକ୍ଷ ମଧ୍ୟେ ଧୀରେ ଧୀରେ ଧୀରେ
ଅଙ୍ଗ ଆଭରଣ ଅଙ୍ଗୁ ତେଜି ଏ ମନ୍ତ୍ରାରେ ।'

ଗୃହାଙ୍ଗନର ଆବଦ୍ଧ ପ୍ରକୋଷ୍ଠ ଭିତରେ ନାୟିକାକୁ ବସ୍ତ୍ରାଭରଣ ବିମୁକ୍ତ କରିବାରେ ନୂତନତା ଆଇପାରେ ମାତ୍ର ତାହା ପରମ୍ପରାକୁ ଅସ୍ୱୀକାର କଲାଭଳି ନୁହଁ । ଧରିତ୍ରୀ କବିତାରେ କବି ପ୍ରଣୟ ଚେତନାରେ ହିନ୍ଦୁଧର୍ମର ପୁନର୍ଜନ୍ମବାଦ ଉପରେ ବିଶ୍ୱାସ ରଖି ପ୍ରେୟସୀ ପାଇଁ ବାରମ୍ବାର ମର୍ତ୍ତ୍ୟକୁ ଆଗମନ କରିବାର ଇଚ୍ଛା ପ୍ରକାଶ କରିଛନ୍ତି ।

"ପାଇବାକୁ ସେ ହୃଦର ପରିପୂର୍ଣ୍ଣ ଆତ୍ମ ସମର୍ପଣ
ହେ ସଖି କରୁଛି ମୁଁ କି ଜନ୍ମେ ଜନ୍ମେ ଧରିତ୍ରୀବରଣ ।"

ପୁନଶ୍ଚ 'ଦେହି ପଦ ପଲ୍ଲବ ମୁଦାରମ୍' ପରମ୍ପରାରେ କବି ପ୍ରିୟାର ପଥରେ ଘାସ ହୋଇ ଜନ୍ମିବାର ସ୍ୱପ୍ନ ଦେଖିଛନ୍ତି ।

"ପ୍ରିୟାର ସୁକୋମଳ ଚରଣ ବାସ
ସେ ଲୋଭେ ହେବି ମୁହିଁ ସେ ପଥେ ଘାସ ।"

ଅହଂଭାବ ଶୂନ୍ୟ ହେଲେ ପ୍ରେମର ପୂର୍ଣ୍ଣତା ପ୍ରାପ୍ତି ହୁଏ । ବୈଷ୍ଣବ ସାହିତ୍ୟର ଏହି ଚିନ୍ତାକୁ ଭିତ୍ତିକରି ତାଙ୍କର ପ୍ରେମିକା ନିକଟରେ ସବୁକିଛି ସମର୍ପଣ କରି ଦେବାକୁ ଇଚ୍ଛା ପ୍ରକାଶ କରିଛନ୍ତି । ଅନ୍ୟ ଏକ କବିତାରେ ସେ କହନ୍ତି,

"ପ୍ରେମ ନୁହେଁ ଦେହି ଦେହିଁ ଭୋଗ ଅନ୍ୱେଷଣ
ପ୍ରେମ ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ
ପ୍ରେମ ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ ଆନ ପାଇଁ ଦେବା ନିଜକୁ ହଜାଇ ।"

ବୈଷ୍ଣବ କବି

"ପ୍ରତି ଅଂଗ ଲାଗି କାନ୍ଦେ ପ୍ରତି ଅଂଗ ମୋର
ପ୍ରାନେର୍ ମିଲନ ମାଗେ ଦେହେର୍ ମିଲନ୍ ।"

ବୈଷ୍ଣବ ସାହିତ୍ୟର ସ୍ରଷ୍ଟା ବିଦ୍ୟାପତି ଓ ଗୋପାଳକୃଷ୍ଣ ଆଦିଙ୍କ ପ୍ରଭାବ ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ମାନସିଂହ ପ୍ରତିଭାକୁ ପରୋକ୍ଷରେ ଆଚ୍ଛନ୍ନ କରିଛି । ବିଦ୍ୟାପତିଙ୍କ ସହ ସେ କଣ୍ଠ ମିଳାଇ କହିବାକୁ ଚାହୁଁଛନ୍ତି ବିଦ୍ୟାପତି—

"ଜୀବନ ଅବଧି ହମ ରୂପ ନିହାରଲୁ
ନୟନ ନ ତିରପିତ ଭେଲ,
ସୋଇ ମଧୁର ବୋଲ ଶ୍ରବଣ ହିଁ ଶୁନଲୁ
ଶ୍ରୁତି ପଥ ପରଶ ନା ଗେଲ ।"

ମାନସିଂହ—

"ଦୁଇଟି ନୟନର ନ ଆସେ ତୃପ୍ତି ଲକ୍ଷ ନୟନରେ ଚାହିଁବ
ଗୋଟିଏ ରସନାରେ ନ ପାଏ ମୁକ୍ତି ବଚନ-ଆଉ ହେଲେ ଗାଇବ ।"

ରବୀନ୍ଦ୍ରନାଥଙ୍କ ପରି ମାନସିଂହ ତାଙ୍କ ପ୍ରେମିକା ସହିତ ଅନନ୍ତ ପ୍ରେମ ସୋତରେ ଭାସି ବୁଲିଛନ୍ତି । ଏସମ୍ପର୍କରେ ରବୀନ୍ଦ୍ରନାଥ ଲେଖିଛନ୍ତି ।

"ଆମରା ଦୁଜନେ ଭାସିଆ ଏସେଛି ଯୁଗଲ ପ୍ରେମେର ସ୍ରୋତେ
ଅନାଦି କାଲେର ହୃଦୟ ଉତ୍ସ ହତେ
ଆମରା ଦୁଜନେ କରି ଆଛି ଖେଲା କୋଟି ପ୍ରେମିକେର ମାଝେ
ବିରହ ବଧୂର ନୟନ ସଲିଲେ ମିଲନ୍ ମଧୁର ଲାଜେ
ପୁରାତନ ପ୍ରେମ ନିତ୍ୟ ନୂତନ ସାଜେ ।"

ମାନସିଂହଙ୍କ ଭାଷାରେ—

"ଅଗଣିତ ରବିଚନ୍ଦ୍ର ତାରକା ନକ୍ଷତ୍ରର ସୃଷ୍ଟି ଲୟେ
ତୁମେ ଆଉ ମୁଁ ରହିଥିଲେ କାହିଁ ଜନମେ ଜନମେ ନିତ୍ୟ କ୍ଷୟେ ।"
—ବିରହୀ ଗାଥା—

**ସାହିତ୍ୟାଦର୍ଶ ଓ ପରମ୍ପରା :**

ପୂର୍ବସୂରିମାନଙ୍କ ଦ୍ୱାରା ପ୍ରଦର୍ଶିତ ଏକ ସମୃଦ୍ଧ ସାହିତ୍ୟ ପରମ୍ପରାକୁ ନିଜ କାବ୍ୟାଦର୍ଶ ଭାବରେ ଗ୍ରହଣ କରି ନେଇଛନ୍ତି । ବେଳେ ବେଳେ ସେ ଏହି ପରମ୍ପରାକୁ ଅତିକ୍ରମ କରି ଆଗାମୀ କାଳ ପାଇଁ ନୂତନ ପରମ୍ପରାର ସ୍ରଷ୍ଟା ଭାବରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ଏଭଳି ଭାବରେ ପୂର୍ବସୂରିମାନଙ୍କ ଦ୍ୱାରା ପ୍ରଭାବିତ ହେବାରେ ତାଙ୍କ ଦୋଷ ଦୃଷ୍ଟି କରାଯାଇ ପାରେନା । କୌଣସି ଏକ ସାହିତ୍ୟିକ ପରମ୍ପରା ପ୍ରତି ଲେଖକଙ୍କ ଆନୁଗତ୍ୟ ଦୋଷାବହ ନୁହଁ । ଅସଲ କଥା ହେଉଛି ଲେଖକ ତା ନିଜ ପରମ୍ପରାର କେତେ ସଦୁପଯୋଗ କରି ପାରିଲା ଏହା ଉପରେ ଭର ଦେଇ ସେ କେତେ ପ୍ରଭାବଶାଳୀ ଅମ୍ଳାନ ଉଜ୍ଜ୍ୱଳ, ସ୍ୱତଃସ୍ଫୂର୍ତ୍ତି ସାହିତ୍ୟ ସୃଷ୍ଟି କରି ପାରିଲା* ।' ଶୈଳୀ ଓ ପରିବେଷଣରେ ମାନସିଂହଙ୍କ ପ୍ରାକ୍ ସାହିତ୍ୟିକ ଜୀବନର କେତୋଟି ରଚନାରେ କାବ୍ୟ ପ୍ରଗୀସ୍ଥ ଠାଣି ଲକ୍ଷ କରାଯାଏ । ସାଧବ ଝିଅ ଉକ୍ତ ପ୍ରଗୀସ୍ଥ ଶୈଳୀର ଏକ ସାର୍ଥକ ଅନୁକୃତି ।

* କବିତା ଦୀକ୍ଷା —(କବିତା ଓ ପରମ୍ପରା ପ୍ରମୋଦ କୁମାର ମହାନ୍ତି)— ଡ: ଅପୂର୍ବ ରଞ୍ଜନରାୟ ।

"ଭିଳେ ଭୁଜ ଭିଡ଼ା ଭିଡ଼ି ହୃଦେ ହୃଦ ଭିଡି
ଚରଣେ ଚରଣ ଆପି ନିବିଡ଼ ସୋହାଗେ ।"
ଚୁମ୍ବନ୍ତି ସେ ପରସ୍ପର ଜଗତ ବିସ୍ମରି
ଛାଡ଼ି ପୁଣି ଚୁମ୍ବ ଦେଂତି ଗାଢ଼ ଅନୁରାଗେ ।"

କମ୍ବା—

"ଆଲକ୍ତକ ଚରଣେ ଫୁଟାଇ
କୋକନଦ ଗ୍ଭଲିବାର ବାଟେ,
ଗ୍ଭଲିଯିବ ଯେବେ ସେ ମେଳଇ
ମୁକ୍ତ ବେଣୀ ମେଲି ସ୍ନାନ ଘାଟେ ।"

ଉପରୋକ୍ତ ଦୁଇ ଉଦ୍ଧୃତିରେ ଯଥାକ୍ରମେ ରୀତି ଯୁଗୀୟ ଓ ରାଧାନାଥ ଯୁଗୀୟ ଶୈଳୀର ଅନୁବର୍ତ୍ତନ ଲକ୍ଷ୍ୟ କରାଯାଏ । ପୁନଶ୍ଚ 'ସାଧବଝିଅ' କାବ୍ୟର କଥା ବସ୍ତୁକୁ ଲକ୍ଷ୍ୟ କଲେ ଜଣାଯାଏ ଯେ, ସାଧବଝିଅ ପାଇଁ ସାତ ସମୁଦ୍ର ତେର ନଈ ପାରି ହୋଇ ଆସିବାର ସାହସ କେବଳ ମଧ୍ୟ ଯୁଗୀୟ ନାୟକ ପାଖରେ ସମ୍ଭବ । ଉକ୍ତ କାବ୍ୟରେ ମାଲୁଣୀ ଚରିତ୍ରଟିକୁ କବି ଲୋକ ସାହିତ୍ୟ ପରମ୍ପରାରୁ ସାଉଁଟି ଆଣିଛନ୍ତି ।

|| ୩ ||

ମୋଟ କଥା ମାନସିଂହ ଯେଉଁ ସମାଜରେ ଜନ୍ମ ନେଇଥିଲେ ସେ ସମାଜରେ ଅତୀତର ମୂଲ୍ୟବୋଧ ପ୍ରତି ସମ୍ମାନ ଥିଲା ଯଥେଷ୍ଟ । ତାହା ନ ହୋଇଥିଲେ 'କମଳାୟନ'ରେ ଆଖଡ଼ା ଘରର ଗୁରୁଙ୍କ ଗୋପବନ୍ଧୁ ଗ୍ଭଉଳ ନ ଦେଇ ଫେରେଇ ଦେଲା ବେଳେ ସମବେତ ଜନତା ତା ପାଇଁ ସମବେଦନା ଜଣାଇ ନଥାନ୍ତା ।

କର୍ପୂର ଉଡ଼ିଯାଇଛି, କନାଖଣ୍ଡି ପଡ଼ି ରହିଛି । ଆମକୁ ସେଇ କନା ଖଣ୍ଡିକୁ ସାଇତି ରଖିବାକୁ ପଡ଼ିବ । ଆଖଡ଼ା ଘର ଭାଙ୍ଗି ଯାଇଥିଲେ ମଧ୍ୟ ଆଖଡ଼ା ଗୁରୁଙ୍କୁ ଅମର୍ଯ୍ୟାଦା କରାଯାଇ ପାରିବନି । କମଳାୟନରେ ଏକ ଧାର୍ମିକ ମାନବବାଦୀ ଆଦର୍ଶ ସହ କୁସଂସ୍କାର ବିରୁଦ୍ଧରେ ଅଭିଯାନ ବଡ଼ କଥା ହୋଇଛି ।

'ଜେମା' କାବ୍ୟରେ ଗରିବ କୃଷକ କୁଳ ପ୍ରତି କବିଙ୍କର ଦରଦ 'ଜେମା' ଜୀବନର କରୁଣ ପରିଣତି ଭିତରେ ଚର୍ଚ୍ଚିତ । କାବ୍ୟଟି ଆମୂଳଚୂଳ କୃଷକ ପରିବାର ସୁଖ ଦୁଃଖରେ ଉଚ୍ଛୁଳ ପଡ଼ିଛି । ଅର୍ଥାଭାବରୁ ଅଲଅଲି ଜେମା ପ୍ରୌଢ଼ ସାଧବର ଦ୍ୱିତୀୟା ହେବା ସାମାଜିକ ବିପର୍ଯ୍ୟୟ ଅର୍ଥନୈତିକ ଦୁରବସ୍ଥାର ସୂଚନା ଦିଏ ।

ମାନସିଂହଙ୍କ କାବ୍ୟ ପରିଧି ଭିତରେ ରାଜକୁମାର ରାଜକୁମାରୀ ଓ ପୁରାଣ-ଯୁଗୀୟ ପରମ୍ପରାଧର୍ମୀ ରାମ ସୀତାର ଆବିର୍ଭାବ ଘଟିଥିଲେ ମଧ୍ୟ ତାହା କୃତ୍ରିମ ଚରିତ୍ରକର୍ଷଣ । ସ୍ପଷ୍ଟ କହିବାକୁ ଗଲେ ସଂସ୍କୃତର କାଳିଦାସ ଅଥବା ଓଡ଼ିଆ ସାହିତ୍ୟରେ

ଗଙ୍ଗାଧରଙ୍କ ଭଳି ସମସ୍ତ କ୍ଲାସିକ ନାୟକ ନାୟିକାଙ୍କୁ ସେ ଭଲ ଭାବରେ ଚହ୍ନିପାରି ନାହାନ୍ତି ।

ପରମ୍ପରାକୁ ଭଲ ପାଉଥିବା ମାନସିଂହ ବେଳେ ବେଳେ ପରମ୍ପରା ବିରୁଦ୍ଧରେ ଜେହାଦ ଘୋଷଣା କରିଛନ୍ତି । 'ଧୂପ'ର ନାୟିକା ଏ ପ୍ରକାର ଏକ ବିଦ୍ରୋହିଣୀ ନାୟିକା । ପ୍ରେମର ଚରମ ପରିଣତି ନିକଟରେ ସମାଜର ବନ୍ଧ ବାଡ ଡେଇଁ ସଂସାର ଶାଖାନ୍ତରେ ସେ ତାର ପ୍ରଣୟୀ ଗଳାରେ ବାହୁ ବେଷ୍ଟନ କରିବା ପାଇଁ ନିଶୀଥ ଅନ୍ଧକାରେ ନମାଜ ସ୍ଥଳଆସିଛି । କାବ୍ୟ ନାୟକ ମଧ୍ୟ ନିଜ ସମ୍ପର୍କରେ ଯୁକ୍ତି ବାଢ଼ିଲା ବେଳେ ସମାଜକୁ ଚେତାବନୀ ଶୁଣାଇଛନ୍ତି—

"ମୂର୍ଖ ଜନତା କରିତା ବିଚାର<br>
ପ୍ରଣୟକୁ ଦିଅ ତା'ର ଅଧିକାର<br>
ନିଜକି ପୁରୁଣା ପୋଥି ଏଥେ କିବା କହିଲା<br>
ମୋ ନୟନେ ସେତ ପରମ ପୂଜ୍ୟା ମହିଳା ।"

ମାତ୍ର କାବ୍ୟ ନାୟକର ଏ ସ୍ପଷ୍ଟ ଘୋଷଣାରେ କଳୁନା କିଛି ଯୁକ୍ତି ଥାଇ-ପାରେ । ସମ୍ଭବତଃ ଏହି ନିଜସ୍ୱ ଯୁକ୍ତି ପ୍ରବଣତା ଯୋଗୁ ମାନସିଂହଙ୍କୁ ବୌଦ୍ଧ ହେବାକୁ ପଡ଼ିଥିଲା । ତଥାପି କୌଣସି ଧର୍ମ ସୂତ୍ରରେ ସେ ତଲ୍ଲୀନ ହୋଇ ନଥିଲେ । ତାଙ୍କ ହୃଦୟ ଥିଲା ବୈଷ୍ଣବ ଭକ୍ତିର କାରୁଣ୍ୟରେ ଟଳ ଟଳ ଅଶ୍ରୁଳ, ମସ୍ତିଷ୍କ ଥିଲା ବୌଦ୍ଧ ପ୍ରଜ୍ଞାରେ ସମୁଜ୍ଜ୍ୱଳ । ଆଉ ତାଙ୍କ କଣ୍ଠରେ ଥିଲା ଖ୍ରୀଷ୍ଟିୟାନ୍ ସହାନୁଭୂତିର ଆହ୍ୱାଧ୍ୱନ * ବୌଦ୍ଧ ଧର୍ମାବଲମ୍ବୀ ହୋଇ "ନିବିଡ଼ ଦୁଃଖାନଳେ ଜଡ଼ି ମୁଁ ମରେ ପଛେ ତମର ଲୀଳା ପରକାଶୁ ହେଁ" ବୋଲି କହି ସେ ଈଶ୍ୱର ଆରାଧନା କରିଛନ୍ତି । ଏଣେ ବୁଦ୍ଧ ଓ ବୌଦ୍ଧ ଧର୍ମ ପ୍ରବନ୍ଧରେ ନିରୀଶ୍ୱର ବାଦ ସପକ୍ଷରେ ଯୁକ୍ତି ବାଢ଼ି ବ୍ରାହ୍ମଣ୍ୟ ଧର୍ମର ଅସାରତା ପ୍ରତି ପାଦନ କରୁଛନ୍ତି । ଏ ସ୍ୱବିରୋଧ ଭିତରେ ସେ ସାରାସାର ଗ୍ରହଣ ପ୍ରୟାସକୁ ପରିହାର କରି ନାହାନ୍ତି ଶୁଣାଯାଏ ସାହିତ୍ୟରେ ନବାଗତ ସ୍ରଷ୍ଟା-ମାନଙ୍କୁ ସେ ରାମାୟଣ ମହାଭାରତ ପଢ଼ିବା ପାଇଁ ଉପଦେଶ ଦେଉଥିଲେ । ଏହାର ଉଦ୍ଦେଶ୍ୟ ଥିଲା ସଂସ୍କୃତିର ମୂଲ୍ୟବାନ ବିଭବଗୁଡ଼ିକୁ ଗ୍ରହଣ କରିବା । ପରମ୍ପରା ବୋଧର ଅଭାବରୁ ଓଡ଼ିଶା ଆଜି ଏକ ଅବକ୍ଷୟ (decadence ର ସମ୍ମୁଖୀନ । ଶିକ୍ଷାବିତ୍‌ର ଗାଥାରେ ମାନସିଂହ କହନ୍ତି—"ଆଜି ଓଡ଼ିଆ ଭାଷା ସାହିତ୍ୟର ସ୍ୱକୀୟ ଧର୍ମ ଓ ଚରିତ୍ର ନଷ୍ଟ ହେବା ସଙ୍ଗେ ସଙ୍ଗେ ଐତିହାସିକ ଓଡ଼ିଆ ଜାତିର ସମଗ୍ର ଜାତୀୟ ଜୀବନରେ ସକଳ ନିଜସ୍ୱ ଚରିତ୍ର ନଷ୍ଟ ହୋଇ ଯାଉଛି" । ଏହା ମାନସିଂହଙ୍କ ପରମ୍ପରା ସଚେତନତା ସମ୍ପର୍କରେ ଆମକୁ ପୁଣି ଥରେ ସ୍ମରଣ କରାଇଦିଏ ।

---

* 'ଗୁଣ ସୁନ୍ଦର ହୃଅନ୍ତି ବିକଳ'—ମହାପାତ୍ର ନୀଳମଣି ସାହୁ<br>
ମାନସିଂହ ସ୍ମରଣିକା, ପୃଷ୍ଠା-୨୭

## ସ୍ମୃତି ଚାରଣ—୧

# ଗୁଣ ସୁମର ତୁଅନ୍ତି ଗଳନ…

### ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ

ଅନେକଙ୍କ ଭଳି ମୁଁ ମଧ୍ୟ ଜାଣି ନଥିଲି, ଆପଣ ଦୁଇ ସପ୍ତାହ ଧରି କଟକ ହାସପାତାଳର ମୃତ୍ୟୁ ସଙ୍ଗେ ଧସ୍ତାପସ୍ତା ଲଗାଇ ଥିଲେ । ସେ ଦୁଃସମ୍ବାଦ ଆମର କଟକରୁ ପ୍ରକାଶିତ ଘନଘନଟା ସମ୍ବାଦପତ୍ରର ନିଜସ୍ୱ ସମ୍ବାଦଦାତାମାନଙ୍କର କର୍ଣ୍ଣପଥାରୂଢ଼ ହୋଇ ନଥିଲା । ଆକାଶବାଣୀଙ୍କ ଗୋଚରକୁ ଆସିପାରି ନଥିଲା । ସମ୍ବାଦ ସଂଗ୍ରହକାରୀମାନେ ବୋଧେ ଅପେକ୍ଷାକୃତ ଅଧିକତର ଦୁଃସମ୍ବାଦମାନ ସଂଗ୍ରହ କରିବାରେ ବ୍ୟସ୍ତ ରହୁଥିଲେ ?

ପ୍ରାୟ ମାସକତଳେ ଆପଣ ମୋ ଘରକୁ ଆସିଥିଲେ ମୋ ବାରଣ୍ଡାରେ କେତେଜଣ ଅଧ୍ୟାପକ ଓ ସାହିତ୍ୟିକ ବସିଥିଲେ । ସବୁଥର ପରି ଆପଣଙ୍କୁ ଫାଟକ ପାଖେ ଦେଖି ମୁଁ ପରମ ଶ୍ରଦ୍ଧା, ଭକ୍ତି ଓ ଆନନ୍ଦ ସ୍ୱଭାବାନୁସାରେ ପାଛୋଟି ଆଣିବାକୁ ଯାଇଥିଲି । ମେତେ ମଧ୍ୟ ସେତେବେଳେ କେମିତି କେଜାଣି ଆପଣ "ଆସିବେ ଆସିବେ" ବୋଲି ଲାଗୁଥିଲା । ପ୍ରାୟ ସବୁଥର ସେମିତି ଲାଗେ—ଏବଂ ଆପଣ ଆସନ୍ତି । ଏଥର ବି ଆପଣ ଆସିଲେ । ମାତ୍ର ମୋ ସଙ୍ଗେ ବିଶେଷ କଥାବାର୍ତ୍ତା କଲେନାହିଁ । ଅନ୍ୟମାନଙ୍କ ସଙ୍ଗେ ଦରକାରୀ କଥାବାର୍ତ୍ତା କରିସାରି ପୁଣି ଚାଲିଗଲେ, ମୁଁ ମନେମନେ ପ୍ରମାଦ ଗଣିଲି । ଆପଣ କ'ଣ ମୋ ପ୍ରତି ବିରକ୍ତ ଥିଲେ ? ପ୍ରାୟ ବର୍ଷେହେଲା ଆପଣ ମୋ ସଙ୍ଗେ ଲାଗିଥିଲେ ଆପଣଙ୍କର ଲିଖିତ ବହିଟି ଉପରେ ଗୋଟିଏ ଆଲୋଚନା ଲେଖିଦେବାକୁ । ବହୁ ଜଞ୍ଜାଳ ଓ କିଛି ପରିମାଣରେ ଆଳସ୍ୟ ଜନିତ ଅପ୍ରବୃତ୍ତି ହେତୁ ମୁଁ ତାହା କରିପାରି ନଥିଲି । କିନ୍ତୁ ସବୁ ଠିକ୍‌ଠାକ୍ କରି ରଖିଥିଲି ଲେଖିବି ବୋଲି । ଆପଣ କ'ଣ ମୃତ୍ୟୁ ପୂର୍ବରୁ ମୋ ଠାରୁ ସେତିକେ ଆଶା କରୁଥିଲେ ? କିଛିଦିନ ଧରି ଆପଣ ଆମ୍ଭମାନଙ୍କ ପିଚ୍ଛା ଲାଗିଥିଲେ—ଆପଣଙ୍କର ସାହିତ୍ୟ—କୀର୍ତ୍ତି ଉପରେ ଆମ ଲିଖିତ ମତାମତ ଶୁଣିସିବା ଲାଗି । ଆମେ ତାହା ଶୁଣାଇବାକୁ ମଧ୍ୟ ଖୁବ୍ ଆଗ୍ରହୀ ଥିଲୁ ମାତ୍ର ଆମେ କ'ଣ ଜାଣିଥିଲୁ ଆପଣ ଏତେଶୀଘ୍ର ଆଖି ବୁଜିଦେବେ ଚିରଦିନ ଲାଗି ? ଆପଣ କ'ଣ ସତରେ ଆପଣଙ୍କର କୀର୍ତ୍ତିର ସ୍ୱୀକୃତି ଆମଠାରୁ ଚାହୁଁଥିଲେ ? ନା

ବୋଧେ । ମୋର ତ ମନେ ହେଉଥିଲା—ମୁହଁରେ ଯେତେ ଯାହା ପ୍ରକାଶ କଲେ ବି ଭିତରେ ଭିତରେ ଆପଣ ହୋଇ ଉଠୁଥିଲେ ଖୁବ୍ ଉଦାର ଆଉ ନିର୍ଲିପ୍ତ ।

ହଁ—ଆପଣଙ୍କ ଠାରେ ହୃଦ୍‌ରୋଗର ପ୍ରଥମ ଆକ୍ରମଣ ବେଳଠାରୁ ମୁଁ ଏକଥା ଜାଣିଛି, ଭିତରେ ଭିତରେ ଗତ କେତୋଟି ବର୍ଷଧରି ଆପଣ ଖୁବ୍ ନିଃସ୍ୱ, ନିର୍ଲିପ୍ତ ଓ ଉଦାସୀନ ହୋଇ ଯାଇଥିଲେ । ଆପଣଙ୍କ ଚେତନାର ମୂଳ କେନ୍ଦ୍ରରେ ଆପଣ ବୁଦ୍ଧଙ୍କର ନିର୍ବାଣ ପ୍ରେରଣା ଅନୁଭବ କରୁଥିଲେ କି ? ଆପଣଙ୍କ ଚହାଣୀରୁ ମନେ ହେଉଥିଲା—ସତେ କି ଆପଣ ସର୍ବଜ୍ଞ ଶୂନ୍ୟତାକୁ ଦେଖୁଛନ୍ତି । ଶେଷ ପର୍ଯ୍ୟନ୍ତ ଅବଶ୍ୟ ଆପଣ ପୂର୍ବବତ୍ ହୋ ହୋ ହୋଇ ହସୁଥିଲେ । ମାତ୍ର ସତେ କି ଭିତର ସଙ୍ଗେ ଆଉ ତାର ବିଶେଷ ସମ୍ପର୍କ ନଥିଲା । ମୁଁ ବୁଝୁଥିଲି—ଆପଣ ସବୁ ଛାଡ଼ି ଦେବାକୁ ଆରମ୍ଭ କଲେଣି । ସେଇଥି ଲାଗି କି'ଣ ଆପଣଙ୍କ ଅନୁରୋଧକୁ ମୁଁ ବିଶେଷ ଗୁରୁତ୍ୱ ଦେଇ ନଥିଲି ? ଆପଣଙ୍କୁ ଠିକ୍‌ଭାବେ ବୁଝିବା ସବୁଦିନେ ଏମିତି ମୋର ସାଧ୍ୟାତୀତ ।

୧୯୪୨ ଠାରୁ ଆପଣଙ୍କ କବିତା ସଙ୍ଗେ ମୁଁ ପରିଚିତ । ମାତ୍ର ୧୯୪୯ ମସିହା ଠାରୁ ବ୍ୟକ୍ତିଗତ ଭାବେ ଆପଣଙ୍କ ସଙ୍ଗେ ଘନିଷ୍ଠ ଭାବେ ସମ୍ପର୍କିତ ହୋଇ ଯାଇଥିଲି ! ଦୁଇ ବର୍ଷକାଳ ତ ମୁଁ ଆପଣଙ୍କର ବେଶ୍ ନିକଟରେ ରହିଛି । ଆପଣ ମୋର ପିତାତୁଲ୍ୟ, ଗୁରୁତୁଲ୍ୟ । ଆପଣ ମୋର ପ୍ରେମିକ ତୁଲ୍ୟ, ଆପଣ ପ୍ରେମମୟ ପୁରୁଷ । ମୁଁ ଆପଣଙ୍କର ପଦସେବା କରିବାର ଅଧିକାର ଭୋଗ କରିଛି । ଦୁଇବର୍ଷ କାଳ ଆପଣଙ୍କର କନିଷ୍ଠ ପ୍ରିୟ ଶିଷ୍ୟ ବନ୍ଧୁଭଳି ଆପଣଙ୍କ ସଙ୍ଗେ ଏକତ୍ର କାର୍ଯ୍ୟ କରିଛି ଓ ଏକତ୍ର ଭ୍ରମଣ କରିଛି । ସେତିକିବେଳେ ମୁଁ ଆପଣଙ୍କୁ ପ୍ରାଣଭରି ଭଲ ପାଇଛି । ପ୍ରେମରେ ପଡ଼ି ଯାଇଛି । ମାତ୍ର ମୁଁ ଏହା ମଧ୍ୟ ଜାଣେ—ଏବେ ବି ଜାଣେ ଆପଣଙ୍କ ହୃଦୟରେ ମୋର ଏହି ପ୍ରେମରେ ପଡ଼ିବା ସମ୍ବାଦ ଏତେ ଜୋରରେ ବାଜି ନଥିବ । ବାଜିବା ମଧ୍ୟ ସବୁବେଳେ ସମ୍ଭବ ନୁହେଁ, ନ ବାଜିଲେ ବିଶେଷ କିଛି ଯାଏ ଆସେନା, ପ୍ରେମ ରାଜ୍ୟରେ ଏକପାଖିଆ ଗତି ଚଳେ । ସେହି ପାଖାପାଖି ରହିବା ସମୟ ଭିତରେ ମୁଁ ଆପଣଙ୍କ ସଙ୍ଗେ ବହୁତ ମିଶିଛି । ଆପଣଙ୍କ ସଙ୍ଗେ ଧର୍ମ ଦର୍ଶନ ଓ ସାହିତ୍ୟ ସମ୍ପର୍କରେ ବହୁ ଆଲୋଚନା କରିଛି । ବେଳେବେଳେ ସବୁ ନୈଷ୍ଠିକ ପ୍ରେମିକଙ୍କ ଭଳି । ବିଶ୍ୱାସୀଙ୍କ ଭଳି, କର୍ମୀ ଓ ଜ୍ଞାନୀଙ୍କ ଭଳି ଆପଣ ଆପଣଙ୍କର ଧାରଣା ଓ ମତରେ ମତାନ୍ଧ ଭଳି ଅଟଳ ରହି ଯୁକ୍ତି କରନ୍ତି । ଅବଶ୍ୟ ଆପଣ ଖୁବ୍ ଜ୍ଞାନୀଥିଲେ— ଖୁବ୍ ଶକ୍ତିଶାଳୀ ମଧ୍ୟ ଥିଲେ ।

ତତ୍ତ୍ୱସନ୍ଧରେ ବି ମୁଁ ଆପଣଙ୍କୁ ଶୋଚନୀୟ ଭାବେ ତର୍କ ବା ଆଲୋଚନାରେ ପରାସ୍ତ କରିଛି ।

ଆପଣ ବୌଦ୍ଧଧର୍ମର ପୁନରୁତ୍‌ଥାନ ଚାହୁଁଥିଲେ । ମୁଁ ଚାହୁଁଥିଲି ବୈଷ୍ଣବ-ଧର୍ମର ଅଭ୍ୟୁତ୍ଥାନ । ଆପଣ ଭସବାଦର ସପକ୍ଷରେ ଯୁକ୍ତି କଲେ ମୁଁ ଧରୁଥିଲି ଗୀତ

ବାଦର ପକ୍ଷ । ଆପଣ ସ୍ୱତନ୍ତ୍ର ବାଦର ପକ୍ଷ ନେଲେ ମୁଁ ଧରୁଥିଲି ସମାଜବାଦର ପକ୍ଷ । ବହୁବାର ଆପଣ ପରାସ୍ତ ହୁଅନ୍ତି । ମାତ୍ର ଆଶ୍ଚର୍ଯ୍ୟ କଥା ! ପରାଜୟ ସ୍ୱୀକାର କରିସାରି ଆପଣ ମୋ ଆଖିକୁ ଏକ ବିଚିତ୍ର ଦୁର୍ବୋଧ୍ୟ ଉଦାର ପିତୃ-ସୁଲଭ ଦୃଷ୍ଟିରେ ଚାହିଁ ରହି ହୋ ହୋ କରି ହସି ଉଠନ୍ତି । ସେତିକିବେଳେ ମତେ ଅକସ୍ମାତ୍ କେମିତି ଲାଜ ଲାଗେ । ମୁଁ ମନେ ମନେ ଆପଣଙ୍କର ଗୋଟେ ଗେହ୍ଲାଝିଅଟିଏ ଭଳି ଆପଣଙ୍କ କୋଳରେ ମୁହଁ ଲୁଚାଇ କାନ୍ଦି ଉଠେ । ସତେ କି ଆପଣ ହାରିବା ଉଚିତ ନୁହେଁ, ସୁନ୍ଦର ନୁହେଁ । ମୋ ଅଜଣାତରେ ମୁଁ ଆପଣଙ୍କୁ ହରେଇ ଦେଇଛି । ଝିଅମାନେ ବାପାଙ୍କୁ ହରେଇ ଦେବାକୁ ଚାହାନ୍ତି ନାହିଁ । ଝିଅମାନେ କ'ଣ ସୁଖ ହୋଇଛନ୍ତି କି ? ବାପ ହାରିଲେ ଯାଇ ଖୁସି ହେବେ ? ଆପଣଙ୍କ ଭଳି ପ୍ରେମିକ ପିତା ମିଳିଲେ କିଏ ଭଲା ଆପଣଙ୍କ ଝିଅ ହେବାକୁ ନ ଚାହିଁବ ? ସବୁ ରୂପବତୀ ଓ ରସବତୀ ନାରୀଙ୍କ ପାଇଁ ଆପଣ ଯେମିତି ଜଣେ ସୁନ୍ଦର ପ୍ରେମିକ ଆଉ କବିପୁରୁଷ—ସେମିତି ସବୁ ଭାବବତୀ ସେବାପରାୟଣା ବାତ୍ସଲ୍ୟାସିକ୍ତା କନ୍ୟାମାନଙ୍କର ଆପଣ ଅଭିଳଷିତ ପ୍ରେମିକ ପିତାଟିଏ ଭଳି ନଥିଲେ କି ? ସେଇଥିପାଇଁ କ'ଣ ଯୋଗ୍ୟପୁତ୍ରମାନେ ଥାଇଁ ଥାଇଁ ଆପଣଙ୍କର ସାନଝିଅଟି ଆପଣଙ୍କର ମୁଖଚନ୍ଦ୍ରରେ ଅଗ୍ନିସଂଯୋଗ କଲା । ମୋର ତା ପ୍ରତି ଈର୍ଷା ହୁଏ । ମୁଁ ଆପଣଙ୍କର ଝିଅଟିଏ ହୋଇଥାନ୍ତି କି ! ତାହେଲେ ମୁଁ ଆପଣଙ୍କର ପ୍ରଣୟଗୀତଗୁଡ଼ିକୁ ସବୁ ମୁଖସ୍ଥ କରି ଦେଇଥାନ୍ତି । ଆପଣଙ୍କର ବ୍ୟକ୍ତିଗତ ସୁଟକେସ୍‌ଟିକୁ ନିରୋଳାରେ ଖୋଲି ଆପଣଙ୍କର ପ୍ରେମିକାର ଲିଖିତ ପ୍ରେମପତ୍ର ସବୁ ଲୁଚି ଲୁଚି ପଢ଼ି ନେଇଥାନ୍ତି । ଆଉ ଲୋକମୁଖରୁ ମନଦେଇ ଶୁଣିଥାନ୍ତି—ଆପଣଙ୍କର ସେହିସବୁ ରୋମାଞ୍ଚକର ପ୍ରେମାଭିସାରର କାହାଣୀମାନ । ସେଇଠୁ ମୁଁ ନିଜକୁ ଆପଣଙ୍କ ପ୍ରେମିକା ଭଳିଆ ଗଢ଼ିବାକୁ ଚେଷ୍ଟା କରିଥା'ନ୍ତି ଓ ଶେଷରେ ଆପଣଙ୍କ ଭଳି ପ୍ରେମିକଟିଏ ଖୋଜିବୁଲି ଥାଆନ୍ତି ଜୀବନ ସାରା । ପାଇଥାନ୍ତି ? କେଜାଣି ?

ଆପଣଙ୍କର ବ୍ୟକ୍ତିତ୍ୱ କି ଅଦ୍ଭୁତ ! କେତେ ବିରୋଧାଭାସୀ ସ୍ୱଚ୍ଛ ଗତି ବୃତ୍ତିରେ ଗୋଳାଆମିଶା ବ୍ୟକ୍ତିତ୍ୱ ଆପଣଙ୍କର ! କେତେ ସୁମଧୁର ! କେତେ ଉଚ୍ଛ୍ୱାସକ ! ଆଉ କେତେ ଆକର୍ଷକ ! ଆପଣ ପ୍ରଥମ ଯୌବନର ଅନ୍ୟର ବିବାହିତା ଯୁବତୀ ପତ୍ନୀ ସଙ୍ଗେ ସନ୍ଧ୍ୟାକାର ତଳେ ଗୁପ୍ତ ପରକୀୟା ପ୍ରଣୟରେ ମାତିଥିଲେ ବୋଲି ଶୁଣାଯାଏ । ସେ ପ୍ରଣୟ ଶେଷ ପର୍ଯ୍ୟନ୍ତ ଆପଣଙ୍କ ଅନ୍ତରକୁ ଉଦ୍‌ବେଳିତ ଓ ଉଦଭାସିତ କରି ରଖିଥିଲା—ମୁଁ ଜାଣେ । ଆପଣଙ୍କର ସେହି ରସବତୀ ପ୍ରେମମୟୀ ପ୍ରଣୟିନୀଙ୍କ ପ୍ରତି ଏବେବି ଆପଣଙ୍କର ଅନ୍ତର କି ଗଭୀର ସମ୍ମାନଜନକ ଭାବ ବେଶରେ ପୂର୍ଣ୍ଣଥିଲା । ତାହା ମଧ୍ୟ ମତେ ଜ୍ଞାତବ୍ୟ ଅଛି ।

ଅଥଚ ଆପଣଙ୍କ ଭଳି ପୂର୍ଣ୍ଣ, ଶୃଙ୍ଖଳିତ ଓ ନିରାପଦ ଦାମ୍ପତ୍ୟ ଜୀବନ କେତେ ଜଣଙ୍କର ବା ଅଛି ? ଆପଣଙ୍କର ବହୁଲେଖା ଭିତରେ ଆପଣ ଆପଣଙ୍କର ପ୍ରିୟବତୀ

ପତ୍ନୀ ହେମଲତାଙ୍କ ପ୍ରତି ଗଭୀର କୃତଜ୍ଞତା ଓ ସମ୍ମାନସୂଚକ ଜ୍ଞାପନ କରିଛନ୍ତି। ଜୀବନର ବହୁ ଜଟିଳ ଓ ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ଆପଣ ସେହି ବୁଦ୍ଧିମତୀ ଓ ସୁନିପୁଣ। ଗୃହିଣୀଙ୍କର ସତର୍କ ପରାମର୍ଶ ଗ୍ରହଣ କରିଅଛନ୍ତି। ଏଣେ ଆପଣ ବୃତ୍ତିରେ ଥିଲେ ଜଣେ ଆଦର୍ଶ ଶିକ୍ଷକ, ଅଧ୍ୟକ୍ଷ ଏବଂ ପାରିବାରିକ ଓ ସାମାଜିକ କ୍ଷେତ୍ରରେ ଜଣେ ନୀତିବାନ୍ ବ୍ୟକ୍ତି। ଆଚ୍ଛା ତେବେ କିପରି ଏ ପରିସ୍ଥିତିରେ ଆପଣ ଆପଣଙ୍କର ସେହି ରୋମାଣ୍ଟିକ୍ ଗୁପ୍ତ ପ୍ରଣୟାନୁଭୂତିକୁ ନିଜ ଭିତରେ ଏମିତି ଲୁଚାଇ ରଖିପାରିଥିଲେ ? ପାପ-ପ୍ରଣୟ ବେଶିଦିନ ରହେନାହିଁ। ଆସେନ୍ଦ୍ରିୟ ପ୍ରୀତି କ୍ଷଣସ୍ଥାୟୀ ଓ ସନ୍ତାପ ଦାୟକ, ମାତ୍ର ସବୁ ଉତ୍ତମ ପ୍ରେମିକ ପୁରୁଷଙ୍କ ଭଳି ହୃଦୟର ନିଭୃତମ, ଗଭୀରତମ ରସାତଳ ପ୍ରଦେଶରେ ଅତି ସଗୋପନରେ ଓ ଏକାନ୍ତ ବ୍ୟକ୍ତିଗତ ରୋମାଣ୍ଟିକ୍ ପ୍ରେମକୁ କିପରି ଫୁଲ, ଚନ୍ଦନ, ତୁଳସୀ ଓ ଧୂପାଳତି ଦେଇ ପୂଜା କରାଯାଏ ସେ ସାଧନା ଆପଣଙ୍କୁ ନିଶ୍ଚୟ ଜଣାଥିଲା।

ନ ହେଲେ ଏକଇ କଣ୍ଠରୁ 'ଧୂପ' ଓ 'ହେମଶସ୍ୟ'ର ସଙ୍ଗୀତ ସମାନ ଆବେଗ, ସମାନ ଗ୍ରୀତି ଓ ସମାନ ତାଳରେ ନିଃସୃତ ହୋଇଥାନ୍ତା କିପରି ? ଆପଣ କିଣ ସତରେ ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତିକୁ ସମାନ ଭାବରେ ଧରି ରଖିଥିଲେ ? କେଜାଣି ? ବିଶ୍ୱାସ ହୁଏନା। ଆପଣ ସଂସାର କ୍ଷେତ୍ରରେ ଚିରଦିନ ବିପଦ, ସଙ୍କଟ ଓ ବିରୋଧ ଭିତରେ ଚାଲିଛନ୍ତି। ଆପଣଙ୍କର ନିଷ୍ପାପର ଦାମ୍ପତ୍ୟ ପ୍ରେମ ଗୋଟିଏ ନିରାପତ୍ତାର ଦୁର୍ଗ ମଧ୍ୟରେ ସର୍ବଦା ଆପଣଙ୍କୁ ରକ୍ଷା କରି ଆସିଥିଲା। ସେହିପରି ଭାବଜଗତରେ ମଧ୍ୟ ଆପଣ ବହୁ ବିରୋଧ ଓ ସଙ୍କଟର ସମ୍ମୁଖୀନ ହୋଇଛନ୍ତି। କିଣ ଆପଣଙ୍କର ସେହି ଗୋପନୀୟ ଚିତ୍ତ ମନ୍ଦିରରେ ନିତ୍ୟ ପୂଜିତା ପରକୀୟା ପ୍ରେମନିଷ୍ଠା ଆପଣଙ୍କୁ ଭାବଜଗତର ସେହି ସବୁ ଝଡ଼ଝଞ୍ଜା ଭିତରେ ବି ଏକ ରକ୍ଷା କବଚର ଅଲୌକିକ ଯାନ୍ତ୍ରିକ ଶକ୍ତିରୂପେ ଆପଣଙ୍କୁ ଧୈର୍ଯ୍ୟ, ଶକ୍ତି, ବଳ, ଉଚ୍ଛ୍ୱାସ, ଆବେଗ, ପ୍ରେରଣା ଏବଂ ତତ୍ସଙ୍ଗେ ସଙ୍ଗେ ବୈରାଗ୍ୟ, ନିରାସକ୍ତି, କ୍ଷମା ଓ ତିତିକ୍ଷାଦ୍ୱାରା ଆପଣଙ୍କୁ ସବୁବେଳେ ଆପଣଙ୍କ ଅଲକ୍ଷ୍ୟରେ ରକ୍ଷା କରି ଆସୁଥିଲା ? ଦୁଇଟା ଇ ବୋଧେ ସତ୍ୟ ମାତ୍ର ଏକଥା ମ ନିବାକୁ ହେବ—ଆପଣ ପରକୀୟା ଜଗତରେ ଇ ଥିଲେ ବି କବି, ପ୍ରେମିକ ଓ ସନ୍ନ୍ୟାସୀ।

ଆଚ୍ଛା—ଆପଣ ଆଗ କବି ନା ଆଗ ପ୍ରେମିକ ? ବୋଧେ ଆଗେ ପ୍ରେମିକ, ପ୍ରେମ ହିଁ ଆପଣଙ୍କର କବିତାର ଉତ୍ସ। ଆପଣ, ନାରୀଠାରୁଇ ପ୍ରେମ ସାଧନା ଆରମ୍ଭ କରିଛନ୍ତି। ଭଲ ପାଇଛନ୍ତି ରୂପବତୀ ଓ ରସବତୀ ନାରୀର ସାକାର ରୂପ ଓ ନିରାକାର ରସ ମାଧୁର୍ଯ୍ୟକୁ। ସେହି ନାରୀ ହିଁ ଆପଣଙ୍କ ପ୍ରେମକୁ ମୁକ୍ତି ଦେଇଛୁ—ଦେଇଛୁ ମଧ୍ୟ ଗତି ଓ ଶକ୍ତି। ଆପଣ ଶିଶୁମାନଙ୍କୁ ଭଲପାନ୍ତି। ଭଲପାନ୍ତି ଚତୁର୍ଦ୍ଦିଗର ପ୍ରକୃତିକୁ। ପୁଣି ଆପଣଙ୍କ ଭଳି ଜୀବନବାଦୀ ସମାଜ ପ୍ରେମିକ ମୁଁ ଏ ଦେଶରେ ବେଶି ଦେଖିଛୁ

କି ?···ସେଥିରେ ଆପଣଙ୍କ ପ୍ରେମ ବିଗଳିତ ହୋଇ ବହିଯାଇଛି ଭକ୍ତିର ଧାରଟିଏ ହୋଇ କାହିଁ ଆଡ଼କୁ ? ଈଶ୍ୱର ଆପଣ ଈଶ୍ୱର ବିଶ୍ୱାସ କରନ୍ତି ? ଆପଣ ପରା ବୌଦ୍ଧ ? କିନ୍ତୁ ବେଦର ମନ୍ତ୍ରଗୁଡ଼ିକ ପ୍ରତି ଆପଣ ଏତେ ଉଚ୍ଛାସିତ ହୁଅନ୍ତି କିପରି ? ଆପଣ ବୈଷ୍ଣବ ଧର୍ମର ନିନ୍ଦା କରନ୍ତି । ବୈଷ୍ଣବ ଧର୍ମର ଅତ୍ୟଧିକ କୋମଳ ଭାବାବେଗ ଓଡ଼ିଶାରୁ କ୍ଷାତ୍ରତେଜ ଲୋପ କରିଦେଲା—ଏ ବାକ୍ୟ ଆପଣ ପ୍ରଥମେ ଶୁଣିଥିଲେ ନବଜାତ ଭାରତର ପ୍ରଥମ ସ୍ୱାତନ୍ତ୍ର୍ୟବିଧାତା ବୀରେଶ୍ୱର ସ୍ୱାମୀ ବିବେକାନନ୍ଦଙ୍କ କଣ୍ଠରୁ । ତା ପରେ ଆପଣ ସେହି ସୂକ୍ତିରେ ମାତିଗଲେ । ଆପଣ ବିବେକାନନ୍ଦଙ୍କୁ ବୁଦ୍ଧ ଓ ଶଙ୍କରଙ୍କ ଭଳି ଭଲ ପାଉଥିଲେ । ଆପଣ ବିବେକାନନ୍ଦଙ୍କ ବାକ୍ୟ ଆବୃତ୍ତି କରି ତାତି ଉଠୁଥିଲେ । ଅଥଚ ଭାବବିହ୍ୱଳ ପ୍ରେମାବତାର ଶ୍ରୀଚୈତନ୍ୟ ଓ ଶ୍ରୀ ରାମକୃଷ୍ଣଙ୍କ କଥା ପଢ଼ିଲେ ଆପଣ କାନ୍ଦି ଉଠୁଥିଲେ କିପରି ? ଚଉକିରୁ ଉଠିପଡ଼ି ବା ରାସ୍ତାରେ ଚାଲୁ ଚାଲୁ ଦୁଇବାହୁ ଆକାଶକୁ ଉଠାଇ କାନ୍ଦି ଉଠନ୍ତି କେଉଁ ପ୍ରେରଣାରେ ? ଜଗନ୍ନାଥ ମନ୍ଦିରକୁ ଆପଣ କେତେଥର ଯାଇଛନ୍ତି ? ମୁଁ ଜାଣେ ବୁଦ୍ଧଗୟା, ବେଲୁଡ଼, ଦକ୍ଷିଣେଶ୍ୱର ଓ ପଣ୍ଡିଚେରୀକୁ ମିଶାଇ ଆପଣ କେବଳ ତୀର୍ଥ ଉଦ୍ଦେଶ୍ୟରେ ବହୁବାର ଭାରତ ଭ୍ରମଣ କରିଛନ୍ତି । ଉତ୍ତର, ପୂର୍ବ, ଦକ୍ଷିଣ, ପଶ୍ଚିମ ଭାରତ । ଅଥଚ ଓଡ଼ିଶାକୁ ଜଗନ୍ନାଥଙ୍କ ଦେଶ ଓ ହିନ୍ଦୁଧର୍ମକୁ ଜଗନ୍ନାଥ ଧର୍ମରେ ପରିଣତ କରିବାରେ ଆପଣ କେଡ଼େ ପ୍ରଗଲ୍‌ଭ ଓ ଜିଦ୍‌ଖୋର ନଥିଲେ । ଆପଣତ ବୌଦ୍ଧ ! କିନ୍ତୁ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ କହି ଏତେ ଲେଖକ-ବ୍ୟାକୁଳ ହୁଅନ୍ତି କିପରି ? ଆପଣ ପଣ୍ଡିଚେରୀ ଯାଉଥିବାବେଳେ ଶ୍ରୀମାଙ୍କୁ ବହୁ ପ୍ରଶ୍ନ କରିବାଲାଗି ମନସ୍ଥ କରିଥିଲେ । ମାତ୍ର ଆପଣଙ୍କ ତୁଣ୍ଡରୁ ଶୁଣିଛି ଆପଣ ମା'ଙ୍କ ମୁହଁକୁ ଚାହିଁବା ମାତ୍ରେ ହଠାତ୍ କଇଁ କଇଁ ହୋଇ କାନ୍ଦିଉଠି ତାଙ୍କ କୋଳରେ ମୁହଁ ମାଡ଼ିଦେଲେ—କେଉଁ ଅନ୍ତର ପ୍ରେରଣାରେ ? କେଉଁ ଭାବାବେଗର ଅଧୀନ ହୋଇ ? ଶ୍ରୀମା କିଏ ? ତାଙ୍କ ସଙ୍ଗେ ଆପଣଙ୍କର କି ପ୍ରକାର ସମ୍ପର୍କ ଓ ଯୋଗାଯୋଗ ଥିଲା, ମୁଁ ଜାଣେ—ଆପଣଙ୍କ ହୃଦୟ ଥିଲା ବୈଷ୍ଣବ-ବିରହ-କାରୁଣ୍ୟରେ ଛଳ ଛଳ ଅଶ୍ରୁଳ, ମସ୍ତିଷ୍କ ଥିଲା ବୌଦ୍ଧ ପ୍ରଜ୍ଞାରେ ସମୁଜ୍ଜ୍ୱଳ । ଆଉ ଆପଣଙ୍କ କଣ୍ଠରେ ଥିଲା ଖ୍ରୀଷ୍ଟିଆନ୍ ସହାନୁଭୂତିର ଆହା ଆହା ଧ୍ୱନି ।

କାବ୍ୟ ଜଗତରେ ଆପଣ ଥିଲେ ଅତୀତ ଓଡ଼ିଶାର ରୋମାଣ୍ଟିକ୍ ଭାବଶୈଳୀର ଅଭ୍ୟୁତ୍ଥାନପନ୍ଥୀ । ତାର ସୁର୍ ଥିଲା ଭାବପ୍ରବଣ ସଞ୍ଚାରଶୀଳ । ମାତ୍ର ଗଦ୍ୟ ରଚନାରେ ଆପଣ ଥିଲେ ଆଧୁନିକ ପାଶ୍ଚାତ୍ୟ ବିଶ୍ଲେଷଣ ଉପରେ ବୁଦ୍ଧିବାଦର ପ୍ରବର୍ତ୍ତକ । ଆପଣଙ୍କର ଗଦ୍ୟର ଧର୍ମ ହେଉଛି ବିଚାରାତ୍ମକ, ପ୍ରତ୍ୟୟାତ୍ମକ ଓ ନିର୍ଦ୍ଦେଶାତ୍ମକ; ବେଳେବେଳେ ବ୍ୟଙ୍ଗାତ୍ମକ ବା ବିଦ୍ରୂପାତ୍ମକ ମଧ୍ୟ । ଓଡ଼ିଆ ଭାଷାରେ ଲେଖିଲାବେଳେ ଆପଣଙ୍କର ଚିନ୍ତା-ସଙ୍ଗତି ବା ଭାବସାମ୍ୟ ରହୁନାହିଁ । ଭାବପ୍ରବଣ

ହୋଇ କାହା କାହାକୁ ଅବାନ୍ତର ଭାବେ ଶୋଧି ପକାନ୍ତି—ଅକାରଣ ଅନ୍ୟକୁ ଶରମାଣ ଆହତ କରନ୍ତି । ମାତ୍ର ସେହି କଥା ଇଂରେଜୀରେ ଲେଖିଲାବେଳେ ଆପଣ କେମିତି ଏତେ ସଂଯତ ରହିପାରନ୍ତି ? ଏ ପ୍ରକାର ଦୋଷ ଭାଷାଗତ ପ୍ରେରଣାରୁ ନା ଏହା ଏକ ବ୍ୟକ୍ତିଗତ ଅସଂଯମ ? ଆପଣ ତ ଓଡ଼ିଆ ଗଦ୍ୟକୁ ଇଂରେଜୀ ଗଦ୍ୟ ଛାଞ୍ଚରେ ପକାନ୍ତି । ତା ହେଲେ ଇଂରେଜୀ ଶୈଳୀର ସଂଯମ ଓଡ଼ିଆ ଗଦ୍ୟରେ ରଖନ୍ତି ନାହିଁ କାହିଁକି ବୁଝିହୁଏ । ଆପଣ ଅନୁଭବ କରନ୍ତି ଓଡ଼ିଆରେ । ମାତ୍ର ଇଂରେଜୀରେ ହିଁ ଚିନ୍ତା କରନ୍ତି । ଅସୁବିଧା ନ ହେବ କପରି ?

ଆପଣ ଯେତେବେଳେ ଅକାରଣ ଉଚ୍ଛ୍ୱସିତ ହୋଇ ହୋ ହୋ ହସି ଉଠନ୍ତି—ଦିଶନ୍ତି ଅବୋଧ ଶିଶୁଟିଏ ଭଳି । ଯେତେବେଳେ କଇଁ କଇଁ ହୋଇ ଅକାରଣ କାନ୍ଦି ପକାନ୍ତି—ଦିଶନ୍ତି ରସ ପରିପକ୍ୱ ପ୍ରୌଢ଼ଟିଏ ତାଙ୍କୁ ଅପେକ୍ଷା କରି ଏଯାବତ୍ କୁମାରୀ ରହିଥିବା ତାଙ୍କର ଆଦ୍ୟ-ଯୌବନର ପ୍ରଣୟିନୀର କଥା ମନେ ପକାଇ କାନ୍ଦୁଛନ୍ତି । ଆଉ ଯେତେବେଳେ ଭର୍ତ୍ସନା ବା ଉପହାସ କରନ୍ତିନା ଲାଗନ୍ତି – ବର୍ତ୍ତମାନର ପରିସ୍ଥିତି ଓ ଲୋକମାନଙ୍କୁ ନ ବୁଝିପାରି ବା ସେମାନଙ୍କ ସଙ୍ଗେ ଏକମତ ନ ହୋଇ ବରଂ, ଚିଡ଼ି ଚିଡ଼ିଗଲା ବୃଦ୍ଧଟିଏ ।

ଆପଣଙ୍କର ଜନ୍ମ ପରା ଓଡ଼ିଶାର ବିଖ୍ୟାତ କ୍ଷତ୍ରିୟ ଖଣ୍ଡାଏତ ବଂଶରେ ? କେହି କେହି ଆପଣଙ୍କୁ ଜାତିରେ ହୀନ କରିବାପାଇଁ ଅସମ୍ମାନ ଅର୍ଥରେ "ଚଷା" ବୋଲି ଥଟ୍ଟା କରିବାର ମୁଁ ଜାଣିଛି । ଜଣେ ବରିଷ୍ଠ ସାହିତ୍ୟିକ ଆପଣଙ୍କୁ ମାଙ୍କଡ଼ଧର ନାୟକ ବୋଲି କହି ବାରମ୍ବାର ଥଟ୍ଟା କରନ୍ତି । ଆପଣ ବି ସେକଥା ଜାଣିଥିଲେ । ମୋର କିନ୍ତୁ ମନେହୁଏ—ସତେକି ଆପଣଙ୍କ ବଂଶର ମାଆମାନେ ପବିତ୍ର କୃଷକ ପରିବାରରୁ ଆସିଥିଲେ ଓ ପିତାମାନେ ଜନ୍ମିଥିଲେ ପ୍ରଚଣ୍ଡ-ତେଜା ସୂର୍ଯ୍ୟ ବା ଚନ୍ଦ୍ର-ବଂଶୀୟ କ୍ଷତ୍ରୀୟମାନଙ୍କ ଔରସରୁ । କାରଣ ଆପଣଙ୍କଠାରେ ଥିଲା କ୍ଷତ୍ରିୟ ସୁଲଭ ମହାଭିମାନୀ ଉଦଗ୍ର, ଜିଦ୍‌ଖୋର ପ୍ରକୃତି; କ୍ଷାତ୍ରତେଜୋଦୀପ୍ତ ଅହଂକାରୀ ଅଭିଜାତ ସମ୍ମାନବୋଧ, ସଦର୍ପ ଗୁଳି ଓ ତେଜୋଦୃପ୍ତ ଗୃହାଣୀ, ଦେଟରକାର ବାଣୀ ଓ ଅନ୍ୟର ତେଜକୁ ମ୍ଳାନ କଲାଭଳି, ଅନ୍ୟକୁ ଉଡ଼େଇ ଦେଲାଭଳି ବେପରୁଆ ଭୀଷଣ ଅଟ୍ଟହାସ । ଗଦ୍ୟ ଲେଖିଲାବେଳେ ଆପଣ କଲମ ଚଳାନ୍ତି ନା ତରବାରୀ ଚଳାନ୍ତି ? କାରଣ ଆପଣଙ୍କର ଗଦ୍ୟ ଶୈଳୀ କହେ—କାହାକୁ ମାରିବି ଦେଖାଅ । ଦେଖାଅ ମତେ କାହାକୁ ତାରିବି । ଏକଥା ଦେଖିଲେ କିଏ ଅବିଶ୍ୱାସ କରିବ ଯେ ଆପଣ କ୍ଷତ୍ରିୟ ପିତାର ଔରସରୁ ଜନ୍ମ ।

କିନ୍ତୁ ତା ସଙ୍ଗେ ସଙ୍ଗେ ବି ଆଉରି ଏକ ବ୍ୟକ୍ତିତ୍ୱ ଆପଣଙ୍କର ଫୁଟିଉଠେ । ସେଇଟି ଆପଣଙ୍କର କବି-ବ୍ୟକ୍ତିତ୍ୱ । କୃଷକର ସରଳତା, କମନୀୟତା, ସହନଶୀଳତା,

ଶ୍ରମଶୀଳତା, ଅନାସକ୍ତ, ଫଳତ୍ୟାଗ, ସୃଜନଶୀଳତା, ପରିହାସ, ନିଷ୍ଠା, ବିଶ୍ୱାସ, ଅପେକ୍ଷମାଣତା ଓ ଅଶ୍ରୁସଜଳ ଧ୍ୟାନତା ଆପଣଙ୍କଠାରେ ଯେ ଦେଖିନି, ସେ ଆପଣଙ୍କୁ ଚିହ୍ନି ଦେଖିନାହିଁ । ଏତେବେଳେ ଆପଣ କବିତା ଲେଖନ୍ତି । ଆପଣ କଲମ ଚଳାନ୍ତି କାବ୍ୟ-କ୍ଷେତ୍ରରେ ଲଙ୍ଗଳ ବା ମଇଟିଏ ଭଳି । ଉପର ମାଟି ତଳକୁ ହୁଏ, ତଳମାଟି ଉଠେ ଉପରକୁ । ସମାନ ହୁଏ, କ୍ଷେତ ହୁଏ ସମତଳ । ବିହନ ବୁଣାଯାଏ, ଗଛ ହୁଏ, ଫୁଲ ଫୁଟେ । ଶସ୍ୟ ଫଳେ—'ପ୍ରେମପୁଷ୍ପ' ବା 'ହେମଶସ୍ୟ' । ହୃଦୟର ଉଷ୍ମ ଅନୁଭୂତିରେ ଆଖିରେ ଅଶ୍ରୁ ମିଶେ । ମାଟି ହୁଏ ଆଦ୍ରୋଷ୍ଣ—ସୁଶ୍ୟାମଳ-ସୁମେଦୁର । ମାଟି ହୁଏ ବାଣୀ-ମୁଖର-ରୂପମୟ, ରସମୟ, ଗୀତିମୟ ।

ବିଲାତରୁ ପି. ଏଚ ଡି. କରି ଫେରିଲାପରେ ଆପଣଙ୍କୁ ରେଭେନ୍‌ସା କଲେଜରେ ଇଂରେଜୀ ଲେକ୍‌ଚରର ପଦଟିଏ ମଧ୍ୟ ସେ କାଳର ଓଡ଼ିଆ ପ୍ରଶାସନକ ମାନେ ଦେଇନଥିଲେ; କିନ୍ତୁ ଶେଷ ପର୍ଯ୍ୟନ୍ତ ଆପଣଙ୍କର ଜୀବନ ଏକ ଶିକ୍ଷାବ୍ରତର ଗାଥାରୂପେ ଜାତିର କଣ୍ଠରେ ଧ୍ୱନିତ ଓ ପ୍ରତିଧ୍ୱନିତ ହୋଇ ଗ୍ଳିଥିବ ।

ଆପଣ ବୁଦ୍ଧଙ୍କ ପ୍ରେମରେ ପଡ଼ି ହିନ୍ଦୁଧର୍ମ ତ୍ୟାଗ କରିଥିଲେ । ମାତ୍ର ବେଦ, ଉପନିଷଦ ଓ ଗୀତା ଲାଗି ହିନ୍ଦୁ ଋଷିମାନଙ୍କୁ ପୂଜା କରୁଥିଲେ । ବାଲ୍ମୀକି, ବ୍ୟାସ, କାଳିଦାସ ଓ ଶଙ୍କରଙ୍କ ଲାଗି ସଂସ୍କୃତ ଭାଷାକୁ ଶ୍ରଦ୍ଧା କରୁଥିଲେ । ସାରଳା, ଜଗନ୍ନାଥ ଓ ଗୋପାଳକୃଷ୍ଣଙ୍କ ଲାଗି ଓଡ଼ିଆ ଭାଷାରେ କବିତା ଲେଖୁଥିଲେ । ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନ ଲାଗି ଇଂରାଜୀ ଭାଷା ଭାରତର ରାଷ୍ଟ୍ରଭାଷା ରହୁ ବୋଲି ମଧ୍ୟ ଆପଣଙ୍କର ଅନ୍ତରର ନୈଷ୍ଠିକ ଇଚ୍ଛା ଥିଲା । ଆପଣ କହୁଥିଲେ ଯୀଶୁଖ୍ରୀଷ୍ଟଙ୍କୁ ବୁଦ୍ଧଙ୍କ ଭଳି ହିନ୍ଦୁଦର୍ଶନର ଅବତାର ଭିତରେ ଗ୍ରହଣ କରିନେବା ଉଚିତ । ଧମ୍ମପଦ, ଗୀତା ଓ ଭାଗବତ ସଙ୍ଗେ ବାଇବେଲକୁ ମଧ୍ୟ ହିନ୍ଦୁଧର୍ମଶାସ୍ତ୍ରର ଅଙ୍ଗୀଭୂତ କରାଇ ନେବାଲାଗି ଆପଣଙ୍କର ଭିତରର ଆଗ୍ରହ ଥିଲାପରି ଲାଗୁଥିଲା ।

ଆପଣଙ୍କର ରାଜନୀତିକ ଆଦର୍ଶ ଥିଲା ଗାନ୍ଧୀବାଦ । ଆପଣ ବ୍ୟକ୍ତିବାଦର ଆଦର୍ଶ ଓ ମର୍ଯ୍ୟାଦାର ସୁରକ୍ଷା ଲାଗି କମ୍ୟୁନିଜମ୍‌ର ବିରୋଧ କରୁଥିଲେ ମୋ ଭୁଣ୍ଡରୁ ସମାଜବାଦର ନାମ ଶୁଣିଲେ ଆପଣ ଚଟି ଯାଉଥିଲେ । ଆପଣ ଦେଶରେ ଅର୍ଥନୀତି ବୈଷମ୍ୟ ଦାରିଦ୍ର୍ୟ ଓ ଅଜ୍ଞାନର ଘୋର ବିରୋଧୀ ଥିଲେ । ଅଥଚ ସମାଜବାଦ ନାମରେ ସୁବିଧା ଓ କ୍ଷମତାଖୋର ରାଜନୀତିବାଲା ଏବଂ ବୁଦ୍ଧିଜୀବୀ ଆପଣା ସ୍ୱାର୍ଥ ନିରାପତ୍ତାକାମୀ ବ୍ୟୁରୋକ୍ରାଟ୍‌ମାନଙ୍କର ଚକ୍ରବ୍ୟୂହ ମଧ୍ୟରେ ଯେମିତି ଦେଶଟା ପଡ଼ିନଯାଏ ସେଥିପ୍ରତି ସତର୍କ ରହିବାକୁ ଆପଣ ଗର୍ଜନ କରି ଉଠୁଥିଲେ । ଆପଣ ମଧ୍ୟ ବାରିଷ୍ଟର ଓ ଉତ୍କଳମଣି ଗୋପବନ୍ଧୁଙ୍କ ମାର୍ଗରେ ଥିଲେ । ଓଡ଼ିଆ ଗାନ୍ଧୀ ଓ ରବୀନ୍ଦ୍ରଙ୍କ ମାର୍ଗରେ ଥିଲେ ଭାରତୀୟ । ଟଲ୍‌ଷ୍ଟୟ, ରସେଲ ଓ ସୋପେନ୍‌ହାୱାର ଆଦିଙ୍କ ଧାରାରେ ଥିଲେ ଆନ୍ତର୍ଜାତିକ ମାନବବାଦୀ ଏବଂ ଶେଷରେ ଶ୍ରୀ ଅରବିନ୍ଦ, ଶ୍ରୀମାଙ୍କ ମାର୍ଗରେ ଥିଲେ ମହାଜାଗତିକ ଓ ଅତିମାନବବାଦୀ ।

ଆପଣ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକମାନଙ୍କୁ ଅତି କଟୁଭାଷାରେ ଭର୍ତ୍ସନା ଓ ଉପହାସ କରିଛନ୍ତି । ହିନ୍ଦୁ ଧର୍ମର ସଂସ୍କାର ଓ କୁସଂସ୍କାର ଗୁଡ଼ିକର କଠୋର ସମାଲୋଚନା କରିଛନ୍ତି । ବେସିକ୍ ଶିକ୍ଷା ପ୍ରଣାଳୀର ଉଚ୍ଚ ଜିନ୍ଦାବାଦ କରିଛନ୍ତି । ଆଧୁନିକ କବିତା ଓ ସମକାଳୀନ ଲେଖକମାନଙ୍କୁ ବୁଦ୍ଧି ଦୁର୍ବୁଦ୍ଧି ଯାହା ତାହା ଗାଳି ଗୁଲଜ ଓ ଅପଯଶ ଦେଇଛନ୍ତି । ତାହା ବଦଳରେ ଆପଣଙ୍କ ଉପରେ ପ୍ରଚୁର ଶିଳାବୃଷ୍ଟି ହୋଇଛି । ମୁଁ ଜାଣେ—ଆପଣଙ୍କର ବାକ୍ୟବାଣର ଜ୍ୱାଳା ଓ ପୀଡ଼ା ଏପର୍ଯ୍ୟନ୍ତ ଶରବ୍ୟମାନଙ୍କର ଦେହ ମନରୁ ଯାଇନାହିଁ । ମାତ୍ର ଆପଣଙ୍କ ମୁଣ୍ଡରେ ସେମାନଙ୍କ ଦ୍ୱାରା ନିକ୍ଷିପ୍ତ ଖଣ୍ଡିଏ ହେଲେ ପଥର ବାଜିଛି କି ? ବାଜି ଥିବ । କଷ୍ଟ ହୋଇଛି କି ? ହୋଇଥିବ ।

ଆପଣ ନିଜ ଗୋଡ଼ରେ ନିଜେ ଠିଆ ହୋଇଛନ୍ତି । ସମସ୍ତ ଦେଶ ଆପଣଙ୍କ ଯୋଗ୍ୟତାକୁ ସ୍ୱୀକାର କରୁଥିଲେ ହେଁ, ଦେଶର ହର୍ତ୍ତା କର୍ତ୍ତା ବିଧାତାମାନେ ଆପଣଙ୍କୁ ସର୍ବଦା ହିଂସା କରି ଆସିଛନ୍ତି । ଅପମାନ କରି ଆସିଛନ୍ତି । ଅବହେଳା କରି ଆସିଛନ୍ତି ଆପଣଙ୍କୁ ଯଥାଯୋଗ୍ୟ ଆସନ ଦେଇନାହାନ୍ତି । କ୍ଷମତାଧାରୀ ଆତ୍ମ-ସର୍ବସ୍ୱ କୌଶଳୀ ରାଜନୀତି ବାଲା ଆପଣଙ୍କୁ ପାଲରେ ପକାଇ କେବେ ବା ସାମାନ୍ୟ ଟିକେ ସୁବିଧା ସୁଯୋଗ ଦେଇ ସେମାନଙ୍କ ଅନ୍ୟାୟକୁ ସମର୍ଥନ କରିବା ଲାଗି ପ୍ରବର୍ତ୍ତାଇଛନ୍ତି । ମାତ୍ର ଆପଣ କାହା ପାଲରେ ପଡ଼ିବା ଲୋକ ? ଆପଣଙ୍କ ପିଣ୍ଡ୍ରି ପ୍ରତିଶୋଧର ହିଂସାବହ୍ନି ଗୋଡ଼ାଇଛି । କିଏ ଆପଣଙ୍କ ମୁଣ୍ଡ କିଣି ପାରିଥାନ୍ତା ? କିଏ ବା ଆପଣଙ୍କ ମଥା କାଟି ପାରିଥାନ୍ତା ?

ଆପଣ ଅଜାତ ଶତ୍ରୁ ହୋଇ ଜନ୍ମ ହୋଇ ନ ଥିଲେ; ଅଜାତ ଶତ୍ରୁ ହୋଇ ମଧ୍ୟ ବଞ୍ଚି ନଥିଲେ, ମରି ମଧ୍ୟ ନାହାନ୍ତି ସମସ୍ତ ଶତ୍ରୁଙ୍କୁ ସଂହାର କରିଯାଇ । ସେମିତି ବୁଝିଲେ କେଉଁ ବୀରପୁରୁଷ ଶତ୍ରୁହୀନ ? କେଉଁ ପ୍ରେମିକ ପୁରୁଷର ବୁଣିପଟେ ଅପ୍ରେମିକମାନେ ଈର୍ଷା ପଣରେ ଘେରିନଥାନ୍ତି ? ଏ (ପ୍ର) ଦେଶର ମାଳ ମାଳ ପ୍ରେମହୀନ କାଙ୍ଗାଳଦଳ ଯତତତ୍ର ଗୁପ୍ତଚୁରୀ ଆଉ ଥାଳଧରି ଛଦ୍ମବେଶରେ ବୁଲୁଛନ୍ତି । ସେମାନେ ଦିନରେ ଭିକ୍ଷା କରନ୍ତି—ରାତିରେ ଚୁଲିଭୁଷି ଧନ ଛଡ଼ାଇ ନିଅନ୍ତି । ସମସ୍ତେ ଛଳେ ବଳେ କୌଶଳେ ଆପଣା ଥାଳଟିମାନ ପୁର୍ଣ୍ଣ କରିବାକୁ ବ୍ୟଗ୍ର । ସମସ୍ତେ ଆଗ ଆସନଟିରେ ବସି ପଡ଼ିବାକୁ ବ୍ୟାକୁଳ । ଆପଣା କଥା କହିବାକୁ ସମସ୍ତଙ୍କ ଜିହ୍ୱା ଖଲ ଖଲ ।

ମାସ୍ଟାଧର ମାନସିଂହ ମୋର ପୂଜ୍ୟପାଦ ପ୍ରେମିକ ପିତା । ସେ ଲକ୍ଷ ଲକ୍ଷ ଭାବବତୀ କନ୍ୟାଙ୍କର କବି ପିତା ! ପ୍ରେମିକ ପିତା ! ମୁଁ ଜାଣେ—ଆମ୍ଭେମାନେ ଜାଣୁ ଆପଣ କାହାକୁ ଖାତିର କରୁନଥିଲେ । ଆମଭଳି ଲକ୍ଷ ଲକ୍ଷ ଭାବବତୀ ବାକ୍ ବିଳାସିନୀ

✳

ସେବା ତପୂରି କନ୍ୟାମାନଙ୍କର ବାପାଙ୍କର ଅଭାବ ବା କ'ଣ ଥିଲା ? ଲକ୍ଷ ଲକ୍ଷ ରସବନ୍ତୀମାନଙ୍କର ପ୍ରେମିକଙ୍କର ଅଭାବ କଣ ଥିଲା ? ବୁଦ୍ଧ ଶିଷ୍ୟଙ୍କର କି କାମନା ବା ଥିଲା ? ଶ୍ରୀ ଚୈତନ୍ୟ, ରାମକୃଷ୍ଣ, ବିବେକାନନ୍ଦ, ଅରବିନ୍ଦଙ୍କୁ ଭଲ ପାଉଥିବା ଆପଣଙ୍କର ଅଭାବ ବା କଣ ଥାଇପାରେ ? ଶୋଚନା କ'ଣ ଥାଇପାରେ ? ଭୟ ବା ଥାଇପାରେ କାହାକୁ ? କୋଉ ପାଂଶୀରପାରେ ଆଶା ଥିଲା ଆପଣଙ୍କର ? କୋଉ କ୍ଷୀଣ ମାଲପୁଆରେ ଥିଲା ଲୋଭ ? ନା କୋଉ ରତ୍ନସିଂହାସନରେ ଚଢ଼ିବା ପାଇଁ ଲାଳସା ?

ଆପଣ ଚଉକି ଉପରେ ବସିବାବେଳେ ମନେହୁଏ କଣ ପୃଥିବୀର ରାଜ-ସିଂହାସନରେ କିବା ଆରୂଢ଼ ହେଲେଣି; ରାସ୍ତାରେ ଚାଲିଲାବେଳେ ମନେହୁଏ କଣ ରାଜ ପଥମାନ କିବା ପଥରେ ରୂପାନ୍ତରିତ ହୋଇଗଲାଣି କି ? ଆପଣ କଥା କହିବାବେଳେ ମନେହୁଏ ଆପଣଙ୍କର ପ୍ରେମିକାଙ୍କର ଭାଷା କଣ ଆମର ମାତୃଭାଷା କି ? ତା ନ ହେଲେ ଏଭାଷା ଏତେ କାବ୍ୟ-ରସସିକ୍ତ ହେଲା କେମିତି ? ଆପଣ ହସିବାବେଳେ ମନେହୁଏ—ପୃଥିବୀ ଏହିକ୍ଷଣି ଚିନ୍ତାମୁକ୍ତ ହୋଇଗଲାଣି କି ? କାନ୍ଦିବାବେଳେ ମନେହୁଏ—କ'ଣ ଏ ପୃଥିବୀ ଗୋପୀଭାବରେ ବିହ୍ୱଳ ହୋଇ କୃଷ୍ଣ ଚନ୍ଦ୍ରଙ୍କୁ ଖୋଜି ବୁଲୁଛି କି ? ଆପଣ ଭର୍ତ୍ସନା କଲାବେଳେ ମନେହୁଏ—କଣ ଏ ପୃଥିବୀରୁ ବ୍ୟକ୍ତିଗତ ସମସ୍ୟା ଦୂର ହୋଇ କେବଳ ସାମାଜିକ ସମସ୍ୟା ରହିଛି କି ?

ପୂଜ୍ୟପାଦ ! ଆପଣଙ୍କଠାରେ ମୋର କ୍ଷୁଦ୍ର ଚକ୍ଷୁ ବହୁ କ୍ଷୁଦ୍ରତା ମଧ୍ୟ ଲକ୍ଷ୍ୟ କରିଛି । ଆପଣଙ୍କ ଭିତରେ ତ ମହତ ଓ ଅହଂକାରର ପୁରୁଷ ଓ ପ୍ରକୃତି, ଚେତନାର ଚଙ୍ଗ ଓ ବିନସ୍ୱର ବିଶ୍ୱାସ ଓ ନଶ୍ୱରର ଆଲୋକ ଓ ଅନ୍ଧକାରର ଅବିରାମ ଦ୍ୱନ୍ଦ ଚାଲିଥିଲା । ଏହି ଅବିରତ ଦ୍ୱନ୍ଦ ଜ୍ୱାଳାରେ ଆପଣ ଥିଲେ ସଦା ଜାଗ୍ରତ, ସଦା ସନ୍ଦିଗ୍ଧ ଓ ସଦା ଜୀବନ୍ତ । ଏହି ଦ୍ୱନ୍ଦବୋଧ ଆପଣଙ୍କୁ ସତେଜ ଶିଳ୍ପୀରେ ପରିଣତ କରିଛି ସତ୍ୟ - ମାତ୍ର ବହୁ ଭ୍ରମ ପ୍ରମାଦରେ ଆପଣଙ୍କର କ୍ଷୁଦ୍ରତାଗୁଡ଼ିକୁ ମଧ୍ୟ ପଦାରେ ପକାଇ ଦେଇଛି । ସେହି କ୍ଷୁଦ୍ରତାଗୁଡ଼ିକ ପ୍ରତି ମୁଁ ଯେତେ ଥର ସଚେତନ ହୋଇଛି ସେତେ ଥର ଆପଣଙ୍କର ପ୍ରାଣଗନ୍ଧକରୁ ଉଚ୍ଚାରିତ ଧାଡ଼ିଏ କବିତା ମୋର ମନରେ ଉଦିତ ହୋଇ ଯାଉଛି । ମୋର ଆଖି ଅଶ୍ରୁସଜଳ ହୋଇ ଉଠିଛି । ଆପଣ ନା ଗାଇଛନ୍ତି—

"କର ମୋର କ୍ଷୁଦ୍ର ପୃଷ୍ଠେ
　　　　ଅଙ୍ଗୁଳି ସଞ୍ଚାର
କର ମୋର କ୍ଷୁଦ୍ରତାର
　　　　ଗୌରବ ସଞ୍ଚାର
ହେ ବୈଷ୍ଣବ ଶିରୋମଣି ।"

କେଉଁ ଗ୍ରାମର ଲୋଚନ ନବ ଦୂର୍ବାଦଳ ଶ୍ୟାମ ଅଭିରାମ ରଘୁବୀରଙ୍କ କୃପା କଟାକ୍ଷ ଲାଗି ସଂସ୍ପୃଷ୍ଟ ସଫଳର ଲାଗି ଆପଣ ନିଜ ଉନ୍ନତ ପୃଷ୍ଠ ଦେଶକୁ ଏତେ ସଙ୍କୁଚିତ ନମ୍ର ଓ ବିନୀତ କରି ରଖିଥିଲେ ? ମୋର ମନେହୁଏ—ଆପଣଙ୍କର ଆଶା ଓ ଅପେକ୍ଷା ସଫଳ ହୋଇଛି । ଆପଣ ରାମ କୃପା ଲାଭ କରିଛନ୍ତି ନ ହେଲେ ଆପଣ ଏତେ ରମଣୀୟ ହୋଇଥାନ୍ତେ କିପରି ?

ହେ ମୋର ପ୍ରେମିକ ପିତୃଦେବ ! କବି ପିତୃଦେବ ! ଆପଣ ଅଜସ୍ର ଗୀତ କବିତା ଲେଖିଛନ୍ତି; ଅଜସ୍ର ପ୍ରବନ୍ଧ ରଚନା କରିଛନ୍ତି । ଆପଣଙ୍କ ଲେଖନୀ ବହୁମୁଖୀ—ବହୁବର୍ଣ୍ଣ ସ୍ପର୍ଶୀ । ଆପଣଙ୍କର ଅମଳିନ କୀର୍ତ୍ତି ଓଡ଼ିଶାର ଆକାଶରେ ଆକାଶ ଦୀପ ହୋଇ ଯୁଗେ ଯୁଗେ ଜଳିବ; ମାତ୍ର ଆପଣ ନିଜେ ଆପଣଙ୍କ କୀର୍ତ୍ତିଠାରୁ ମହତ୍ତର । ଆପଣଙ୍କର ମୃତ୍ୟୁ ପରେ ମୁଖମଣ୍ଡଳ ଦେଖିଛି ଫଟୋରେ । ଆପଣ ଆନନ୍ଦରେ ଦେହତ୍ୟାଗ କରିଛନ୍ତି । ଆପଣଙ୍କ ମୁଖମଣ୍ଡଳରେ ଅବଶୋଷର ଚିହ୍ନ ନାହିଁ । ଆପଣଙ୍କର ଆତ୍ମା ସେହି ରାଜ୍ୟକୁ ଯାଇଛନ୍ତି ଯେଉଁଠିକି ଯିବାଲାଗି ଆପଣ ଜ୍ଞାନ, ଭକ୍ତି ଓ କର୍ମ ମାର୍ଗରେ ନାରୀ, ଶିଶୁ, ପ୍ରକୃତି ଓ ସମାଜର ପିଚ୍ଛା ଧରିଥିଲେ । ଅଥଚ ସେହି ସ୍ଥାନଟିର ଠିକଣା ଆପଣଙ୍କୁ ସେତେବେଳେ ବୋଧହୁଏ ଜଣା ନ ଥିଲା । ଆପଣ କଣ ସେହି ପରମ ପ୍ରେମ ଧାମକୁ ଯାଇଛନ୍ତି ? ଆପଣଙ୍କ ଶିଷ୍ୟମାନଙ୍କୁ ସେହି ସ୍ଥାନକୁ ଯିବା ଲାଗି କେତେ ଜନ୍ମ ଲାଗିବ କେଜାଣି ? କିନ୍ତୁ ସେ ଧାମରେ ଆମଠାରୁ ଆହୁରି ଅନ୍ତରଙ୍ଗ ପ୍ରେମମୟ ସଖା, ଶିଷ୍ୟ ଓ କନ୍ୟାମାନେ ଆପଣଙ୍କୁ ଘେରି ରହିବେ ।

କୁମାର ପୂର୍ଣ୍ଣିମାଦିନ ଆପଣ ଆମକୁ ପିତୃହୀନ, ଗୁରୁହୀନ ଓ ପ୍ରେମିକହୀନ କରି ଚାଲିଗଲେ । କୁମାର ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ବ୍ୟତୀତ ଆଉ ଭଲ କେଉଁ ପୂର୍ଣ୍ଣିମାର ଚନ୍ଦ ଆପଣଙ୍କ ପିତୃ ଆତ୍ମାକୁ ତାଙ୍କ ଲୋକକୁ ଡାକି ନେଇଥାନ୍ତା ? ଆପଣ ଥିଲେ କୁମାର ପୂର୍ଣ୍ଣିମାର କବି । ଆପଣ ଏ ପୃଥିବୀରେ ଭୂମିଷ୍ଠ ହେବା ପୂର୍ବରୁ ନିଶ୍ଚୟ ଆଉ କେଉଁ ଗ୍ରହକୁ ଅନ୍ଧକାର କରି ଆସିଥିଲେ । ମାତ୍ର ଆପଣ ଏ ପୃଥିବୀକୁ ଛାଡ଼ିବା ଦିନ ଏ ଧରାର ସମସ୍ତ ରାତି ଥିଲା ପୂର୍ଣ୍ଣଚନ୍ଦ୍ରର ରାତି, ଜ୍ୟୋତ୍ସ୍ନା ପ୍ଲାବିତ । ଆପଣଙ୍କର ଆତ୍ମା ଜ୍ୟୋତ୍ସ୍ନା ପ୍ଲାବିତ ପଥରେ ଚନ୍ଦ୍ର ଲୋକକୁ ଗଲେ କି ? ଏଣେ କିନ୍ତୁ କୁମାର ପୂର୍ଣ୍ଣିମାର ରାତି ଥିଲା ମେଘାଚ୍ଛାଦିତ, ଝଞ୍ଜାବିହ୍ୱଳ ଓ ବନ୍ୟାକୁଳିତ ।

ପିତା ! ଆପଣଙ୍କର ମୃତ୍ୟୁ ସମ୍ବାଦ ଶୁଣିଲି ଶ୍ରୀକ୍ଷେତ୍ରରେ । ପୂର୍ଣ୍ଣିମା ପରଦିନ । ଦିବା ଏଗାର ଘଟିକାରେ । ସୁନାମ ଧନ୍ୟ କଥାକାର ମୋର ପୂଜ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ରାଜ କିଶୋର ରାୟଙ୍କ ସଙ୍ଗେ ତାଙ୍କ ଘରେ ସାକ୍ଷାତ ହେବା ମାତ୍ରେ ସେ ମୋ କାନ୍ଧରେ ଢଳି ପଡ଼ିଲେ କାନ୍ଦି କାନ୍ଦି ।

"ନୀଳମଣି ! ମାନସିଂହ ଆଉ ନାହାନ୍ତି !" ସମବୟସ୍କ ପୁତ୍ରର କାନ୍ଧରେ ହାତପକାଇ ପିତା ଟିକିଏ କାନ୍ଦୁଛନ୍ତି । ମୁଁ କାନ୍ଦିଲି ନାହିଁ । କାନ୍ଦିପାରିଲି ନାହିଁ । ଶ୍ରୀଯୁକ୍ତ ରାୟଙ୍କୁ ସମ୍ଭାଳିଲି । ଏ ପର୍ଯ୍ୟନ୍ତ ମଧ୍ୟ କାନ୍ଦି ନାହିଁ । ପିତଃ ! ଆପଣ ମୋର କାନ୍ଦ ଦେଖିଛନ୍ତି—ଆପଣଙ୍କ ଲାଗି ଗ୍ରନ୍ଥବନ୍ତ କନ୍ୟାଟିଏ ଭଳି ବହୁବାର କାନ୍ଦିଛି । ଆପଣ ଜାଣନ୍ତି । ଆଉ ଆଖିରୁ ଲୁହ ବୋହୁ ନାହିଁ । ଲୁହ ନ ବହୁ—ପିତା । ଆପଣ କପରି ଜାଣିବେ—ମୋ ଭଳି ଲକ୍ଷ ଲକ୍ଷ ଗ୍ରନ୍ଥବନ୍ତ—

"ତୁମ କଥା ଗ୍ରନ୍ଥ କନ୍ୟା ସକଳ
ଶୁଣ ସୁମର ହୁଅନ୍ତି ବିକଳ ।"



## ସ୍ମୃତି ଚାରଣ—୨

# କବି ମାୟାଧର ମାନସିଂ: ଏକ ସ୍ୱପ୍ନ-ପ୍ରୟାଣ

**ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ**

କବି ମାନସିଂଙ୍କ ମୃତ୍ୟୁରେ ଆମ ଯୁଗର ସବୁଠୁ ବିଦଗ୍ଧ, ସବୁଠୁ ସୌନ୍ଦର୍ଯ୍ୟ-ପ୍ରବଣ, ଏକ ସ୍ୱର୍ଣ୍ଣକାତର କବିମାନସର ଅବସାନ ଘଟିଲା । ଆଧୁନିକ ସାହିତ୍ୟ ପରଂପରାର ସଂଯୋଗ-ସେତୁ ରୂପେ ତାଙ୍କର ମହନୀୟ ଦାନ ଓଡ଼ିଆ ସାହିତ୍ୟରେ ଚିର ଦିନ ଅମର, ଅମ୍ଳାନ ହୋଇ ରହିବ । କବି ମାନସିଂଙ୍କ ଆକସ୍ମିକ ମୃତ୍ୟୁ ବ୍ୟକ୍ତିଗତ ଭାବେ ମୋ ପକ୍ଷରେ ଏକ ଭୟଙ୍କର ଦୁଃଖାବହ ଘଟଣା । କାରଣ ଓଡ଼ିଶାରେ ଲକ୍ଷ ଲକ୍ଷ, ହୁସାଦ୍-ଦୋରସ୍ତ ବ୍ୟସ୍ତବାଗୀଶଙ୍କ ମଧ୍ୟରେ ଯେଉଁ ଦିନ ଗୁରୁବାରଟି ମୁହିଁ ସର୍ବାଗ୍ରେ ମନେପଡ଼େ ଏବଂ ଯାହାଙ୍କ ସଙ୍ଗେ ମଣିଷ ନିରୋଳାରେ ଦି'ପଦ କଥାବାର୍ତ୍ତା କରିପାରେ ସେଥିରୁ ପ୍ରଥମଟି ଆଜି ଚାଲିଗଲା । ଏ ଦେଶରେ ଜନ୍ମ ହେବା ପରମ ସୌଭାଗ୍ୟର ବିଷୟ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏଠାରେ ମୃତ୍ୟୁ, ଯାହାର ଅର୍ଥ ସ୍ଥିତି ମଧ୍ୟ ହୁଏତ ସେତେଟା ଚମତ୍କାର ନ ହୋଇପାରେ । ମାତ୍ର ଏ ମାଟିରେ ଉତ୍କଳର ମାନସିଂଙ୍କ ଜନ୍ମ, ସ୍ଥିତି ଓ ମୃତ୍ୟୁ ସବୁ କିଛୁ ଠିକ୍ ମନେ ହୁଏ । ସେ ମୋ'ଠୁ ଏକ ଦଶନ୍ଧି କମ୍ବା ତହିଁରୁ କିଛୁ ବେଶୀ ବୟୋଜ୍ୟେଷ୍ଠ ଥିଲେ ସୁଦ୍ଧା ବ୍ୟବହାରରେ ଥିଲେ ସମବୟସ୍କପରି ସରଳ, ଅମାୟିକ ଏବଂ ପ୍ରିୟଭାଷୀ । ତେଣୁ ତାଙ୍କୁ ସହଜରେ ଭୁଲିଯିବା ସମ୍ଭବ ନୁହେଁ ।

ମାନସିଂହଙ୍କ କାବ୍ୟ ଜଗତର ମୂଳ ସ୍ୱର ଥିଲା ବ୍ୟକ୍ତି ସ୍ୱାତନ୍ତ୍ର୍ୟ । ଅବଶ୍ୟ ସାର୍ତ୍ତ୍ରେଙ୍କ ଭାଷାରେ ଯେଉଁ ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ଅନିବାର୍ଯ୍ୟ ପରିଣାମ ହେଉଛି ସମାଜ ଓ ରାଷ୍ଟ୍ର ସହିତ ସଂଘର୍ଷ ଓ କେବେ କେବେ ହାତାହାତି, ସେ ସେଥିରୁ ନିରାପଦ ଦୂରତ୍ୱରେ ଥିଲେ । ଏଠିକାର ପ୍ରଚଳିତ ଅନୁଷ୍ଠାନ ଓ ମୂଲ୍ୟମାନ ସହିତ ସେ ନିଜକୁ ବେଶ୍ ଖାପଖୁଆଇ ଚଳିପାରୁଥିଲେ । ତାଙ୍କର ବସ୍ତୁ ଜଗତ ଓ ଭାବ ଜଗତ ପ୍ରାୟ

ସମାନ୍ତରାଳ ଭାବେ ଗୃହୀତ ଥିଲା, କେଉଁଠି ଠୋକ୍‌କର ଖାଇବାର ଭୟ ନ ଥିଲା । ତାଙ୍କର ସଫଳ ଗାର୍ହସ୍ଥ ଜୀବନ ହିଁ ଏହାର ସାକ୍ଷ୍ୟ ଦିଏ । ଅନେକତ ମାନସିଂହଙ୍କୁ ଦେଖନ୍ତି ଏଇଆଡ଼ୁ । ଦୈନିକ ପତ୍ରିକାମାନଙ୍କର ସଂପାଦକୀୟ ମୂଲ୍ୟାୟନରେ ମାନସିଂହ ପ୍ରତିଭାର ମାପକାଠି ହୁଏ ତାଙ୍କର ସାଂସାରିକ ଜମା ଖାତାର ଜମାଖର୍ଚ୍ଚ ଅଙ୍କ-ଗୁଡ଼ାକ ହିଁ ।

କିନ୍ତୁ ଆଉ ଏକ ମାନସିଂ ଥିଲେ ଯିଏ ଏଇ ପ୍ରାତ୍ୟହିକ ଜୀବନଠୁ ଥିଲେ ବହୁ ଦୂରରେ । ସେ ଥିଲେ ଏକ ସ୍ୱପ୍ନ-ପ୍ରୟାଣୀ କବି । 'ଧୂପ'ଠୁ 'ଖ୍ରୀଷ୍ଟ' ଏବଂ ଶେଷରେ 'କମଳାୟନ' ଏକ ଦୀର୍ଘ ପରିକ୍ରମା । କିନ୍ତୁ ସ୍ମୃତି ଭିତରେ ରହିଚ ଏକ ଆତ୍ମାନୁସନ୍ଧାନୀ ତିର୍ଯ୍ୟଗମନ—ଯାହା 'ଧୂପ'ର ମୋହ ମୁକ୍ତିପରେ 'ହେମଶସ୍ୟ'ର ଚଉକାଠ ଭିତରେ ଧରିବାକୁ ଚାହିଁ ମୁହୂର୍ତ୍ତି ଖୋଜୁଚି । ସେତେବେଳକୁ 'ସବୁଜ'ର ମାନଚିତ୍ର ଫିକାପଡ଼ି ଆସୁଥାଏ । ଭସା ଭସା ଧୂସର ବାଦଲ ଭିତରେ ସେ ଖୋଜି ବୁଲିଲେ ଖାଣ୍ଟି ଓଡ଼ିଆ ଇଡ଼ିୟମ ସନ୍ଧାନରେ । ଠାବ କଲେ, ଖାଲି ଠାବ କଲେ ନୁହେଁ, ମଞ୍ଚ ପ୍ରବେଶ କରାଇଲେ କେତୋଟି ଖାଣ୍ଟି ଓଡ଼ିଆଣୀ ମୁହଁକୁ । ସବୁଜପରି ଓ ନୀଳପରି, ଜାଫ୍ରାନ ପରି ବଦଳରେ ଆଣି ଛିଡ଼ା କରାଇଲେ ସାଧବ ଝିଅ, ଜେମା ପ୍ରଭୃତି କେତୋଟି ପରିଚିତ ଅଥଚ ସମ୍ପୂର୍ଣ୍ଣ ମନଗଢ଼ା ଚିତ୍ରପ୍ରତିମାଙ୍କୁ; ଯେଉଁମାନେ ଥିଲେ ଏକାନ୍ତ ଭାବରେ କଳ୍ପନାଶ୍ରୟୀ, ତେଣୁ ବାସ୍ତବ ବିମୁଖ, ଅନ୍ତର୍ଦ୍ୱନ୍ଦ୍ୱ ମୁକ୍ତ, ସରଳ ରୈଖିକ ମାନସୀ ପ୍ରତିମା ମାତ୍ର । ସେ ଅତୀତ ଆଡ଼କୁ ଆଖି ପକାଇଲେ, ଯେଉଁ ଦୃଷ୍ଟି ସେ ଶେଷ ପର୍ଯ୍ୟନ୍ତ ଫେରାଇ ଆଣି ପାରିଲେ ନାହିଁ । ମାନସିଂ ଥିଲେ ସେଇ ମୁହୂର୍ତ୍ତ ଯାହା ଏକ ଐଶ୍ୱର୍ଯ୍ୟମୟ ଅତୀତକୁ ଏକ ବିଚ୍ଛିନ୍ନ ଦୂରତ୍ୱରୁ ନିରୀକ୍ଷଣ କରିବାର ଆନନ୍ଦ ଓ ଅଭିମାନରେ ପୂର୍ଣ୍ଣ, ଅଥଚ ଯାହା ବର୍ତ୍ତମାନର ଯନ୍ତ୍ରଣା ଓ ଜଟିଳତାରୁ ଯଥା ସମ୍ଭବ ବିଚ୍ଛିନ୍ନ ହୋଇ ରହିବାକୁ ନିଜର କାବ୍ୟ ଧର୍ମ ବୋଲି ମନେକରି ଆସିଚି । ତଥାପି ସେ ଯେ ମଣିଷର ଅପୂର୍ଣ୍ଣତା ସମ୍ବନ୍ଧରେ ସଚେତନ ନୁହନ୍ତି ତା' ନୁହେଁ । ସମକାଳୀନ ସଂକଳରଙ୍କ ପରି ସେ ମଧ୍ୟ ବେଳେ ବେଳେ ଚିତ୍କାର କରି ଉଠିଛନ୍ତି—"we have all failed to match our dreams in perfections." ମାତ୍ର ସେ ଚିତ୍କାର ଏକ ରୋମାଣ୍ଟିକ୍ ଯନ୍ତ୍ରଣାର ଧ୍ୱନି ମାତ୍ର, ବିଦ୍ରୋହର ଉଚ୍ଚାରଣ ନୁହେଁ । ସେଇ ବୋଧହୁଏ ଆମ ଯୁଗର ସର୍ବଶେଷ ଏବଂ ସର୍ବଶ୍ରେଷ୍ଠ ରୋମାଣ୍ଟିଷ୍ଟ । ଅଥଚ ସବୁଜର ଧୂଆଁଳିଆ ବାଷ୍ପୀୟମଣ୍ଡଳ ଭିତରେ ସେଇ ପ୍ରଥମେ ଓଡ଼ିଶା ମାଟିର ଗନ୍ଧ ଆଣି ଦେଇ ପାରିଥିଲେ ଯାହାକୁ ଅବଶ୍ୟ ପରେ ସେ ଖୁବ୍ ବଢ଼ାବଢ଼ି କରି ସ୍ୱଧର୍ମ ଓ ପରଧର୍ମ ନାମରେ ଗୋଷ୍ଠିକ ଛକରେ ରଖିବାକୁ ଚେଷ୍ଟା କରିଥିଲେ ।

ମାନସିଂ ଥିଲେ ଏକ ନିଜସ୍ୱ ବ୍ୟକ୍ତିକ ଜଗତର ବାସିନ୍ଦା । ତାଙ୍କର ବ୍ୟକ୍ତି ସ୍ୱାତନ୍ତ୍ର୍ୟର ସୀମା ଏଇ ପର୍ଯ୍ୟନ୍ତ । ସେଇ ସୀମାବଦ୍ଧ ବଳୟ ଭିତରେ ସେ ଘୂରୁଥିଲେ

ଟିକଏ ଓମର ଖେୟାମୀ ସ୍ୱାଧୀନତା—ସମାଜ ସହିତ ଟିକଏ ମନ କଷା କଷି, ସମାଜ ପ୍ରତି ଟିକଏ କଟାକ୍ଷ, କଟୂକ୍ତି ଓ ଅଭିମାନ । ତା'ପରେ ସେ ଯେଉଁ ସୁନା ପୃଥିବୀକୁ ସେଇ ସୁନାପୁଅ । ପରେ ଅବଶ୍ୟ ସେଇ ଜଗତ ଭିତରକୁ ସେ ଗାନ୍ଧୀ ଓ ଯୀଶୁ ପ୍ରଭୃତିଙ୍କୁ ଆଣି ପୂରାଇଥିଲେ ଏବଂ କମଳାୟନର ପରିସରକୁ ରୁଷ୍ ପର୍ଯ୍ୟନ୍ତ ବଢ଼ାଇବାକୁ ବାଧ୍ୟ ହୋଇଥିଲେ ।

ମାତ୍ର ମୂଳତଃ ସେ ଜଣେ ଖାଣ୍ଟି ରୋମାଣ୍ଟିକ୍ ହିଁ ରହିଯାଇଥିଲେ । ତାଙ୍କର ସ୍ୱପ୍ନସ୍ମରଣ ଥିଲା ବାସ୍ତବରେ ଏକ ଘର ବାହୁଡ଼ା—ଯେଉଁ ଘରବାହୁଡ଼ା ବା ନୋଷ୍ଟାଲଜିଆ ହିଁ ତାଙ୍କ କାବ୍ୟ କବିତାର ମର୍ମଧ୍ୱନି କହିଲେ ଅତ୍ୟୁକ୍ତି ହେବନାହିଁ । ମାତ୍ର କେଉଁଠି ତାଙ୍କର ସେ ଘର ? ସେ କ'ଣ ଅତୀତର ଭଙ୍ଗାରୁଟା କୋଣାର୍କ ବେଢ଼ାରେ ନା ମହାନଦୀର ପୁରାତନ କୂଳରେ ସାମୟିକ ଜ୍ୟୋତ୍ସ୍ନା ବିହାର ? ପଦ୍ମଚରଣଙ୍କ ପରି ସେ ଅତୀତକୁ ବାହୁନି ଗୁଡ଼ାଏ କାନ୍ଦି ନାହାନ୍ତି ସତ; କିନ୍ତୁ ଏ ଦେଶର ମହାନ୍ ଐତିହ୍ୟକୁ ସେ ଯେପରି ଶିବମୂର୍ତ୍ତି ମଧ୍ୟରେ ଫୁଟାଇ ପାରିଛନ୍ତି ସେପରି ଅନ୍ୟ କେହି କହିପାରି ନାହାନ୍ତି । ଅବଶ୍ୟ ତାଙ୍କ ସୃଷ୍ଟିରୁ ଏହା ସବୁବେଳେ ଜଣାପଡ଼େ ଯେ ତାଙ୍କ ଘର ଫେରନ୍ତା ମନର ଗଳି-କୋଣ ସନ୍ଧାନ କେନ୍ଦ୍ରବିନ୍ଦୁ ଆଡ଼କୁ ଯେତେ ନୁହେଁ, ସନ୍ଧାନ ଏକ ସ୍ୱପ୍ନାୟିତ କଳ୍ପରୂପ ଆଡ଼େ ସେତେ । ଅଥଚ ଏଇ କଳ୍ପ ଜଗତ ସମସ୍ତ ମଧ୍ୟ ମିଳିବା ଅସମ୍ଭବ । ଏହାକୁ ପାଇବାକୁ ହେବ ଏକ ନିଃସମୟ ଦୃଷ୍ଟିରେ କିମ୍ବା ଏକ ଦୂରବର୍ତ୍ତୀ ସମୟରେ ଯେଉଁଠାରେ ସବୁକିଛି କଳ୍ପନା କରାଯାଇପାରେ । ବସ୍ତୁକୁ ଯେପରି ଇଚ୍ଛା ସେପରି ତାର ସ୍ୱବରୋଧରୁ ବିଚ୍ଛିନ୍ନ କରି ଭଙ୍ଗା ଯାଇପାରେ, ଗଢ଼ାଯାଇପାରେ, ବସ୍ତୁ ଚେତନା ସମ୍ପର୍କରେ ସମସ୍ତ ତଥ୍ୟ କଥା ସୂତ୍ରକୁ ଅବହେଳା କରି'।

ଏ କଥା ସତ ଯେ ଆମ ସମସ୍ତଙ୍କ ଅପେକ୍ଷା ମାନସିଂହ ଥିଲେ ଅତି ଅଧିକ ମାତ୍ରାରେ ଓଡ଼ିଶାର ସ୍ଥାୟୀ ବାସିନ୍ଦା । ତାଙ୍କୁ ମନେହୁଏ ସେ ଯେପରି ଏଠାର ପ୍ରାଚୀନତମ ଆଦିବାସୀ ଆଉ ଆମେ ସମସ୍ତେ ଯେପରି କେଉଁ ପରବର୍ତ୍ତୀ ପର୍ଯ୍ୟାୟର ଲୋକ ଏଠିକି ଆସି ଆସ୍ଥାନ ଜମାଇଛୁ । ପୈତୃକ ଭିଟା ଭୂମିକୁ ଶେଷ ପର୍ଯ୍ୟନ୍ତ ଏପରି ଜାବୁଡ଼ି ଧରି ପଡ଼ି ରହିବାର ଧୈର୍ଯ୍ୟ ଓ ପ୍ରବୃତ୍ତିରେ ସେ ଥିଲେ ସତରେ ଅଟଳ ଓ ଅପରିବର୍ତ୍ତନୀୟ । ସମୟର କ୍ଷିପ୍ର ପ୍ରଭଞ୍ଜନକୁ ଏଡ଼ାଇ ଦେଇ ମାଟି କାମୁଡ଼ି ପଡ଼ି ରହିବାର ଲୋକ ମୁଁ ମାନସିଂଙ୍କ ଛଡ଼ା ଆଉ କାହାକୁ ଦେଖି ନାହିଁ । ଆମ ସମସ୍ତଙ୍କ ଚେତନାର କୌଣସି ନା କୌଣସି ଅଂଶରେ ଦେଶ ମଧ୍ୟରେ ରହିଛି ବିଦେଶ ଏବଂ ବିଦେଶ ମଧ୍ୟରେ ରହିଛି ସ୍ୱଦେଶର ଭାବବର୍ଣ୍ଣ କେଉଁଠି ନା କେଉଁଠି ନିଃସ୍ୱ ଲାଗୁଛି ଏବଂ ଏହାହିଁ ହେଉଛି ଦ୍ୱିତୀୟ ମହାଯୁଦ୍ଧ ଭିତର ପୃଥିବୀର ଅପରିହାର୍ଯ୍ୟ ସାମାଜିକ ଓ ଐତିହାସିକ ପରିଣାମ । ମଣିଷର ହୃଦ୍ସ୍ଥିତି ନିଖିଳ ଭାଙ୍ଗି ପଡ଼ୁଛି । ସେ ହୋଇଛି ସୁଦୂରର ପିଆସୀ ।

କିନ୍ତୁ ମାନସିଂହଙ୍କ କବିତା ଜଗତରେ ବିଶେଷ କିଛି ପରିବର୍ତ୍ତନ ଦେଖାଦେଇ ନାହିଁ; ତାଙ୍କ ମାନଚିତ୍ର ପ୍ରାୟ ଅପରିବର୍ତ୍ତନୀୟ ହିଁ ରହିଛି । ତେବେ ତାଙ୍କ ମୋ ମଧ୍ୟରେ ଯେ ଗୋଟାଏ ମୌଳିକ ତଫାତ୍ ଥିଲା ତା ନୁହେଁ ମୁଁ ଅତୀତକୁ ରୂପାନ୍ତର ମଧ୍ୟରେ ପାଇବାକୁ ଖୋଜୁଥିଲାବେଳେ ସେ ଅତୀତକୁ ଅତୀତ ମଧ୍ୟରେ ହିଁ ଖୋଜୁଥିଲେ । ଏହାହିଁ ଥିଲା ଆମ ଦୃଷ୍ଟିକୋଣ ମଧ୍ୟରେ ଏକ ବିରାଟ ବ୍ୟବଧାନ ।

ସେ ଥିଲେ ପ୍ରଧାନତଃ ମାଧୁର୍ଯ୍ୟ ରସର କବି । ତାଙ୍କ କାବ୍ୟ କବିତାରେ ତାଙ୍କ ବ୍ୟକ୍ତିତ୍ୱର ପ୍ରବଳ ପ୍ରତିଫଳନ ବହୁ ସମୟରେ ଚେତନାର ବିଚ୍ଛେଦ ଘଟାଇଛି । ମାତ୍ର ସେ ବିଚ୍ଛେଦ କାବ୍ୟକୁ ରସୋତ୍ତୀର୍ଣ୍ଣ ହେବାରେ ବାଧା ଦେଇନାହିଁ । ଏହାହିଁ ମାନସିଂ ପ୍ରତିଭାର ଏକ ବଡ଼ ବିଶେଷତ୍ୱ । ବ୍ୟକ୍ତିନ ବା ବ୍ୟକ୍ତି କୈନ୍ଦ୍ରିକତାରୁ ତାହା ନୈର୍ବ୍ୟକ୍ତିକ ଆଡ଼କୁ ପ୍ରସାରିତ ହୋଇପାରେ । ତାଙ୍କ ସାଧବଝିଅ, କୋଣାର୍କ, ମାଲ୍ୟଶ୍ରୀ ରାଧା ପ୍ରଭୃତି ଅସଂଖ୍ୟ ସୁନ୍ଦର କବିତାର ଉଦାହରଣ ଦିଆଯାଇପାରେ ଯାହାର ବସ୍ତୁନିଷ୍ଠ ଉପସ୍ଥାପନା ତଥା ସଂଯୋଜନା ମଧ୍ୟରେ ଅଜାଣତସାରରେ ହେଉ ପଛକେ, ଏକ କାବ୍ୟିକ ଅପରିହାର୍ଯ୍ୟତା ସ୍ୱତଃ ଅନ୍ତଃସଲିଳ ଥିବା ଜଣାପଡ଼େ । କିନ୍ତୁ ଲକ୍ଷଣୀୟ ଯେ ଏଇ ସମସ୍ତ କବିତା ଅତି କଥାରୁ ସଂଭୂତ ହେଲେ ମଧ୍ୟ ଅତି କଥାର ବାସ୍ତବ ମୁଖୀନତା ଓ ବସ୍ତୁନିଷ୍ଠତାରୁ ପ୍ରାୟ ବଞ୍ଚିତ ।

ତାଙ୍କର ବୁଦ୍ଧିଦୀପ୍ତ, ପରିଚ୍ଛନ୍ନ ଗଦ୍ୟ ଏବଂ ଚମତ୍କାର ସୁପାଠ୍ୟ ଇଂରାଜୀ ଶୈଳୀ ତାଙ୍କୁ ଆମ ସମୟର ଜଣେ ଶ୍ରେଷ୍ଠ ସାହିତ୍ୟିକ ରୂପେ ଚହ୍ନିତ କରିଛି । ସେ ଅନେକ ସମୟରେ ଆଧୁନିକ ବ୍ୟକ୍ତି ମାନସକୁ ପରମ୍ପରାର ନିଶ୍ଚିତ ଓ ସ୍ୱାଭାବିକ ରୂପାନ୍ତର ରୂପେ ଗ୍ରହଣ କରି ନପାରି ନାନା ଭ୍ରମରେ ପଡ଼ିଛନ୍ତି ଏବଂ ଆଧୁନିକତାକୁ ଭୁଲ ବୁଝିଛନ୍ତି କିନ୍ତୁ ଏଇ ଭୁଲ ବୁଝିବା ଭିତରେ କୌଣସି ବୌଦ୍ଧିକ ଆବିଳତା ନାହିଁ; ତାହା ଏକ ସ୍ୱଚ୍ଛ, ସରଳ, ସଂଶୟ ବାଧାର ହିଁ କଣ୍ଠସ୍ୱର ଏବଂ ବେଳେ ବେଳେ ପ୍ରଶ୍ନବାଚୀ ମଧ୍ୟ । ସବୁଠୁ ଆଶ୍ଚର୍ଯ୍ୟର କଥା ମାନସିଂ ଏପରି ଏକ ସରଳ ବ୍ୟକ୍ତିତ୍ୱ ଯେ ତାଙ୍କଦ୍ୱାରା କେହି କେବେ ଅନିଷ୍ଟକର କଥା ଭାବିପାରେ ନାହିଁ କି ତାଙ୍କ ଉପରେ ରାଗିପାରେ ନାହିଁ ।

ଜବାହାରଲାଲଙ୍କୁ ରବୀନ୍ଦ୍ରନାଥ ଋତୁରାଜ ବୋଲି କହୁଥିଲେ, ମାନସିଂଙ୍କୁ ଆମେ ଓଡ଼ିଆ ସାହିତ୍ୟର ଧାରାଶ୍ରାବଣ ବୋଲି ଅଭିହିତ କରିପାରୁ । କାରଣ ତାଙ୍କର ଉଚ୍ଛ୍ୱାସ ଓ ପ୍ରାଚୁର୍ଯ୍ୟ ଏ ସାହିତ୍ୟକୁ ବହୁ ଦାରିଦ୍ର୍ୟ ଓ ସଂକୀର୍ଣ୍ଣତା ହାତରୁ ରକ୍ଷା କରିଛି ।

ସମୟ ଅସମୟରେ ବିଶ୍ୱବିଦ୍ୟାଳୟ ତଥା ପ୍ରଚଳିତ ଶିକ୍ଷା ଅନୁଷ୍ଠାନ ମାନଙ୍କରେ ଚାଲିଥିବା ଗତାନୁଗତିକତା ଓ ନିଷ୍ପ୍ରାଣ ଯାନ୍ତ୍ରିକତା ବିରୋଧରେ ମାନସିଂ

ସ୍ୱର ହଠ ଉଠନ୍ତି । ବହୁ ତଥାକଥିତ ଅଧ୍ୟାପକୀ-ଅଫିସରୀ ମାତ୍ରୁବବମ ନଙ୍କ ମାର ପେଞ୍ଚରେ ଓଡ଼ିଆ ଭାଷା ଓ ଓଡ଼ିଆର ସାହିତ୍ୟ କଣ୍ଠାଗତ ହେବାର ଉପକ୍ରମ ଦେଖି ସେ ସ୍ୱଭାବତ ସହ୍ୟ କରି ପାରିନାହାନ୍ତି । ଏଇ ତଥାକଥିତ ଅଧ୍ୟାପକ-ଅଫିସର ସମାଲୋଚକମାନେ ନିଜର ପଣ୍ଡିତମାନ୍ୟତା ଓ ନିଜର ନଗଣ୍ୟ ସାହିତ୍ୟ କର୍ମ ସତ୍ତ୍ୱେ ଓଡ଼ିଆ ସାହିତ୍ୟର ମାଗଫଡଦାର କମ୍ପା ବିଗ୍ରହିକ ହୋଇ ବସିଛନ୍ତି । ଗୋଷ୍ଠୀଭାରଣ ଏବଂ ପ୍ରିୟାପ୍ରୀତି ତୋଷଣ ଆଦି ନାନା କାରସାଦରେ ଏମାନେ ସିଦ୍ଧହସ୍ତ, ସବୁ ଦେଶରେ ସବୁ ଯୁଗରେ ଏଇଭଳି ଦଳେ ଦିଗ୍‌ଗଜ ସାହିତ୍ୟର ମୂଲ୍ୟମାନ ନିର୍ଦ୍ଧାରଣ କରିବାକୁ ଚେଷ୍ଟା କରିଥାନ୍ତି । ଫରାସୀ ଏକାଡ଼େମୀଠାରୁ ଆରମ୍ଭ କରି ଏକାମ୍ରକ୍ଷେତ୍ର ପର୍ଯ୍ୟନ୍ତ, ଭଲଗାଠାରୁ ଗଙ୍ଗା ପର୍ଯ୍ୟନ୍ତ ଏଇ ସାରସ୍ୱତ ଠିକାଦାରମାନେ ସର୍ବତ୍ର ଦେଖାଯାନ୍ତି । ଫରାସୀ ନାଟ୍ୟକାର ମଲସ୍ୱେର୍କଠାରୁ ଆରମ୍ଭ କରି ପାଷ୍ଟରନାକ୍ ଏବଂ ଏଲିସ୍ଟଙ୍କ ଯାଏ ସବୁ ସ୍ରଷ୍ଟାମାନଙ୍କୁ ଏବଂ ସବୁଦେଶର ସୃଜନଶୀଳ ସାହିତ୍ୟକୁ ଏମାନଙ୍କ ହାତରେ କମ୍ ହିନସ୍ତା ଭୋଗିବାକୁ ପଡ଼ିନାହିଁ । ତେଣୁ ଡକ୍ଟର ମାନସିଂ ଭଳି ଜଣେ ବିପର୍ଷ୍ଟିତ୍ ଏଇ ଶ୍ରେଣୀର ଲୋକଙ୍କୁ ଅକ୍ଷେପ କରିବାର ବିଚିତ୍ରତା କିଛି ନାହିଁ । ଡକ୍ଟର ମାନସିଂଙ୍କ କଟୂକ୍ତି ବେଳେ ବେଳେ ଆପେକ୍ଷିକ ମନେହେଲେ ନଧ ଏହା ଯେ ଅପାତ୍ରରେ ପଡ଼ି ନାହିଁ ତାହା ଆଜି ପ୍ରତ୍ୟେକ ଅନୁଭବ କରୁଛନ୍ତି ।

ଡକ୍ଟର ମାନସିଂ ଆଜି ଦେଶ କାଳର ବନ୍ଧନ କାଟି ନିଃସୀମ ସ୍ୱରେ ଲୀନ ହୋଇ ଯାଇଛନ୍ତି । ସେ ଆଜି ମାନବୀୟ ସ୍ତରର ସବୁ ବାଦବିସମ୍ବାଦ, ମାନ ଅପମାନ, ନିନ୍ଦା ପ୍ରଶଂସାର ବହୁ ଊର୍ଦ୍ଧ୍ୱରେ, ତାଙ୍କ ମୃତ୍ୟୁରେ ଆମେ ସମସ୍ତେ ଦରିଦ୍ରତର ହୋଇଛେଁ । ମୁଁ ଏଇ ମହାନ୍ ବାଣୀ-ତାପସଙ୍କ ସ୍ମୃତିରେ ମୋର ବିନମ୍ର ଶ୍ରଦ୍ଧା ନିବେଦନ କରୁଅଛୁ ।



# 'ଧୂପ'ର କବି

## ସୀତାକାନ୍ତ ମହାପାତ୍ର

ଅକ୍ଟୋବର ବାର ତାରିଖ ଶୁକ୍ରବାର ସନ୍ଧ୍ୟା କେତେବେଳୁ ସରିଯାଇଥାଏ । ଝୋଟିଆ ସାହିର ସେହି ଘର, ପାହାଚଗୁଡ଼ିକ ଉଠିଗଲା ପରେ ସେଇ ଛୋଟା କୋଠରି, ସବୁ ପରିଚିତ, ସେଇ ଛୋଟା ଆବହାଓ୍ୱା । ଜହ୍ନ ଉଠି ସାରିଥାଏ , ସନ୍ଧ୍ୟାରର କ'ଣ ସେଇଠି ଶେଷ ? ତା' ସେ ଜଳୁଥିବା ଧାନବିଲ, ଘାସ ଜଙ୍ଗଲି, ବାଉଁବଣ ଉପରେ କେତେଥର ସେମିତି ଜହ୍ନ ଆଲୁଅ ଝରିଥିବ ଆଉ ସେଇ କବି ହୃଦୟରୁ କବିତା ପରି ଫୁଟି ଉଠିଥିବ ସ୍ୱର୍ଣ୍ଣକାନ୍ତିର ଆନନ୍ଦରେ ଓ ଦରଦରେ । କିନ୍ତୁ ସେ ନ ଥାନ୍ତି । ଚବିଶ ଘଣ୍ଟାରୁ ବେଶୀ ବେଳ ହୋଇ ଯାଇଥାଏ—ସେ ଆଉ ନ ଥାନ୍ତି । ସ୍ତିମିତ ନିସ୍ପ୍ରଭ ଆଲୁଅ ଘର ଭିତରେ; ସ୍ମୃତିଆଡ଼େ କେମିତି ଗୋଟିଏ କଷ୍ଟଦାୟକ ଶୂନ୍ୟତା । ସେ ଶୂନ୍ୟତା ନିରବଚ୍ଛିନ୍ନ ଜହ୍ନ ଆଲୁଅର ସ୍ପର୍ଶରେ ବି ଭାଙ୍ଗେନି । ଆମରି ପ୍ରଶ୍ନର ଉତ୍ତରରେ, ତାଙ୍କ ସାନ ଝିଅର ସେଇ କେତୋଟି ତାଙ୍କର ଶେଷ କଥାରେ ବି ଭାଙ୍ଗେନି । ସେ କହୁଥିଲେ, କ୍ଲାନ୍ତ ଜନିତ ନିଦ ଭାଙ୍ଗିଗଲେ ଲଳିତକୁ କାହିଁ ସେ ଖୋଜୁଥିଲେ, ଥରକୁ ଥର ବ୍ୟସ୍ତ ହେଉଥିଲେ, ଦେହ ପୁଣି ଟିକିଏ ଭଲ ହୋଇଗଲେ କେମିତି ବାକିଆ କାମ ସବୁ ଶେଷ କରିବାକୁ ହେବ । କେମିତି ତଳ ମହଲାରେ ଥିବା ପଡ଼ୋଶୀଙ୍କୁ କହୁଥିଲେ, "ତମେ ଲଳିତ ବିଷୟରେ ଏତେ କଥା ଜାଣ ମାତ୍ର ସେ କେମିତି ସେବା କରି ଜାଣେ ସେତକ ଦେଖିନ—ସେ ଆଜି ଦେଖିବ" (ଲଳିତ ତାଙ୍କର ଦ୍ୱିତୀୟ ପୁତ୍ର, କାବୁଲ୍‌ରେ ଭାରତୀୟ ଦୂତାବାସରେ ପ୍ରଥମ ସେକ୍ରେଟାରୀ), "ମୋ ଅନ୍ତେ ମୋ ଫଟୋଗ୍ରାଫ ଶ୍ରୀ ରାମଚନ୍ଦ୍ର ଭବନ ବା ଅନ୍ୟତ୍ର ଦେବ ନାହିଁ" ଇତ୍ୟାଦି ।

ତା' ହେଲେ ସେ କ'ଣ ସ୍ୱପ୍ନର ମହାନଦୀରେ ଜ୍ୟୋତ୍ସ୍ନା ବିହାରରୁ ଆଉ ଫେରିଲେନି ? ଫେରିବା କହୁଛି ବନ୍ଧୁ ପୁଣି ଅନ୍ଧକାରେ ? ସେ କ'ଣ ଶ୍ରେଷ୍ଠ ସେଇ ସ୍ନେହ-ପ୍ରେମ ସୌନ୍ଦର୍ଯ୍ୟର ସ୍ୱଚ୍ଛ ଡଙ୍ଗାରେ ଭାସି ଭାସି ଗଲେ ଦୂରକୁ, ଦୂରକୁ,

ଦୂରକୁ ଯେଉଁଠି କୁହୁଡ଼ିରେ ଉତ୍‌କଳସ୍ୱ ବୁଝାଥାଏ ? ସେ ସ୍ୱପ୍ନ ରାଜ୍ୟ କ'ଣ ଚିଲିକା ଜଳର ନାଗୋଳା ନା, କେଉଁ ଟିକି ଡଙ୍ଗାରେ ଯୋଉଠୁ ରାତି ରାତି ଭାସି ଯାଇହେବ ଚିଲିକା ଭିତରେ ଦ୍ୱୀପରୁ ଦ୍ୱୀପକୁ ?

ହଠାତ୍ ବି ମନେ ହେଉଥିଲା ଯେ ମାଇକ୍ରବତା ଭାଙ୍ଗିଯାଇ୍ଲା ପରି ସେ ତାଙ୍କର ସେଇ ପ୍ରିୟ ଡ୍ରେସିଂଗାଉନ୍‌ଟି ପିନ୍ଧି ତାଙ୍କର ସେଇ ପଢ଼ାଘରେ ହଠାତ୍ ହସି ଉଠିବେ । ସେଇ ହସ ଯାହା ଜହ୍ନ ଅଲୁଅରେ ଚିଲିକାପରି ଉଦାସୀନ, ଅନନ୍ତ-ବ୍ୟାପୀ, ଆକାଶକୁଆଁ, ଛଳ ଛଳ, ଅଖଳା, ଖୋଲା, ସେଇ ସୌମ୍ୟ ମୂର୍ତ୍ତି, ସ୍ୱପ୍ନ ଭରି ଆଖି, କଥାରେ ମୃଦୁ ଅଭିଜ୍ଞତା, ସ୍ନେହ, ସେ କିନ୍ତୁ ନ ଥିଲେ । ସ୍ନେହ ଓ ତାରୁଣ୍ୟର ଉଦ୍ଦୀପ୍ତସ୍ୱର, 'ଧୂପ'ର ସ୍ୱର୍ଗ-କାତର, ସ୍ୱପ୍ନ-ବିହ୍ୱଳର କବି ଆଉ ନ ଥିଲେ ।

କେହି ମଣିଷ ଆଉ ଜଣେ ମଣିଷକୁ ବିଚାର କରିବା ଅତି ଦୁରୂହ, ଦୁଃସାଧ୍ୟ । କେତେ କମ ଆମେ ଅନ୍ୟ ବିଷୟରେ ଜାଣୁ, ସମୟ ଓ ସୁଯୋଗର ଅଭାବତ ସହଜେ, ତା' ଛଡ଼ା ଇଏ ତ ଗୋଟିଏ ରାଜ୍ୟ ଯେଉଁଠି ବେଶୀ ସହଜ ଓ ସ୍ୱାଭାବିକ ବ୍ୟକ୍ତିଗତ କୁତ୍ସା-ରଟନା ପରକୁତ୍ସା, ଶାଗଖିଆକୁ ପେଜଖିଆ ସହି ନ ପାରିବା, କିନ୍ତୁ ବ୍ୟକ୍ତିତ୍ୱର ଭାବନା ଓ ଚିନ୍ତାର ଆଦାନ ପ୍ରଦାନ କାହିଁ ? ଚିନ୍ତାଶୀଳ, କବି, ସାହିତ୍ୟିକ, ନାଟ୍ୟକାର, ଔପନ୍ୟାସିକ ଏମାନଙ୍କ ଭିତରେ ପରସ୍ପର ଭେଟାଭେଟି, ଆତ୍ମିକ ଭାବ ବିନିମୟ ନିଜର କଳା ଓ ଶିଳ୍ପର ବ୍ୟକ୍ତିଗତ କେଉଁଟି ଦିଗ ସମ୍ପର୍କରେ ଖୋଲା ଖୋଲି ବ୍ୟକ୍ତିଗତ ଆଳାପ କେତେ କ୍ୱଚିତ । ପରସ୍ପର ଚେଣ୍ଡ ଜାଣିବାର ସୁଯୋଗ ଯେତିକି ଆସେ, ସେ ସବୁ ବି ହଜେ । ଘରଚଟିଆ ପରି ଆରସି ସାମ୍ନାରେ ବସି ଗ୍ରନ୍ଥକୁ ଖୁମ୍ପି ଗଲେ ସେ ଦୁନିଆକୁ କେମିତି ଦେଖିବ ? ସମ୍ପର୍କରେ ଦିଆ ନିଆ, ସ୍ନେହର ଚଳଣି, ଭାବ-ବିନିମୟ କେତେ ଗୁରୁତ୍ୱପୂର୍ଣ୍ଣ ? ତା'ର ଅର୍ଥ ନୁହେଁ ଯେ, ପରସ୍ପରର ମତାମତ, ଭାବନା ବା ଆବେଗ ସମତାଳିକ ବା ଏକ-ସ୍ୱରର ହେବ । ଅନେକ ପାର୍ଥକ୍ୟ, ଅନେକ ମତାନୈକ୍ୟ ହେବ । କିନ୍ତୁ ତା' ଭିତରେ ଗୋଟିଏ ବୁଝାମଣା ସମ୍ଭବ ହେବ ଯାହା ଆତ୍ମିକ, କାବ୍ୟିକ ସ୍ତରର, ଯାହା ବାହ୍ୟରର, ସାମାଜିକ, ଲୋକ ଦେଖାଣିଆ ଭିନ୍ନ ମତଠାରୁ ଉଚ୍ଚରେ ରଖି ପାରିବ ସମ୍ପର୍କକୁ ।

ଏକଥା ଅବତାରଣା କରିବାର କାରଣ ଏହିଯେ, କାବ୍ୟ-ଚେତନା, କାବ୍ୟ-ଆଦର୍ଶ, ଶୈଳୀ ଓ ସମାଜ ପ୍ରତି କବିତା ଓ କବିର ଆଭିମୁଖ୍ୟ ପ୍ରାୟ ଏ ପ୍ରତ୍ୟେକ ବିଷୟରେ ତାଙ୍କର ଚିନ୍ତାଧାରା ସହ ମୁଁ ଏକମତ ହୋଇପାରି ନଥିଲି । କିନ୍ତୁ ତାଙ୍କର ଆନ୍ତରିକତା ମୋତେ ସବୁବେଳେ ସ୍ପର୍ଶ କରିଥିଲା । ନିଜର ମତାମତ ପ୍ରତି ତାଙ୍କର ଥିଲା ଏକ ନିର୍ଭୀକ ଆନ୍ତରିକତା ଏବଂ ମୁଁ ଲକ୍ଷ୍ୟ କରିଥିଲି, ମୋ ସହିତ

ଅନେକ କଥାରେ ରାଜି ନ ହେଲେ ବି ସେ ଅତି ସହାନୁଭୂତି ଓ ସ୍ନେହ ସହିତ ସବୁ ଶୁଣନ୍ତି । ଆମେ ଦୁଇଜଣ ରାଜନୀତିରେ ପଡ଼ିଥିଲୁ ଯେ, ଏ ପାର୍ଥକ୍ୟ ମୌଳିକ ଦୃଷ୍ଟିଭଙ୍ଗୀର । ଏହା ଫଳରେ ତାଙ୍କ ପ୍ରତି ମୋର ସମ୍ମାନ ବଢ଼ିଥାଏ ସିନା କେବେ କମିନି । କାରଣ ଲେଖକମାନେ ସିନା ହବୁବେଳେ ଏକା ଗୋଠର; ଚିନ୍ତାଶୀଳ ଶିଳ୍ପୀ ନିଜ ମତ, ନିଜ ଭାବନା ଓ ଆତ୍ମମୁଖ୍ୟ ବିଷୟରେ ସବୁବେଳେ ସଚେତନ ଓ ଅନ୍ୟଠାରୁ ତା'ର ମତ ପାର୍ଥକ୍ୟ ରହିଲେ ବି ସେ ତାକୁ ବ୍ୟକ୍ତିଗତ ସ୍ତରକୁ ନଆନି, ଭାବନା ସ୍ତରରେ ରଖେ । ସେ ସେଇ ଜାତିର ଚିନ୍ତାଶୀଳ ବ୍ୟକ୍ତି ଥିଲେ, ଯାହାଙ୍କ ସହିତ ଅତି ଅପ୍ରିୟ କଥା ମଧ୍ୟ କହି ହୁଏ । ଖୁବ୍ ଆଲୋଚନାକରି ମତାମତ ଖଣ୍ଡନ କରିବାକୁ ଇଚ୍ଛାହୁଏ । କିନ୍ତୁ ସବୁ ଶେଷରେ ରହେ ହସ ହସ ମିଶିଯିବା, ଆଖିରେ ସ୍ନେହ, ଉଦ୍ଦୀପନା, ଜୀବନ-ପ୍ରୀତି, ତରୁଣ ଭାବ ।

ଅନେକ ଥର ତାଙ୍କ ସହିତ କଥୋପକଥନରେ ମନେ ହେଉଛି ସେ ଥିଲେ ସଂଖ୍ୟାଲଘୁ ସଂସ୍କୃତି ( Minority culture ) ର ବିଶ୍ୱାସୀ । ଗୋଟିଏ ଦୀର୍ଘ ଚିଠିରେ ସେ ମୋତେ ଲେଖିଥିଲେ କେମିତି ଓଡ଼ିଆ ସଂସ୍କୃତିର ବ୍ୟାଧି ହିସାବରେ ଦେଖା ଦେଉଛି ଉଚ୍ଚକୋଟୀର ଚିନ୍ତା ବା କାର୍ଯ୍ୟ ( excellence ) ପ୍ରତି ଆସକ୍ତି ପରିବର୍ତ୍ତେ ଲଘୁ ଲୋକପ୍ରିୟତା ( Popularity ) ପ୍ରତି ଅତିଶୟ ଆଶକ୍ତି । ମୁଁ ତାଙ୍କ ସହିତ ଗୋଟିଏ ଦିଗରୁ ଏକମତ ହୋଇଥିଲି । କିନ୍ତୁ ଆଜି ଭାରତବର୍ଷରେ ଏଇ ଯୋଉ ପୁରୁଣା ସମାଜ, 'ଗଣ', ସଂସ୍କାର, ଟିକି ଟିକି ଅପାଠୁଆ ମଣିଷ ତାଙ୍କ ଜୀବନରେ ସଂସ୍କୃତି କ'ଣ ହେବ ? ସେମାନଙ୍କୁ କ'ଣ ଖାଲି ଆମେ କୋଣାର୍କ, ସାଧବ ଝିଅ, ମହାନଦୀକୂଳର ରେଖା, ରାଉତାଣୀ କଥା କହି ଶାନ୍ତି ଦେଇ ପାରିବୁ ? ଆମେ ଯଦି ତାଙ୍କଠୁ କାବ୍ୟଲୋକରେ କାବ୍ୟାଦର୍ଶରେ ରହୁ ଦୂରରେ, ତେବେ ତାଙ୍କର-ଚିନ୍ତାର ପ୍ରତିଦ୍ୱନ୍ଦ୍ୱୀ କରିବ କେବଳ ସ୍ଲୋଗାନ ଦେଉଥିବା ରାଜନୀତି, ସୁବିଧାବାଦୀ ଅର୍ଥନୀତି-କଳା, ତାଙ୍କଠୁ ଦୂରରେ ରହି ଚମତ୍କାର କାଗଜୀ ହବ ସିନା, ତା'ଭିତରେ ପ୍ରାଣପ୍ରାଚୁର୍ଯ୍ୟ, ରହିବ ତ ? ସେହି ଜଙ୍ଗଲୀଆ ମାଟିତଳ ଅନ୍ଧାରି ଜଗତକୁ ନ ଛୁଇଁଲେ ସେ ଧାର ଶୁଖି ଯିବନି କି ? ଏ ସବୁ ପ୍ରଶ୍ନର ଉତ୍ତର ସହଜରେ ଦେଇ ହୁଏନି, ମିଳେନି, ଆମେ ଆଲୋଚନା ବନ୍ଦ ରଖୁ ।

କିନ୍ତୁ ଏ ସବୁ ବାହାରେ ମନେପଡ଼େ, ତାଙ୍କ ସହିତ ସେ ଭ୍ରମଣ । ଥରେ ଅଣ୍ଟାପାଲୁ, ବୋଧହୁଏ ୧୯୬୦ ମସିହାରେ । ସେତେବେଳେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗରେ ଅଧ୍ୟାପକ । ମନେପଡ଼େ ତାଙ୍କ ଖାକି ହାଫ୍‌ପେଣ୍ଟ, ହାତରେ ବାଡ଼ି, ଦ୍ରୁତ ଚାଲି, ହସଖୁସି କଥା, କଥା କଥାକେ ନାନା ଆଖ୍ୟାୟିକାର ଅବତାରଣା । ବେଶ୍ ଗପୁଡ଼ି, ବେଶ୍ ମେଳାପୀ ବନ୍ଧୁ । ଯେତେ ଯେମିତି ସମବୟସୀ । ସାଙ୍ଗରେ କଳିଙ୍ଗ (ସେ ମୋର ଏକଦା ପ୍ରିୟ ଛାତ୍ର ଓ ଆଜି ଅନ୍ତରଙ୍ଗ ବନ୍ଧୁ) ଓ ସେଇ କୁନି ଝିଅଟି ଯାହାଠୁ ଅକ୍ଟୋବର ବାର, ୧୯୬୩ ରେ ତାଙ୍କର

ଶେଷ କେତୋଟି କଥା ଶୁଣିବାକୁ ମିଳିଲା । ଦ୍ୱିତୀୟ ଥର ଦୀର୍ଘ ଯାତ୍ରା । ତାଙ୍କ ଗାଁ ନାନ୍ଦୋଲାର ସ୍କୁଲ ଘରେ ରହୁଣି । ସମୁଦାୟ ପାରିକୁଦ ପରିକ୍ରମା-ଗାଁରୁ ଗାଁ । ମୁଁ ସେତେବେଳେ କଟକ ଟ୍ରେନିଂ ସ୍କୁଲରେ । ପାରିକୁଦର Final report ଲେଖୁଥାଏ । ସେଇ ଦିନଦିନରେ ମୁଁ ନିଶ୍ଚିତ ହୋଇଥିଲି, ସେ ମୂଳତଃ 'ଧୂପ'ର କବି । ବାକି ଯେତେ ଲେଖା, ଯେତେ କବିତା, ଯେତେ ସାହିତ୍ୟ-ଇତିହାସ, ସାହିତ୍ୟ ସମାଲୋଚନା ସେ ସବୁ ତାଙ୍କର;କିନ୍ତୁ ଅନ୍ତରର ଗଭୀରତମ ପ୍ରଦେଶର ନୁହେଁ ଚିଲିକାର ଢେଉ, ହ୍ରଦକୂଳର ସେ ସବୁ ଗାଁ, ତାଙ୍କ ଗାଁର ଯୋଉ ଅଧା ଚନ୍ଦ୍ରା ଅନେକ ମଣିଷ (ଯୋଉମାନେ ବହୁ ସଂଖ୍ୟାରେ ଆସିଥିଲେ ତାଙ୍କ ଗାଁର କବିଟିକୁ ଦେଖିବା ପାଇଁ ) ସେଇ ଯେଉଁ ମନମତାଣିଆ ପବନ, ଗାଁ ମୁଣ୍ଡ ସ୍କୁଲ ଘରେ ଯେଉଁଠି ରହୁଥିଲୁ ସେଇଠି ଯେତେ ଆଲୋଚନା, ଆକାଶରେ ଯେତେ ଯେତେ ଚଢ଼େଇ ଆଉ ପ୍ରତି ଥର ଭୋଜନରେ ସେଇ ଭାତ-ମାଛ-ଚିଙ୍ଗୁଡ଼ି ଏବଂ ସେ ଅପୂର୍ବ ସୂର୍ଯ୍ୟୋଦୟ-ଏ ସବୁ ଭିତରେ ମୁଁ ଲକ୍ଷ୍ୟ କରିଥିଲି, ସେ କେତେ ଉଜ୍ଜ୍ୱଳ ଓ ସ୍ୱାଭାବିକ ଦିଶୁଥିଲେ । ଯେମିତି ସେ ନିଜର ପ୍ରକୃତ ଉତ୍ସ ଆଉଥରେ ଛୁଇଁଥିଲେ । ଚିଲିକା ଢେଉପରି ତାଙ୍କ ମୁହଁରେ ହସର ଢେଉ ଖାଲି, କଥା କଥାକେ ହସ ।

ସେ ଓଡ଼ିଆ କାବ୍ୟ-ଜଗତକୁ ଆସିଥିଲେ ଗୋଟିଏ ନୂଆ ସ୍ୱର ନେଇ । ସେ ସ୍ୱରଥିଲା ଅତି ବ୍ୟକ୍ତିଗତ ଅନୁଭବର ସ୍ନେହ ଓ ପ୍ରେମର । ସୁନ୍ଦରର ଉପାସନାର । ମାପଚୁପ, କାଣ୍ଟ ଛାଣ୍ଟ, ଜଗିରଖି ଚାଲିବା ଦୁନିଆଁ ଠାରୁ ସେ ସ୍ୱର ଥିଲା ଖୁବ୍ ଦୂରରେ । ସେ ସ୍ୱରଥିଲା ଆନ୍ତରିକତାର । ଉଦ୍ଦାମ ଅନୁଭବର ସମ୍ପୂର୍ଣ୍ଣ ନିର୍ଭୀକତାର । ଖାଲି ପ୍ରକୃତିର ବର୍ଣ୍ଣନା ନୁହେଁ ବସ୍ତୁନିଷ୍ଠତା ନୁହେଁ, ନିଜ କଥା, ନିଜେ ଅଙ୍ଗେ ନିଭେଇଥିବା କଥା, ଇନ୍ଦ୍ରିୟାନୁଭୂତିର କଥା, ଏଇ ନଶ୍ୱର ଦେହର କଥା । 'ପ୍ରିୟାର କରକଙ୍କଣ', ଭଗ୍ନୀ କଣ୍ଠର ଶୁଳ୍ବନ କଥା । ସେଥିରେ ଥିଲା ଏକ ଅଭୂତ ପୂର୍ବ ଶିହରଣ ଓ ଆନନ୍ଦର ସ୍ପର୍ଶ – ଯାହା ପାଠକଙ୍କୁ ସମ୍ପୂର୍ଣ୍ଣ ଅଭିଭୂତ କରୁଥିବ । ମୋର ମନେହୁଏ ଶେଷରେ ସେ ସେଇ 'ଧୂପର କବି'ହିସାବରେ ହିଁ ସମସ୍ତଙ୍କର ବେଶୀ ମନେ ରହିବେ । କାରଣ ସେଇଠି ସେ ଛୁଇଁଥିଲେ ନିଜର ଗଭୀରତମ ହୃଦୟ-ରାଜ୍ୟର କୃଷ୍ଣ-ଉତ୍ସକୁ-ଯାହାସବୁ କଳା ଓ ସାହିତ୍ୟର ଆଦିମ ଜନକ । ଆଉ ସବୁ ବାଦାନୁବାଦ, ମତାନୈକ୍ୟ ଉପରେ ରହିବ ସେଇ କବିଟି ଯିଏ ନିର୍ଭୟରେ ନିଜର ଗଭୀରତମ ଅନୁଭବକୁ ସିଧାସଳଖ ଲେଖି ଯାଇଥିଲା । ଯାହାକୁ ପଢ଼ି ଅଗଣିତ ପାଠକ ନିଜର ବ୍ୟକ୍ତିଗତ ଅନୁଭବକୁ ଆଉ ଥରେ ଥରେ ପାଇ ପାରିଥିଲେ । ସେଇ ନାନ୍ଦୋଲାରେ ମଧ୍ୟ ସେ କହିଥିଲେ ଯେ, 'ଧୂପ' ତାଙ୍କର ପ୍ରିୟତମ କାବ୍ୟ । ମୁଁ ଆଦୌ ଆଶ୍ଚର୍ଯ୍ୟ ହୋଇ ନ ଥିଲି ।



# 'ପ୍ରିୟ ପରମ'

## ପ୍ରଥମ ସାକ୍ଷାତ—

**ହେମଲତା ମାନସିଂହ**

ଶୀତରାତି । ନିଘୋଡ଼ ନିଦରେ ଶୋଇଛୁ । ହଠାତ୍ କିଏ ମତେ ଡାକିଲା- "ବୁଢ଼ୀ ଉଠ୍ ଉଠ, ଝିଅଣା ଦେ ।" ଆଖି ଖୋଲି ଦେଖେତ -ପେଟ୍ରୋମାକ୍ସ ଜଳୁଛି । ସେଇ ଡିସେମ୍ବର ମାସ ଅଧରାତିରେ ସମସ୍ତେ କର୍ମଚଞ୍ଚଳ । ବାହାରେ ଘରୁ ଚେଁ ଚାଁ ଶବ୍ଦ ସ୍ପଷ୍ଟ ଶୁଭୁଛି । ବୋଉ ପଛରୁ ଡାକି କହିଲା, "ସେ ଆଡ଼େ ଯା'ନା, କଲେଜ ବାବୁମାନେ ଆସିଛନ୍ତି ।" (ଦାଦା ଔପନ୍ୟାସିକ ସଚ୍ଚିଦାନନ୍ଦ ବେହୁରା) କହିଲେ, "ତାକୁ ନାହିଁ କରୁଛ କାହିଁକି ? ତାକୁ ପରା ଦେଖିବାକୁ ଆସିଛନ୍ତି ।"

ତା'ପରଦିନ ସମସ୍ତେ ଖିଚିଂ ଦେଖିବାକୁ ବାହାରିଲେ । କରଞ୍ଜିଆରୁ ଖିଚ ମାତ୍ର ଅଳ୍ପ କେତେ ମାଇଲ । ମୁଁ ଓ ମୋ' ସାନଭାଇ ରାମ (ଡକ୍ଟର ବସନ୍ତକୁମାର ବେହୁରା, ପ୍ରଫେସର, ଜୁଓଲଜି) ମଧ୍ୟ ସେମାନଙ୍କ ସହିତ କାର୍‌ରେ ଗଲୁ । ବୋଧହୁଏ ଦାଦାଙ୍କ କଥା ଯେ ରୁ ବେ.ଭି ମୋତେ ସେମାନଙ୍କ ସାଥିରେ ବୁଲିବାକୁ ଅରାଜି ହୋଇନଥିଲେ । ତରୁଛାୟା ଶୀତଳ ରାସ୍ତାରେ ଆମକାର୍ ଆଗେଇ ଚାଲିଥାଏ । ଆମେ ଦୁଇ ପାର୍ଶ୍ୱର ବନଶୋଭା ଦେଖି ଦେଖି ଯାଉଥାଉ । 'ଖିଚିଂରେ ପହଞ୍ଚି ଖିଚିଂଙ୍କେଶ୍ୱରୀଙ୍କୁ ଦର୍ଶନ କଲୁ । କି ବିରାଟ ବିରାଟ ମୂର୍ତ୍ତି ! କେତେକ ମୂର୍ତ୍ତିକୁ କଳାପାହାଡ଼ ଭାଙ୍ଗି ଦେଇଛି ଶୁଣି ଆମ ପିଲାମନ ହେଉଥାଏ କଳା ପାହାଡ଼କୁ ଧରି ମାରି ଦେବାକୁ । ରାମ ସେତେବେଳେ ତା' ବହିରେ ପଢ଼ିଥିବା ଓଡ଼ିଶାରେ ସର୍ବଜନ ପ୍ରଚଳିତ ଏଇ କେତୋଟି ପଦ ଆବୃତ୍ତି କରିଥିଲା—

"ଅଇଲା କଳା ପାହାଡ଼ ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି
ସୁବର୍ଣ୍ଣ ଅ:ଳରେ ହେଡ଼ା (ହାର ?) ପରଶିଲେ
ମୁକୁନ୍ଦ ଦେବଙ୍କ ରାଣୀ ।"

ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ଗୃହ ନିର୍ମାଣ ହୋଇ ସେଇଠି ମୂର୍ତ୍ତିସବୁ ରଖାଯାଇଥାଏ । ତା ପାଖକୁ ଶାଳ ବନ ବିଥିକା । ସେଇଠି କାର୍‌ଟି ଥୁଆ ହୋଇଥାଏ । କାର୍‌ରେ ସ୍ଥାନ ନ ହେବାରୁ ଦୁଇଜଣ ସାଇକେଲରେ ପଛରେ ଆସୁଥା'ନ୍ତି । ସେମାନେ ବହୁତ ସମୟ ପର୍ଯ୍ୟନ୍ତ ନ ଆସିବାରୁ ତାଙ୍କୁ ଖୋଜିବାକୁ ଏମାନେ ସମସ୍ତେ ଗଲେ । ମନେ ପଡ଼ୁଛି, ସେମାନେ ହେଉଛନ୍ତି ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ସଦାଶିବ ମିଶ୍ର, ସ୍ୱର୍ଗତ କମ୍ରେଡ଼ ଭଗବତୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ନାୟକ ଓ ରତ୍ନାକର ଷଡ଼ଙ୍ଗୀ । କିନ୍ତୁ ମାନସିଂ ଖୋଜିବାକୁ ନ ଯାଇ କାର୍‌ର ଆଗ ସିଟ୍‌ରେ ସେଇ ଶାଳ-ଗଛ ଛାଇରେ ବସି ରହିଥା'ନ୍ତି ।

ରାମ ଖୁବ୍ ଚଞ୍ଚଳିଆ ପିଲା । ଏପଟ ସେପଟ ହେଉଥାଏ । ମୁଁ ବି ତା ସାଥିରେ ଥାଏ । ସେ ଶାଳ ଦାନ୍ତକାଠି ଭାଙ୍ଗି ପତର ଛୁଣ୍ଟେଇ ନେଉଥାଏ । ଆମେ ଶାଳଫୁଲ ଓ ମଞ୍ଜି ଖୋଜୁଥାଉ । ଶାଳ ମଞ୍ଜି ଖାଇବାକୁ ଭଲଲାଗେ । ଜଙ୍ଗଲରେ ଭୁଇଁକୋଳି ଖୋଜୁଥାଏ । ବତାସରେ ଅଜଣା ଫୁଲର ମହକ । କେତେ ନାମହୀନ ଫୁଲ ବି ଛୁଣ୍ଡାଉ ଥାଉ । ମାନସିଂ ରାମକୁ ଡାକି ଭଣ କହିଲେ । ସେ ଆସି ମୋତେ ମାନସିଂଙ୍କ ପାଖ୍ ଡାକି ନେଲା । ମାନସିଂ ମୋତେ ପଚାରିଲେ—"ଓଡ଼ିଶାର ତିନିଜଣ ବିଶିଷ୍ଟ କବିଙ୍କ ନାମ କହିଲ ?" ମୁଁ ରାଧାନାଥ, ଫକୀର ମୋହନ ଓ ଗଙ୍ଗାଧର ମେହେରଙ୍କ ନାମ କହିଲି । ତା'ପରେ ପଚାରିଲେ ତିନୋଟି ଓଡ଼ିଆ ମାସିକ ପତ୍ରିକାର ନାମ କୁହ ?" କହିଲି ସେଥିରେ ବୋଧହୁଏ ସେତେବେଳେ ମହତାବ୍ ସମ୍ପାଦିତ ବାଲେଶ୍ୱରରୁ ପ୍ରକାଶିତ 'ପ୍ରତିଭା' ନାମକ ପତ୍ରିକାର ନାମ କହିଥିଲି । ମାନସିଂ କହିଲେ, "ହଉ ଭଲକରି ପଢ଼, ଭଲ ବର ପାଇବ ।"

ପତ୍ରିକା ବା ସାହିତ୍ୟିକଙ୍କ ନାମ କହିବା ମୋ ପକ୍ଷେ କଷ୍ଟକର ନଥିଲା । କାରଣ ଆମ ବାପା ସାହିତ୍ୟିକ ନ ହେଲେ ମଧ୍ୟ ଥିଲେ ସାହିତ୍ୟପ୍ରେମୀ । ସେତେବେଳେ ଆମ ଘରକୁ ରାଧାନାଥ, ଫକୀର ମୋହନ ଓ ମେହେରଙ୍କ ସବୁ ଛାପା ବହି ଆସିଥିଲା । ତା' ସହିତ ପତ୍ର ପତ୍ରିକା ମଧ୍ୟ । ମୋର ମନେ ଅଛି ନାରୀ କବି କୁନ୍ତଳା କୁମାରୀଙ୍କ ସମସ୍ତ ବହି ମଧ୍ୟ ଆମ ଘରେ ଥିଲା ।

ସେଦିନ ତ ଶାନ୍ତକ୍ଳାନ୍ତ ହୋଇ ସମସ୍ତେ କରଂଜିଆ ଫେରି ଆସିଲେ । ତା' ପରଦିନ ମୋର ପରୀକ୍ଷା କରାହେଲା । ମାନସିଂ ଓ ତାଙ୍କ ବନ୍ଧୁ ଭଗବତୀ ପାଣିଗ୍ରାହୀ ଘର ଭିତରକୁ ଆସିଲେ । ଗୀତ, ସିଲେଇ ଓ ଅଙ୍କ ବିଷୟରେ ମୋତେ କେତେକ ପାଠ ପଚାରିଲେ । ମୋର ଅଙ୍କ ତ ଭଲ ହେଉଥିଲା । ତେଣୁ ମୁଁ ପାଶ୍ କଲି । ଭଗବତୀ ବାବୁ ରୋଗା ହୋଇ ପତଳା । ଆଖିରେ ଚଷମା ପିନ୍ଧିଥାନ୍ତି । ମାନସିଂ ବେଶ୍ ହୃଷ୍ଟପୁଷ୍ଟ ସ୍ୱାସ୍ଥ୍ୟବାନ୍ । ସେମାନଙ୍କର ଗ୍ରୁପ୍ ଫଟୋକୁ ନେଇ କେହି ବୋଧହୁଏ ବୋଉକୁ ତାର ଭାବୀ ଜ୍ୱାଇଁର ଛବି ଦେଖାଉଥା'ନ୍ତି । ମୁଁ ତ କିଛି ଜାଣି ନ

ଥାଏ । ପଚାରିଲି – "ଏ ମୋଟା ଲୋକଟି କିଏ ?" ସମସ୍ତେ ସମସ୍ୱରରେ ହସିଲେ । ମୁଁ କିଛୁ ବୁଝିପାରିଲି ନାହିଁ ।

ମାନସିଂ ଓ ତାଙ୍କ ସାଙ୍ଗମାନଙ୍କ ଇଣ୍ଟରଭ୍ୟୁରେ ମୋର ପାଶ୍ ହେଲା ସିନା, କିନ୍ତୁ ସେମାନଙ୍କର ପରାମର୍ଶ ହେଲା ମତେ ସ୍କୁଲରେ ପାଠ ପଢ଼ିବାକୁ ହେବ । ସେତେବେଳେ କେଉଁଠି ହେଲେ ବାଳିକା-ହାଇସ୍କୁଲ ନଥିଲା । ତେଣୁ ସ୍ଥିର ହେଲା ମୁଁ ରେଭେନ୍ସା ବାଳିକା ବିଦ୍ୟାଳୟରେ ପଢ଼ିବି ।

ମାନସିଂହ ଓ ତାଙ୍କ ବନ୍ଧୁବର୍ଗ ବିଦାୟ ନେଲେ । କେବଳ ଭାଇ (ଶ୍ରୀ ଦୁର୍ଗାମାଧବ ବେହୁରା) ରହିଗଲେ ମତେ ନେଇ କଟକ ଯିବେ । ଭାଇ ଓ ଦାଦା ଙ୍କରଂଙ୍କଆରୁ କଟକ କପରି ଯା'ଆସ କରୁଥିଲେ ମୋର ମନେ ନାହିଁ । କିନ୍ତୁ ମୋର ଯିବା ବିଷୟରେ ଘର ଭିତରେ ଘମାଘୋଟ ଆଲୋଚନା ହୋଇଥିବାର ମନେ ଅଛି ।

ଏ ହେଉଛି ବୋଧହୁଏ ୧୯୨୯ ସାଲର କଥା । ମୋର ବୟସ ସେତେବେଳକୁ ଦଶ । ତା'ପରେ ମୁଁ ରେଭେନ୍ସା ଉଚ୍ଚ ବାଳିକା ବିଦ୍ୟାଳୟରେ ଅଧ୍ୟୟନ କଲି । ହଷ୍ଟେଲରେ ଥିଏ । ଉଚ୍ଚଶ୍ରେଣୀର ଜଣେ ଛାତ୍ରୀ ମୋର ସ୍କୁଲମାଦାର ହୋଇଥା'ନ୍ତି । ସେ ମୋର ଭଲ ମନ୍ଦ ସବୁବୁଝନ୍ତି । ମୋ ମୁଣ୍ଡର ସୁନା ପ ନିଆ, ଚୁଙ୍କ୍ ଗ୍ରୁବ ସବୁ ତାଙ୍କର ପାଖରେ ଥାଏ । ସେତେବେଳକୁ ମାନସିଂହଙ୍କର ଉପେନ୍ଦ୍ର ଭଞ୍ଜଙ୍କୁ ନେଇ ଲିଖିତ 'ରାଜକବି' ନାଟିକା କେବଳ ପ୍ରକାଶିତ ହୋଇଥାଏ । ସେଥିରୁ କେତେଗୁଡ଼ିଏ କବିତା ମୋର ମୁଖସ୍ଥ ହୋଇ ଯାଇଥିଲା । ଛାତ୍ରୀବାସର ନିୟମ ଅନୁସାରେ ଶନିବାର ଦିନ ଉପରବେଳା କିମ୍ବା ରବିବାର ସକାଳ ଓ ସ୍ୱରଟ ବେଳେ ଭିଜିଟର ଆସି ପାରିବେ । ସେଥିପାଇଁ ଭିଜିଟିଷ୍ଟ ରୁମ୍ ଥାଏ । ସେଇ ରୁମ୍‌ରେ ସାକ୍ଷାତ୍ ହୁଏ । ଗେଟ୍‌ରେ ଦରୁଆନ୍ ଖାତାରେ ଦସ୍ତଖତ୍ କରି ଆସିବାକୁ ପଡ଼େ । ମୋର ବଡ଼ ଭାଇ ଓ ଦାଦା ସେତେବେଳେ ରେଭେନ୍ସା କଲେଜରେ ପଢ଼ୁଥା'ନ୍ତି । ସେମାନେ ନିୟମିତ ଆସି ମୋର ସୁବିଧା ଅସୁବିଧା ବୁଝନ୍ତି । ଅନେକ ଥର ମାନସିଂ ମଧ୍ୟ ଆସନ୍ତି । କେତେବେଳେ ସାଥୀରେ ତାଙ୍କର ବନ୍ଧୁ ଜଣେ ଜଣେ ଥା'ନ୍ତି । ବେଳେ ବେଳେ ସେ ଏକା ମଧ୍ୟ ଆସନ୍ତି ।

ପଞ୍ଚମ ବା ଷଷ୍ଠ ଶ୍ରେଣୀ ହେବ (ଆଜିର ଷଷ୍ଠ ବା ସପ୍ତମ ଶ୍ରେଣୀ) । ମାନସିଂଙ୍କୁ ବେଶୀ କଥା କହିବାକୁ ମୋତେ ସଙ୍କୋଚ ଲାଗୁଥାଏ । କିନ୍ତୁ ମୋର ମୋଜା ବୁଣିବାପାଇଁ ଛୁଞ୍ଚିଟାଏ ନିହାତି ଦରକାର । ତାଙ୍କ ମୁହଁକୁ ଅନେଇ ନପାରି ଲାଜଲାଜ ହୋଇ ଅତି କଷ୍ଟରେ କହିଥିଲି—"ମଉଜା ବୁଣିବାକୁ ସୁରଟା ଛୁଞ୍ଚି ଦରକାର ।" ସେ ସଙ୍ଗେ ସଙ୍ଗେ ସଂଶୋଧନ କରି କହିଲେ 'ମଉଜା' ନୁହଁ, 'ମୋଜା' । ତା'

ପରଥର ଆସିଲାବେଳେ ଗୁଣ୍ଠା ଛୁଞ୍ଚି ଆଣି ଦେଇଥିଲେ । ତା' ସହିତ 'ପଞ୍ଚସଖା' ନାମରେ ଗୋଟାଏ ବଙ୍ଗଳା ଉପହାର ବହି । ବହିରେ ମୋର ନାମ ଲେଖି ଦେଇଥା'ନ୍ତି । ସେଥିରେ ବେହୁଲା, ସାବିତ୍ରୀ ସତ୍ୟବାନ ଆଦିଙ୍କର କାହାଣୀ ସହିତ ସୁନ୍ଦର ସୁନ୍ଦର ଚିତ୍ର ଥାଏ । ନଦୀ ବକ୍ଷରେ ବେହୁଲା ତାଙ୍କ ସ୍ୱାମୀଙ୍କ ମୃତ ଦେହକୁ କୋଳରେ ଧରି ଭାସି ଯାଉଛନ୍ତି । ସାବିତ୍ରୀ ସତ୍ୟବାନ୍‌ଙ୍କ ମୃତ ଦେହକୁ ଧରି ଜଙ୍ଗଲରେ ବସିଛନ୍ତି । ଯମରାଜା ଆସିଛନ୍ତି ସତ୍ୟବାନଙ୍କୁ ନେବାକୁ । ଆଉ ଥରେ ଗୋଟିଏ ବହି ଦେଇଥିଲେ ଗଙ୍ଗାଧର ମେହେରଙ୍କ 'ପ୍ରଣୟବଲ୍ଲରୀ', ଏଥିରେ ବି ଦୁଇ ଗୁଣ୍ଠା ଛବି ଥିଲା । ଦୁଷ୍ମନ୍ତ ଶକୁନ୍ତଳାଙ୍କର ପ୍ରଥମ ଦର୍ଶନ ଓ ବିଚ୍ଛେଦ ପରେ ଭରତ, ଶକୁନ୍ତଳା ଓ ଦୁଷ୍ମନ୍ତଙ୍କର ମିଳନ । ମୋର ଏ ବହିରୁ କେତେଗୁଡ଼ିଏ ପଦ୍ୟ ମୁଖସ୍ଥ ହୋଇ ଯାଇଥିଲା । ଏବେବି ମନେ ଅଛି,

"ଯେନ ପୂଜ୍ୟ ପୂଜା ବ୍ୟତିକ୍ରମ ଫଳ
ଯାଠାରେ ରଖିଛୁ ଲୟ
ସେ ତୋତେ ଚହ୍ନିବ ସ୍ମରିରୁ ଦେଲେ ହେଁ
ଆପଣାର ପରିଚୟ ।"

ଆଉଥରେ ମାନସିଂ ଆଣିଦେଲେ ଗୋଟାଏ ବିଚିତ୍ର ପେଟ ମୋଟା ଛୁରୀ; ଛୁରୀଭିତରେ ୨୭ ପ୍ରକାର ଛୋଟ ବଡ଼ ଛୁରୀ ଥାଏ, ଗୋଟିକ ପରେ ଗୋଟିଏ ଦରକାର ଅନୁଯାୟୀ କାଢ଼ିବାକୁ ହେବ । ମୋତେ ବଡ଼ କୌତୁକିଆ ଲାଗୁଥାଏ ।

ମୋର ସବୁ ଜିନିଷ ବିଛଣାତଳେ ରହେ । ଟ୍ରଙ୍କ୍ ଗୁଡ଼ିକ ସ୍କୁଲ ମାଦାର୍‌ଙ୍କ ପାଖରେ । ସେ ତ ଲୁଗାପଟା କାଢ଼ି ଦିଅନ୍ତି । ଆଉଥରେ ମାନସିଂ ଗୋଟାଏ ମୋଟା ବନ୍ଧେଇ ଖାତା ଆଣି ମତେ ଦେଲେ କହିଲେ, "ଏଥିରେ କବିତା ଗୁଡ଼ିକ କପିକରି ରଖିଥିବ । ଆରଥରକୁ ମୁଁ ଆସି ନେଇଯିବି । ମୁଣ୍ଡ ଟିଙ୍ଗାରି ହଁ ଭରିଲି । ଖାତାଟିକୁ ସିନା ନେଇ ଆସିଲି ରଖିବି କେଉଁଠି ? ଲେଖିବି କେତେବେଳେ ? ସମସ୍ତଙ୍କୁ ଲୁଚେଇ ତହିଁରୁ 'ମାଳତୀ' କବିତାଟା ପଢ଼ି ଦେଇଥିଲି । ଏ କବିତ ଗୁଡ଼ିକ ଏତେ ଭଲ ଲାଗିଲା ଯେ ମୁଁ ସମସ୍ତଙ୍କୁ ଲୁଚେଇ ଲୁଚେଇ ତାକୁ ପଢ଼ିବାକୁ ଲାଗିଲି । 'ଶଙ୍କିତ ସ୍ନେହ', 'ଦୂରେ ରହ', 'ପ୍ରେମର ଭାଷା' ମୋ ହୃଦୟରେ ଆଲୋଡ଼ନ ସୃଷ୍ଟି କରୁଥାଏ । ବିଶେଷତଃ "ଗୁଚ୍ଛକେଶୀ ସେଇ ବାଳିକାର ପ୍ରେମ ପାଇଁ/ଏ ଜୀବନେ ମୋର ନ ଦେବାର କିଛୁ ନାହିଁ" ଆଦି ପଙ୍‌କ୍ତି ଗୁଡ଼ିକ ମୋତେ ବେଶ୍ ଉଦ୍‌ବୁଦ୍ଧ କରିଥିଲା । ଏ ଖାତାଟି ଦେବା ପୂର୍ବରୁ ମାନସିଂ ମତେ ପଚାରି ମୋ ଠୁଁ ସମ୍ମତି ନେଇଥିଲେ ଯେ, ଗୋଟାଏ ବହି ମୋତେ ଉତ୍ସର୍ଗ କରିବେ । ସେଇ ଖାତାଟି ପରେ

ପରେ 'ଧୂପ' ନାମରେ ପ୍ରକାଶ ପାଇଲା ଓ ପ୍ରଥମ ସଂସ୍କରଣରେ 'ଉତ୍ସର୍ଗ'ରେ ଲେଖାଥିଲା ।

"ହେମଲତା ଦେବୀ କାନ୍ତକରେଷୁ"

ମୁଁ ପରେ ଯେତେବେଳେ 'ଧୂପ' କବିତାର ମର୍ମ ବୁଝି ପାରିଲି, ସେତେ-ବେଳେ ଉତ୍ସର୍ଗଟି ଉଠାଇ ଦେବାକୁ କବିଙ୍କୁ ଅନୁରୋଧ କରିଥିଲି । ପରବର୍ତ୍ତୀ ସଂସ୍କରଣରେ ତାହା ଉଠାଇ ଦିଆଯାଇଥିଲା । ଏହି କବିତାଗୁଡ଼ିକ ମୋ ମନରେ ଦାଗ କାଟିବାର କାରଣ ହେଲା, ଗ୍ରୀଷ୍ମାବକାଶ ଓ ଅନ୍ୟାନ୍ୟ ଅବକାଶମାନଙ୍କରେ କବି ମାନସିଂ ଆମଘରେ କାରଂଜସ୍ଥାରେ ଛୁଟି କଟାଉଥିଲେ । ସେ ସମୟରେ ସେ ସର୍ବଦା ମୋର ଉପସ୍ଥିତି କାମନା କରୁଥିଲେ । ମୁଁ ସେତେବେଳେ ଚପଳମତି ବାଳିକା । ମୋତେ ସଂକୋଚ ଲାଗେ ଗୋଟିଏ ଯୁବକ ଥିବା ଘରେ ଯାଇ ବସିରହିବାକୁ । କବି ମାନସିଂ କିନ୍ତୁ ମୋର ସାନଭାଇ ଭଉଣୀଙ୍କୁ ଗଳ୍ପ କହିବାର ପ୍ରଲୋଭନ ଦେଖାଇ ମତେ ଘରୁ ଡ଼କାଇ ପଠାନ୍ତି । ନହେଲେ ଅଭିମାନ କରନ୍ତି । ସେହି ସମୟରେ ସେକ୍ସପିୟରଙ୍କର କେତେଗୁଡ଼ିଏ ଗଳ୍ପ ଆମେ କବିଙ୍କଠାରୁହିଁ ଶୁଣିଥିଲୁ । ତାଙ୍କଠାରୁ ଶୁଣି ସାହିତ୍ୟ ପ୍ରତି ଆମ ମନରେ ଘୃଣା ଜାତ ହୋଇଥିଲା । ପୁଣି ରାଧାନାଥ ଗ୍ରନ୍ଥାବଳୀରୁ କବି ମାନସିଂ ମତେ 'ଚନ୍ଦ୍ରଭାଗା' 'ଉଷା' ଓ 'କେଦାରଗୌରୀ' ପଢ଼ାଇ ବୁଝାଇଥିଲେ ଓ ମଝିରେ ମଝିରେ ସେ ବିଷୟରେ ପଚାରୁଥିଲେ । ତା ସହିତ ପୁଣି ନାନା ପ୍ରଶ୍ନ ରସିକତା କରି ପଚାରୁ ଥିଲେ । ଯେପରି "ମୁଁ ତମର କ'ଣ ହେବି" ? "ଗୁରୁଜନ ? ବନ୍ଧୁ; ନୁହେଁ" ?

## ଆମର ବିବାହ—

କବିଙ୍କ ସହିତ ମୋର ବିବାହ ସମ୍ବନ୍ଧ ସ୍ଥିର ହୋଇଗଲା; ମାତ୍ର ମୁଁ ବାଳିକା ଥିବାରୁ ବିବାହ ହୋଇ ପାରିଲା ନାହିଁ । ସେତେବେଳେ ଶାରଦା ଆଇନ୍ ତାଜା ପାସ୍ ହୋଇଥାଏ । ଚଉଦ ବର୍ଷ ହୋଇନଥିବା କନ୍ୟାକୁ ବିବାହ ଦେଲେ କନ୍ୟାପିତାଙ୍କୁ ଜେଲ ଓ ଜୋରିମାନା ଦଣ୍ଡ ଭୋଗିବାକୁ ହେବ । ଭ୍ରୁଣ ଅବସ୍ଥାରେ ଥିବା ସମୟକୁ ଅର୍ଥାତ୍ ପେଟରେ ଥିବା ଦଶମାସକୁ ହିସାବକୁ ନେଇ ମୋର ଚଉଦବର୍ଷ କରାଯାଇଥିଲା । ପ୍ରକୃତରେ ମୋର ତେରବର୍ଷ ୨ମାସ ବୟସରେ ୧୯୩୨ ମେ ମାସ ୮ ତାରିଖରେ ବିବାହ ହୋଇଥିଲା ଆମ ଗାଁ ବାଲିପଡ଼ାରେ । କବିଙ୍କ ଅଭିଭାବକ ମାନଙ୍କର ଇଚ୍ଛାଥିଲା ଚିଲିକା ମଧ୍ୟସ୍ଥ ଦ୍ୱୀପ ପାରିକୁଦ ବା ମାଲୁଦ ମଧ୍ୟରୁ ବୋହୂ ଆଣିବାକୁ । ଚିଲିକା ହ୍ରଦ ବାହାରେ ସେମାନେ ପ୍ରାୟ ସମ୍ବନ୍ଧ କରୁନଥିଲେ । ମୋ ଜାଣିବାରେ ଚିଲିକା ହ୍ରଦ ସେପାରି କବି ଗୋଦାବରୀଶଙ୍କ ଜନ୍ମସ୍ଥଳୀ ବାଣପୁର ଗ୍ରାମ ନିକଟବର୍ତ୍ତୀ ନରେନ୍ଦ୍ରପୁର ସରକାରୀ ହାଇସ୍କୁଲର ପ୍ରଧାନଶିକ୍ଷକ ରଘୁନାଥ କଳସ୍ୱାମିସିଂ ଓ ସୁନାମଧନ୍ୟ ଶିଳ୍ପୀ ଉପେନ୍ଦ୍ର ମହାରଥୀ କବିଙ୍କର ଦୂର ସଂପର୍କୀୟ

ମହଲାପୁଅ ଭାଇଥିଲେ । ତଥାପି ସେଇ ଦ୍ୱୀପ ମଧ୍ୟରେ କୋଠୋଟି ଖଣ୍ଡାୟତ ଷର୍ଦ୍ଦିସ୍ୱ ପରିବାର ମଧ୍ୟରେ ବିବାହ ହେଉଥିଲା । ଏପରିକି କବିଙ୍କ ନିଜ ଭଣଜା ସହିତ ନିଜ ସା'ନ୍ତବାପା ପୁଅର ଝିଅ ସହିତ ମଧ୍ୟ ବିବାହ ସ୍ଥିର ହୋଇଥିଲା । ଦୁର୍ଭାଗ୍ୟକୁ ଆମ ଭଣଜାର ଅକାଳ ବିୟୋଗ ଘଟିବାରୁ ଏ ବିବାହ ହୋଇ ପାରି ନଥିଲା ।

କବିଙ୍କ ଅଭିଭାବକମାନେ ତାଙ୍କୁ ସେଇ ଦ୍ୱୀପ ଅଞ୍ଚଳର କୌଣସି ଏକ ନିରକ୍ଷର କନ୍ୟା ସହିତ ବିବାହ ଦେବାକୁ ଉଦ୍ୟୋଗ କରିଥିଲେ । ଆତଙ୍କିତ କବି ଦାଦୀଙ୍କୁ କହି ବାଣପୁରସ୍ଥ ଦେବୀ ଭଗବତୀଙ୍କ ପୀଠରେ ବହୁପୂର୍ବରୁ ଅଭିଭାବକଙ୍କ ଦ୍ୱାରା ନିର୍ବନ୍ଧ କରାଇ ଥିଲେ । ସେମାନେ ଆମ ଗାଁ ବିଲପଡ଼ାକୁ ଆସି ଘରଦ୍ୱାର ଦେଖି ଯାଇଥା'ନ୍ତି । ତଥାପି କେଉଁଆଡ଼େ, କି ଜାତିରେ ବାହାଘର ହେବ କହି ନିର୍ଦ୍ଦିଷ୍ଟ ଦିନ ବନ୍ଧୁବାନ୍ଧବ କେହି ଆସିଲେ ନାହିଁ । ଆମର ଏଣେ ବିବାହର ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ । କେବଳ ବର ଓ ବରଯାତ୍ରୀଙ୍କୁ ଅପେକ୍ଷା କରି ସମସ୍ତେ ରହିଥା'ନ୍ତି । ପାରମ୍ପରିକ ରୀତି ଅନୁଯାୟୀ ବାପା, ବୋଉ ଓ ମୁଁ ଉପବାସ କରି ରହିଥାଉ । ମେ ତା ୭ ରିଖ ବିବାହ ସ୍ଥିର ହୋଇଥିଲା । କିନ୍ତୁ ପ୍ରକୃତରେ ବିଭାଘର ହେଲା ମେ' ତା ୮ ରିଖରେ । ଆମକୁ ପ୍ରାୟ ଦୁଇଦିନ ଉପବାସ ରହିବାକୁ ହେଲା । ଯାହାହେଉ, ଦ୍ୱିତୀୟଦିନ ରାତିରେ କବି ବରବେଶରେ ଆସି ପହଞ୍ଚିଲେ । ବର ପୋଷାକ ଓ ପଗଡ଼ି ପିନ୍ଧିଥିଲେ ବୋଲି ଶୁଣିଥିଲି । ବାଟବରଣି ବେଳେ ବାରିକ କୌଣସି ଭୁଲ କରିପକାଇଲା । କବିଙ୍କ ଦାଦା ତାକୁ ଥୋଡ଼ାଏ ବାଟ ଟାଣି ଟାଣି ନେଉଥିଲେ । ଆମ ଦାଦି ଏଣେ ମାର୍କୁଣ୍ଡିକୁ ଥୋଡ଼ାଏ ବାଟ ଟାଣି ଟାଣି ଆଣୁଥିଲେ, ସିଏ ବୋଧହୁଏ ନ ଅସିବାକୁ ଅଟ୍ଟ କରୁଥିଲା । ବରଯାତ୍ରୀମାନଙ୍କ ଗହଣରେ ଭଗବତୀ ପାଣିଗ୍ରାହୀ, ରତ୍ନାକର ଷଡ଼ଙ୍ଗୀ, ଆଡ଼ଭୋକେଟ୍ ଚନ୍ଦ୍ରେଶ୍ୱର ମିଶ୍ର ଆଦି ଆସିଥିଲେ ।

ଆମ ଗାଁ ବିଲପଡ଼ାରୁ ଜଗତସିଂହପୁର ୨° ମାଇଲ । ମୁଁ ସବାରୀରେ ଓ କବି ପାଲିଙ୍କିରେ ଜଗତସିଂହପୁର ଆସିଲୁ । ସେଠୁ ବସ୍‌ରେ ଆସିଲୁ କଟକ । କଟକରୁ ଟ୍ରେନ୍‌ରେ ଆସି ହୁମା ଷ୍ଟେସନରେ ଓହ୍ଲାଇଲୁ । ସାଥିରେ ବର ତରଫର ଓ କନ୍ୟା ତରଫର ବହୁତ ଲୋକ ଥା'ନ୍ତି । ମୋର ଓଢ଼ଣା ଉପରେ ଓଢ଼ଣୀ ପଡ଼ିଥାଏ । ଆଜିକାଲି ପରି ଫିନ୍ ଫିନ୍ ନାଇଲନ୍ ଓଢ଼ଣୀ ନୁହେଁ, ଶାଢ଼ୀର ଅଧା ହେବ ଲମ୍ବାଚଉଡ଼ାବାଲା ଓଢ଼ଣୀ । ଟିକିଏ ସୁବିଧା ପାଇଲେ କବି ଆସି କୁହନ୍ତି "ଓଢ଼ଣାଟି ଟିକିଏ ଟେକିଦିଅ" । ସେ ପାଖରୁ ଆମ ଗାଁ ବାରିକ ଆସି କହେ, "ଓଢ଼ଣାଟା ଆହୁରି ଟାଣି ଦେ; ଶଶୁର ଘର ଲୋକ ଅଛନ୍ତି ପରା ।" ହୁମା ଷ୍ଟେସନରୁ ପୁଣି ସବାରୀରେ ଯାତ୍ରା । ନିକଟବର୍ତ୍ତୀ ଏକ ବଡ଼ ପୋଖରୀ ନିକଟରେ ସବାରୀ ରହିଲା । ତାରି ଭିତରେ କବାଟ ବନ୍ଦକରି ବସି ଥାଏ । ସେଇ ପୋଖରୀ କୂଳରେ

ରନ୍ଧାବଢ଼ା ହେଲା, ସମସ୍ତେ ଗାଧୁଆ ପାଧୁଆ କରି ଖାଇଲେ । ସବାଶ୍ରି ଭିତରକୁ ମୋ ପାଇଁ ମଧ୍ୟ ଅନ୍ନ ବ୍ୟଞ୍ଜନ ଆସିଲା, ଫେରାଇ ଦେଲି, ଖାଇଲି ନାହିଁ, ଖରା ନେଉଟାଣି ନନ୍ଦଲା ଗ୍ରାମକୁ ଯାତ୍ରା କଲୁ ।

କବିଙ୍କ ଘର ବା ମୋ ଶାଶୁଘର—

ବର୍ତ୍ତମାନ ଯେଉଁ 'ନନ୍ଦଲା' ଗ୍ରାମ ଅଛି, ସେଇ ଗାଁ କବିଙ୍କ ଜନ୍ମସ୍ଥାନ ନୁହେଁ, ମାତ୍ର ଶୈଶବର କ୍ରୀଡ଼ାସ୍ଥଳୀ ଥିଲା । ପୁରୁଣା ନନ୍ଦଲା ଘରକୁ ମୁଁ ବାହାହୋଇ ଯାଇଥିଲି । ମୋତେ ବୋହୂକରି ନେଇ କବିଙ୍କ ପରିବାର ବହୁତ ଅସୁବିଧାର ସମ୍ମୁଖୀନ ହେଲେ । ତାଙ୍କ ନିଜ ମଉଳା ଲୋକେ ତାଙ୍କ ଘରକୁ ବାଛନ୍ଦ କଲେ । କୁଆଡ଼େ ଗଲେ ବନ୍ଧୁ ବାନ୍ଧବ କେହି ଖାଇବାକୁ ଡାକଲେ ନାହିଁ କି ଘରେ ପୂରାଇଲେ ନାହିଁ । ସେତେବେଳେ ଗାଁ ଗାଁଆକେ ଦୋକାନ ବଜାର ନଥିଲା । କେହି କୌଣସି ଗ୍ରାମକୁଗଲେ ନିଜର ବନ୍ଧୁବାନ୍ଧବ ଘର ହେଉ କମ୍ବା ଗାଁଆର କାହାରି ବନ୍ଧୁ ଘରଟିଏ ଥିଲେ ସେଠି ଯାଇ ଆଶ୍ରୟ ନେଉଥିଲେ । ବାଛନ୍ଦ ତ କଲେ, ପୁଣି ବିଗ୍ଭର ପାଇଁ ଦିନେ ସଭା ବସିଲା । ପଇତା ତ ସାଧାରଣ କଥା, ଖଣ୍ଡାୟତ ସାମନ୍ତ-ମାନେ କାନରେ ନୋଳି ଓ ବେକରେ ସୁନାର ମାଳି ପକାଇ ଆସିଥିଲେ । କବିଙ୍କ ସାଆନ୍ତ ବାପାଙ୍କ ପୁଅ ଭାଇ ହାତରେ ସୁନାର ଖଡ଼ୁ ଓ ବେକରେ ହାର ପିନ୍ଧିଥାଆନ୍ତି । ମୋ ବାପଘରକୁ ଆମ ବାପା ଷୋଳ ସାଆନ୍ତ ମର୍ଯ୍ୟାଦା କ'ଣ, ଯେତେ ମୁଖିଆ ମୁଖିଆ ଯାଇଥିଲେ ସମସ୍ତଙ୍କ ପାଇଁ ଶାନ୍ତିପୁରୀ ଯୋଡ଼ ଦେଇଥିଲେ । ସେଠୁ ଯୋଡ଼ ପିନ୍ଧି ଆସିଲେ କ'ଣ ହେବ, ପାରିକୁଦରେ ପହଞ୍ଚି ନଅ ମୌଜାର ସଭାରେ ବି ସେମାନେ ଯୋଗ ଦେଲେ । ସେ ସଭାରେ ସ୍ଥିର ହେଲା—ଜୋରିମାନା ଦେବାକୁ ହେବ । ବାଛନ୍ଦ କରିବାର କାରଣ କେଉଁ ଜାତିରୁ ବୋହୂ ଆସିଛି ? ଆମ ବାପଘର ପଦବୀ ବା ସଂଜ୍ଞା ଥିଲା 'ବେହୁରା' । ଏଇ ପଦବୀଟା ସେମାନଙ୍କର ମନଃପୂତ ହେଲା ନାହିଁ । ମୁଁ କିନ୍ତୁ ଅଡ଼ି ବସିଲି—''ଜୋରିମାନା ଦିଆଗଲେ ମୁଁ ଏଠାରେ ରହିବି ନାହିଁ ।'' ଯାହା ହେଉ ଶେଷକୁ ପାରିକୁଦ ରାଜା ଏହାର ସମାଧାନ କରିଥିଲେ; ମାନସିଂହଙ୍କ ପରିବାରକୁ ଜାତିରେ ମିଶିବା ପାଇଁ ଆଉ ଜୋରିମାନା ଦେବାକୁ ପଡ଼ିଲା ନାହିଁ ।

କବିଙ୍କ ଜ୍ୟେଷ୍ଠା ଭଗ୍ନୀ ସୁଜା ଅପା । 'କଣ୍ଠକାଚ' ଓ 'ଭଗିନୀ' ଆଦି ଗ୍ରନ୍ଥରେ କବିତାରେ କବି ତାଙ୍କ ପ୍ରତି ଗଭୀର ସ୍ନେହ ଓ ବେଦନାବୋଧ ପ୍ରକାଶ କରିଛନ୍ତି । କବିଙ୍କର ଏହି ଭଗିନୀ ଅତିଶୟ ଦୁଃଖିନୀ । ବାଲ୍ୟକାଳରେ ପିତାମାତା ଉଭୟଙ୍କର ପରଲୋକ ହୋଇ ଯାଇଥିଲା । ପରେ ଜ୍ୟେଷ୍ଠତାତ ଅଗାଧୁ ନାୟକ ତାଙ୍କୁ ପୋଷ୍ୟ-କନ୍ୟା ରୂପେ ପ୍ରତି ପାଳନ କଲେ । ଅଗାଧୁ ନାୟକ ପାରିକୁଦ ଷ୍ଟେଟର ଦେୱାନ ଥିବାରୁ ସେତେବେଳର ଏକମାତ୍ର ଏଣ୍ଟ୍ରାନ୍ସ ପାସ୍ ଯୁବକ ଉଦୟନାଥ

ଜେନାଙ୍କୁ ଜାମାତା ରୂପେ ଗ୍ରହଣ କରିଥିଲେ । ବିବାହ ସମୟକୁ ଉଦୟନାଥ ପାରଳୁଦ ରାଜାଙ୍କ କ୍ୟାପିଟ୍ଟଲ ଭାବେ କାର୍ଯ୍ୟ କରୁଥା'ନ୍ତି ।

ଅପାଙ୍କ ସହିତ ଉଦୟନାଥଙ୍କ ଭେଟ ମାତ୍ର ଦରଶନ । ତାହା ପୁଣି ଗମ୍ଭୀର ନଶାର୍ଦ୍ଧରେ । ସ୍ୱାମୀଙ୍କ ସହିତ ଅପାଙ୍କର ସେତିକି ମାତ୍ର ପରିଚୟ । ଅପା ପିତ୍ରାଳୟକୁ ଆସିଲେ । କେତେ ମାସ ପରେ ଭାରଯୋର ନେଇ ପ୍ରଆଣି ହୋଇ ଶ୍ୱଶୁରାଳୟକୁ ଗଲେ । ସେତେବେଳକୁ ସ୍ୱାମୀ ସରକାରୀ ଟଙ୍କା ତୋଷରପାତ କରି ପଳାତକ । ପରେ ଶୁଣାଗଲା ସେ ମାଳୟରେ ଆଉ ଜାହାକୁ ବିବାହ କରି ସବୁଦିନ ପାଇଁ ରହିଗଲେ । ସ୍ୱାମୀଶୋକରେ ଘାରି ହେଉଥିଲାବେଳେ ପୁତ୍ରଟିଏ ଜାତ ହେଲା । ଅପା ଚେତନାଶୂନ୍ୟା । ଅପାଙ୍କଠାରୁ ଶୁଣିଛୁ ତାଙ୍କ ମୁଣ୍ଡ ଚିରି ବୈଦ୍ୟ ସର୍ପ ଗରଳ ଦେବାରୁ ସେ ଚେତା ପାଇଲେ । ପାଣି ପାଣି ବୋଲି ଆକୁଳ ହେଲେ । ବିକଳରେ ପଣସ୍ତା'କରି ସେହି ପରିସ୍ରାକୁ ପିଇଲେ । ଗାଁ ମାନଙ୍କରେ ଅନ୍ତୁଡ଼ିଶାଳରେ ପାଣି ପିଇବାକୁ ଦିଆଯାଉ ନଥିଲା । ସେତେବେଳେ ଗୋଟିଏ ଧାରଣା ଥିଲା ବେଶୀ ପାଣି ପିଇଲେ ଦେହ ପାଚିଯିବ (ସେପ୍‌ଟିକ୍ ହୋଇଯିବ) କିମ୍ବା ସନ୍ନିପାତ ହୋଇଯିବ । ପ୍ରଆତିକୁ ଫୁଟିଆଣି ପାଣି (ଭାତ ଫୁଟୁଥିବା ପାଣି) ଦିଆହୁଏ କିମ୍ବା ଲୁହା ଛିଡା ପାଣି ଦିଅନ୍ତି । ଅପାଙ୍କ ଜୀବନ ଚିତ୍ର ମାନସିଂହଙ୍କ 'ଭଗିନୀ' କବିତାରେ ସ୍ପଷ୍ଟ ହୋଇ ଉଠିଛି :—

"ଅପା, କି କରୁଥିବ ଯାନ ବୋଲୁ ସେ
ବଳିତା ଦେବନ ତ ସରମ ବଶେ
ଚୂଲି ମୁହଁରେ 'ନଆଁ ଗୁଞ୍ଜାଇ ଧୀରେ'
ଶମାଉଥିବ ଦୁଃଖ ନୟନ ନୀରେ । ଯେ
ପତି ତା' କାହିଁ ଦୂରେ, ଦୂରେ ମୁଁ ଭାଇ
କୋଳ-ଦୁଲାଳ ଦୁଷ୍ଟ ଗାଆଁ ଭାଙ୍ଗଇ
ପଦ ପଦକେ ଝଙ୍କା ଜାଆ-ଗଞ୍ଜଣା
କାନ୍ଦିଛୁ ତା' ଦୁଃଖର ଆହା କଳଣା । ଯେ
ବଡ଼ କଷ୍ଟରେ ଭାଷା ଲେଖିଥିଲା ସେ
"ମୁଁ କରେ ତୋର ଆଉ ମନେ ନଆସେ
ମଲି କି ଗଲି ବୋଲି ପଗ୍ଭରିଲୁନ
କେତେ ଏମିତ ତୋର ଛ'ନ୍ତି ଭଉଣୀ । ରେ
ଏଥର ଧନ ପତ୍ର ଆସିବୁ ନଚେ
କେତେ ତ କହିଲୁଣି "ଯିବି ମୁଁ ପଛେ"
ଏଥର ତୋର ବାଟ ରହିଲି ଗ୍ଭହିଁ
ଭଉଟି ପତ୍ର ଆଶା ଭାଙ୍ଗିବୁ ନାହିଁ ।" ରେ ଇତ୍ୟାଦି••

ଅପାଙ୍କ ଅନ୍ତର୍ଦ୍ଧାନ ଗେଲବସର ଏଇ କୋଣ ଦୂର୍ଘଟଣାଟିକ ଆମେ ଆଣି ପାଖରେ ରଖି ପଢ଼ାପଢ଼ି କରୁଥିଲୁ । ପଢ଼ାପଢ଼ିରେ ସେତେ ଭଲ ନ କରିବାରୁ କବି ତାଙ୍କୁ କଟକ ଇଞ୍ଜିନିୟରିଂ ସ୍କୁଲରେ ଟେକ୍ନିକାଲ ଟ୍ରେନିଂ ଦିଆଯାଉଥିଲେ । ସେତେ-ବେଳକୁ ସେ ବେଶ୍ ସବଳ ସ୍ୱାସ୍ଥ୍ୟବାନ୍ ଯୁବକ । ଆମେ ଆଠଗଡ଼ରେ ଥାଉ । ଦାଶରଥି (ଅପାଙ୍କ ପୁଅ ମତେ ଲେଖିଥାଏ ଯେ ତାଙ୍କୁ ଜର ହେଉଛି, ସେ ତା' ବୋଉ ପାଖକୁ ଯିବ" । ମୁଁ ତାଙ୍କୁ ଲେଖିଲି "କଟକରେ ଡାକ୍ତର ଅଛନ୍ତି, ତମେ ଗାଁକୁ କାହିଁକି ଯିବ ?" ମାନସିଂହ ଆଠଗଡ଼ରୁ ଆସି ଦେଖିଲାବେଳକୁ ଦାଶରଥି ଆଉ ଏ ସଂସାରରେ ନଥିଲା । ନିସ୍ତନର ମଣି ପୁତ୍ର ଗଲା, ସ୍ୱାମୀ ତ ଆଗରୁ ତାଙ୍କୁ ଗୁଡ଼ି ନିଖୋଜ ହୋଇଥିଲେ, ପରେ ଆଦରର ସ୍ୱାଇବି ଏ ଦୁନିଆରୁ ବିଦାୟ ନେଇଗଲେ । 'କଣ୍ଟକାଟ'ର ଅପା ଗାଁର ପିତୃପିତାର୍ଜିତ ଭୂମିକ ଜଗି ଆଜି ବି ବଞ୍ଚି ରହିଛନ୍ତି । ଆଖିରୁ ତାଙ୍କର ଅସରା ଲୁହର ଦାଗ ଶୁଖୁନାହିଁ ।

କବିଙ୍କ ଘରେ ପ୍ରତିଦିନ ଭାଗବତ ପାଠହୁଏ । ପୋଲିଙ୍ଗ ତେଲର ଦୀପ ଜଳେ । ବେଳେବେଳେ କବି ମଧ୍ୟ ଗୁନ୍ଦ ଚଉପଦୀ ଭଜନୀମାନଙ୍କ ସହ ଗାଆନ୍ତି । ତାଙ୍କ ଦାଦା'ଝିଅ ଭଉଣୀମାନେ ଗୁନ୍ଦ ଚଉପଦୀ ବରାବର ବୋଲନ୍ତି । ବିଶେଷତଃ ଉପେନ୍ଦ୍ର ଭଞ୍ଜଙ୍କ "ଚେତ ଯୁବତୀ ଗୃହିଁଲା ନଶି ନାଶେ ପାଶେ ନାହିଁ ଦ୍ରବ୍ୟ ତରୁଣ..." କିମ୍ବା "ଦ୍ୱିତୀୟା ଯାମିନୀରେ ମୋ ପ୍ରାଣ ସହି" ଆଦି ଗୀତ ଶୁଣି ମୁଁ ନିଦରେ ଗଡ଼ି ଯାଉଥିଲି । ସେମାନେ କିନ୍ତୁ ନିର୍ବିକାର ଚିତ୍ତରେ ଏସବୁ ବୋଲୁଥିଲେ । ମାନେ ବୁଝୁଥିଲେ କି ନାହିଁ ସେମାନଙ୍କୁ ଜଣା । ତେବେ ନୂଆବୋଉ ଗୁନ୍ଦ ଚଉପଦୀ ବୋଲି ଜାଣିନ ଶୁଣି ସେମାନେ ହତାଶ ହେଉଥିଲେ ।

ମାନସିଂହ ମତେ କହୁଥିଲେ ତାଙ୍କ ଘରେ ସମସ୍ତଙ୍କ ସହିତ ମିଶି ସବୁ କାମ କରିବାକୁ । ଘର ସଫା କରିବା, ରାନ୍ଧିବା ବା ଭାତ ଗୁଣିବା କିଛି କଠିନ କାମ ନୁହେଁ । କିନ୍ତୁ ତାଙ୍କ ଘରର ଢିଙ୍କି ବହୁତ ଓଜନଦାର । ସେଥିରେ ଏକାଥରକେ ତିନିଜଣ ଚଢ଼ି ଧାନ କୁଟନ୍ତି । ମୁଁ ବି ଢିଙ୍କିରେ ଚଢ଼ିଲି । ଠିକ୍ ତାଳ ଦେଇ ଗୋଡ଼ ବଦଳ କରିବାକୁ ହୁଏ । ଅନେକ ଦିନଯାଏ ମୋ ଗୋଡ଼ ଦରଜ ହୋଇ ଯାଇଥିଲା । ଗାଁ ଗହଳରେ ମାଇପେ ସେଥିପାଇଁ କହୁଥା'ନ୍ତି

"ପାଣି ଅଣା କି ପାଇଟିଲୋ ମା/ଷ୍ଟତରନ୍ଧା କି ପାଇଟି
ପାଇଟି କରଦ ପାଇଟିରେ ଲେଖା/ଧାନକୁଟା ବଡ଼ ପାଇଟି ।"

**ଉଚ୍ଚଶିକ୍ଷା ଓ ଶିକ୍ଷକତା —**

ବିବାହ ପରେ ପରେ ମାନସିଂହ ପାଟନା ଗଲେ ଏମ୍. ଏ. ପରୀକ୍ଷା ଦେବା ପାଇଁ । ଏମ୍. ଏ. ପରୀକ୍ଷା ପରେ ହେମଶସ୍ୟ ପ୍ରକାଶିତ ହେଲା । ତା'ପରେ ପଢ଼ିଲେ

ବି. ଇଡ଼ି । ବି. ଏ. ପରୀକ୍ଷା ପରେ ଡେପୁଟି ମାଜିଷ୍ଟ୍ରେଟ୍ ପଦପାଇଁ ବନ୍ଧୁ ରତ୍ନାକର ଷଡ଼ଙ୍ଗୀ, ଉଦୟନାଥ ରଥଙ୍କ ସହ ସେ ପ୍ରାର୍ଥୀ ହୋଇଥିଲେ । ମାତ୍ର ସେ ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରି ସ୍ୱର୍ଗତ ଗୋପବନ୍ଧୁଙ୍କ ବିଷୟରେ କବିତା ଲେଖିଥିବାରୁ କଟିଗଲେ । ପରବର୍ତ୍ତୀ କାଳରେ ରତ୍ନାକର ଷଡ଼ଙ୍ଗୀ ଗଣିତ ଅଧ୍ୟାପକ ହୋଇ ପାରିଲେ ନାହିଁ ବୋଲି ବହୁତ ମନସ୍ତାପ କରୁଥିଲେ । ଷଡ଼ଙ୍ଗୀଙ୍କ ସ୍ତ୍ରୀ ମତେ ଯେଉଁ ଚିଠି ଲେଖୁଥିଲେ ସେଥିରେ ଏ ବିଷୟରେ ବହୁବାର ଉଲ୍ଲେଖ କରିଥିଲେ ।

ସତ୍ୟବାଦୀ ବନବିଦ୍ୟାଳୟ ଛାଞ୍ଚରେ ପଣ୍ଡିତ ଗୋଦାବରୀଶ ବାଣପୁର ସ୍କୁଲ୍ ଆରମ୍ଭ କରିଥା'ନ୍ତି । ବି. ଇଡ଼. ପରୀକ୍ଷା ପରେ ମାନସିଂହ ସେଇ ସ୍କୁଲରେ ଅବୈତନିକ ଶିକ୍ଷକ ଭାବରେ ଯୋଗଦାନ କଲେ । ପରେ ସ୍କୁଲ୍ ପରିଚାଳନା ସମ୍ପର୍କିତ ସହିତ ତାଙ୍କର ମତାନ୍ତର ଘଟିବାରୁ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ମାନସିଂହ ବାଣପୁର ସ୍କୁଲରେ ଯୋଗ ଦେଇ ମତେ ଆଣିବାକୁ ବାରିପଦା ଆସିଥା'ନ୍ତି । ସେଦିନ ହୋଇଥାଏ ବଡ଼ ଏକାଦଶୀ । ମାନସିଂହଙ୍କ ଜିଦ୍ ଦେଖି ମୋ ବାପା କବି କାଳନ୍ଦୀ ଚରଣଙ୍କ ଦଳଭାଇ ଦିବ୍ୟସିଂହ ପାଣିଗ୍ରାହୀଙ୍କୁ କହିଲେ ମାନସିଂହଙ୍କୁ ବୁଝାଇବା ପାଇଁ ଯେ ଏକାଦଶୀରେ କନ୍ୟା ପିତାଳୟରୁ ଯିବା ନିଷେଧ । ସେତେବେଳେ ଦିବ୍ୟସିଂହ ପାଣିଗ୍ରାହୀ ମୟୂରଭଞ୍ଜ ଷ୍ଟେଟ୍‌ର ସରକାରୀ ଓକିଲ । କବି କାଳନ୍ଦୀ ଚରଣ ମଧ୍ୟ ମୟୂର-ଭଞ୍ଜରେ ଚାକିରି କରୁଥା'ନ୍ତି । ଦିବ୍ୟସିଂହ ବାବୁ ବୁଝାଇବାରୁ ମାନସିଂହ ନାନାଯୁକ୍ତି ବାଢ଼ିଲେ "ତିଥି ବାରରେ କ'ଣ ଅଛି" ? ଗୋଟିଏ ପଦ ଧରିଥା'ନ୍ତି—"ହେମ ଆଜି ମୋ ସାଙ୍ଗରେ ଯିବ ।" ମୋ ସାନଭାଇ ହାତରେ ମୋ ପାଖକୁ ଚିରକୁଟଟିଏ ଲେଖି ଦିଅନ୍ତି "ରାମଙ୍କ ସହିତ ସୀତା ଯେପରି ବନକୁ ଗମନ କରିଥିଲେ ସେହିପରି ତମେ ମୋ ସଙ୍ଗେ ଆସିବ । ନଚେତ୍ ଥାଅ, ମୋର କୋଠା ଚୋଲା ହେଲେ ଆସିବ ।" ମୁଁ କାହାକୁ କ'ଣ କହିବି ? ନୀରବ ରହିଲି । ସେତେବେଳକାର ରୀତି ଅନୁଯାୟୀ ପିତାମାତା ବିବାହାନ୍ତ କନ୍ୟା ପୁନରାୟ ଶ୍ୱଶୁରାଳୟକୁ ପୁଆଣି ହୋଇଯିବ । ଭାର ଥୋଇ ବି ସାଙ୍ଗରେ ନେବ । ଏହି ସମୟରେ ଧୋବଣୀ, ବାରିକାଣୀଠାରୁ ଶ୍ୱଶୁର ଘରର ସମସ୍ତଙ୍କ ପାଇଁ ଶାଢ଼ୀ ଯୋଡ଼ ଆଦି ଦିଆଯାଏ । କନ୍ୟା ଶ୍ୱଶୁରଘରେ ବ୍ୟବହାର ପାଇଁ ବାସନ କୁସନ, ମସଲା ମସଲି, ମିଠାଇ, ଉଖୁଡ଼ା, ଗୁଡ଼ ଖଇ ଆଦି ନାନାଜିନିଷ ସାଙ୍ଗରେ ନିଏ । ବାପଘର ଯେତେ ଦେଇ ପାରିବେ କନ୍ୟା ଶ୍ୱଶୁର ଘରେ ସେତିକି ମର୍ଯ୍ୟାଦା ପାଇବ ।

ହଠାତ୍ ମୋ ଯିବା ବିଷୟ ଶୁଣି ଆମ ଘରେ ଶ୍ମଶାନ-ନୀରବତା ବିରାଜମାନ କଲା । ମାନସିଂହଙ୍କ ଗାଁକୁ ଛାଡ଼ିବାକୁ ମୋ ବାପା ବୋଉଙ୍କର ଆପତ୍ତି ନଥିଲା । ମାତ୍ର ଝିଅଯିବ କେଉଁଠାକୁ ? ମତେ ଯଦି ବାପା ସେଦିନ ତାଙ୍କ ସହିତ ଛାଡ଼ି ନଥା'ନ୍ତେ

ତେବେ ସବୁଦିନ ପାଇଁ ବୋଧହୁଏ ମତେ ପିଶାଳୟରେ ରହିବାକୁ ପଡ଼ୁଥା'ନ୍ତା । ଭାଗ୍ୟେ ବାପା ସେ ଭୁଲ କରି ନାହାନ୍ତି ।

ଏହାର କିଛି ଦିନପରେ ନିମାପଡ଼ା ହାଇସ୍କୁଲରେ ଶିକ୍ଷକ ଭାବରେ ମାନସିଂହ ଟ ୭୦ ଦରମାରେ ନିଯୁକ୍ତି ପାଇଲେ । ନିମାପଡ଼ା ନିକଟବର୍ତ୍ତୀ ପାଟପୁର ଗାଁରେ ଆମେ ରହୁଥାଉ । ଏହିଠାରେ ରହି ମାନସିଂହ 'ହେମପୁଷ୍ପ' ବହିଟିକୁ ଛପାଇବାର ବନ୍ଦୋବସ୍ତ କରୁଥାନ୍ତି । କଟକରୁ ସମସ୍ତ ବହି ଗୋଟିଏ ବଡ଼ ଲୁହାଟ୍ରଙ୍କରେ ଭର୍ତ୍ତି ହୋଇ ଆସିଲା । ଘରଯାକ 'ହେମପୁଷ୍ପ' ବହି ଗଦା ହୋଇଗଲା । ମାସକୁ ମାସ ବହି ଛପା ବାବଦ ଟଙ୍କା ଦେବାକୁ ହୁଏ । ଏଇ ପାଟପୁର ବସାରେ ହିଁ କବି 'ନଷ୍ଟନୀଡ଼' ନାଟକ ଲେଖିଥିଲେ । ସକାଳୁ ସେ ଲେଖା ଲେଖି କରନ୍ତି । ଘଣ୍ଟା ପଢ଼ାପଢ଼ି ସମସ୍ତ । କି ଶୀତ, କି ଗ୍ରୀଷ୍ମ ରାତି ଆଉ ଥାଉଁ ଉଠି ନିତ୍ୟକର୍ମ ସାରି ବ୍ୟାୟାମ କରନ୍ତି । ଶୀର୍ଷାସନ, ପଦ୍ମାସନ, ଶବାସନ ଆଦି ଆସନ କରନ୍ତି । ପ୍ରଭାତ ହେବାପୂର୍ବରୁ ତାଙ୍କର ସ୍ନାନାଦି କାମ ସମାପନ ହୋଇଥାଏ ।

ଏଇ ନିମାପଡ଼ା ସ୍କୁଲରେ ସହକାରୀ ଶିକ୍ଷକ ଥିଲାବେଳେ ଆମର ପଡ଼ୋଶୀ ଥିଲେ ଗୋଟିଏ ପାଟରା ପରିବାର ଓ ଅନ୍ୟଟି ଗଉଡ଼ ପରିବାର । ଗଉଡ଼ ଘର ବୁଢ଼ାର ଝିଅ ନାମ ହେମ । ସେ ବାହା ହୋଇ ଶାଶୁଘରକୁ ଯାଇଥାଏ । ଗଉଡ଼ଘର ବୁଢ଼ୀ ମତେ ଧର୍ମର ଝିଅ କରିଥିଲା । ସେବେପରି ଆଗେ ଏତେ ସାନବଡ଼, ଶିକ୍ଷିତ ଅଶିକ୍ଷିତ ଭେଦ ନ ଥିଲା । ଯୁବକ ପାଟରାଟି ଥିଲା ସଙ୍ଗୀତ ପ୍ରିୟ । ଦିନେ ସେ ଆସି ମାନସିଂହଙ୍କୁ କେତୋଟି ଗୀତ ମାଗିଲା । ମାନସିଂହ ମତେ କବିତାଖାତା ଦିନୋଟି ତାକୁ ଦେବାପାଇଁ କହିଲେ । କିଛି ଦିନପରେ ଆମେ ପାଟପୁର ବସା ଭାଙ୍ଗିଲୁ, ମାନସିଂହ ନିମାପଡ଼ା ହଷ୍ଟେଲରେ ରହିଲେ । ମୁଁ ଆସିଲି କଟକ । ସେ କବିତା ଖାତା ଦେଇସୁଦ୍ଧା ଭୁଲିଯାଇଥିଲୁ । କେତେ ବର୍ଷ ପରେ ମୋର ମନେ ପଡ଼ିଲାରୁ ମୁଁ ଚିଠି ଲେଖିଲି ଓ ପରେ ଲୋକ ମଧ୍ୟ ପଠାଇଲି । କିନ୍ତୁ ସେ ଦିନୋଟିଯାକ ଖାତା ଆଉ ମିଳିଲା ନାହିଁ । ମାନସିଂହ ଏଥିପାଇଁ ଦୁଃଖିତ ହୋଇଥିବା ମୁଁ ଲକ୍ଷ୍ୟ କରିନାହିଁ । ସବୁ କଥାରେ ଏମିତି ଉଦାସୀନତା ।

### ଗୁରୁ ଖୋଜା—

ଘର ସଂସାର ପ୍ରତି ନିର୍ଲିପ୍ତ ଭାବ ଦେଖି ମୋର ଧାରଣା ଥିଲାଯେ ସେ କେବେ ଗୃହ ତ୍ୟାଗକରି ସନ୍ନ୍ୟାସୀ ହୋଇଯିବେ । କିନ୍ତୁ ପରେ ଜାଣିଲି ଯେ କାହାର ସାହାଯ୍ୟ ବିନା ସେ ଚଳିପାରିବେନି । ଜୀବନଯାକ ସେ ଗୁରୁ ଖୋଜି ବୁଲିଛନ୍ତି । ବନାରସରେ ସ୍ୱାମୀ ଦୟାବେଣ ବୋଲି କେହି ଜଣେ ସାଧୁଥିବା ଶୁଣି କବି ତାଙ୍କ ପାଖ ଯାଉଥିଲେ । ଅନେକ ଦିନ ଧରି ତାଙ୍କ ପାଖ ଦୀର୍ଘ ପତ୍ରମାନ ଲେଖୁଥିଲେ ।

କଲିକତାର ବିଶ୍ୱନାଥ ବାବାଙ୍କ ପାଖ୍ ମଧ୍ୟ କେତେ ଥର ଯାଇଛନ୍ତି । ବୌଦ୍ଧଧର୍ମ ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା । ତାଙ୍କ ମତରେ ବୌଦ୍ଧଧର୍ମ ହେଉଛି ଶ୍ରେଷ୍ଠଧର୍ମ । କିବି ଶ୍ରୀମା ଓ ଅରବିନ୍ଦଙ୍କ ଭକ୍ତ ମଧ୍ୟ । କେତେଥର ପଣ୍ଡିଚେରୀ ବି ଯାଇଛନ୍ତି । ଶ୍ରୀମା ତାଙ୍କୁ ଦର୍ଶନ ତ ଦେଇଥିଲେ, ବିଶେଷ କୃପାମଧ୍ୟ କରିଥିଲେ ବୋଲି ପଣ୍ଡିଚେରୀରୁ ଫେରି ସେ କହୁଥିଲେ । କେନ୍ଦ୍ରାପଡ଼ାର ବସ୍ତ୍ରା ବାବାଙ୍କୁ ବି ସେ ଭକ୍ତି କରୁଥିଲେ । ଭୁବନେଶ୍ୱର ମିଣ୍ଟୁ ମହାରାଜଙ୍କ ପାଖ୍ ବି ସେ ଅନେକଥର ଯିବା ଆସିବା କରିଛନ୍ତି । ସତ୍ସଙ୍ଗରେ ଠାକୁର ଅନୁକୂଳଚନ୍ଦ୍ରଙ୍କୁ ଭେଟିବାକୁ ବର୍ଦ୍ଧମାନ ବି ଥରେ ଯାଇଥିଲେ । କିନ୍ତୁ କୌଣସି ଗୁରୁ ତାଙ୍କ ମନୋମତ ହୋଇ ନ ପାରନ୍ତି । କଥା ପ୍ରସଙ୍ଗରେ ସେ କଥା ସେ କହୁଥିଲେ । କବିବର ରାଧାନାଥ ଲେଖିଛନ୍ତି ।

"ସଂସାରେ ଥାଇ ମୁଁ ଚିର ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ ।"

ମାନସିଂହ ସେହିପରି ସଂସାରରେ ଥାଇ ମଧ୍ୟ ସବୁଥିରେ ନିର୍ଲିପ୍ତ ଥା'ନ୍ତି । ଅନେକ ସମୟରେ ତାଙ୍କୁ ବୁଝିବା ମୋ ପକ୍ଷରେ ମଧ୍ୟ କଠିନ ହୋଇପଡ଼େ ।

ସେ ଥିଲେ ଉଦାର ହୃଦୟ । କାହାରି ପ୍ରତି ରାଗଦ୍ୱେଷ ନାହିଁ । ଆମର କଟକ ପ୍ରତିବେଶୀ ଆମକୁ ବହୁତ ହଇରାଣ କରୁଥା'ନ୍ତି । ୧୫ । ୨୦ ଫୁଟର ପାଚେରୀ ଭାଙ୍ଗିଦେଲେ । ପୁଲିସ କେସ୍ ହେଲା । ମାନସିଂହ ଦିନେ ହେଲେ ସେ କେସ୍ ବିଷୟରେ ତଦ୍‌ବିର୍ କରି ନାହାନ୍ତି କି ବୁଝିନାହାନ୍ତି; ବରଂ ସେଇ ପ୍ରତିବେଶୀ ଘରକୁ ଯାଇ କୌଣସି ଏକ ଉତ୍ସବ ଉପଲକ୍ଷେ ଉପହାର ସହ ଯୋଗଦେଇଥିଲେ । କିନ୍ତୁ ଉପହାର ଦେବାତ ଦୂରର କଥା ଆତ୍ମୀୟସ୍ୱଜନମାନଙ୍କ ସାମାଜିକ ଉତ୍ସବରେ ସେ କ୍ୱଚିତ୍ ଯୋଗ ଦେଉଥିଲେ । କେତେକ ସାହିତ୍ୟିକ ପ୍ରକାଶ୍ୟରେ ମାନସିଂହଙ୍କ କୁତ୍ସାରଟନା କରୁଥିଲେ । ବହି ଲେଖି ଶ୍ରୀରାମଚନ୍ଦ୍ର ଭବନରେ ଉଦ୍‌ଘାଟନ ଉତ୍ସବ ମଧ୍ୟ କଲେ । ଏ ହେଉଛି 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖାହେବା ପରର ଘଟନା । ମାନସିଂହ ସେଇ କୁତ୍ସାପୂର୍ଣ୍ଣ ବହିରୁ ଖଣ୍ଡିଏ ଆଣି ମତେ ପଢ଼ିବାକୁ ଦେଇଥିଲେ । ମୁଁ ତାକୁ ମୋ ପିଲାମାନଙ୍କୁ ଲୁଚେଇ ପଢ଼ିଥିଲି । ଏ ଘଟଣା ତାଙ୍କ ମନରେ ଗଭୀର ଆଘାତ ଦେଇଥିଲା । କିନ୍ତୁ ବ୍ୟକ୍ତିଗତ ଭାବରେ ଏସବୁ ନେଇ ତାଙ୍କର କାହାପ୍ରତି ବିଦ୍ୱେଷ ଭାବ ନ ଥିଲା । ତାଙ୍କର ସ୍ୱଭାବ ହେଉଛି, ଯାହା ବୁଝିଥିବେ ସେଇୟା । ଖଣ୍ଡାଏତ ବୋଲି ସେ ଗର୍ବ କରନ୍ତି । ମାତ୍ର ସେ ଜାତିଭେଦ ମାନୁ ନ ଥିଲେ, କିମ୍ବା ଜାତିଆଣ ଭାବ ତାଙ୍କଠି ଆଦୌ ନ ଥିଲା ।

**କନ୍ୟା ପଦ୍ମଶ୍ରୀ—**

ସମ୍ବଲପୁରରେ ମାନସିଂହ ଶିକ୍ଷା ପରାମର୍ଶଦାତା ଥିଲାବେଳେ ଆମେ ବ୍ରୁକ୍‌ସ ହିଲ୍‌ର ପ୍ରଥମ ବଙ୍ଗଳାରେ ରହୁଥାଉ । ଦୁଇବର୍ଷ ଦୁଇମାସର କନ୍ୟା ପଦ୍ମଶ୍ରୀ

(ମାନସିଂହଙ୍କ ଉନ୍ନତ ସମୟରେ ଜନ୍ମ ହୋଇଥିବାରୁ ତାଙ୍କୁ ଉଷା ବୋଲି ଡାକୁଥିଲୁ) ଙ୍କୁ ଜ୍ୱର ହେଲା । ତାଙ୍କୁ ନେଇ ମୁଁ ମାନସିଂହ ରହୁଥିବା କୋଠରୀରେ ଶୁଆଇଦେଲି । ତାଙ୍କୁ ଶୁଣାଇ କହିଲି ଯେ ମତେ ରନ୍ଧାରନ୍ଧି ଆଦି ଘରର ଜଞ୍ଜାଳ କରିବାକୁ ହେବ । ସବୁ ପିଲାଗୁଡ଼ିକ ସେତେବେଳକୁ ଗ୍ରେଟ ଗ୍ରେଟ । ବଙ୍ଗଳା ପ୍ୟାଟାର୍ଣ୍ଣ ଘର, ଅଗଣା ନ ଥାଏ, ଅନାବନା ଘେଷାଇ କରିବାକୁ ପଡ଼େ । ଘରଭିତରକୁ କୁକୁର ପଶିଯିବାର ଭୟ ଥାଏ । କିଛି ସମୟ ପରେ ମାନସିଂହ ଡାକିଲେ "ଉଷିକୁ ଏଠୁ ନେଇ ଯାଅ ।" ସେଇଦିନ ରାତି ବାରଟାରେ ମସ୍ତିଷ୍କ ଜ୍ୱରରେ ତାର ମୃତ୍ୟୁ ହେଲା । ମୁହଁରେ କିଛି କହିଲିନି ସିନା, ମନରେ ଭାବିଲି "ବାପ ହୋଇ କେଡ଼େ ନିଷ୍ଠୁର ।" ପଦ୍ମଶ୍ରୀର ମୃତ୍ୟୁ ପରେ ପରେ ମାନସିଂହ ଓ ବଡ଼ପୁଅ ଲାଲୁଙ୍କୁ ଜ୍ୱର ହେବାରୁ ଚିକିତ୍ସକମାନଙ୍କ ମନରେ ସନ୍ଦେହ ହେଲା । ସେମାନେ ପଦ୍ମଶ୍ରୀର ହଟ୍ ଫିଭରରେ ମୃତ୍ୟୁ ହୋଇଛି ବୋଲି କହୁଥିଲେ । ତାହାର ମୃତ୍ୟୁ ଏ ଦୁହିଁଙ୍କୁ ବଞ୍ଚାଇ ଦେଲା । ହଟ୍ ଫିଭର ନୁହେଁ, ମସ୍ତିକ ଜ୍ୱର ବୋଲି ପ୍ରମାଣିତ ହେଲା । ପଦ୍ମଶ୍ରୀର ମୃତ୍ୟୁର ଆଠଦିନ ଆଗେ ଆମେମାନେ ସମସ୍ତେ ବାମଣ୍ଡାର ଜଳପ୍ରପାତ 'ପ୍ରଧାନପାଟ' ଦେଖିବାକୁ ଯାଇଥିଲୁ । ଦୁଇ ତିନି ଦିନ ସେଠାରେ ଅବସ୍ଥାନ କରିଥିଲୁ । ଏ ସ୍ଥାନ ସୁସାହିତ୍ୟିକ ସଚ୍ଚିଦାନନ୍ଦ ସୁଡ଼ଳ ଦେବ ଓ ଜଳନ୍ଧର ଦେବଙ୍କ ପାଇଁ ଯେତିକି ବିଖ୍ୟାତ, ମ୍ୟାଲେରିଆ ପାଇଁ ମଧ୍ୟ ସେତିକି କୁଖ୍ୟାତ । ଝିଅର ମୃତ୍ୟୁ ପରେ କନ୍ୟାଶୋକ କାତର କବି ଯେତେବେଳେ 'ମୋ ଧନରେ' କବିତାଟି ଲେଖିଲେ ସେତେବେଳେ ମୁଁ ତାଙ୍କ ପିତୃହୃଦୟର ଗଭୀର ମମତା ଉପଲବ୍ଧି କଲି । ଶୋକାକୁଳ ହୋଇ ସେ ଝିଅର କ୍ଷୁଦ୍ର ପାଦୁକା ଦୁଇଟିକୁ ବହୁଦିନ ଧରି ପୂଜା କରିଛନ୍ତି । ପରେ ପରେ ଝିଅର ସ୍ମୃତିରେ ଲେଖିଛନ୍ତି 'ଯାଉଛୁ ସେ' 'ରୂପାନ୍ତର' 'ଈଶ୍ୱର ଦାନ' ଆଦି କେତୋଟି କବିତା ।

## ବେକାର ଜୀବନ ଓ କବିତା ରଚନା :—

କବି, ଶିଳ୍ପୀ, ଲେଖକ ପ୍ରଚ୍ଛନ୍ନ ଭାବରେ ନିଜର ସୃଷ୍ଟି ସମ୍ଭାର ମଧ୍ୟରେ ରହିଥାନ୍ତି । 'ପୂଜାରିଣୀ' ଏହିପରି ଏକ ସୃଷ୍ଟି । 'ପୂଜାରିଣୀ'ରେ ଦେବତା ଯେପରି ଲକ୍ଷ୍ମୀ ସହିତ କଥୋପକଥନ କରିଛନ୍ତି, ସେଥିରେ କବିଙ୍କର ନିଜ ଅନୁଭୂତି ହିଁ ପ୍ରକାଶ ପାଇଛି ।

ମାନସିଂହ ବୋଧହୁଏ ଓଡ଼ିଶାରେ ପ୍ରଥମ ଯେ କି ସାହିତ୍ୟରେ ରିସର୍ଚ୍ଚ କରି ଡକ୍ଟରେଟ ପାଇଥିଲେ । ମାତ୍ର ବାରମ୍ବାର ସେ ବେକାର ଜୀବନ ଯାପନ କରିବାକୁ ବାଧ୍ୟ ହୋଇଛନ୍ତି । ସହାୟ ସମ୍ବଳହୀନ କବି ନିଦାରୁଣ ମାନସିକ ଅବସାଦଗ୍ରସ୍ତ ହୋଇ ବେଳେବେଳେ ଆତ୍ମଘାତୀ ହେବାକୁ ଚେଷ୍ଟିତ ଥିଲେ । ସେଇ

ସମୟରେ ଗୋଟିଏ କବିତା ମୋ ଉଦ୍ଦେଶ୍ୟରେ ଲେଖିଥିଲେ । କବିତାଟି ପ୍ରକାଶିତ ହୋଇନାହିଁ, ହଜି ଯାଇଛି । ସେଥିରୁ କେଇପଦ ମନରେ ଥିଲା, ଏଠାରେ ଉଲ୍ଲେଖ କରୁଛି ।

"ବିଦାୟ ଦିଅ ଦିଅ ଦିଅ ଗୋ,
ତୁମରେ ତେଜି ଆଜି ମୃତ୍ୟୁ ବରିବି ମୁଁ
ଏ ଜୀବନ ନୁହେଁ ସହନୀୟ ଗୋ ।
ଜ୍ୟୋତ୍ସ୍ନା ରାତେ ରାସ ପ୍ରଣୟ ପରିହାସ
ବିଫଳ ହେଲା ସବୁ ସହ ଗୋ ।
ମୋ ଗୋଲା ସିନ୍ଦୂର ଥାଉ କନକମାଥେ
ସ୍ୱର୍ଣ୍ଣ କଙ୍କଣ ଥାଉ ଏ ସୁନାହାତେ ।
ମୃତ୍ୟୁ ଭେଦ ନାହିଁ ଆସିବ ପ୍ରତି ଜଣି
ମରଣ ହେବ ବରଣୀୟ ଗୋ ।"

ଆମେ ଆଠଗଡ଼ ରାଜାଙ୍କ ଅତିଥିଶାଳାରେ ଥିଲାବେଳେ ମାନସିଂହଙ୍କ ସାନ ଦାଦା (ବାଞ୍ଛାନିଧି) ଗାଁରୁ ଅପାଙ୍କ ସହ ଆସି ପହଞ୍ଚିଥିଲେ । ଅପାଙ୍କ ଶରୀର ଅସୁସ୍ଥ ଥାଏ । ସେ କବିରାଜୀ ଔଷଧ ଖାଉଥିଲେ । କବିରାଜ କହିଥିଲେ ପ୍ରତିଦିନ ପଣାରୁଣୀ ପତ୍ରର ଝୋଳ ଖାଇବାକୁ । କବିରାଜଙ୍କ ନିର୍ଦ୍ଦେଶ ଅନୁଯାୟୀରେ ପଣାରୁଣୀପତ୍ର ବଟାହୋଇ କିଛି ଗୋଲମରିଚ ବଟା ଦେଇ ଗୁଆଘିଅରେ ଛୁଙ୍କ ହୁଏ । ଶରୀରକୁ ହିତକାରୀ ହେଲେ କଣ ହେବ ପଣାରୁଣୀ ପତ୍ର ଭୀଷଣ ଦୁର୍ଗନ୍ଧ । ଅପା ଖାଇବାକୁ ମନା କରନ୍ତି । ପ୍ରତିଦିନ ତାହା ଝୋପଡ଼ା ହୁଏ । ମାନସିଂହ ଦିନେ ମତେ ପଚାରିଲେ ଅପା ପଣାରୁଣୀ ପତ୍ର ଝୋଳ ଖାଇଛି ? ମୁଁ ନାହିଁ କରିବାରୁ ସେ ବିରକ୍ତିରେ କହିଲେ, "ଓହୋ, ତମେ ତାକୁ ହାତରେ ନ ମାରି ଭାତରେ ମାରିବ ।" ଏ କଥାରେ ମୋ ମନରେ ଦାରୁଣ ଆଘାତ ଲାଗିଲା । ଆଖି ଫାଟି ପାଣି ନିଗିଡ଼ି ପଡ଼ୁଥାଏ । କାହାକୁ ବା କ'ଣ କହିବି ? ମନ ବ୍ୟଥା ମନରେ ଥାଏ । ବଡ଼ ପୁଅ ତିନି ଚାରି ବର୍ଷର । ତାକୁ କହିଲି ବୁଢ଼ା ବାପାଙ୍କୁ କହ ଆମକୁ ନେଇ ଆମ ଘରେ ଛାଡ଼ି ଆସିବେ । ଘରୁ ଚଠି ପାଇଥିଲି ଯିବାପାଇଁ, ତେଣୁ ମନଟା ଉଚ୍ଛନ୍ନ ଥିଲା । ଦାଦା ସାଥିରେ ନେବାପାଇଁ ସମ୍ମତି ଦେଲେ । ଅପାଙ୍କୁ ଓ ତାଙ୍କୁ କହିଲି ଆମେ ଯାଉଛୁ । ଅପା କହିଲେ ଭାରି ଗଲବାଲଟା ? କେମିତି ଯିବୁ ଦେଖିବା ? ଅତି ସରଳ ଭାଇଭଉଣୀ ଯୋଡ଼ିକ ପଚାରିଲେ ନାହିଁ, କାହିଁକି ଯିବ, କାରଣ କଣ ? ବସ୍ ଡ୍ରାଇଭରକୁ ଖବର ଦେବାରୁ ସେ ଆସି ଘରୁ ଆମକୁ ନେଇଗଲା । ଭାଇଭଉଣୀ ଯୋଡ଼ିକ ସେମିତି ରହିଁ ରହିଥା'ନ୍ତି । ଦାଦାଙ୍କ ଆଗରେ ପାଟି ଫିଟିବ ନାହିଁ, ସେମାନଙ୍କୁ କାହିଁକି ନେଉଛ ବୋଲି କହି ପାରିଲେ ନାହିଁ ।

ମାସେ କି ଦୁଇମାସ ପରେ ଅଠଗଡ଼ ଫେରି ଆସିଲି । ସନ୍ଧ୍ୟା ବେଳକୁ ସଙ୍ଗୀତ ଆସର ବସିଲା । ଗାୟକ ପର୍ଶୁରାମ ନାୟକ ହସି ହସି ରହସ୍ୟ କରି ଗାଇଲେ "କ୍ଷମାକର ସଖି କ୍ଷମାକର", "ମରମେ ଚମର" ଇତ୍ୟାଦି ଦୁଇତିନୋଟି ସଙ୍ଗୀତ । ଦେଖିଲିବେଳକୁ ଏଇ କବିତାରୁ ତିନିଗୋଟି ମୋ ଗୀତ ଖାତାରେ ଲେଖା ହୋଇ ଉପରେ ରାଗ ଓ ତାଳ ନିର୍ଦ୍ଦେଶ କରାଯାଇଛି । ସେଗୁଡ଼ିକୁ ଗ୍ରନ୍ଥାବଳୀ ଛପା ହେଲା-ବେଳକୁ ମୋ ଖାତାରୁ ଚିରି ଛପାଇବାପାଇଁ ଦେଇଥିଲି । ସେଥିରେ କବି କିଛି ପରିବର୍ତ୍ତନ କରିଥିଲେ । ମୋ ଅଭିମାନର ଏହିପରି ନାଟକୀୟ ସମାଧାନ ହେଲା । କବି ନିଜେ ମଧ୍ୟ ଜାଣିଥିଲେ ନାହିଁ ମୁଁ କାହିଁକି ରାଗିଥିଲି । କବିଙ୍କର ମୋ ଗୀତ ଖାତାରେ ଲେଖିଥିବା କବିତା ମଧ୍ୟରୁ ଗୋଟିଏ କବିତା ମତେ ଭଲ ଲାଗୁଥିଲା । ଗ୍ରନ୍ଥାବଳୀରେ ସାମାନ୍ୟ ପରିବର୍ତ୍ତନ ସହ ତାହା ପ୍ରକାଶିତ ହୋଇଛି ।

"ଜନମେ ଜନମେ ହେ ଅବୁଝା ପ୍ରିୟ
ହୁଅ ତମେ ମୋର ପରମ । ଧ୍ରୁବ ।
ଅପରାଧ ଯାହା କଲି ଏ ଜୀବନେ
ଦହୁଅଛି ଖାଲି ମରମ ଦହନେ
କରୁଥିବ କ୍ଷମା କୋଧ ନୋହୁ ଜମା
ଜାଳୁଥାଅ ପଛେ ମରମ ।"

ଗ୍ରନ୍ଥାବଳୀର ପୃ ୧୪୮ଷ୍ଠାରେ 'ହେ ମୋର ପରମ' ନାମରେ ଏ କବିତାଟି ପ୍ରକାଶିତ ହୋଇଛି ।

**ନଷ୍ଟପଲ୍ଲୀ ନନ୍ଦଳା —**

କବିଙ୍କର ଜନ୍ମସ୍ଥଳୀ ପୁରୁଣା ନନ୍ଦଳା ଗାଁ ବର୍ତ୍ତମାନ ନାହିଁ । ୧୯୪୮ର ଭୟଙ୍କର ତୋଫାନରେ ଗ୍ରାମ ଧ୍ୱଂସ ହୋଇ ଯାଇଛି । ଚିଲିକା ଓ ସମୁଦ୍ର ଜଳ ଏକାକାର ହୋଇ ବେଗଡାକାରରେ ମାଡ଼ି ଆସିଥିଲା । ଏ ଗ୍ରାମର ଜନଜୀବନ ନଷ୍ଟ ହେଲାନାହିଁ ସିନା କିନ୍ତୁ ଜୀବନ ଧାରଣପାଇଁ କିଛି ନଥିଲା । ସେଇ ତୋଫାନରେ ଆମର କେତେକ ବହିପତ୍ର ସହିତ ମାନସିଂହଙ୍କ 'ଖାରବେଳ' ନାଟକର ପାଣ୍ଡୁଲିପି ନଷ୍ଟ ହୋଇ ଯାଇଥିଲା । 'ଖାରବେଳ' ନାମକୁ ମାତ୍ର ନାଟକ । ନାମଗୁଡ଼ିକ ଉଠାଇ ଦେଇଥିଲେ ସେ ଏକ ଐତିହାସିକ ଉପନ୍ୟାସ ହୋଇଥା'ନ୍ତା । ଉପନ୍ୟାସ ଆକାରରେ ଲେଖିଦେବାପାଇଁ କବି ମତେ ପାଣ୍ଡୁଲିପିଟି ଦେଇଥିଲେ । ମାତ୍ର ଅନ୍ୟାନ୍ୟ ଜିନିଷ ସହିତ ମୁଁ ପାଣ୍ଡୁଲିପିଟିକୁ ତାଙ୍କ ଗ୍ରାମସ୍ଥ ଘରେ ରଖିଦେଇ ଆସିଥିଲି ।

ଆମେ ସେତେବେଳେ ଅଠଗଡ଼ରେ ଥାଉ । କାର୍ତ୍ତିକ ମାସରେ ଝଡ଼-ତୋଫାନ ଦେଖି କବି ଚିତ୍ତ ଚଞ୍ଚଳ ହୋଇ ଉଠିଥିଲା । ଅଠଗଡ଼ରୁ ଚୂଡ଼ା ଗୁଡ଼ଲ ଉଖୁଡ଼ା ଧରି କଟକରୁ ଶ୍ରୀ ଲଳିତ କୁମାର ଘୋଷଙ୍କୁ ସାଙ୍ଗରେ ନେଇ କବି

ବାଲୁଗାଁରୁ ନୌକା ଯୋଗେ ତାଙ୍କ ଗ୍ରାମରେ ପହଞ୍ଚିଥିଲେ । ଗ୍ରାମର ଚହ୍ନବର୍ଣ୍ଣ ନଥିଲା । ଚତୁର୍ଦ୍ଦିଗ ଜଳମଗ୍ନ । ନିକଟସ୍ଥ ଗ୍ରାମମାନଙ୍କରୁ ପାଞ୍ଚଶତରୁ ଉର୍ଦ୍ଧ୍ୱ ମନୁଷ୍ୟ ମୃତ୍ୟୁ ମୁଖରେ ପଡ଼ିଥା'ନ୍ତି । ଗୃହପାଳିତ ପଶୁ ଓ ମନୁଷ୍ୟଙ୍କ ଶବରେ ବାୟୁମଣ୍ଡଳ ଦୁର୍ଗନ୍ଧପୂର୍ଣ୍ଣ । ସ୍ୱନ୍ଦା ଜିନିଷ ଖିଇ ଚୂଡ଼ା ଉଖୁଡ଼ାକୁ କବିଙ୍କ ଘରଲୋକେ ଘରର ପିଲାଙ୍କୁ ବି ଦେଇ ନଥିଲେ । ପରେ ପରେ ଅନେକ ସରକାରୀ ଓ ବେସରକାରୀ ସାହାଯ୍ୟ ଆସି ପହଞ୍ଚି ଥିଲା । ଗରିବ ଲୋକମାନେ ବେଶ୍ ଚଳିଗଲେ, ମାତ୍ର କବିଙ୍କର ନିଜ ଜ୍ୟେଷ୍ଠଭ୍ରାତ ପୁତ୍ର ଭାଇ ବନଗ୍ରାମ ଓ ଜଣେ ମର୍ମକୀୟ ପିତୃବ୍ୟଙ୍କର ଅକାଳରେ ମୃତ୍ୟୁ ହେଲା । ସ୍ୱନ୍ଦା ଜିନିଷ ଗ୍ରହଣ କଲେନାହିଁ । ସେମାନଙ୍କ ଘରେ ପ୍ରଥା ଥିଲା, ମୂଳବ ଯାହା ଖାଇବେ, ଗୃହର ମଧ୍ୟ ତାହା ଖାଇବ । ଏଇ ଦୁର୍ଦ୍ଦିନରେ ଏତେବଡ଼ ପରିବାରକୁ ପ୍ରତିପୋଷଣ କରିବା ସହଜ ନୁହେଁ । ଗୁଉଳ ବା ମିଳୁଛୁ କେଉଁଠୁ ? ମାଣ୍ଡିଆ ଜାଉ ବ୍ୟତୀତ ଗତ୍ୟନ୍ତର ନଥିଲା । ବ୍ୟଥିତ କବି ପଲ୍ଲୀର ଏଇ ଅବସ୍ଥାକୁ ଲକ୍ଷ୍ୟକରି 'ନଷ୍ଟପଲ୍ଲୀ' କବିତାଟି ରଚନା କରିଯାଇଛନ୍ତି ।

'ଜେମା' କାବ୍ୟର ନାୟିକା ଜେମା ମାନସିଂହଙ୍କ ଗାଁର ଝିଅ । ଅତି ସାଧାରଣୀ ଗାଁ ଝିଅଟିଏ । ସମ୍ପର୍କରେ ମୋର ନଣନ୍ଦ, ଆମେ ନନ୍ଦଲା ଗାଁକୁ ଗଲେ ସେ ଆସେ ଦେଖା କରିବାକୁ । ଅଚ୍ଛା ପରିହାସ କରେ । ମୋ ନିଜ ନଣନ୍ଦଙ୍କ ସମବୟସୀ । ଦୁହିଙ୍କ ଭାଗ୍ୟ ପ୍ରାୟ ଏକ । ମୋ ନଣନ୍ଦତ ସବୁବେଳେ କାନ୍ଦୁଥା'ନ୍ତି, ଜେମା କିନ୍ତୁ ସବୁବେଳେ ହସ ହସ । ଏହି ଏକ ସାଧାରଣ ନାରୀକୁ ମାନସିଂହ ଅସାଧାରଣ କରି ଗଢ଼ିଛନ୍ତି । ବଧୂଭାଇର ଚରିତ୍ର ଏକ କାଳ୍ପନିକ ସୃଷ୍ଟି । ମାନସିଂହଙ୍କ କାବ୍ୟର ସମୀକ୍ଷା କରିବାକୁ ମୁଁ ଯାଉନାହିଁ । ମୋର ବକ୍ତବ୍ୟ ହେଉଛି ସେ କିପରି ଆମ ଦେଶ ଓ ଆମ ଲୋକଙ୍କୁ ଭଲ ପାଉଥିଲେ । ମହାମାନବ ମହାତ୍ମାଗାନ୍ଧିଙ୍କ ମୃତ୍ୟୁରେ ସେ ପିଲାଟିଏ ପରି ବ୍ୟାକୁଳ ହୋଇ କାନ୍ଦିବାର ମୁଁ ଦେଖିଛି, କିନ୍ତୁ ତାଙ୍କର କୌଣସି ଆତ୍ମୀୟଙ୍କ ମୃତ୍ୟୁରେ ଶୋକ କରିବାର ତାଙ୍କୁ ଦେଖିନାହିଁ । ଅବଶ୍ୟ ମହାମାନବଙ୍କ ମୃତ୍ୟୁରେ ସମଗ୍ର ଦେଶ ସେତେବେଳେ ଶୋକାକୁଳ ସେତେବେଳେ ତମ ଆମ କଥା କିଏ ବା ପଚାରେ ?

**ମାନସିଂହଙ୍କ ଦେଶପ୍ରୀତି—**

ଛଅ ବର୍ଷ ହେଇଗଲା, ଏ ଦେଶକୁ ଯେ ମନପ୍ରାଣ ଦେଇ ଭଲ ପାଉଥିଲା, ସେ ଆଉ ନାହିଁ । ସାହିତ୍ୟିକ ମାନସିଂହଙ୍କୁ ସମସ୍ତେ ଜାଣିଛନ୍ତି । ଖାଣ୍ଟି ଓଡ଼ିଆ ଭାବରେ କେହି ହୁଏତ ତାଙ୍କୁ ଜାଣି ନାହାନ୍ତି ।

ଓଡ଼ିଶା ମନ୍ଦିର ସମୂହର ଶିଳ୍ପ ନୈପୁଣ୍ୟ କିପରି ବାହାରେ ପ୍ରଚାରିତ ହେବ ସେଥିପାଇଁ ବାରମ୍ବାର ଚିଠି ଲେଖି ଡକ୍ଟର ଷ୍ଟେଲସ୍ କ୍ରାମ୍ରିସ୍ଙ୍କୁ ଦୁଇ ଥରଥର ଓଡ଼ିଶା ଅଣାଇ ଥିଲେ । ଷ୍ଟେଲସ୍ କ୍ରାମ୍ରିସ୍ ଥିଲେ କଳା ସମାଲୋଚକ । ତାଙ୍କୁ ସାଥିରେ ଧରି

ଉତ୍କଳର ମନ୍ଦିରମାନ ବୁଲାଇ ଦେଖାଇ ଶେଷରେ ତାଙ୍କ ଦ୍ୱାରା ଏହି ବିଷୟରେ ବହି ଲେଖାଇଥିଲେ । କିପରି ଓଡ଼ିଶା ସରକାରଙ୍କ ଦ୍ୱାରା ସେ ବହି ପ୍ରକାଶିତ ହେବ ସେଥିପାଇଁ ସେ ବହୁତ ଚେଷ୍ଟା କରିଛନ୍ତି । ରୋଗଶଯ୍ୟାରେ ଥାଇ ମଧ୍ୟ ତା ଫାବ୍ରୀଙ୍କ ବହି ପ୍ରକାଶ ବିଷୟରେ ଉଦବେଗ ପ୍ରକାଶ କରୁଥିଲେ ।

ସେହିପରି ସମ୍ବଲପୁର କଲେଜକୁ ଶ୍ରୀ ମୁଲକରାଜ ଆନନ୍ଦଙ୍କୁ ବକ୍ତୃତା ଦେବାକୁ ଡାକି ତାଙ୍କୁ ଅନୁରୋଧ କରିଥିଲେ ତାଙ୍କ ପତ୍ରିକାର ଓଡ଼ିଶା ସଂଖ୍ୟାଟିଏ ପ୍ରକାଶ କରିବାକୁ । ମାର୍ଗ ଅନ୍ୟାନ୍ୟ ପ୍ରଦେଶ ପାଇଁ ପୂରା ସଂଖ୍ୟାଟିଏ ପ୍ରକାଶ କରିଥିଲେ ମଧ୍ୟ ଓଡ଼ିଶା ସଂଖ୍ୟା ନ କରି ସେଥିରେ ଗୋଟିଏ ଅଂଶ ରଖିଥିବାରୁ ମାନସିଂହ ହନାକେତେ ଏଥିପାଇଁ ବ୍ୟସ୍ତ ହେବାର ଦେଖିଛି ।

ଓଡ଼ିଶୀ ନୃତ୍ୟ କିପରି ଅନ୍ୟାନ୍ୟ ନୃତ୍ୟପରି ମର୍ଯ୍ୟାଦା ଲାଭ କରିବ ସେଥିପାଇଁ ସେ ଥିଲେ ସଚେଷ୍ଟ । ଓଡ଼ିଶୀ ନୃତ୍ୟ ଶିକ୍ଷା କରିବାପାଇଁ ଇନ୍ଦ୍ରାଣୀ ରହମନ ପାଇଁ ଗୁରୁ ଠିକ୍ କରିବାଠାରୁ ରହିବାଯାଏ ସମସ୍ତ ବନ୍ଦୋବସ୍ତ ମାନସିଂହ କରିଥିଲେ ।

୧୯୬୮।୬୯ ମସିହାରେ ବିଲାତରେ ଥିଲାବେଳେ ତାଳପତ୍ର ପୋଥି ଚିତ୍ରରୁ ସ୍ଲାଇଡ୍ କରାଇ ଉତ୍କଳର କଳା ସମ୍ବନ୍ଧରେ ବାହାର ଲୋକେ କିପରି ଜାଣିବେ, ତାର ପ୍ରଚାର କରିଛନ୍ତି ।

କଟକୀ ବା ସମ୍ବଲପୁରୀ ତନ୍ତଲୁଗା ବର୍ତ୍ତମାନ ବହୁଳ ଭାବରେ ବ୍ୟବହାର କରାଯାଉଛି । ସେହି ସମୟରେ ବୁଣା ଲୁଗାକୁ ଘୃଣା ସମସ୍ତେ ବହୁଳ ଭାବରେ ମିଲ ଶାଢ଼ୀକୁ ଆଦର କରୁଥିଲେ । ସେତେବେଳେ ମାନସିଂହଙ୍କ ନିର୍ଦ୍ଦେଶରେ ଆମେ ତନ୍ତ ଲୁଗା ହିଁ ବ୍ୟବହାର କରିଆସିଛୁ । ବନାରସି ଶାଢ଼ୀ ପରିବର୍ତ୍ତେ ଆମ ଝିଅମାନେ ଖଣ୍ଡୁଆ ଶାଢ଼ୀ ପିନ୍ଧି ବେଦୀରେ ବସିଛନ୍ତି । ବାହାଘରରେ ବୋହୂମାନଙ୍କୁ ବି ଖଣ୍ଡୁଆ ଶାଢ଼ୀ ଦିଆଯାଇଛି ।

ଘରେ ବାହାରେ ମନପ୍ରାଣରେ ସେ ଥିଲେ ଓଡ଼ିଆ । ରନ୍ଧାରନ୍ଧିରେ ବି ସେଇଆ । କହିବେ ମହୁର, ବେସର, ସାକର, ଆମ୍ବିଳ, ଆରିସା, କାକରା ଓଡ଼ିଆ ଘରର ନିଜସ୍ୱ ଖାଦ୍ୟ, ତାକୁ ପ୍ରସ୍ତୁତ କର । ଗୁଡ଼ିଆ ଦୋକାନରେ ବରାଦ ଦେବେ ପାରିଜାତକ କରି ଦେବାକୁ । ଥରେ ଭାରି ମଜା ହେଲା । ପିଲାମାନଙ୍କୁ କହିଲେ ତମଙ୍କୁ ଆଜି ଓଡ଼ିଆ ଘରର ଖାଣ୍ଟି ଜିନିଷ ଖୁଆଇବି । ପିଲାମାନେ ଅପେକ୍ଷା କରି ରହିଛନ୍ତି । ନିଜେ ଯାଇ ସନ୍ଧ୍ୟାବେଳେ ଗୁଡ଼ିଆ ଦୋକାନରୁ ଆଣିଲେ । ଗୁଡ଼ିଆ ତାଙ୍କଠାରୁ ଯାହା ଖର୍ଚ୍ଚ ଲାଗିବ ହିସାବ କରି ବହୁତ ଗୁଡ଼ାଏ ପଇସା ନେଇ ଥାଏ । କାରଣ ଏ ତାର ବିକ୍ରୀ ନୁହେଁ, ବରାଦ ଦିଆ ମାଲ୍ । ପିଲାମାନେ ଅତି ଆଗ୍ରହରେ

ଖାଇ କହିଲେ "ବାପା ଏଗୁଡ଼ାକ କ'ଣ ଗଇଣ୍ଠା ପରି ଲାଗୁଛି । ବୋଉ ପରି ସବୁ-ବେଳେ କହନ୍ତି ।" ସମସ୍ତେ ହସିଲେ । ସେ ମଧ୍ୟ ହସି ହସି କହିଲେ "ଆରେ ମୁଁ କ'ଣ ଜାଣେ; ମତେ ଠକି ଦେଲ ।"

ବଡ଼ପୁଅ ଆମର ବନ୍ଧୁ ଡକ୍ଟର ଭିକ୍ଟରଙ୍କ ସହିତ ପରାମର୍ଶ କରି ଆମେରିକାରେ ପ୍ରଫେସର ପଦଟିଏ ଠିକ୍ କଲା । ଅନ୍ୟାନ୍ୟ ବନ୍ଦୋବସ୍ତ କରି ବାପାଙ୍କୁ ଆମେରିକା ଯିବା ପାଇଁ ବାରମ୍ବାର ଚିଠି ଲେଖିଲା । ମାତ୍ର ସେ ଓଡ଼ିଶା ମାଟି ଛାଡ଼ି ଗଲେନାହିଁ ।

ପୁଅମାନେ ତ ବିଦେଶରେ, ଘରେ ମାତ୍ର ଅଢ଼େଇ ମାସ ତିନି ମାସର ଗ୍ରେଣ୍ଡିଆ ନାତିଟି, ତାର ପରିଚର୍ଯ୍ୟା ଅଛି । ମାନସିଂହ ଅସୁସ୍ଥ ହୋଇ ଡାକ୍ତର ଖାନାରେ ଥାନ୍ତି, ମତେ ବାହାର ଭିତର ସବୁ ବୁଝିବାକୁ ପଡ଼ୁଥାଏ । ତଥାପି କହିଲେ କଲିକତାରୁ ଆସିଥିବା ବ୍ରହ୍ମ ବନ୍ଧୁଙ୍କୁ ନିମନ୍ତ୍ରଣ କରିବାକୁ । ଅନ୍ୟାନ୍ୟ ଜିନିଷ ଭିତରେ ରସାବଳୀ କରିବାକୁ କହୁଥାନ୍ତି । ଡାକ୍ତରଙ୍କର ଲୁଣ ଖାଇବାକୁ ବାରଣ ଥିଲା । ଗୁଡ଼ରେ ରସାବଳୀ ମନବୋଧ କରି ଖାଇଲେ । ତାହା ହୋଇଛି ତାଙ୍କର ଏ ଜନ୍ମର ଶେଷ ଖାଇବା ।

ଶେଷ ବୟସରେ ସେ ବଡ଼ ବ୍ୟସ୍ତ ଓ ଚିନ୍ତିତ ଥିଲେ ଓଡ଼ିଆ ଜ୍ଞାନକୋଷ ପାଇଁ । ବାରମ୍ବାର ସେହି ବିଷୟରେ କହୁଥିଲେ, ଦେଖ, ଏତେ କଷ୍ଟ କରି ପ୍ରବନ୍ଧ ଲେଖା କରେଇଲି । ଚନ୍ଦ୍ରମୋହନ ମହାରଣା କମ୍ପା ଆଉ କାହାର ଫଟୋ କପରି ଫଗିହ କରିହେଇଥିଲି କହି ଅତିଶୟ ମନକଷ୍ଟ କରୁଥିଲେ, ଜ୍ଞାନକୋଷର ଛପା ହେଲେ ହୋଇଯାଇଥାନ୍ତା । ନଷ୍ଟ ହୋଇଗଲା ! ସ୍ୱଗତୋକ୍ତି କରୁଥିଲେ । ସବୁ ଭାଷାରେ ଜ୍ଞାନକୋଷ ଅଛି ଆମର ନାହିଁ । ସାନଟିଏ ବାହା ହୋଇ ନ ଥାଏ । ଧନେ ତା' ସମ୍ବନ୍ଧରେ କିଛି କହି ନାହାନ୍ତି କି ପଚାରି ନାହାନ୍ତି । ବରଂ ଆତ୍ମପ୍ରସାଦ ଅନୁଭବ କରିଥିଲେ 'ବୌଦ୍ଧ ବିହାର' ଜମି ସରକାରଙ୍କ ଠାରୁ 'ଗ୍ରୁଛିଷ୍ଟ ସୋସାଇଟି'କୁ ହସ୍ତାନ୍ତର କରିବାରେ । ଏହା ତାଙ୍କର ଶେଷ କାର୍ଯ୍ୟ ଓ ଶେଷ ବାଣୀ "ମୋ କାମ ସରିଗଲା ।"



# ଓଡ଼ିଆ ସାହିତ୍ୟର ଇତିହାସ
# ଓ
# ଡକ୍ଟର ମାୟାଧର ମାନସିଂହ

**ଡକ୍ଟର କୃଷ୍ଣଚରଣ ସାହୁ**

ଡକ୍ଟର ମାୟାଧର ମାନସିଂହଙ୍କ ଓଡ଼ିଆ ସାହିତ୍ୟର ଇତିହାସ ଲିଖିତ ହେବା ପୂର୍ବରୁ ଓ ପରେ କେତେକ ଇତିହାସ ଲେଖାଯାଇଥିଲେ ହେଁ ସେ ସବୁ ଯେ ବହୁ ଦୃଷ୍ଟିରୁ ଅପୂର୍ଣ୍ଣ, ଏକଥା ପ୍ରାୟ ସମସ୍ତେ ସ୍ୱୀକାର କରିବେ । ଓଡ଼ିଆ ସାହିତ୍ୟରେ ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବା ପାଇଁ ଯେଉଁ ଶ୍ରମ, ଅଧ୍ୟବସାୟ ଓ ଯୋଜନା ଆବଶ୍ୟକ ତାହା ଏପର୍ଯ୍ୟନ୍ତ ଏ ଦେଶରେ ସମ୍ଭବ ହୋଇ ପାରିନାହିଁ । ପ୍ରାଚୀନ ଓ ଆଧୁନିକ ଉଭୟ କ୍ଷେତ୍ରରେ ଗବେଷଣାର ଅଭାବ ଏହାର ମୁଖ୍ୟ କାରଣ । ଗବେଷଣା ପାଇଁ ଆବଶ୍ୟକ ହେଉଥିବା ନିମ୍ନତମ ସୁବିଧା ବା ସୁଯୋଗ ଏ ଦେଶରେ ନାହିଁ । ପ୍ରାଚୀନ ପୋଥି ସଂଗ୍ରହ କରିବା ଦିଗରେ ବିଧିବଦ୍ଧ ଭାବେ କୌଣସି ଯୋଜନା ଏ ଦେଶରେ କାର୍ଯ୍ୟକାରୀ ହେଉଥିବା, ଏ ଲେଖକଙ୍କୁ ଜଣାନାହିଁ । ଏପରି ମଧ୍ୟ ସ୍ଥାନ ନାହିଁ, ଯେଉଁଠି ଆଧୁନିକ ସାହିତ୍ୟର ଗବେଷଣା ପାଇଁ ସବୁ ଉପାଦାନ ଏକତ୍ର ମିଳିପାରିବ । ଏପରି ଅବସ୍ଥାରେ ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ଲେଖିବା ଆଦୌ ସମ୍ଭବ ନୁହେଁ, ଏହା ଏକ ଜଣାଶୁଣା କଥା । ପ୍ରାଚୀନ ଯୁଗର ବହୁ ବିଶିଷ୍ଟ କବି ଯେପରି ଅଜ୍ଞାତ ସେହିପରି ଆଧୁନିକ ଯୁଗର ବହୁ ଲେଖକ ଅନାଲୋଚିତ ଓ ଅପରିଚିତ । ତେଣୁ ସାହିତ୍ୟର ଇତିହାସ ଲେଖକ ପକ୍ଷରେ ଏହା ଏକ ପ୍ରଧାନ ଅନ୍ତରାୟ । ମାନସିଂହଙ୍କ ପରି ଯେଉଁମାନେ ଏ କାର୍ଯ୍ୟରେ ହାତ ଦେଇଛନ୍ତି, ପ୍ରାୟ ସମସ୍ତେ ସେହି ଗୋଟିଏ ଅସୁବିଧାର ଉଲ୍ଲେଖ କରିଥା'ନ୍ତି, ତାହା ହେଉଛି ଉପାଦାନ ଓ ଅନୁସନ୍ଧାନର ଅଭାବ ।

ଉପାଦାନ ସବୁକୁ ସଂଗ୍ରହ ଓ ସଙ୍କଳନ କରିବା ପରେ ମଧ୍ୟ ସାହିତ୍ୟର ଇତିହାସ ଲେଖିବା ସହଜ ନୁହେଁ । ଶାସନକର୍ତ୍ତାଙ୍କ ଇତିହାସ ଓ ସାହିତ୍ୟର ଇତିହାସ ଏକାକଥା ନୁହେଁ । ଉଦାହରଣ ପାଇଁ କପିଳେନ୍ଦ୍ର ଦେବ ଓ ସାରଳା

ଦାସଙ୍କ ବିଗ୍ଚର କରାଯାଇ ପାରେ । କପିଳେନ୍ଦ୍ର ଦେବଙ୍କ ଇତିହାସ କହିଲେ ମୁଖ୍ୟତଃ ତାଙ୍କ ରାଜ୍ୟଜୟ, ଶାସନ ବ୍ୟବସ୍ଥା, କୀର୍ତ୍ତି ସ୍ଥାପନ ଓ ପ୍ରଜାପାଳନ ପ୍ରଭୃତି କାର୍ଯ୍ୟକୁ ବୁଝାଏ । ସେ ସିଂହାସନ ଉପରେ ବସି ଚଳ ଆଡ଼କୁ ଚାହାନ୍ତି । ଚାରିଆଡ଼କୁ ଚାହିଁ କରି ସେ ଦେଖନ୍ତି, ଯୋଡ଼ହସ୍ତ ପାରିଷଦ ବର୍ଗ । ରାଜାର ଜୀବନ ଆରମ୍ଭ ହୁଏ ସିଂହାସନରୁ । ସିଂହାସନରେ ଅଭିଷିକ୍ତ ହେବା ପରେ ହିଁ ସେ ରାଜକାର୍ଯ୍ୟ ପରିଚାଳନା କରେ । ରାଜକାର୍ଯ୍ୟର ବ୍ୟସ୍ତତା ମଧ୍ୟରେ ଥରେ ନିମଜ୍ଜିତ ହୋଇଯିବା ପରେ ମଣିଷ ଚହ୍ନିବା ପାଇଁ ତାର ଅବସର ନଥାଏ । ଅଥଚ କବିର ଜୀବନ ଆରମ୍ଭ ହୁଏ ମାଟିରୁ । ଚାରିପାଖର ସମାଜରୁ । ସେ ଏମାନଙ୍କଠାରୁ ଉପାଦାନ ସଂଗ୍ରହ କରେ । ନିଜ ଜୀବନ ସହ ମିଶାଏ । ପରୀକ୍ଷା କରେ । ଲେଖନୀ ଧାରଣ କରିବା ପୂର୍ବରୁ ତା ମନରେ ଅଶେଷ ଚିନ୍ତାର ଘୋଡ଼ା ଦୌଡ଼ ଆରମ୍ଭ ହୋଇ ସାରିଥାଏ । ସେ ଯେତେ ସ୍ୱାଧୀନ ହେଲେ ବି ପାଠକର ଶ୍ରଦ୍ଧା ଓ ରୁଚିକୁ ଭ୍ରୂକ୍ଷେପ ନ କରି ପଦେ ଆଗକୁ ଯାଇ ପାରେ ନାହିଁ । ତେଣୁ ସାହିତ୍ୟର ଇତିହାସ କହିଲେ, ଯୁଗ ପ୍ରବୃତ୍ତିର ଇତିହାସ । ସାରଳା ଦାସ ବା ବଳରାମ ଦାସଙ୍କର ନୁହେଁ । ମହାଭାରତ କି ରାମାୟଣର ନୁହେଁ । କଥା ମାଧ୍ୟମରେ କବି ନିଜର ବ୍ୟକ୍ତିତ୍ୱକୁ ଯୁଗ ରୁଚିରେ ରଞ୍ଜିତ କରି ପ୍ରକାଶ କରେ । ଏହାରି ଭିତରେ ପ୍ରକାଶ ପାଏ ଜାତିର ଆତ୍ମା । ସାହିତ୍ୟ ହୁଏ ଜାତିର ମୁକୁର ।

ଶ୍ରୀ ମାନସିଂହ ଓଡ଼ିଆ ସାହିତ୍ୟର ଇତିହାସ ରଚନା କରିବା ପାଇଁ ପରିକଳ୍ପନା କଲାବେଳେ ସେ ଇତିହାସରେ କ'ଣ ଦେବେ ଓ କ'ଣ ଦେବେ ନାହିଁ ତା'ର ଏକ ହିସାବ ଦେଇଛନ୍ତି । ସେଥିରୁ ଜଣାଯାଏ ଯେ ସେ ତାଙ୍କ ଇତିହାସକୁ (୧) ଧର୍ମ ଦର୍ଶନର ଚର୍ଚ୍ଚା (୨) ସନ ଓ ତାରିଖ ଆଲୋଚନା । (୩) ଶବ୍ଦଗତ ଜଞ୍ଜାଳ ଓ ଜମ୍ବାଳରୁ ରକ୍ଷା କରି ଏହାକୁ ଖାଣ୍ଟି ସାହିତ୍ୟିକ ଦୃଷ୍ଟିରୁ ବିଚାର କରିବେ । ଜମ୍ବରେ ତାଙ୍କ ଦ୍ୱାରା ପରିତ୍ୟକ୍ତ ଏବଂ ଆଦୃତ ହୋଇଥିବା ପଛିଲା ସବୁର ବିଚାର ନିରପେକ୍ଷ ଦୃଷ୍ଟିରୁ କରାଯାଇଛୁ । ଶ୍ରୀ ମାନସିଂହ ଧର୍ମ ବିଷୟରେ ମତ ଦେଇ କହିଛନ୍ତି, "ସାହିତ୍ୟ ଚର୍ଚ୍ଚା କରିବା ଛଳନାରେ ବଜ୍ରଯାନ, ମନ୍ତ୍ରଯାନ ରାସଯାନ, ମାଂସଯାନ ବା ଗୌଡ଼ୀୟ ଓ ଉତ୍କଳୀୟ ବୈଷ୍ଣବବାଦ ଇତ୍ୟାଦିର ଆଲୋଚନା ଏକାନ୍ତ ଅବାନ୍ତର ଚେଷ୍ଟା" । ଶ୍ରୀ ମାନସିଂହଙ୍କ ସହ ମୁଁ ଏକମତ ଯେ ସାହିତ୍ୟର ଇତିହାସରେ ଏ ସବୁ ଆଲୋଚନା କଲେ ଏହା ଧର୍ମର ଇତିହାସ ହୋଇଯିବ । ଧର୍ମ ବା ଦର୍ଶନର ତତ୍ତ୍ୱ ଅବଗତ ହେବା ସାହିତ୍ୟିକର ମୁଖ୍ୟ କାର୍ଯ୍ୟ ନୁହେଁ । କିନ୍ତୁ ଏ ସବୁ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ହେଲେ ସାରଳା ଦାସଙ୍କ ପରି ଲେଖକଙ୍କ ସାହିତ୍ୟକୁ ବୁଝିବା ପ୍ରାୟ ଅସମ୍ଭବ ହେବ । ଯେଉଁ ସମାଜରେ ବ୍ୟକ୍ତିର ପ୍ରତ୍ୟେକ କାର୍ଯ୍ୟ ଧର୍ମଦ୍ୱାରା ନିୟନ୍ତ୍ରିତ, ସେ ଦେଶର କୃଷିକୁ ତାଙ୍କ ଯୁଗ ରୁଚିରୁ

ଅଲଗା କରି ଦେଲେ, 'ଖାଣ୍ଟି ସାହିତ୍ୟ ଧର୍ମୀ' ଆଲୋଚନା ହୋଇପାରେ ନାହିଁ । ସାହିତ୍ୟର ଖାଣ୍ଟି ବିସ୍ତରରେ କାବ୍ୟ ପୁରାଣର ଚର୍ଚ୍ଚିତ ହୋଇଥିବା ଚରିତ୍ର ସବୁକୁ ବିଶ୍ଳେଷଣ କରାଯାଇଥାଏ । କେବଳ ମୁଖ୍ୟ ଚରିତ୍ର ନୁହନ୍ତି ଗୌଣ ଚରିତ୍ର ସବୁକୁ ମଧ୍ୟ ବିଚାର କରାଯାଏ । କାରଣ କବି ତା ମନର ସବୁ କଥା କେବଳ ଗୋଟିଏ ଚରିତ୍ର ମାଧ୍ୟମରେ ପ୍ରକାଶ କରିବା ପାଇଁ ଅକ୍ଷମ ହୋଇଥିବାରୁ କାବ୍ୟ ମଧ୍ୟରେ ବହୁ ପ୍ରକାର ଚରିତ୍ରର ସମାବେଶ କରିଥାଏ । ସାରଳା ମହାଭାରତରେ ଏହିପରି ଗୋଟିଏ ଗୌଣ ଚରିତ୍ର ହେଉଛି, ଅଗ୍ନିକାର ମହର୍ଷି । ମହାଭାରତରେ ଏହି ଚରିତ୍ରକୁ ରଖିବା ବେଳେ ସାରଳା ଦାସଙ୍କ ମନରେ କେତେଗୁଡ଼ିଏ ସମସ୍ୟା ରହିଥିଲା । ପ୍ରଥମ ହେଲା । କୁନ୍ତୀଙ୍କ ସତୀତ୍ୱ ପ୍ରତିପାଦନ କରିବା, ଦ୍ୱିତୀୟ ହେଲା, ସନ୍ତାନ ଉତ୍ପତ୍ତିର ଧାର୍ମିକ ଉପାଦେୟତା ଓ ତୃତୀୟ ହେଲା, ଋଷିମାନଙ୍କ ଭଣ୍ଡତାକୁ ଆକ୍ରମଣ କରିବା ।

ମୁଁ ଏଥିରୁ କେବଳ ତୃତୀୟ ବିଭାଗର ହିଁ ଆଲୋଚନା କରୁଛି । ସନ୍ତାନ ଉତ୍ପତ୍ତି ନ କଲେ ସ୍ୱର୍ଗ ମିଳିବ ନାହିଁ । ଏହି ନ୍ୟାୟ ପରେ ଅଗ୍ନିକାର ମହର୍ଷି ପୁଣି ଥରେ ମର୍ତ୍ତ୍ୟ ଜଗତରେ ଜନ୍ମ ନେଲେ । ସନ୍ତାନ ପାଇଁ ସ୍ମୃତି ଗ୍ରନ୍ଥରେ ନିର୍ଦ୍ଦିଷ୍ଟ ବହୁ ପନ୍ଥାର ଆଶ୍ରୟ ନେଇ ଅସଫଳ ହେବାରୁ ଶେଷକୁ ମୃଗୁଣୀ ସହ ସହବାସ କଲେ । ବର୍ଣ୍ଣନାର କ୍ରମରୁ ଜଣାଯାଏ ଯେ ଅଗ୍ନିକାରଙ୍କ ମନରେ କେବଳ ଗୋଟିଏ ଲକ୍ଷ୍ୟ ଥିଲା, ସନ୍ତାନ ଉତ୍ପତ୍ତି । କାମ ବାସନାର ପ୍ରଶ୍ନ ଏଠି ନାହିଁ । କିନ୍ତୁ ଶ୍ରୋତା ଯେତେବେଳେ ପ୍ରଶ୍ନ କଲେ ଏ କ'ଣ ହେଲା ? ଋଷି ହୋଇ ମୃଗୁଣୀକି ? ସେତେବେଳେ ସାରଳାଦାସଙ୍କୁ ସୁବିଧା ମିଳିଥିଲା । ସେ ବର୍ଣ୍ଣନା କରିଗଲେ ଧର୍ମ ନାମରେ ଋଷି ବ୍ରତ ଓ ସଂଯମର ଅନ୍ତରାଳରେ ଲୁଚିଥିବା ଭଣ୍ଡତାର । ଯେ ଯେଉଁ ଋଷିମାନଙ୍କ କଥା କହିଲେ, ସେମାନେ ନିଶ୍ଚିତଭାବେ ବଶିଷ୍ଠ, ବିଶ୍ୱାମିତ୍ର ପ୍ରଭୃତି ପୁରାଣ ଯୁଗର ଋଷି ନୁହନ୍ତି । କାରଣ ସେମାନେ ସମସ୍ତେ ଥିଲେ ଗୃହସ୍ଥ । ପିଲା, ମାଇପ ଧରି ଘର କରୁଥିଲେ । ସାଧନା ବି କରୁଥିଲେ । ଏହାପରେ ଆସିଲା ଗୋଟିଏ ଯୁଗ ଯେତେବେଳେ ଧର୍ମ କହିଲେ, ଅଖଣ୍ଡ ବ୍ରହ୍ମଚର୍ଯ୍ୟକୁ ଗ୍ରହଣ କରାଗଲା । କେତେ ଅଧେ ଏଥିରେ ସଫଳ ହୋଇଥିଲେ ହେଁ, ଏହା ଯେ ମନୁଷ୍ୟର ସହଜାତ ପ୍ରବୃତ୍ତି ନୁହେଁ । ସାରଳା ଦାସଙ୍କ ପକ୍ଷରେ ଏହା ବୁଝିବା କଷ୍ଟକର ନଥିଲା । ସେଥିପାଇଁ ସାରଳା ଦାସ କହି ଗଲେ, ମୃଗୁଣୀ କଥା କ'ଣ ପଚାରୁଛ ? ସେ ତ ହେଲା ପଶୁର ଜୀବ । ସମାଜରେ ଯେଉଁ ଋଷିଦଳ ଦେଖୁଛ ସେମାନେ ବାହାରେ ସଂଯମୀ ବୋଲି ପରିଚୟ ଦେଉଥିଲେ ହେଁ, ଭିତରେ ନିଜର କାମ ବାସନାର ଚରିତାର୍ଥ ପାଇଁ ଅସମ୍ଭବ ପ୍ରକାର ଅପକର୍ମର ଆଶ୍ରୟ ନେଇଥାନ୍ତି । ସାରଳା ଦାସ ଋଷି ମୁନିଙ୍କର ଏହି ଭାବେ ଆଲୋଚନା କଲାବେଳେ, ତାଙ୍କ କଥାକୁ ସମର୍ଥନ କରିବାପାଇଁ ସହଜଯାନଙ୍କ ଆସ୍ଥା ଥିଲା । ସାଧାରଣ ଗୃହସ୍ଥ ବି ଥିଲେ ।

ଧର୍ମ ଆଚରଣ କଲେ, ବ୍ରତ, ଉପବାସ କଲେ ମଣିଷ ସ୍ୱର୍ଗକୁ ଯାଏ—ସାରଳା ଦାସ ଏକଥା ତାଙ୍କ ପୁରାଣରେ ବହୁଥର ପ୍ରଚାର କରିଥିଲେ ହେଁ, ସମାଜରେ ଘର କରି ଏହା କ'ଣ ସମ୍ଭବ ? ସମସ୍ତେ ଯଦି ଏକାବେଳକେ ଉପବାସ କରିବେ, ପୁଣି ମୌନ ବ୍ରତ ଧାରଣ କରିବେ; ତା' ହେଲେ ସମାଜ ରହିବକି ? ସାରଳା ଦାସ, ଶାନ୍ତନୁ ଓ ଯୁଧିଷ୍ଠିର ଚରିତ୍ର ଚିତ୍ରଣ କଲାବେଳେ ଏହାର ଉତ୍ତର ଦେଇ କହିଛନ୍ତି, ସମାଜରେ ସବୁ ମଣିଷ ସମାନ ନୁହନ୍ତି । ରାଜାର କାମ ଓ ପ୍ରଜାର କାମ ଯେପରି ଅଲଗା, ସେହିପରି ରାଜାଙ୍କ ଆଚରିତ ଧର୍ମ ଓ ପ୍ରଜାଙ୍କ ଆଚରିତ ଧର୍ମ ମଧ୍ୟରେ ପାର୍ଥକ୍ୟ ଅଛି । ରାଜା ଯଦି ଶାନ୍ତନୁଙ୍କ ପରି ଋଷିବ୍ରତ ଆଚରଣ କରେ, ବାରବ୍ରତ ଓ ବାସ୍ତରି ଉପବାସରେ ଦିନ ନିଏ (ହିନ୍ଦୁଧର୍ମ) ତା'ହେଲେ ରାଜ୍ୟ ଶାସନ ଯେପରି ଅସମ୍ଭବ, ରାଜା ହୋଇ ଯଦି ଅହିଂସା ଧର୍ମ ଆଚରଣ କରେ (ବୌଦ୍ଧଧର୍ମ) ତା' ହେଲେ ମଧ୍ୟ ରାଜ୍ୟ ନିଶ୍ଚିତ ଭାବେ ଶତ୍ରୁ କବଳିତ ହେବ । ସବୁବେଳେ ଆୟୁଧ ବିଷ୍ଣୁ ଚକ୍ର ଧରି ରାଜ୍ୟ ରକ୍ଷାର ଦାୟିତ୍ୱ ନେବେନାହିଁ । ଏହିପରିଭାବେ ସାରଳା ଦାସ, ମହାଭାରତର ବିଭିନ୍ନ ଚରିତ୍ରକୁ ରୂପଦାନ କଲାବେଳେ ସମାଜରେ ପ୍ରଚଳିତ ବିଭିନ୍ନ ପ୍ରକାର ଧର୍ମର ଆଚରଣ ଦ୍ୱାରା ସେ ପ୍ରଭାବିତ ହୋଇଛନ୍ତି । ସାରଳା ଦାସଙ୍କ ପ୍ରତ୍ୟେକ ବର୍ଣ୍ଣନା, ପ୍ରତ୍ୟେକ ଚରିତ୍ରରେ ଧର୍ମଭାବନା ଓତଃପ୍ରୋତ ଭାବେ ଜଡ଼ିତ । ଧର୍ମକୁ ଉଦ୍ଧାର କରିବାକୁ ଆସିଥିବା ଶ୍ରୀକୃଷ୍ଣ ଓ ପଞ୍ଚପାଣ୍ଡବ ଧର୍ମ ବିନା ଚଳିବେ କିପରି ?

ସାହିତ୍ୟର ଇତିହାସରେ ଧର୍ମର ତାତ୍ତ୍ୱିକ ଆଲୋଚନା ନିଶ୍ଚିତ ଭାବରେ ଅବାନ୍ତର । ଏକଥା ଯେତିକି ସତ, ସାହିତ୍ୟିକ ବର୍ଣ୍ଣନାର ପ୍ରଚ୍ଛଦ ପଟରେ ସାମାଜିକ ଧର୍ମକୁ ରଖି ତା'କୁ ବିଚାର ନ କଲେ ଏହା ସେହିପରି ବିକୃତ । ସେଥିପାଇଁ ଶ୍ରୀ ମାନସିଂହ, ଖାଣ୍ଟି ସାହିତ୍ୟିକ ଦୃଷ୍ଟିରେ ସାରଳା ଦାସଙ୍କର ଯେଉଁ ବିଚାର କରିଛନ୍ତି, ଧର୍ମର ତାତ୍ତ୍ୱିକ ଆଲୋଚନା ସେଥିରେ ନଥିଲେ ହେଁ ଏହା ଏକାବେଳକେ ଧର୍ମକୁ ଛାଡ଼ି ପାରିନାହିଁ । ଧର୍ମକୁ ଛାଡ଼ିବା ସମ୍ଭବ ବି ନଥିଲା । କିନ୍ତୁ ସେ କେଉଁ କଥାରେ ଥିବା ଧର୍ମ-ପ୍ରଲେପକୁ ବୁଝି ପାରି ନଥିଲେ ।

ସାରଳା ଦାସଙ୍କର ବିନମ୍ରତାକୁ କିଆଯାଉ । ପଣ୍ଡିତର ପ୍ରକୃତ ଭୂଷଣ ହେଉଛି ବିନୟ, ଏହା ସାରଳା ଦାସଙ୍କର ବହୁପୂର୍ବରୁ ପ୍ରଚରିତ ହୋଇଥିଲା ଓ ବହୁ କବିଙ୍କ ଲେଖାରୁ ଏହାର ପ୍ରମାଣ ମିଳେ । ତେଣୁ ସାରଳା ଦାସ ଚଷା ଥିଲେ ବୋଲି ଯେ ଏ ପ୍ରକାର ବିନମ୍ରତା ପ୍ରକାଶ ପାଇଲା, ତାହା ଠିକ୍ ନୁହେଁ । ଏହା ଥିଲା ବହୁଶାସ୍ତ୍ର ଦର୍ଶୀ ପଣ୍ଡିତର ବିନୟ ଓ ଶାସ୍ତ୍ରଗତ ପରଂପରା । ବୈଷ୍ଣବ ମାନେ ମଧ୍ୟ ବିନୟକୁ ବୈଷ୍ଣବ ଚରିତ୍ରଗତ ବୈଶିଷ୍ଟ୍ୟ ରୂପେ ଗ୍ରହଣ କରିଥିଲେ ।

ସାରଳା ଦାସଙ୍କର ଶିକ୍ଷା ସମ୍ବନ୍ଧରେ ଶ୍ରୀ ମାନସିଂହ ବାରମ୍ବାର ଆଘାତ କରିଛନ୍ତି । କାରଣ ତାଙ୍କ ଅନୁଭୂତିରୁ ସେ ଜାଣିଛନ୍ତି, ଇଂରେଜୀ ନପଢ଼ିଲେ ଲୋକ ଶିକ୍ଷିତ ହୁଏ ନାହିଁ । ଗାଁର କୃଷକମାନେ, ଯେଉଁମାନେ କି କେବଳ ଓଡ଼ିଆ ପଢ଼ନ୍ତି ସେମାନେ ଆଧୁନିକ ଦୃଷ୍ଟିରେ କିଷ୍ଟିତ ଭାବରେ ଅର୍ଦ୍ଧଶିକ୍ଷିତ । ସେହି କଥାକୁ ଶ୍ରୀ ମାନସିଂହ ସାରଳା ଦାସଙ୍କ ପାଇଁ ପ୍ରଯୁକ୍ତ କରିଛନ୍ତି ।

ଏପ୍ରକାର ବିଚାର ଆଜକାଲି ଚଳୁଥିଲେ ହେଁ ପଞ୍ଚଦଶ ଶତାବ୍ଦୀରେ ଏ ବ୍ୟବସ୍ଥା ନ ଥିଲା । ସଂସ୍କୃତ ଅଧ୍ୟୟନକୁ ମଧ୍ୟ ଲୋକେ ପାଣ୍ଡିତ୍ୟର ମାନଦଣ୍ଡ ରୂପେ ଗ୍ରହଣ କରୁନଥିଲେ । ସିଦ୍ଧ, ସନ୍ଥ ତଥା ବୈଷ୍ଣବପନ୍ଥୀ ସାଧକମାନେ ସଂସ୍କୃତ ବିରୁଦ୍ଧରେ ହିଁ ସେମାନଙ୍କର ଅଭିଯାନ କାଏମ ରଖିଥିଲେ । ଫଳରେ ବିନା ଗୁରୁରେ ଶାସ୍ତ୍ର ପଣ୍ଡିତ ହେବା ପରି (ସାରଳା ଦାସଙ୍କ ଉକ୍ତି) ସଂସ୍କୃତ ଟୋଲରେ ନପଢ଼ି କୌଣସି ଧର୍ମଦ୍ୱାରା ବିଧିବଦ୍ଧ ଭାବରେ ଦୀକ୍ଷିତ ନ ହୋଇ ସାରଳା ଦାସ ହେଲେ ସେ ଯୁଗର ଶୂଦ୍ରମୁନି ।

ପଞ୍ଚଦଶ ଶତାବ୍ଦୀରେ କେବଳ ଓଡ଼ିଶାରେ ଶୂଦ୍ରମୁନି ସବୁ ଦେଖା ଦେଇ ନ ଥିଲେ, ସମସ୍ତ ଭାରତ ବର୍ଷରେ ଧର୍ମର ଏହାହିଁ ଗତି ଥିଲା । ଭାରତରେ ଧର୍ମଧାରାର ଯେଉଁ ପରିଚୟ ମିଳେ, ସେଥିରୁ ଜଣାଯାଏ ଯେ, ପ୍ରଥମେ ବ୍ରାହ୍ମଣ ତ 'ପରେ କ୍ଷତ୍ରିୟ ଓ ଶେଷକୁ ଦ୍ୱିଜେତର ଜାତିମାନେ ହିଁ ଧର୍ମ ପ୍ରଚାରକର ଆସନ ଗ୍ରହଣ କରିଥିଲେ । ଓଡ଼ିଶାରେ ସାରଳା ଦାସଙ୍କ ପରି ଯଶୋବନ୍ତ ଦାସ, ବଳରାମ ଦାସ, ଅଚ୍ୟୁତ ପ୍ରଭୃତି ନିଜକୁ ଶୂଦ୍ରଭାବରେ ପରିଚିତ କରାଇ ଗୌରବ ଅନୁଭବ କରୁଥିଲେ; କାରଣ ଶୂଦ୍ରମାନେ ଭଗବାନଙ୍କର ପାଦରୁ ଜାତ । ସେଥିପାଇଁ ସବୁ ଜାତିରେ ଶ୍ରେଷ୍ଠ ବୋଲି ସେତେବେଳର ଧର୍ମ ପ୍ରଚାରକମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ଜଗନ୍ନାଥ ଦାସଙ୍କର ଭାଗବତରେ ମଧ୍ୟ ଏହାର ସୂଚନା ଦେଖିବାକୁ ମିଳେ ।

ପଞ୍ଚସଖା ପ୍ରସଙ୍ଗ ଆଲୋଚନା କଲାବେଳେ ଡକ୍ଟର ମାନସିଂହ ଧର୍ମର ଅନ୍ୟ ଏକ ରୂପ ଦେଖିଛନ୍ତି । ତାହା ହେଉଛି—ତନ୍ତ୍ର ପ୍ରଭାବିତ ହ୍ରାଁ, ଶ୍ରୀଁ, କ୍ଲୀଁ, ପ୍ରଭୃତି ବୀଜମନ୍ତ୍ରର ପ୍ରଚାର ଓ ବ୍ୟାଖ୍ୟା । ସେ ଏସବୁକୁ ଯେ କେବଳ ହଜବରଲ କହିଛନ୍ତି ତା' ନୁହେଁ, ପଞ୍ଚସଖାଙ୍କର ଅଧିକାଂଶ ରଚନାକୁ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ କରିଛନ୍ତି । ଶ୍ରୀ ମାନସିଂହଙ୍କ 'ଅଧିକାଂଶ' ଶବ୍ଦକୁ ବୁଝି ହୁଏନାହିଁ । କଳେବର ଦୃଷ୍ଟିରୁ ତ ନୁହେଁ ସଂଖ୍ୟା ଦୃଷ୍ଟିରୁ ମଧ୍ୟ ଶ୍ରୀ ମାନସିଂହଙ୍କ ଏହି ଅଭିଯୋଗ ସତ ନୁହେଁ । ଜଗନ୍ନାଥ ଦାସଙ୍କ ରଚିତ ଏକାଦଶ ସ୍କନ୍ଧ ଭାଗବତ ତାଙ୍କର ଅନ୍ୟାନ୍ୟ ସବୁ ରଚନାଠାରୁ ଯେପରି ବଡ଼ ସେହିପରି ବଳରାମଙ୍କ 'ଜଗମୋହନ ରାମାୟଣ'ର ଲଙ୍କା କାଣ୍ଡ ହିଁ ତାଙ୍କର ଅନ୍ୟାନ୍ୟ ସବୁ ରଚନାକୁ କବଳିତ କରିବାର ଆଶଙ୍କା ରଖିଥାଏ । ସଗୁଣ

ଓ ନିର୍ଗୁଣ ଉଭୟ କ୍ଷେତ୍ରରେ ସେମାନଙ୍କର ଏତେ ସୁନ୍ଦର ଓ ଖାଣ୍ଟି ସାହିତ୍ୟିକ ଗ୍ରନ୍ଥ ସବୁ ଅଛି ଯେ କେବଳ ଖଣ୍ଡେ ଅଧେ 'ଶୂନ୍ୟଭଣା' ବା 'ପ୍ରଳମ୍ବସାର ଗୀତା' ବା 'ବ୍ରହ୍ମ ଗୀତା'କୁ ଗ୍ରହଣ କରି, ସେମାନଙ୍କର ସାହିତ୍ୟିକ ଅବଦାନ ପ୍ରତି ଅଭିଯୋଗ କରିବା ସୁସ୍ଥ ଆଲୋଚକର ପରିପନ୍ଥୀ । ସେମାନେ ମଧ୍ୟ ଏ ବିଷୟରେ ବିଶେଷ ସଚେତନ ଥିଲେ । ଗୁରୁଲବ୍ଧ ଏହି ଜ୍ଞାନକୁ ସେଥିପାଇଁ ସେମାନେ ସାହିତ୍ୟରୁ ସ୍ୱତନ୍ତ୍ର କରି ପ୍ରକାଶ କରିଛନ୍ତି । ସାହିତ୍ୟିକ ଗ୍ରନ୍ଥରେ ଏ ସବୁକୁ ନରଖି ସେମାନେ ନିଜ କବିତାର ପରିଚୟ ଦେଇଛନ୍ତି । ସାହିତ୍ୟ ଦର୍ଶନ ବା ତତ୍ତ୍ୱ ଦ୍ୱାରା ଭାରାକ୍ରାନ୍ତ ହୋଇନାହିଁ ।

ସାରଳା ଓ ପଞ୍ଚସଖାଙ୍କୁ ଖାଣ୍ଟି ସାହିତ୍ୟିକ ଦୃଷ୍ଟିକୋଣରୁ ବିଚାର କରିବାକୁ ଯାଇ, ଶ୍ରୀ ମାନସିଂହ ସେମାନଙ୍କ ଜାତୀୟ ମନୋଭାବ ଓ ସମାଜ ସଂସ୍କାର ମନୋ-ବୃତ୍ତିର ଉଲ୍ଲେଖ କରିଛନ୍ତି ଆଧୁନିକ ଯୁଗରେ ମହାତ୍ମାଗାନ୍ଧୀଙ୍କର ପ୍ରବର୍ତ୍ତିତ ସ୍ୱାଧୀନତା ଆନ୍ଦୋଳନ ଯୋଗୁଁ ଏ ଦୁଇଟି ବିଷୟ ପ୍ରତି ସାଧାରଣ ସାହିତ୍ୟିକମାନଙ୍କର ଦୃଷ୍ଟି ଆକୃଷ୍ଟ ହୁଏ ଓ ସାହିତ୍ୟରେ ଏ ସବୁ ଅନ୍ୟତମ ମୁଖ୍ୟବିଭବ ରୂପେ ଗୃହୀତ ହୁଅନ୍ତି । କିନ୍ତୁ ଏସବୁ ଯେ ଏକାବେଳକେ ନୂଆ ନୁହେଁ । ସାରଳା ଓ ବଳରାମଙ୍କ ଲେଖାରୁ ଏହା ପ୍ରତିପାଦିତ ହୁଏ । ନୀଳାଚଳକୁ ସବୁତୀର୍ଥ ମଧ୍ୟରେ ଶ୍ରେଷ୍ଠ ବୋଲି ପ୍ରତିପାଦିତ କରିବା, ଯୁଧିଷ୍ଠିର ଓ ରାମ ପ୍ରଭୃତି ଦେବୋପମ ବ୍ୟକ୍ତିଙ୍କୁ ଓଡ଼ିଶାକୁ ଆଣି ବିଭିନ୍ନ ସ୍ଥାନ ସହ ସମ୍ପୃକ୍ତ କରିବା ଏହାର ଅନ୍ତର୍ଗତ । ଆଧୁନିକ ଯୁଗରେ ଅତୀତ ଗୌରବ-ରାଜିର ଉଲ୍ଲେଖ କରି ଲୋକଙ୍କୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ କରିପାରି ସେ ଯୁଗରେ ଦେଶର ପବିତ୍ରତା ଉପରେ ଗୁରୁତ୍ୱ ଦିଆଯାଇଥିଲା, ଏହି ପବିତ୍ରତାକୁ ଆହୁରି ମଧୁର କରୁଥିଲା, ଯୁଧିଷ୍ଠିର ଓ ରାମଙ୍କର କାହିଁରୀ ସ୍ପର୍ଶ ।

ଏ ଯୁଗରେ ଜାତୀୟତାଭାବର ଉଦ୍ରେକ ହେଲା । ଦେଶକୁ ପରାଧୀନତାରୁ ମୁକ୍ତ କରିବା ପାଇଁ, ଅଥଚ ସେତେବେଳେ ଥିଲା ଦେଶର ସ୍ୱାଧୀନତାକୁ ରକ୍ଷା କରିବା ପାଇଁ । ଏଠି ଅହିଂସାକୁ ସଂଗ୍ରାମର ଆଦର୍ଶ ବୋଲି ଗ୍ରହଣ କରାଯାଉଥିବା ବେଳେ, ସେତେବେଳେ ରଣାଙ୍ଗନରେ ମୃତ୍ୟୁକୁ ଶ୍ରେଷ୍ଠ ଧର୍ମରୂପେ ବିବେଚନା କରାଯାଉଥିଲା । ବଳରାମ ପ୍ରଭୃତି କବି, ରଣକ୍ଷେତ୍ରରେ ଝାସଦେଇ ଦେଶକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ସ୍ୱାଧୀନ ଓ ପରାଧୀନ ଜାତିର ଜାତୀୟତାବୋଧ ଭିତରେ ଥିବା ପାର୍ଥକ୍ୟକୁ ନ ବୁଝି ସାରଳା ଓ ବଳରାମ ଦାସଙ୍କୁ ମୂଲ୍ୟାଙ୍କନ କରିବା ଯେଉଁଭଳି ହେବାର କଥା ତାହା ହୋଇପାରି ନାହିଁ । ଏହି ଜାତୀୟତାବୋଧର ଅନ୍ତରାଳରେ ଅର୍ଥନୈତିକ ଅପେକ୍ଷା ଧାର୍ମିକ ଦୃଷ୍ଟିକୋଣ ଅତ୍ୟନ୍ତ ତୀବ୍ର ଥିଲା ।

ଜାତୀୟତାବୋଧପରି ସମାଜ ସଂସ୍କାରର ମଧ୍ୟ ମୂଳଲକ୍ଷ୍ୟ ଥିଲା ଧର୍ମ । ଏ ଯୁଗର ସଂସ୍କାରକମାନେ ବିଭିନ୍ନ ପ୍ରକାର ଧର୍ମର ସଂପର୍କରେ ଆସିବା ଫଳରେ ହିନ୍ଦୁଧର୍ମରେ ଥିବା କେତେକ ତ୍ରୁଟି ଆବିଷ୍କାର କରିଥିଲେ; ଏବଂ ସମାଜରୁ ସେ ସବୁକୁ ଦୂର କରିବା ପାଇଁ ମହାତ୍ମାଗାନ୍ଧୀ ଜାତିପ୍ରଥା ଲୋପ, ନାରୀଜାଗରଣ ଓ ଅସ୍ପୃଶ୍ୟତା ନିବାରଣ ପ୍ରଭୃତି ଉପରେ ଗୁରୁତ୍ୱ ଆରୋପ କଲେ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଗୋଟିଏ ବିପଦ ଓଡ଼ିଶାର ଚିନ୍ତାପନ୍ଥୀ ମାଡ଼ି ଆସୁଥିଲା ଏବଂ ତାହା ଥିଲା ମୁସଲମାନମାନଙ୍କ ବର୍ବରୋଚିତ ଆକ୍ରମଣ । ସେଥିରୁ ରକ୍ଷାପାଇବା ପାଇଁ ଏକମାତ୍ର ଅସ୍ତ୍ର ହେଲା ଏକତା । ସେଥିପାଇଁ ସେ ଯୁଗରେ ସାରଳା ଓ ବଳରାମ ପ୍ରଭୃତି ସାଧକ-ମାନେ ସମାଜରେ ଚଣ୍ଡାଳ ଜାତିର ସମ୍ମାନ ବୃଦ୍ଧି କରିବା ପାଇଁ ଚେଷ୍ଟାକଲେ । ବଳରାମ ଓ ଜଗନ୍ନାଥଙ୍କ ବିରୋଧ ସତ୍ତ୍ୱେ ଲକ୍ଷ୍ମୀ, ଶ୍ରୀୟା ଚଣ୍ଡାଳୁଣୀ ପ୍ରତି ପ୍ରସନ୍ନ ହେଲେ । ପୁଣି ସେହି ଲକ୍ଷ୍ମୀଙ୍କର ଆଦେଶରେ ନୀଳାଚଳ ଧାମର ମହାପ୍ରସାଦକୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଲୋକେ ବିନା ଦ୍ୱିଧାରେ ଗ୍ରହଣ କଲେ । ଏଥିରେ ମଧ୍ୟ ଧର୍ମ ଅର୍ଜନ ଥିଲା ମୁଖ୍ୟ ଲକ୍ଷ୍ୟ ଓ ବୈଷ୍ଣବ ଧର୍ମଦ୍ୱାରା ପ୍ରଭାବିତ ହୋଇ ମାନବଜାତିର ଶ୍ରେଷ୍ଠତା ପ୍ରଚାର କରିବା ସଙ୍ଗେ ସଙ୍ଗେ ପତିତ ଜାତିର ସମ୍ମାନ ବୃଦ୍ଧି କରିବା । ସାରଳା, ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଇତ୍ୟାଦି ସାଧକମାନେ ପ୍ରାୟ ଏହି ଲକ୍ଷ୍ୟକୁ ଆଗରେ ରଖି କାମ କରୁଥିଲେ । ବଳରାମ ବାଉରୀ, କଉଡ଼ି ହରିଦାସ, ବେଶ୍ୟା ଓ ଚଣ୍ଡାଳ ପ୍ରଭୃତି ଜାତି କଥା ବିଚାର କରୁଥିବା ବେଳେ ଅଚ୍ୟୁତ କୈବର୍ତ୍ତ ଓ ଗୋପାଳ ଜାତିର ଉଦ୍ଧାର ପାଇଁ ଚେଷ୍ଟା କରୁଥିଲେ । ଅଧମ ଜାତିର ଉଦ୍ଧାର ସଙ୍ଗେ ସଙ୍ଗେ ପତିତ ବ୍ରାହ୍ମଣ ଓ ଭଣ୍ଡ ସନ୍ଥମାନଙ୍କୁ ନିନ୍ଦା କରିବା ଏମାନଙ୍କର ଆଦର୍ଶ ରୂପେ ଗୃହୀତ ହୋଇଥିଲା । ଏହାହିଁ ସେ ଯୁଗର ରୁଚି । କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷର ସାଧକମାନେ ଏହାହିଁ କରୁଥିଲେ । ତେଣୁ ଏଥିପାଇଁ ଭାରତୀୟ ପୃଷ୍ଠଭୂମିକୁ ନ ଦେଖି କେବଳ ସାରଳା, ବଳରାମ, ଅଚ୍ୟୁତଙ୍କୁ ପ୍ରଶଂସା କରିବା କେତେଦୂର ଖାଣ୍ଟି ସାହିତ୍ୟିକ ଦୃଷ୍ଟିକୋଣ ତାହା ଜାଣି ହୁଏ ନାହିଁ ।

ସାରଳା, ବଳରାମଙ୍କର ଯୁଗ ଶେଷହେବା ବେଳକୁ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଗଲା । ଗଜପତି ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡିତ ହୋଇ କ୍ଷୁଦ୍ର କ୍ଷୁଦ୍ର ରାଜା-ମାନଙ୍କ ଦ୍ୱାରା ଶାସିତ ହେଲା । ପ୍ରତ୍ୟେକ ରାଜ୍ୟରେ ସଂସ୍କୃତ ପଣ୍ଡିତଙ୍କୁ ନେଇ ଦରବାର ଗଠିତ ହେଲା ଓ ସେତେବେଳର କବିମାନଙ୍କୁ ରାଜାନୁଗ୍ରହ ପାଇବା ଲାଳସାରେ ଏହି ପଣ୍ଡିତଗୋଷ୍ଠୀର ସମ୍ମୁଖୀନ ହେବାକୁ ପଡ଼ିଲା । ତେଣୁ କେବଳ କାବ୍ୟ ଲେଖି କାମ ଚଳିଲା ନାହିଁ । କାବ୍ୟ ରଚନା ସହ ଜ୍ୟୋତିଷ, ଆୟୁର୍ବେଦ, କାମଶାସ୍ତ୍ର, ସ୍ତ୍ରୀ ପୁରୁଷ ଲକ୍ଷଣ, ଏପରିକି ଗୋ ଶାସ୍ତ୍ର, ଅଶ୍ୱଶାସ୍ତ୍ର ସମ୍ବନ୍ଧରେ ସେମାନେ

ଜ୍ଞାନ ଅର୍ଜନ କରୁଥିଲେ । କେବଳ ସେତକ ନୁହେଁ, କାବ୍ୟଜଗତରେ ମଧ୍ୟ ଶବ୍ଦ ପାଣ୍ଡିତ୍ୟ, କାବ୍ୟଶାସ୍ତ୍ର ପ୍ରଭୃତିକୁ ମୁଖ୍ୟ ସ୍ଥାନ ଦେବାକୁ ସେମାନେ ବାଧ୍ୟ ହେଲେ । ଫଳରେ କବିଙ୍କର ବ୍ୟକ୍ତିତ୍ୱର କୌଣସି ମୂଲ୍ୟ ରହିଲନାହିଁ । ସେ ଧର୍ମୀ ହେଉ, କି ଶୈବ ହେଉ, ବୈଷ୍ଣବ ହେଉ କି ନହେଉ, ଶବ୍ଦ ପାଣ୍ଡିତ୍ୟ ପ୍ରଦର୍ଶନ ପ୍ରତି ଶ୍ରଦ୍ଧା ଥାଉ କି ନଥାଉ, ସଂସାର ବିରାଗୀ ହୋଇ ପଛେ ଘରଦ୍ୱାର ଛାଡ଼ିଥାଉ ଯୁଗର ରୁଚି ଅନୁଯାୟୀ ପୁଣି ରାଜଦରବାରର ମନଲାଗି କାବ୍ୟ ଲେଖିବା ପାଇଁ ଶବ୍ଦ ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ସାଙ୍ଗକୁ ଶୃଙ୍ଗାରିକତାର ଚର୍ବଣ କରୁଥିଲେ । ତେଣୁ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ ଓ ଅନ୍ୟାନ୍ୟ କବିଙ୍କ ପାଖରେ କୌଣସି ସ୍ୱତନ୍ତ୍ର ରୁଚି ପ୍ରଦର୍ଶନ ପାଇଁ ସ୍ୱାତନ୍ତ୍ର୍ୟ ନଥିଲା । ଚର୍ବିତ ଚର୍ବଣ କଥାବସ୍ତୁ ଗ୍ରହଣ କରି ଲୋକପ୍ରିୟ ଗ୍ରନ୍ଥମାଧ୍ୟମରେ କ, ବ ଓ ଯ ବିଷୟମର ଖୋଳ ଭିତରେ ସେମାନେ କାବ୍ୟକୁ ରଖୁଥିଲେ ଓ ତାହାହିଁ ଥିଲା ସେ ଯୁଗର କବିକର୍ମ । କେବଳ ଓଡ଼ିଆ ନୁହେଁ ଅନ୍ୟାନ୍ୟ ଭାରତୀୟଭାଷାରେ ମଧ୍ୟ ଏହାହିଁ ଥିଲା ସାହିତ୍ୟିକ ସ୍ଥିତି । ଏଥିରେ ବୈଷ୍ଣବ ଓ ଅବୈଷ୍ଣବର ପ୍ରଶ୍ନ ନାହିଁ । ରାମ ଓ କୃଷ୍ଣ ଚରିତରେ ପାର୍ଥକ୍ୟ ନାହିଁ । କୃଷ୍ଣଙ୍କ ପରି ରାମ ମଧ୍ୟ ରାସଲୀଳା କଲେ । ଷୋଳ ସହସ୍ର ରାଣୀଙ୍କ ନୁପୁର ନାଦରେ ଯମୁନା ପରି ସରଯୂ ନଦୀର ତଟ ମଧ୍ୟ ନୁପୁରନାଦରେ କ୍ୱଣିତ ହେଲା । ଏପରି ସ୍ଥଳେ ଉପେନ୍ଦ୍ରଙ୍କୁ ତାଙ୍କ ଶୃଙ୍ଗାରିକତା ପାଇଁ ପ୍ରଶଂସା କରି ଦୀନକୃଷ୍ଣ ଓ ଅଭିମନ୍ୟୁଙ୍କୁ ବୈଷ୍ଣବଦୃଷ୍ଟିରୁ ବିଚାର କରି, ଜୀବନ୍ମୁକ୍ତରରୁ ଉଠିପାରି ନଥିବା ପରି ମନ୍ତବ୍ୟ ପ୍ରଦାନ ଯୁକ୍ତି ସଙ୍ଗତ ନୁହେଁ ।

ଅନ୍ୟ ଦିଗରୁ ଦେଖିଲେ ଜଣାଯାଏ ଯେ ଶ୍ରୀ ମାନସିଂହଙ୍କ ତଥାକଥିତ ସାହିତ୍ୟିକ ଦୃଷ୍ଟିକୋଣ ଅତି ସୀମିତ ଥିଲା । ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି କବିଙ୍କୁ ବିଚାର କଲାବେଳେ, ସେ ଏହି ସବୁ କବିଙ୍କ ବିଚାର ବିଷୟରେ ପ୍ରଚଳିତ କେତେକ ଧାରଣାକୁ ହିଁ ନିଜ ଭାଷାରେ ଲିପିବଦ୍ଧ କରିଛନ୍ତି । କୌଣସି ନୂଆ ତଥ୍ୟ ବା ବିଚାରର କୌଣସି ନୂଆ ଦୃଷ୍ଟିକୋଣ ଦେଇପାରି ନାହାନ୍ତି । ସିଧା ଭାଷାରେ କହିଲେ—ସେ କେତେକ ପ୍ରଶଂସା ଓ ନିନ୍ଦାସୂଚକ ଶବ୍ଦ ମାଧ୍ୟମରେ ଆଲୋଚନା ସାଗରରେ ଭାସିଛନ୍ତି । ଉଦାହରଣ ପାଇଁ ଉପେନ୍ଦ୍ରଙ୍କ ଆଲୋଚନାକୁ ନିଆଯାଇପାରେ । ଉପେନ୍ଦ୍ରଙ୍କ ବିଷୟରେ ତାଙ୍କ ମତକୁ ନିମ୍ନ କେତେଭାଗରେ ବିଭକ୍ତ କରାଯାଇପାରେ । ସେ ଏ ସବୁର ଉଲ୍ଲେଖ ପ୍ରଥମ ଥର ପାଇଁ କଲାବେଳେ କହିଛନ୍ତି—

(୧) କବିତା କେବଳ ପାଠ୍ୟ ନୁହେଁ 'ଧ୍ୟେୟ' ମଧ୍ୟ ହେବ ବା ହେବା ଉଚିତ ।

(୨) ଯୌବନକାଳର ମାନବିକ ଯୌନ ବ୍ୟବହାର କାବ୍ୟ କବିତାର ଏକମାତ୍ର ଉର୍ବର ଉତ୍ସ ଓ ଉପାଦାନ ।

(୩) ପାଦେକ ଯାଦୁନିସ୍ମା, ଆଭିଧାନିକ ଚମତ୍କାରଚନା ବା କେବଳ ଶବ୍ଦର ଆଡ଼ମ୍ବରମୟ ପ୍ରଚୁର । (ପୃ-୧୭୫)

ଏହି କଥାକୁ ସେ ଦ୍ୱିତୀୟ ଅର ମଧ୍ୟ କହିଛନ୍ତି "ଭ୍ରାନ୍ତ ଏକ ଉତ୍ସାହରେ ମାତ୍ର ବହୁସ୍ଥାନରେ ଉପେନ୍ଦ୍ର ପାଣ୍ଡିତ୍ୟ ପ୍ରଦର୍ଶନ ଓ ଶବ୍ଦ କସରତ (୩) କୁ କବିତାର ଆସନରେ ବସାଇ ଥିଲେ ମଧ୍ୟ ସେ ଆମକୁ ବିଚଳିତ କରି ପକାନ୍ତି । ତାଙ୍କର ଅସାଧାରଣ ଗ୍ରନ୍ଥସିକ କୌଶଳ ଓ ତାଙ୍କର ପଦର ପଂକ୍ତିମାନଙ୍କର ଗଭୀର ସାଂଗୀତିକତା ଗୁଣ ଦେଇ (୧) ପୁଣି ତାଙ୍କ କବିତାର ପଠନ ଓ ଆବୃତ୍ତି ମାତ୍ରେ, ଶ୍ରୋତା ଓ ପାଠକଙ୍କ ସମ୍ମୁଖରେ ଯୌବନ, ସୌନ୍ଦର୍ଯ୍ୟ ଓ ପ୍ରଣୟର ଏକ ଯାଦୁକାଠି ସଂସାରକୁ ମେଲାଇ ଦେଇ (୨) (ପୃ-୧୮୦) ତୃତୀୟ ଅର ପାଇଁ ସେ ଏ ସବୁର ଉଲ୍ଲେଖ କରି କହିଛନ୍ତି,—

"ଶବ୍ଦ ସବୁକୁ କପର୍ ଥୋଇଲେ, ସେମାନଙ୍କର ଅନ୍ତର୍ନିହିତ ଅଜ୍ଞାତ ସୌନ୍ଦର୍ଯ୍ୟ ଫୁଟି ଉଠିବ, ଏ କୌଶଳରେ ଉପେନ୍ଦ୍ର ଅପ୍ରତିଦ୍ୱନ୍ଦ୍ୱୀ (୩) କହିଲେ ଚଳେ । ଯୌବନ କାଳର ଇନ୍ଦ୍ରିୟଧାର୍ଥ ପ୍ରଣୟ ସୌନ୍ଦର୍ଯ୍ୟ ଚର୍ଚ୍ଚିତ କରିବାରେ (୨) ଓ ପଦମାନଙ୍କର ଏକ ସାମଗ୍ରିକ ଐକ୍ୟତାନିକ ମିଳିତ ସଙ୍ଗୀତ ସୃଷ୍ଟି କରିବାରେ ମଧ୍ୟ ଉପେନ୍ଦ୍ର ଅପ୍ରତିଦ୍ୱନ୍ଦ୍ୱୀ" (୧) । (—ପୃ-୧୮୦)

ଚତୁର୍ଥ ଅର ପାଇଁ—

ଶବ୍ଦ ଯୋଜନାରେ (୩) ଉତ୍କଟତାମୟ ଯୌନବିଳାସ ଓ ଯୌବନୋଚିତ ପ୍ରଣୟ ବର୍ଣ୍ଣନାରେ (୨) ଏବଂ ଓଡ଼ିଆ ଭାଷାରେ ଯେତେପ୍ରକାର ଗ୍ରନ୍ଥଅଛି ସେ ପ୍ରତ୍ୟେକଟିର ସୂନପୁଣ ପ୍ରଯୋଜନାରେ (୧) ଉପେନ୍ଦ୍ର ଏ କ୍ଷେତ୍ରରେ ଅବତୀର୍ଣ୍ଣ ସକଳ କବିଙ୍କୁ ଟପି ଯାଇଛନ୍ତି—ପୃ-୧୮୧

ପଞ୍ଚମ ଅର ପାଇଁ—

(୩) ଶବ୍ଦାଲଂକାର ଭାରତୀୟ ସାହିତ୍ୟରେ କାବ୍ୟର ଏକ ସର୍ବମାନ୍ୟ ଗୁଣ । ହିଏତ ସମଗ୍ର ଭାରତୀୟ ସାହିତ୍ୟରେ ଓଡ଼ିଶାର ଉପେନ୍ଦ୍ରଭଞ୍ଜ ଏହିଗୁଣର ଗୁଣିସତ୍ତମ ବୋଲି ଧରାଯାଇପାରନ୍ତି । (ପୃ:୧୮୩) (୨) ଯୌନଚର୍ଚ୍ଚାର ପ୍ରଚର୍ଯ୍ୟକୁ ମଧ୍ୟ ଆମେ ଶାଶ୍ୱତ ମୋହିନୀ ନାରୀ ବା ସୁନ୍ଦର ଶରୀର ମହିମାଗାନ ଛଡ଼ା ଅନ୍ୟ କିଛିନୁହେଁ ବୋଲି ମାନିବାକୁ ବାଧ୍ୟହେବା (ପୃ-୧୮୪) ।

ପୁଣିଅରେ ।

ବରଂ ଯେ କୌଣସି ସୁଧୀପାଠକ ଏଗୁଡ଼ିକରେ ଦେଖିପାରିବେ-ଚିରନ୍ତନୀ ନାରୀପ୍ରତି କବି ହୃଦୟର ନିବିଡ଼ ଆରାଧନା ଓ ସକଳ ମହାକବିଙ୍କ ପରି ଏ କବିର

ଲେଖନୀ ମଧ୍ୟ ସ୍ୱାଭାବିକ ସରଳ ବାସନା ସ୍ୱଚ୍ଛକୁ କପରି ସରଳ ଅଥଚ ହୃଦୟସ୍ପର୍ଶୀ ଭାବରେ ପ୍ରକାଶ କରିପାରୁଥିଲା ।—ପୃ(୧୮୫)

ଲେଖକ ବା ଆଲୋଚକ ଯେତେବେଳେ କୌଣସି ବିଷୟରେ ମନସ୍ଥିର କରିପାରେନାହିଁ, ସେତେବେଳେ ସେହି ଗୋଟିଏ କଥାକୁ ସେ ବାରମ୍ବାର କହୁଥାଏ । ମାନସିଂହଙ୍କ ପକ୍ଷରେ ତାହାହିଁ ଘଟିଛି । ସେ ଉପେନ୍ଦ୍ରଙ୍କ ପ୍ରଶଂସା କରିବାପାଇଁ ହିଁ ସ୍ଥିର କଲେ, କିନ୍ତୁ ଉପେନ୍ଦ୍ରଙ୍କ ଶ୍ଳୀଳତାର ନିନ୍ଦାବ କରିଥାନ୍ତି । ସେକଥା ମନେ ପଡ଼ିଲା ବେଳକୁ ସେ ସବୁ ନିନ୍ଦାକୁ ଅତିରଂଜିତ ପ୍ରଶଂସା ମାଧ୍ୟମରେ ବିରୋଧ କଲେ । ଫଳରେ ସେହି ଉକ୍ତିଗୁଡ଼ିକ କଥାକୁ ବାରମ୍ବାର କହିବା ବ୍ୟତୀତ ତାଙ୍କର ଗତ୍ୟନ୍ତର ନଥିଲା ।

ରୀତିକାଳୀନ ଅନ୍ୟାନ୍ୟ କବିଙ୍କ ବିଚାର କଲାବେଳେ ସେ ସେହି ତତ୍ତ୍ୱକୁ ଗ୍ରହଣ କରିଛନ୍ତି । ସାଧାରଣଭାବରେ ଏହାସତ୍ୱ ହେଲେହେଁ ଓ ଯୁଗରୁଚିକୁ ଅନୁସରଣ କରି ସେମାନେ ଏହି ରୀତିତତ୍ତ୍ୱ ସହ ଅତ୍ୟଧିକ ଶୃଙ୍ଗାରିକତାକୁ ଗ୍ରହଣ କରିଥିଲେହେଁ ସେମାନଙ୍କ କାବ୍ୟରୁ ସେମାନଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ସନ୍ଧାନ ମିଳିଥାଏ । ଶ୍ରୀକୃଷ୍ଣ, ଉପେନ୍ଦ୍ରଙ୍କ 'କଳାକଉତୁକ' ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' ଅଭିମନ୍ୟୁଙ୍କ 'ବିଦଗ୍ଧଚିନ୍ତାମଣି' ଓ ଭକ୍ତଚରଣଙ୍କ 'ମଥୁରାମଙ୍ଗଳ'ର ମୁଖ୍ୟଚରିତ୍ର ହେଲେହେଁ ଏଥିରେ ପାର୍ଥକ୍ୟ ଅଛି; ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀକୃଷ୍ଣଙ୍କ ଚରିତ୍ରରେ ଯେଉଁ ବିଦଗ୍ଧତା, ରସିକତା ଓ ନାଗରଭାବର ସମାବେଶ ହୋଇଛି, ତାହା ମୂଳ ଭାଗବତର ବସ୍ତୁ ନୁହେଁ ।

ସମାଲୋଚକର କର୍ତ୍ତବ୍ୟ ହେଉଛି, ଏହି ବୈଶିଷ୍ଟ୍ୟ ସବୁକୁ ନିଖାରି ବାହାର କରିବା ଓ କବିଙ୍କ ସେ ଦୃଷ୍ଟିରୁ ମୂଲ୍ୟାଙ୍କନ କରିବା, ଏହିଦୃଷ୍ଟିରୁ ଶ୍ରୀ ମାନସିଂହ ନିର୍ଣ୍ଣିତ ଭାବେ ବିଫଳ ହୋଇଛନ୍ତି, ସେ କେବଳ ସାଧାରଣ କେତେକ ପ୍ରଚଳିତ ମତକୁ ଦୋହରେଇଛନ୍ତି । କବିମାନଙ୍କ ବୈଶିଷ୍ଟ୍ୟକୁ ଦେଖିପାରିନାହାନ୍ତି ।

ଶ୍ରୀ ମାନସିଂହଙ୍କ ସାହିତ୍ୟିକ ଦୃଷ୍ଟି ପରି, ସନ-ସ୍ଥାନ-ନାମର ଆଲୋଚନା ପ୍ରତି ତାଙ୍କର ବିତୃଷ୍ଣା ଗ୍ରନ୍ଥମଧ୍ୟରେ ବାରମ୍ବାର ପ୍ରକାଶ ପାଇଛି । ଉତ୍କଳର ମହତାବଙ୍କ ଓଡ଼ିଶା ଇତିହାସ ଉପରେ, ତାଙ୍କର ମନ୍ତବ୍ୟ ଏହି ଦୃଷ୍ଟିକୋଣକୁ ଅଧିକ ସ୍ପଷ୍ଟକରିଦେଇଛି । ସେ ଲେଖିଛନ୍ତି-"ରାଜନୈତିକ ନେତା ଉତ୍କଳର ହରେକୃଷ୍ଣ ମହତାବ ସମସାମୟିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଜଣେ ଲେଖକଭାବରେ ପରିଚିତ । ଆହମଦନଗର ଜେଲରେ ବନ୍ଦୀ ଅବସ୍ଥାରେ ସମୟ କଟାଇବା ପାଇଁ ହିଁ ସେ ଓଡ଼ିଶାର ଇତିହାସ ଆଲୋଚନା ଆରମ୍ଭ କରିବସିଲେ; ଫଳରେ ତାଙ୍କହାତରୁ ଆମେ ଓଡ଼ିଶାର ଏକ ନୂତନ ଇତିହାସ ପାଇଲୁ, ଏ ଇତିହାସ ଦଲିଲ ପ୍ରମାଣରେ ଭର୍ତ୍ତି ସତ, କିନ୍ତୁ ଏହାର ସାହିତ୍ୟିକ ମୂଲ୍ୟ ବିଶେଷ ଅଛିବୋଲି କହିହେବନି ।" (ପୃ-୪୦୭)

ଯେଉଁ ଲେଖକ ଇତିହାସର ଦଲିଲ ପ୍ରମାଣକୁ ଉପେକ୍ଷାକରି ସାହିତ୍ୟିକମୂଲ୍ୟ ଖୋଜିବସେ ସେ ସାହିତ୍ୟର ଇତିହାସ ଲେଖିବାବେଳେ-ସନ-ସ୍ଥାନ ଓ ନାମର ଆଲୋଚନାକୁ ଗୁରୁତ୍ୱ ନଦେବାହିଁ ସ୍ୱାଭାବିକ । କିନ୍ତୁ ସନ-ବାର-ନାମ ଧରି ଯେଉଁମାନେ ଆଲୋଚନା କରୁଥିଲେ, ସେମାନେ ଥିଲେ କବି ଆବିଷ୍କାରକ । ପ୍ରାଚୀନ କବିଙ୍କୁ ଉଦ୍ଧାର କରିବାପରେ, ପ୍ରଥମ ପ୍ରଶ୍ନହୁଏ, ସେମାନଙ୍କର ସମୟ । ଏହା ସ୍ଥିରକରିବା ଆବିଷ୍କାରକର ପ୍ରଥମ କର୍ତ୍ତବ୍ୟ । ସମ୍ଭବତଃଭାବରେ, ସନ-ବାର-ନାମ ପୁଣି ପ୍ରକାଶ କରେ ଯୁଗକୁ । କବି ଉପରେ ଯୁଗର ପ୍ରଭାବକୁ ନଦେଖି ତାଙ୍କ ସାହିତ୍ୟର ଆଲୋଚନା କରିବା, ଆମ୍ବର ରସଗ୍ରହଣ ଟାକୁଆ ଖାଇବା ପରି । ଦୀନକୃଷ୍ଣ, ଅଭିମନ୍ୟୁ, ଉପେନ୍ଦ୍ର ଏମାନେ ମୁସଲମାନ ଯୁଗର କବି । ଯେଉଁ ସମାଜରେ ଏମାନେ ବଞ୍ଚିଥିଲେ ସେ ସମାଜରେ ମୁସଲମାନ ଭୂତ ସମସ୍ତଙ୍କୁ ଗ୍ରାସ କରିଥିଲା । ଉର୍ଦ୍ଦୁ ବା ପାର୍ଶୀ ପଢ଼ନ୍ତୁ ବା ନ ପଢ଼ନ୍ତୁ ସେ ସାହିତ୍ୟର ପ୍ରଭାବକୁ ଅତିକ୍ରମ କରିବା ପ୍ରାୟ ଅସମ୍ଭବ ଥିଲା । ଲୋକଙ୍କ ଅଜାଣତରେ ହିଁ,ଏହା ତା'ର ପ୍ରକୃତିକୁ ବଦଳାଇ ଦେଇଥିଲା । ଖାଣ୍ଟି ହିନ୍ଦୁଧର୍ମ ଦୃଷ୍ଟିରୁ ଯାହା ଅଧର୍ମ ବା ବିଧର୍ମୀର ମାର୍ଗ, ଅତିଉତ୍ସାହରେ ସେ ସବୁକୁ ଲୋକେ ପ୍ରଚାର କରିବାରେ ଲାଗିଥିଲେ । କବିଙ୍କ ଅନିଚ୍ଛାସତ୍ତ୍ୱେ ଏହିପରି ବହୁ ମୁସଲମାନୀ ପ୍ରଭାବ ତାଙ୍କ କାବ୍ୟାବଳୀକୁ ଏକ ନୂଆରଙ୍ଗ ଦେଇଛି । ସଂସ୍କୃତ କାବ୍ୟାଦର୍ଶର ଖୋଲଭିତରେ ନୂଆ ପ୍ରଜାପତି ଜନ୍ମନେଇ ଉଡ଼ିଛି । ମଧ୍ୟକାଳୀନ କବିମାନଙ୍କର ଆଲୋଚନା ବେଳେ ଏ ସବୁକୁ ଅସ୍ୱୀକାର କରିହୁଏ ନାହିଁ ।

ରଚନାରୁ ଇତିହାସର ସଙ୍କେତ ନ ବୁଝିଲେ, କିପରି ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ ଏହାର ଏକ ବିଶିଷ୍ଟ ଉଦାହରଣ ମାନସିଂହଙ୍କ ଆଲୋଚିତ 'ମାଦଳା ପାଞ୍ଜି' । ସେ ଏହା'ର ଆଲୋଚନା କଲାବେଳେ, ମହତାବଙ୍କୁ ଉଲ୍ଲେଖ କରି ମହତାବଙ୍କ ଅନୁମାନକୁ 'ହାସ୍ୟକର' ଓ 'ହାସ୍ୟାସ୍ପଦ' କହିଛନ୍ତି । ଏ ବିଷୟରେ ତାଙ୍କର ମତ ହେଉଛି—"ମାଦଳା ପାଞ୍ଜି'କୁ ପୁରା ଐତିହାସିକ ଗ୍ରନ୍ଥ କହିବା ଯେତିକି ହାସ୍ୟକର ଶ୍ରୀ ମହତାବଙ୍କର ଏପ୍ରକାର ବିତଣ୍ଡା ମଧ୍ୟ ସେତିକି ଉପହାସ୍ୟ । ଦୁଇ ଜଣ ପ୍ରତିଦ୍ୱନ୍ଦ୍ୱୀ ତିନି ଭିନ୍ନ ପାଞ୍ଜିଆ କରଣଙ୍କ ଦ୍ୱାରା ଠିକ୍ ଏକାରକମର ପାଞ୍ଜି ଲେଖିଗଲେ କିପରି ? ପାଞ୍ଜିରେ ସମ୍ରାଟ ଅନଙ୍ଗଭୀମ ଦେବ ସେ କାଳର ଉତ୍କଳର ଏକତ୍ରିତ ସାମନ୍ତ ରାଜାମାନଙ୍କୁ ଦେଇଥିବା ଏକ ବକ୍ତୃତା ଅଛି । ଖୋର୍ଦ୍ଧା ରାଜ୍ୟ ପାଇବା ପାଇଁ ଏପ୍ରକାର ବକ୍ତୃତାର କୌଣସି ଆବଶ୍ୟକତା ନ ଥିଲା । ପୁଣି ଭିନ୍ନ ଭିନ୍ନ ପାଞ୍ଜିଆ ସେହି ବକ୍ତୃତାଟି ସଠିକ ଭାବରେ ଲେଖିଥାନ୍ତେ କିପରି ?"

ପୃ-୮୫

ଶ୍ରୀ ମାନସିଂହଙ୍କ ଯୁକ୍ତି ଏ ସବୁର ଉତ୍ତର ତିଏ ସେହି ପାଞ୍ଜିରେ ଥିବା ଅନଙ୍ଗଭୀମ ଦେବଙ୍କ 'କଳବର୍ଗେଶ୍ୱର' ଉପାଧି । ଇତିହାସ ଯଦି ଠିକ୍ କହୁଥାଏ

ତା'ହେଲେ ଏହି ଉପାଧି ଦ୍ୱାରା ୧୪୬୮ ଖ୍ରୀଷ୍ଟାବ୍ଦରେ କପିଳେଶ୍ୱର ଦେବହିଁ ନିଜକୁ ଭୂଷିତ କରିଛନ୍ତି । ଅନଙ୍ଗଭୀମଙ୍କର ଏ ପ୍ରକାର ଉପାଧି ଥିବା ଇତିହାସରୁ ଜଣାଯାଏ ନାହିଁ । ଅଥଚ ଯିଏ ଜଣଯାକ ପାଞ୍ଜିଆ ଲିପିବଦ୍ଧ କଲାବେଳେ, କପିଳେଶ୍ୱରଙ୍କ ଉପାଧି ସବୁକୁ ଅନଙ୍ଗଭୀମ ଦେବଙ୍କ ଉପରେ ଲଦିଦେଲେ । ଇତିହାସର ଏ ସଙ୍କେତକୁ ନ ବୁଝିଲେ ମାଦଳା ପାଞ୍ଜି ସବୁଦିନ ପାଇଁ ଦ୍ୱାଦଶ ଶତାବ୍ଦୀର ଲେଖା ହୋଇ ରହିଯିବ । ପଣ୍ଡିତ ସୂର୍ଯ୍ୟନାରାୟଣ ବା ଉତ୍କଳ ସୁମିତ କୁମାର ଚଟାର୍ଜୀ କହିଲେ ବୋଲି ଯେ ଏହା ହେବ, ତା'ବ ନୁହେଁ ।

ଶ୍ରୀ ମାନସିଂହଙ୍କ ଇତିହାସରେ ଆଧୁନିକ ସାହିତ୍ୟ ଆଲୋଚନାକୁ ତିନି ଭାଗରେ ବିଭକ୍ତ କରାଯାଇପାରେ ।

(୧) ତାଙ୍କର ପୂର୍ବବର୍ତ୍ତୀ ଲେଖକଗଣ ।

(୨) ସମସାମୟିକ ଗଣ

(୩) ତାଙ୍କ ପରବର୍ତ୍ତୀ ଲେଖକ ଗଣ ।

ପୂର୍ବବର୍ତ୍ତୀ ଲେଖକମାନଙ୍କ ବିଚାର କଲାବେଳେ ତାଙ୍କର ସହାନୁଭୂତି ସମସାମୟିକ ବା ପରବର୍ତ୍ତୀ ଲେଖକଙ୍କୁ ବିଚାର କଲାବେଳେ ଦେଖାଯାଏ ନାହିଁ । ସେ ସମସାମୟିକ ଗଣଙ୍କର ଗୁଣ ଓ ଦୋଷ ଦେଖିଥିବା ବେଳେ, ନୂତନମାନଙ୍କର କେବଳ ଦୋଷ ଦେଖିଛନ୍ତି । ଲେଖକ ଧୀରେ ଧୀରେ ଗ୍ରାମ୍ୟ ସଭ୍ୟତାରୁ ଦୂରେଇ ଯାଉଥିବା ଏକ ଦୋଷ ହୋଇପାରେ । କିନ୍ତୁ ଏହାଦ୍ୱାରା ସାହିତ୍ୟିକ ମୂଲ୍ୟ ହ୍ରାସ ପାଏନାହିଁ । ରାଧାନାଥ, ମଧୁସୂଦନ, ଫକୀରମୋହନ ଯେଉଁଭାବେ ଗାଁ ଗହଳିରେ ପଶିଥିଲେ, ତା'ର ଇତିହାସ ଅଲଗା । ଆଜି ଆଉ ସେ ସମୟ ନାହିଁ କି ସୁବିଧା ନାହିଁ । ସେମାନଙ୍କ ସମୟରେ ସାହିତ୍ୟ ପ୍ରତି ଯେଉଁ ପ୍ରକାର ଶ୍ରଦ୍ଧା ଥିଲା, ତାହା ଧିରେ ଧିରେ ଲୋପ ପାଇଯାଇଛି । ଗ୍ରାମବାସୀ ହୁଅନ୍ତୁ କି ସହରବାସୀ ହୁଅନ୍ତୁ ଅଭାବର ତାଡ଼ନାରେ ସମସ୍ତେ ବ୍ୟକ୍ତିକୈନ୍ଦ୍ରିକ ହୋଇ ଗଲେଣି । ସାହିତ୍ୟ ଆଲୋଚନା ଧୀରେ ଧୀରେ ସ୍କୁଲ ଓ କଲେଜ ମଧ୍ୟରେ ସୀମିତ ହୋଇଯାଇଛି । କଲେଜରେ ପଢ଼ିଥିବା ଛାତ୍ରସବୁକୁ କଲେଜ ଛାଡ଼ିବା ପରେ ଆଉ କେହି ଦେଖୁ ନାହାନ୍ତି । ଏହା ଛାତ୍ରର ଦୋଷ ନୁହେଁ, ସମୟର ଦୋଷ । ଏଥିପାଇଁ ଗୁରୁ ପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର ବା ରମାକାନ୍ତ ରଥ ପ୍ରଭୃତି ଆଧୁନିକ ଯୁଗର ପ୍ରସିଦ୍ଧ କବିଙ୍କୁ କବି ରୂପେ ସ୍ୱୀକାର ନ କରିବା, ଓ ସେମାନେ ବିଦେଶରୁ ଚୋରମାଲ ଆମଦାନୀ କରୁଥିବା ପ୍ରଭୃତି ମନ୍ତବ୍ୟ ଦେବା ଫଳରେ ଶ୍ରୀ ମାନସିଂହ ଯୁଗ ପ୍ରଭାବକୁ ଅସ୍ୱୀକାର କରିଛନ୍ତି ।

କବି ବା ଲେଖକ ଯେତେ ଆତ୍ମ-କୈନ୍ଦ୍ରିକ ବା ବ୍ୟକ୍ତି ସଚେତନ ହେଲେବି ଯୁଗର ପ୍ରଭାବକୁ ଏଡ଼ି ପାରେ ନାହିଁ । ତାଙ୍କ ଇତିହାସର ସବୁଠାରୁ ବଳ ଦୁର୍ବଳତା ହେଉଛି ଯେ ସେ ଯୁଗର ବଡ଼ ଓ ସାନ କବିଙ୍କ ମଧ୍ୟରେ ପାର୍ଥକ୍ୟ ଦେଖିପାରି ନାହାନ୍ତି । ବଡ଼ ପରି ସାନଙ୍କୁ ମଧ୍ୟ ପ୍ରଶଂସା କରିଛନ୍ତି, ଓ ସାନଙ୍କ ପରି ବଡଙ୍କୁ ମଧ୍ୟ ନିନ୍ଦା କରିଛନ୍ତି । ବାଡ଼ କେଉଁଠି ବାଜିଛି ତ କେଉଁଠି ବାଜିନାହିଁ ।

ଶ୍ରୀ ମାନସିଂହ ଇତିହାସ ଲେଖିବା ବେଳେ ଇତିହାସ ଲେଖା ପ୍ରଣାଳୀ ହିଁ ତାଙ୍କୁ ଅଡ଼ୁଆରେ ପକାଇଛି । ଯୁଗକୁ ନ ଅନାଇ, ଜଣ ଜଣଙ୍କର ଅଲଗା ଅଲଗା ଇତିବୃତ୍ତ ଲେଖି ଇତିହାସ ଠିଆ କରାଇବା ଫଳରେ, କବିମାନେ ଯୁଗରୁ ଅଲଗା ହୋଇଯାଇଛନ୍ତି ଓ ସେ ଜଣେ angry old man ଙ୍କ ପରି ସମସ୍ତଙ୍କର ଜ୍ଞାନ ଓ ଅଧ୍ୟବସାୟକୁ ବିଦ୍ରୂପ କରିବା ଯୋଗୁଁ ସେ ନିଜେ ଇତିହାସ ଲେଖକ ହିସାବରେ ଉପହସିତ ହୋଇଛନ୍ତି । ତେବେ ଇତିହାସକୁ ସାହିତ୍ୟ ଭାବରେ ଲେଖିବାର ଲକ୍ଷ୍ୟ ତାଙ୍କର ବହୁ ଦୃଷ୍ଟିରୁ ସଫଳ ହୋଇଛି ଓ ସେ ସାଧାରଣଙ୍କ ପାଇଁ ଏକ ସୁଖପାଠ୍ୟ ଗ୍ରନ୍ଥ ଲେଖି ପାରିଛନ୍ତି । ସାହିତ୍ୟର ଇତିହାସକାର ଭାବରେ ତାଙ୍କର ସଫଳତା ଏଇଠି ଦେଖିହୁଏ ।



# ମାନସିଂହଙ୍କ ନାଟ୍ୟ ସାହିତ୍ୟ : ଏକ ରସବାଦୀ ଅଧ୍ୟୟନ

କୈଳାସ ପଟ୍ଟନାୟକ

କବି ମାନସିଂହ ଜଣେ ସଫଳ ନାଟ୍ୟକାର । ବିଭିନ୍ନ ଗୀତିନାଟ୍ୟ, କାବ୍ୟ ନାଟିକା, ଗୀତାଭିନୟ ଓ ନାଟକ ପ୍ରଭୃତି ତାଙ୍କର ନାଟ୍ୟ ପ୍ରତିଭାର ପରିଚୟ ଦିଏ । ନାଟକରେ ଜଗତ ଓ ଜୀବନର ବାସ୍ତବ ଓ ସଫଳ ରୂପାୟନରେ ହିଁ ନାଟ୍ୟକାରର ଗୌରବ । ପ୍ଲାଟୋଙ୍କ ମତରେ କଳା ହେଉଛି 'କପି ଅଫ୍ ଏ କପି' (copy of a copy) ଅର୍ଥାତ୍ ଅନୁକୃତିର ଅନୁକୃତି ମାତ୍ର । ଆର୍ଟ ସଂପର୍କରେ ଏ ମନ୍ତବ୍ୟ ଦେଇ ତାର ସ୍ପଷ୍ଟୀକରଣ କରି ସେ କହନ୍ତି—କଳା ସର୍ବଦା ବିଶ୍ୱପ୍ରକୃତିର ଅନୁସରଣ କରେ । ଏଣୁ ଆର୍ଟ ହେଉଛି ଅନୁକୃତିର ଅନୁକୃତି ମାତ୍ର । କଳାର ଲକ୍ଷ୍ୟ ସୁନ୍ଦରକୁ ରୂପଦାନ କରିବା ନୁହେଁ—ସତ୍ୟକୁ ପ୍ରକାଶ କରିବା । ସତ୍ୟର ବ୍ୟାପ୍ତି ସୁନ୍ଦରରେ ସୀମାବଦ୍ଧ ନୁହେଁ, ଅସୁନ୍ଦର ରାଜ୍ୟରେ ମଧ୍ୟ ସତ୍ୟର ପ୍ରବେଶ ରହିଛି । ଏହି କଳାର ଲକ୍ଷ୍ୟଭଳି ନାଟକର ଲକ୍ଷ୍ୟ–ଜୀବନର ସତ୍ୟ ପ୍ରକାଶ । ଜଣେ ସଫଳ ନାଟ୍ୟକାର ଭାବେ ମାନସିଂହ ଏହା ଅନେକତ୍ର କହିଯାଇଛନ୍ତି । ଏହି ସତ୍ୟ ପ୍ରକାଶ ଛଳରେ ଓ କେତେକ ସ୍ଥାନରେ ଅତୀତର ଗୌରବମୟ ଚରିତ୍ର ଓ ଘଟଣା ବିଶେଷକୁ ଭିତ୍ତିକରି ନାଟ୍ୟ-ଚିତ୍ରଣବେଳେ ବହୁବିଧ ରସର ମଧୁର ପ୍ରବାହ ସଂଘଟିତ ହୋଇଛି । ମାନସିଂହଙ୍କ ନାଟ୍ୟାକୃତିର ଅଧ୍ୟୟନରେ ଏସବୁର ସ୍ଥିତି ଅନୁଭବ୍ୟ ।

ନାଟକରେ ରସର ସ୍ଥିତି ସର୍ବଦା ସହଜ ଭାବେ ପ୍ରୟୋଗ ହୋଇ ନଥାଏ । ରସ ଆନ୍ୱେଷଣ ବେଳେ ଅନେକ ଅସୁବିଧା ଓ ବିଶୃଙ୍ଖଳାର ସୃଷ୍ଟିହୁଏ । ବିରୋଧୀ ରସ ସମୂହର ଦୂରୀକରଣ ନାଟ୍ୟକାରର ସଫଳତା ଉପରେ ନିର୍ଭର କରେ । ନଚେତ୍ ନାଟ୍ୟ ରସର ପୂର୍ଣ୍ଣ ବ୍ୟାପ୍ତି ସମ୍ଭବ ନୁହେଁ । ବର୍ତ୍ତମାନର ସାହିତ୍ୟସ୍ରଷ୍ଟା ପ୍ରାଚୀନ ପାରଂପରିକ ଦୃଷ୍ଟିକୋଣର ସ୍ରଷ୍ଟା ନୁହେଁ । ଆଧୁନିକ ସ୍ରଷ୍ଟା ବ୍ୟକ୍ତି ବୈଚିତ୍ର୍ୟ ଓ ବାସ୍ତବବାଦର ପୃଷ୍ଠଭୂମିରେ ସୃଷ୍ଟିକ୍ରିୟା ସମ୍ପନ୍ନ କରେ । ନାଟକ ପ୍ରଦର୍ଶିତ ହୁଏ ଅଭିନୟ ଦ୍ୱାରା । ଦର୍ଶକ ସମୂହଭାବେ ନାଟ୍ୟରସ ଉପଭୋଗ କରେ । ରସ ସମୂହର

ସାର୍ଥକ ବିନ୍ୟାସରେ ନାଟ୍ୟ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଚରିତ୍ରର ସାର୍ଥକ ପ୍ରକାଶ ଘଟେ । ନାଟକର ମୂଳ ଲକ୍ଷ୍ୟ ଏଦ୍ୱାରା ପୂର୍ଣ୍ଣ ହୁଏ । ନାଟକର ରସ-ନିରୂପଣ ସେ ଦୃଷ୍ଟିରୁ ଚରିତ୍ର ଓ ଘଟଣା ଭିତ୍ତିକ । ଭାବବୋଧରୁ ଯେପରି କାବ୍ୟ କବିତାର ସୌନ୍ଦର୍ଯ୍ୟ ଜଣାପଡ଼େ, ଘଟଣା ଓ ଚରିତ୍ରରୁ ସେପରି ନାଟକର ରସଧାରାର ସ୍ୱରୂପ ନିର୍ଣ୍ଣିତ ହୁଏ ।

**ରାଜକବି ଉପେନ୍ଦ୍ର**

ସୀମିତ ପରିବେଶ ଭିତରେ ରାଜସିଂହାସନ ପାଇଁ ଜଘନ୍ୟ ମାନସିକତା ସହ ବାଣୀ ଆରାଧନାର ଶାନ୍ତ, ପବିତ୍ର ପରିବେଶ ଭିତରେ ଏ ଗୀତିନାଟ୍ୟର ସଂଯୋଜନା । ଉପେନ୍ଦ୍ରଙ୍କ ସ୍ୱରୂପ ଏଠି ସମ୍ପୂର୍ଣ୍ଣ ଭିନ୍ନ । ସେ ରାଜପୁତ୍ର ଉପେନ୍ଦ୍ର, ନୁହନ୍ତି ରାଜକବି ଉପେନ୍ଦ୍ର । କବିର ସ୍ୱଭାବକ ସ୍ୱପ୍ନ ପ୍ରବଣ ମନନେଇ ସେ ମାନସିଂହଙ୍କ ଦ୍ୱାରା ଚର୍ଚ୍ଚିତ । ହାସ୍ୟ ମୁଖର ତାର ସୁଯୋଗ କ୍ଷଣକେ ପାଇଁ ଦେଖା ଦେଇଛି ତୃତୀୟ ଦୃଶ୍ୟରେ । ରାଧୁର ତା ଅବଧାନ ସମ୍ପର୍କୀୟ ସଂଳାପ ହାସ୍ୟକର । ସେ ତା ଅବଧାନଙ୍କ କଥାକୁ ଉଦ୍ଧୃତ କରି କୁହେ—"ଆଉ ମଧ୍ୟ କୁହନ୍ତି, ତାଙ୍କ ଆପଣଙ୍କ ବେତ ଦେବତାଠାରୁ ସେ ବହୁତ ଋଣ କରିଥିଲେ । ଆଉ ଋଣ ନ କରି ଆପଣଙ୍କୁ ଶୁଝିଦେବାର ଇଚ୍ଛାଟା ତାଙ୍କର ନ ଥିଲା । କିନ୍ତୁ ଇତିମଧ୍ୟରେ ବୁଢ଼ା ଅପଣଙ୍କର କାଳ ହୋଇଗଲା । ସେ ଋଣ ପୁଣି ଶୁଝିବେତ ? ତେଣୁ ଗୁରୁ ଦେଇଥିବା ସମ୍ପତ୍ତିଟାକୁ ଆମରି ମଧ୍ୟରେ ବାଣ୍ଟିଦେଇ ସେ ଋଣରୁ ରକ୍ଷା ପାଇବେ ବୋଲି ତାଙ୍କର ବିଶ୍ୱାସ ।" ବିଦ୍ୟାର୍ଥୀର ଗୁରୁଙ୍କ ପ୍ରତି ଚଟୁଳ ବ୍ୟଙ୍ଗ ବେଶ୍ ଉପଭୋଗ୍ୟ ।

ସାମନ୍ତ ବିଶୋଇଙ୍କର ସେଇ ତୃତୀୟ ଦୃଶ୍ୟରେ ରାଜସିଂହାସନର ଉତ୍ତରାଧିକାରିଙ୍କୁ ନେଇ ଉକ୍ତି ଝଗଡ଼ାବାତ୍ମକ । ନାଟକର ରସ ଚରିତ୍ର ଉପରେ ନିର୍ଭରଶୀଳ । ଚରିତ୍ରର ପରିଚୟ ମିଳେ ତାର ସଂଳାପ ମାଧ୍ୟମରେ । ବିଶୋଇ ଓ ସାମନ୍ତଙ୍କ ହାବଭାବାପନ୍ନ ସଂଳାପ ନାଟକରେ ହାସ୍ୟସମ୍ଭାବନାର ଅବକାଶ ଆଣେ । ବିଶୋଇ—ଖଣ୍ଡାର ଦାବୀହିଁ ପ୍ରକୃତ ଦାବୀ ।

ସାମନ୍ତ— କ୍ଷତ୍ରୀୟ ନିକଟରେ ବସ୍ତ୍ର ବା ରକ୍ତର ମୂଲ୍ୟ କିଛି ନୁହେଁ । —ଏ ସଂଳାପରୁ ସାମନ୍ତ ଓ ବିଶୋଇଙ୍କ ସିଂହାସନ ଲାଭର ପ୍ରଚଣ୍ଡ ଆଗ୍ରହ ଅନସ୍ୱୀକାର୍ଯ୍ୟ । ସଂଳାପର ଧାରେ ଧାରେ ସେମାନେ ସୃଷ୍ଟି କରିଛନ୍ତି ବୀରତ୍ୱର ଅସ୍ତ୍ର ଝନତ୍କାର ।

ଚତୁର୍ଥ ଦୃଶ୍ୟରେ ରାଜ ଲକ୍ଷ୍ମୀକୁ ଉପେନ୍ଦ୍ର ଯେଉଁ ସଂଳାପ କୁହନ୍ତି ତାହା ଉଦ୍ଧାନକରସର ଭାବବୋଧ ସୃଷ୍ଟି କରେ । ରାଜଲକ୍ଷ୍ମୀଙ୍କ ସ୍ୱରୂପ ଏଥିରେ ସ୍ପଷ୍ଟ ।

ରାଜଲକ୍ଷ୍ମୀ ଯେତେବେଳେ ଉପେନ୍ଦ୍ରଙ୍କୁ ରାଜ୍ୟ ଗ୍ରହଣର ଲୋଭ ଦେଖାନ୍ତି ସେତେବେଳେ ତାଙ୍କ ସ୍ପଷ୍ଟ ଉକ୍ତି—"ତୁମର ପ୍ରାସାଦ ଖୁବ୍ ଉଜ୍ଜଳ ଖୁବ୍ ବର୍ଣ୍ଣନା ? ତାର ଗୃହପାଖେ ନର ରକ୍ତର ସୁଗନ୍ଧିର ପରଖା—ତାର ପ୍ରାଚୀର ଖଡ୍ଗ-ବର୍ଚ୍ଛାରେ ରଚିତ-ତାର ନିଶାଣରେ ଛିନ୍ନ ନରମୁଣ୍ଡର ଛବି ଆଙ୍କିତ ରହିଛି । ତାର ଅଙ୍ଗନରେ କବନ୍ଧର ମରଣ ନୃତ୍ୟ ଅନବରତ ଲାଗିରହିଛି । ସେଠାରେ ସଙ୍ଗୀତର ପ୍ରତି ମୂର୍ଚ୍ଛନାରେ ବିନାଶର କଠୋର ରାଗିଣୀ ଫୁଟିଉଠୁଥାଏ ।" ଉପେନ୍ଦ୍ରଙ୍କ ଏ ଉକ୍ତି ନାଟ୍ୟ-ପରିବେଶକୁ ବେଶ୍ ଉପଯୁକ୍ତ ମୁଖର କରିପାରିଚି । ସଂକ୍ଷିପ୍ତ ପରିବେଶ ମଧ୍ୟରେ ରସର ଚର୍ବଣ ଖୁବ୍ ସଫଳ ।

## ପୁଷ୍ପିତା :

ଘନଘଟା ଶୂନ୍ୟ କଥା ବସ୍ତୁକୁ ନେଇ ପୁଷ୍ପିତାର ସୃଷ୍ଟି । ସରଳ କଣୋରାର ଛନଛନ ମନର ବିଚିତ୍ର ଭାବଚେତନାରେ ପୁଷ୍ପିତା ପୁଷ୍କଳ । ସମଗ୍ର ନାଟିକାଟି ଶୃଙ୍ଗାର ଭାବନାରେ ବର୍ଣ୍ଣିତ । କଣୋରାମାନଙ୍କର ଯେଉଁ ଚର୍ବଣ, ପ୍ରେମ ଜନ ମୁହଁର ସଂଳାପ, କ୍ରିୟାକଳାପ ଏସବୁଥିରେ ସତେ ଯେମିତି ଏକ ଅଦୃଶ୍ୟ ମାଧୁର୍ଯ୍ୟର ପୁଲକ ବିଜଡ଼ିତ । ଦ୍ୱିତୀୟ ଦୃଶ୍ୟରେ କଣୋରାର ସୁପ୍ତ ଅବସ୍ଥାରେ ବସନ୍ତ, ମଳୟ, ପରିମଳ, କାମ ଦେବ ଆଦିଙ୍କ ଆଗମନ ଘଟିଚି । କାମଦେବଙ୍କ ସଂଳାପ ଶୃଙ୍ଗାରିକ—

"ବୃକ୍ଷକୁ ଲତାରେ
ଚରଣକୁ ମଥାରେ
ଭଅଁରକୁ କୁସୁମର ପତାରେ
ମିଳାଇ ମୁଁ ଧରାରେ
ଆଶ୍ଳେଷ-କାରାରେ
ବନ୍ଧାଇଛି ସୃଷ୍ଟିର ବ୍ୟଥାରେ ।"

ଶୃଙ୍ଗାରିକ ପରିବେଶ ମଧ୍ୟରେ ହାସ୍ୟ ଏକ ଆବଶ୍ୟକୀୟ ଉପାଦାନ । ହାସ୍ୟ ମଧୁର ପରିବେଶ ଭିତରେ ରତିଭାବର ବିସ୍ତାରଣ ସହଜ ସାଧ୍ୟ । ନାଟ୍ୟକାର ମାନସିଂହଙ୍କ ସଫଳ ରୂପାୟନରେ ପୁଷ୍ପିତାର ଅନେକଗୁଡ଼ିଏ ବିବିଧ ଲୋକୋକ୍ତିର ପ୍ରୟୋଗ ଛଳରେ ହାସ୍ୟରସର ପ୍ରବାହ ସହଜସାଧ୍ୟ ହୋଇଚି । ଲୋକସାହିତ୍ୟର ପ୍ରତି ପଦକ୍ଷେପରେ ହାସ୍ୟର ଅଫୁରନ୍ତ ଧାରା ପ୍ରବାହିତ । ଢଗ ଢମାଳି, ହାସ୍ୟ ବ୍ୟଙ୍ଗରୁ ସମ୍ଭୂତ । ତୃତୀୟ ଦୃଶ୍ୟରେ କଣୋରା, ସରଳା, ହେମା ଆଦିଙ୍କ କଥୋପ-କଥନ ମଧ୍ୟରେ ଢଗ ଆଦିର ପ୍ରୟୋଗରେ ହାସ୍ୟ ସଞ୍ଚରିତ । ହେମାହିଁ ହାସ୍ୟରସର ପ୍ରାଣ-ବୀଜ । ସେଇ ଚରିତ୍ରର ପରିଧି ଭିତରୁ ହାସ୍ୟରସର ବହୁଳ ପ୍ରୟୋଗ ସାଧିତ ।

**ପୂଜାରଣୀ :**

କମୃଦନ୍ତୀ ଆଧାରିତ ଏ କାବ୍ୟ ନାଟିକାରେ ଭକ୍ତର ଅପୂର୍ବ ଭାବନା ସହିତ ଘଟିଚି ବାତ୍ସଲ୍ୟର ମଧୁର ସମନ୍ୱୟ । ଲକ୍ଷ୍ମୀର ଦେବତାଙ୍କସହ ପ୍ରଣୟ ଅନେକାଂଶ ବିପ୍ରଲମ୍ଭରେ ଗୌରବାବହ । ଏ କାବ୍ୟ ନାଟିକା ହିଁ ମାନସିଂହଙ୍କ ମନ ଭୂମିରେ ଥିବା ଲକ୍ଷ୍ମୀପ୍ରତି ମହାନୁଭୂତି ପ୍ରବଣତାର ଉଦଘୋଷକ । ଏଇ ଆନ୍ତରିକତା ଲକ୍ଷ୍ମୀର ଚରିତ୍ରକୁ ବହୁଭାବେ ସୁନ୍ଦର କରି ଗଢ଼ି ତୋଳିଚି । ଲକ୍ଷ୍ମୀ ହିଁ ହେଉଛି ସମଗ୍ର କାବ୍ୟ ନାଟିକାର ଏଭଳି ଏକ ଚରିତ୍ର ଏଭଳି ପ୍ରାଣବିନ୍ଦୁ, ଯାଙ୍କୁ କେନ୍ଦ୍ର କରି ସମସ୍ତ ରସ-ପରିଧିର ସୃଷ୍ଟି ।

ପ୍ରଥମ ଦୃଶ୍ୟରେ ଦେବତା ଓ ଲକ୍ଷ୍ମୀଙ୍କ କଥୋପକଥନ ପ୍ରାୟ ଦୁଇଟି ପ୍ରଣୟ ପିପାସୁ ମନର ବିକଳ ଆବେଦନରେ ରସଘନ । ଦେବତା ଓ ଲକ୍ଷ୍ମୀର ଚିତ୍ରଣରେ ଶୃଙ୍ଗାରିକ ଚେତନା, ସେମାନଙ୍କ କ୍ରିୟାକଳାପ, ମିଳନ, ବିଚ୍ଛେଦ ଏ ସବୁଥିରେ ଦୀର୍ଘ ଏକ ପ୍ରଣୟସୂତ୍ର ବହୁବର୍ଣ୍ଣ ଭାବରେ ସମୁଜ୍ଜ୍ୱଳ ହୋଇ ଦୃଷ୍ଟି ଆକର୍ଷଣ କରେ । ପ୍ରଥମ ଦୃଶ୍ୟରେ ଦେବତାଙ୍କ ଉକ୍ତି ।

"...ଶାଖେ ଶାଖେ ଫୁଟେ
ଅଗଣ୍ୟ କୁସୁମ କମ୍ପା ? କା ଲଗି ଚନ୍ଦ୍ରିକା ?
କାହାଲାଗି ମଧୁଗନ୍ଧି, ହେ ଅଭି ସାରିକା,
କେଉଁ ଲଭେ ଗୃହୁ ଆସି ଗୃହେ ହିବ ଫେରି ?"

ତାଙ୍କର ପ୍ରଣୟର ସଘନ ପ୍ରଣୟୀ ମାନସର ପ୍ରକାଶକ । ଦେବତା ଚରିତ୍ର ଚିତ୍ରଣରେ ମାନସିଂହ ସବୁବେଳେ ଏହାହିଁ ଦେଖାଇ ଆସିଛନ୍ତି । ପ୍ରଣୟୀ ମାନସକୁ ଜିଣିବା ପାଇଁ ଦେବତାଙ୍କ ଗୃହନୃତ୍ୟ, ବଂଶୀସ୍ୱନ, ମଧୁର ଆଳାପ, ଏସବୁ ହିଁ ଅସ୍ତ୍ର । ଲକ୍ଷ୍ମୀ ଏ ଅସ୍ତ୍ରରେ ସହଜଭାବେ ବିଦ୍ଧ ହୋଇଯାଇଚି । ତୃତୀୟଦୃଶ୍ୟ ବିପ୍ରଲମ୍ଭର ମଧୁରତାରେ ସ୍ୱାଦ୍ୟ । ଅଭିମାନୀ ଲକ୍ଷ୍ମୀ ପ୍ରତି ଏ ଦୃଶ୍ୟରେ ତାଙ୍କର ଭକ୍ତି ବିପ୍ରଲମ୍ଭର ପ୍ରତୀକ । ରାଗ, ଅନୁରାଗ ମାନ, ଅଭିମାନ ଏସବୁକୁ ନେଇ ଦେବତା ଓ ଲକ୍ଷ୍ମୀର ଲୀଳାଖେଳା ବେଶ୍ ମଧୁର—ମୁଗ୍ଧକର ।

ଦ୍ୱିତୀୟ ଦୃଶ୍ୟରେ ବେଳେଶ୍ୱର ମହାପାତ୍ର ଓ ପତ୍ନୀଙ୍କ ବାର୍ତ୍ତାଳାପର କେନ୍ଦ୍ର ହେଉଛି ଲକ୍ଷ୍ମୀ । ଲକ୍ଷ୍ମୀକୁ କେନ୍ଦ୍ର କରି ସୃଷ୍ଟି ହୋଇଚି ବାତ୍ସଲ୍ୟ ଧାରା । ସ୍ନେହ, ମମତାର ମଧୁର ଝଙ୍କାରରେ ଅନୁରଣିତ ହୋଇଛି ଏ ଦୃଶ୍ୟର ପୃଷ୍ଠା । ଲକ୍ଷ୍ମୀପ୍ରତି ତା ମା'ର ଅନ୍ଧ ଆପତ୍ୟ ସ୍ନେହର ଚରମ ପ୍ରକାଶ—

"...ଫଖାଲି ବିନାତ
କ୍ଷଣକେ ଅନ୍ଧାର ମତେ ହଣଇ ସଂସାର
ଗଲେ ଦୂରି, ଶୂନ୍ୟଗୃହେ କରି ହାହାକାର

କା ମୁଖ ଅନାଇ ପ୍ରାଣ ବୋଧିବ କହିତ ?
ପୁରହିବ ଖାଲି । ମୋର ସ୍ୱପ୍ନପରବତ
ଯିବ ଗୁଳି । ଶୂନ୍ୟପୁରେ ବଞ୍ଚିବ କେମନେ ?"

ଏ ବିକଳ ଉକ୍ତି ବାସ୍ତବ ଜୀବନର ସତ୍ୟ ପ୍ରକାଶକ । ଏ ସତ୍ୟ ନାଟ୍ୟ-ସଫଳତାର ଅନ୍ୟତମ ସୋପାନ । ପଞ୍ଚମ ଦୃଶ୍ୟରେ ମହାପାତ୍ରଙ୍କ ବାତ୍ସଲ୍ୟ ରସବୋଳା ସଂଳାପ ଜୀବନ୍ତ । ଲକ୍ଷ୍ମୀର ରୋଗ ଶଯ୍ୟାରେ ତା ମୁହଁରେ ନାନା ସଂଳାପ ଭିତରେ ମା'ର ଉତ୍ତର ସମଗ୍ର ଦୃଶ୍ୟକୁ ବାତ୍ସଲ୍ୟ ଭରା କରିଦେଇଛି । ଚତୁର୍ଥ ଦୃଶ୍ୟରେ ସୁନାରଣୀ ଓ ପୂଜକ ସ୍ତ୍ରୀଙ୍କ ମଧ୍ୟରେ ଲକ୍ଷ୍ମୀ ସମ୍ପର୍କରେ ଗଢ଼ି ଉଠିଥିବା ଅପପ୍ରଶ୍ନର ସମ୍ପର୍କୀୟ ବାର୍ତ୍ତାଳାପରେ ସୁନାରଣୀଙ୍କ ନିବିଡ଼ ମମତାସିକ୍ତ ସଂଳାପ ବାତ୍ସଲ୍ୟ ଭାବବୋଧର ଦ୍ୟୋତକ ।

ପ୍ରଥମ ଦୃଶ୍ୟରେ ବେଲେଶ୍ୱର ନିଜ ସ୍ତ୍ରୀକୁ କହୁଛନ୍ତି—"...ନାଗ୍ନି ଜନ୍ମହେଲେ/ଚୂଲୀଧୂଆଁ ସଙ୍ଗେ ବୁଲି ଉଡ଼ିଯାଏ ହେଲେ ।" ଏହା ବିମଳ ହାସ୍ୟ ସୃଷ୍ଟି କରେ । ହାସ୍ୟରସ ସାଧାରଣତଃ କରୁଣର ବିରୋଧୀରସ । ମାତ୍ର ଆଲୋଚ୍ୟ କାବ୍ୟ ନାଟିକାରେ ଏଇ ଗୋଟିଏ ସଂଳାପ ବ୍ୟତୀତ ହାସ୍ୟର ସ୍ଥାୟୀପାତ ସୁଦ୍ଧା ଅନ୍ୟ କେଉଁଠି ଘଟିନଥିବାରୁ ଏଠାରେ ଏହା ବିରୋଧୀ ରସ ନୁହେଁ । ଅଧିକନ୍ତୁ ଶୃଙ୍ଗାର ଚେତନାର ଏହା ଏକ ସହାୟକ ରସରୂପେ ସ୍ଫୁଟିତ । ବେଲେଶ୍ୱରଙ୍କ ରସିକ ପ୍ରାଣର ପରିଚୟକ ।

**ନଷ୍ଟନୀଡ଼ :**

ପୃଷ୍ଟି, ମାଧବୀ ଓ କିଶୋର ଏଇ ତ୍ରିଭୁଜ ମଧ୍ୟରେ ଯେଉଁ କାହାଣୀର ରୂପାୟନ ତାର ଉପସଂହାର ହୁଏ, ମାଧବୀର ଆତ୍ମହତ୍ୟାପରେ । 'ନଷ୍ଟନୀଡ଼'ର ପରିକଳ୍ପନା, ନାମକରଣ, ଚୟନ ସବୁଥିରେ ଯେମିତି କାରୁଣ୍ୟର ଗଭୀର ସ୍ପର୍ଶ । ମାନସିଂହ ଏହାର ସମର୍ଥକ । 'ନବ ସଂସ୍କରଣରେ କେଞ୍ଚିତ ବକ୍ତବ୍ୟ' ଶୀର୍ଷକରେ ନାଟକ ପୂର୍ବରୁ ସେ ଲେଖିଛନ୍ତି-"ଆମ ଆଳଙ୍କାରିକମାନଙ୍କୁ ମୁଁ ଗୋଟିଏ କଥାରେ ମାନିନି । ସେମାନେ ଦୁଃଖାନ୍ତ ନାଟକ ମଞ୍ଚସ୍ଥ ହେବା ବିରୁଦ୍ଧରେ ମତଦେଇ ଯାଇଛନ୍ତି । କିନ୍ତୁ ସେକସପିଅର ଓ ଇବ୍‌ସନଙ୍କ ନାଟକ ବଳୀରେ ଟ୍ରାଜେଡ଼ିର ଶ୍ରୀମକାନ୍ତ ମହିମା ଅନୁଭବ କଲାପରେ ଦୁଃଖର, ପତନର, ଅନୁତାପର, ଯେ ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ ଅଛି, ତାହା ଆଉ ଲୁଚାଇବାକୁ ପଡ଼ିଲା ନାହିଁ । ତେଣୁ ମୋର ଏହି ସାମାଜିକ ନାଟକଟିକୁ ମୁଁ ଟାଜେଡ଼ିରେହିଁ ଜାଣି ଜାଣି ଶେଷ କରିଥିଲି । ବୋଧହୁଏ ଏହା ଓଡ଼ିଆରେ ପ୍ରଥମ ଟ୍ରାଜେଡ଼ି ।"

ସ୍ୱୀକାରୋକ୍ତି ନଷ୍ଟନୀଡ଼ର ସୌନ୍ଦର୍ଯ୍ୟ ପ୍ରାଣତାର ମୂଳସୂତ୍ରକୁ ଜାଣାଇଦିଏ । କରୁଣରସର ଧାରାଏ ହ୍ରୀଜୋଡ଼ିକୁ ଗଭୀର ଓ ସ୍ପର୍ଶ ମୁଖର କରିଛି । ମାଧବୀର ବିବାହ ପରେ ପୂର୍ଣ୍ଣିର ପ୍ରଣୟୀ ମାନସର ଯେଉଁ ପତନ ତା ପୂର୍ଣ୍ଣିର ସଂଳାପରେ ରୂପ ପାଇଛି । .ସେ ସଂଳାପରେ ତା ମନର କାରୁଣ୍ୟ ପ୍ରକାଶିତ । କରୁଣରସ ସିକ୍ତ ଏ ସଂଳାପରେ ପୂର୍ଣ୍ଣିର ଦୁଃଖବୋଧୀ ଚିତ୍ତ ସୁସ୍ପଷ୍ଟ । ଚତୁର୍ଥ ଅଙ୍କରେ ପୂର୍ଣ୍ଣି କୁମୁଦକୁ କହିଛି "...ମୁଁ ବଞ୍ଚିବି କାହିଁକି ? ସ୍ତବକ ନ ହେଉଣୁ ମୁଁ ହଠାତ୍ ଜରାଗ୍ରସ୍ତ ହୋଇ ପଡ଼ିଛି । ଭାଗ୍ୟ ପ୍ରତିକୂଳ ହୋଇ ମୋର ସମସ୍ତ ଗର୍ବ ଅହଂକାର ଚୂର୍ଣ୍ଣ କରିଛି । କା'ଲାଗି ବଞ୍ଚିବି ? କାହିଁକି ? ଖାଲି ବଞ୍ଚି ରହିବାରେ କଣ ଏତେ ସୁଖ ?" ପଞ୍ଚମ ଅଙ୍କର ଦ୍ୱିତୀୟ ଦୃଶ୍ୟରେ ଏ ଅନ୍ତର୍ବେଦନା ସୁସ୍ପଷ୍ଟ । କରୁଣରସ ବ୍ୟଞ୍ଜନାକୁ ଅଧିକ ମର୍ମସ୍ପର୍ଶୀ କରିପାରିଛି । ପୂର୍ଣ୍ଣିର ସଂଳାପ ସବୁରେ ଗଭୀର ବ୍ୟଥାର ବିବର୍ଣ୍ଣି ଆଭା । ମାଧବୀର ମୃତ୍ୟୁରେ ପିତା ମଧୁବାବୁ ଗଭୀର ଦୁଃଖରେ ମୁହ୍ୟମାନ । ଅତୃପ୍ତ ବାତ୍ସଲ୍ୟର ଏ ବିକଳ ପରିଣତିରେ ତାଙ୍କର ସକଳ ମାନସିକ ଅବସ୍ଥାର ବିପର୍ଯ୍ୟୟ ଘଟିଛି । ତାଙ୍କର ଶେଷ ସଂଳାପ ସବୁରେ କାରୁଣ୍ୟବୋଧର ସ୍ପର୍ଶ ଅଧିକ । ପୂର୍ଣ୍ଣିକୁ ସେ କୁହନ୍ତି—"ମୋର କନ୍ତୁ ମନେ ହେଉନି ଯେ ବାତ୍ସାଣୀ ମୋର ଚାଲିଗଲା । ମନେ ହେଉଛି ଯେ ଫେରି ଆସିବ । ବାପା ବାପା ଡାକି ଏ ଦଗ୍‌ଧ ପ୍ରାଣକୁ ଶୀତଳ କରିବ । ଭାଇ ଭଉଣୀଙ୍କୁ ସ୍ନେହ କରିବ—ଏ ଘରକୁ ଆଲୁଅ କରିବ × × ବାପା, ବୋଉ ଗ୍ରୁଡରେ ଛୁଆମାନ କୁଆଡ଼େ ଗଲୁମା' ମୋର ।" ନାଟକର ଶେଷ ସଂଳାପରେ ମଧୁବାବୁଙ୍କ ବ୍ୟଥାତୁର ହୃଦୟର ପ୍ରକୃତ ଅଙ୍କନ ସମ୍ଭବପର ହୋଇଛି । ସମଗ୍ର ନାଟକରେ ଏଭଳି ଦୁଃଖ ଦାୟକ ପରିବେଶ ସୃଷ୍ଟି ଲେଖକଙ୍କ ଇଚ୍ଛାକୃତ । କାରଣ, ଏଠି ଆଲଂକାରିକମାନଙ୍କ ଦୃଢ଼ ଧାରଣା ପ୍ରତି ଏ ଥିଲା ଏକ ଚ୍ୟାଲେଂଜ୍ ।

ଭୟାନକ ଓ କରୁଣରସର ବିରୋଧୀରସ ରୂପେ ହାସ୍ୟରସକୁ ପଣ୍ଡିତ-ମାନେ ସ୍ୱୀକୃଇଛନ୍ତି । ଆଲୋଚ୍ୟ ନାଟକରେ କରୁଣ ସହିତ ହାସ୍ୟର ଘଟିତ ସହାବସ୍ଥାନ । ବିରୋଧୀ ରସର ସ୍ଥିତିରେ ନାଟ୍ୟ ସାଫଲ୍ୟ ବାଧାପ୍ରାପ୍ତ ହୋଇଥାଏ । ଏ ନାଟକରେ ତାର ବିଶ୍ଳେଷଣ କଲେ ଜଣାଯାଏ ଏ ଦୁଇରସ ନିଜର ଅଲଗା ଅଲଗା ପୃଥିବୀରେ ସ୍ଥିର । କେହି କାହାରିକୁ ପ୍ରଭାବିତ କରିବାର ସୁଯୋଗ ପାଇ ନାହାନ୍ତି । ପ୍ରଥମାବସ୍ଥାରେ ନାଟକରେ ହାସ୍ୟର କଲ୍ଲୋଳ ସୃଷ୍ଟି ହୋଇଛି । ଦ୍ୱିତୀୟ ପର୍ଯ୍ୟାୟରେ ସମଗ୍ର ନାଟକ ଅସମ୍ଭବ ଭାବେ ହୋଇଯାଇଛି କରୁଣ । ହାସ୍ୟର ପ୍ରଭାବ ଯଦିଓ କରୁଣ ଦ୍ୱାରା ଅବଦମିତ ତଥାପି ହାସ୍ୟରସର ଏ ନାଟକରେ ସ୍ଥାନ ବିଶିଷ୍ଟ ଓ ସ୍ୱତନ୍ତ୍ର । ପ୍ରଥମ ଅଙ୍କର ପ୍ରଥମ ଦୃଶ୍ୟରେ ମଧୁବାବୁଙ୍କ ଚରିତ୍ରର ଲଘୁହିଗତି ହାସ୍ୟ ମୁଖର ସଂଳାପ ଦ୍ୱାରା ସଙ୍କେତିତ । ସ୍ତ୍ରୀଙ୍କୁ ସେ କୁହନ୍ତି—"ମଲ, ଯାହାକୁ ପ୍ରଶଂସା କରିଯାଏ, ତାକୁ କଅଣ ଖାଲି ବିବାହ କରିଯାଏ ? ତମେ ସେଦିନ ସଜନୀ ଗଉଡ଼

ଭଲ ଦୁଧ ଦେଉଚ ବୋଲି ଘର ତାରଫ କରୁଥିଲ । ତାକୁ ତମେ ବଶ ହେବ ନା କଅଣ ?" ଦ୍ୱିତୀୟ ଅଙ୍କରେ ଗୁମାସ୍ତା ଓ ପୁରୋହିତଙ୍କ କଥାବାର୍ତ୍ତାରେ ନିଜ ସଳାପ ଦ୍ୱାରା ପୁରୋହିତ ନିଜେ ହାସ୍ୟାସ୍ପଦ । ତୃତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ମଧୁବାବୁଙ୍କ ଶ୍ୱଶୁର କୃଷ୍ଣ ମୋହନ ଦାସ ଓ ନାତି କୃଷ୍ଣର ବାର୍ତ୍ତାଳାପ ମାତ୍ର ସ୍ୱଳ୍ପେକ୍ତି ସଳାପରେ ସକେନ୍ଦ୍ରିତ । ତଥାପି ସେଠି ପାରଂପରିକ ଅଜାନାତିର ହାସ ପରିହାସ ସ୍ଥାନିତ । ଚତୁର୍ଥ ଅଙ୍କ ପ୍ରଥମ ଦୃଶ୍ୟରେ ସ୍ତ୍ରୀତି ଫେଲ ହେବାର ସବାଦ ଶୁଣିବାପରେ ତାର ପ୍ରତିକ୍ରିୟା ଓ କାର୍ଯ୍ୟଧାରା ହାସ୍ୟକର । ତାର ସ୍ୱଗତ—"ସବୁ ସ୍ୱେରଯାକ କେଦାରଶ୍ୱରଠି ଭେଟ । ଯାହା ହେଉ ଫେଲ ହୋଇଚ ବୋଲି ମନଟା କମିତି କମିତି ହେଉଥିଲା—ମୁହଁ ଦେଖେଇ ହେଉନଥିଲା । ଏବେ ଆମ ଫେଲ ସାଙ୍ଗ ଗୋଟେ ଯୋଡ଼େ ଦେଖିବାରୁ ମନଟା ପୁଣି ଫୂର୍ତ୍ତି ହେଲାଣି ଟିକଏ ।"

ଏ ହାସ୍ୟରସର ସ୍ରଷ୍ଟାମାନେ ମୋଟେ ମୁଖ୍ୟଚରିତ୍ର ନୁହନ୍ତି । ଯିଏବା ମୁଖ୍ୟ (ମଧୁବାବୁ) ତାଙ୍କ ହାସ୍ୟ ପ୍ରବଣତା ସେଇ ଗୋଟିଏ ଉକ୍ତିରେ ସୀମିତ । ପୂର୍ଣ୍ଣ ବା ମାଧବୀ ହାସ୍ୟକର ସଳାପ କହିନାହାନ୍ତି । ଫଳରେ ନାଟକୀୟ ସୌନ୍ଦର୍ଯ୍ୟର କ୍ଷତି ଘଟିନି । 'ନଷ୍ଟନୀଡ଼'ରେ କରୁଣ, ହାସ୍ୟର ପରସ୍ପର ବିରୋଧୀ ପ୍ରଭାବ ସତ୍ତ୍ୱେ ନାଟ୍ୟକାରଙ୍କ ପ୍ରୟୋଗ-ଗତ କୌଶଳ ଯୋଗୁଁ ନାଟକର ଚରିତ୍ର ଓ ଘଟଣା ବେଶ୍ ସାର୍ଥକ ଭାବେ ରୂପାୟିତ ।

**ବାରବାଟୀ :**

ବୀର ଉତ୍କଳୀୟର ଗର୍ବ ଗୌରବର ବୀର ଗାଥା ଗାଇ ବାରବାଟୀ ନାଟକର ପ୍ରତିଟି ଶବ୍ଦ ବୀର ରସୋପ୍ଲୁତ । ପୂର୍ଣ୍ଣ ରୂପେ ଏହା ଏକ ବୀର ରସାତ୍ମକ ନାଟକ । ଅନଙ୍ଗଭୀମ ଦେବଙ୍କ ପୁତ୍ର ନରସିଂହ ଦେବଙ୍କ ବୀରତ୍ୱ, ସୁଚତୁର ରଣନୀତି, ସୁଦକ୍ଷ ଯୁଦ୍ଧ-ଚାଳନାରେ ପରିପୂର୍ଣ୍ଣ ଏ ନାଟକ 'ବାରବାଟୀ' ଓଡ଼ିଶାର ଅତୀତ ଐତିହ୍ୟର ଏକ ଚିତ୍ରପଟ । ହାସ୍ୟର ଧାରା ମଧ୍ୟ ଏଥିରୁ ନିସୃତ ।

ଏକ ଐତିହାସିକ ନାଟକ ଭାବେ ବାରବାଟୀର ଭୂମିକା ଯା'ହେଉନା କାହିଁକି ବୀରରସାଶ୍ରିତ ନାଟକ ଭାବେ ଏହାର ଅବଦାନ ଅନନ୍ୟ । ପ୍ରଥମ ଅଙ୍କର ଚତୁର୍ଥ ଦୃଶ୍ୟରେ ବାରବାଟୀର ସଭାଗୃହ, ଅନଙ୍ଗଭୀମ ଦେବ ଓ ଆଗନ୍ତୁକ ରାଜାମାନଙ୍କ ଉକ୍ତିରେ ବୀରରସର ପ୍ରବାହ ଲକ୍ଷିତ । ହରିପୁର ରାଜାଙ୍କ ଉକ୍ତି—

"ଜାଣିଥାନ୍ତୁ ମହାରାଜା, ଯବନ-ଉରଗ
ଭକ୍ଷିବାକୁ ଉତ୍କଣ୍ଠ ମୋ ସହସ୍ର ମୟୂର
ଭଞ୍ଜରାଜା ଥାଉଁ ଥାଉଁ ଉତ୍କଳ ସୀମାନ୍ତେ
କଏସେ କରବ ସ୍ପର୍ଦ୍ଧା ଗରବ-ଭଞ୍ଜନ ।"

ଦ୍ୱିତୀୟ ଅଙ୍କର ଚତୁର୍ଥ ଦୃଶ୍ୟରେ ବକ୍ତିଆର ଖିଲିଜିଙ୍କ ମୁସଲମାନମାନଙ୍କ ସମ୍ପର୍କରେ ଯାହା କହୁଚ ତା ମୁସଲମାନ-ବୀରଙ୍କ ପ୍ରଶଂସାବାଣୀ । ଏଠି ବୀରରସର ସଂଗ୍ରହରେ ନାଟ୍ୟ-ସୌନ୍ଦର୍ଯ୍ୟ ବହୁଗୁଣିତ । ସିରାଜ—"ମୁସଲମାନ କାହାକୁ ଦୁର୍ଜ୍ଜେୟ ମନେକରେନା, ଖୋଦାବନ୍ଦ । ତା' ହୋଇଥିଲେ ଅଲମ୍ବ୍ରାଠାରୁ ଆସାମ ପର୍ଯ୍ୟନ୍ତ ସମଗ୍ର ପୃଥିବୀର ଅର୍ଦ୍ଧେକରେ ଆଜି ଚନ୍ଦ୍ର ଲାଞ୍ଛିତ ପତକା ଉଡ଼ୁନଥାନ୍ତା । ଇସଲାମର ସିପାହୀ ସ୍ୱୟଂ ଆଲ୍ଲା । ସ୍ୱୟଂ ରସୁଲ ଏହାର ରକ୍ଷକ । ମୁସଲମାନ ତେଣୁ ନିର୍ଭୀକ ।" ଅଭିନବ ଗୁପ୍ତ ସ୍ପଷ୍ଟ କହିଛନ୍ତି ବୀରରସ ଧର୍ମ ପ୍ରଧାନ । ଯେ ଉତ୍ସାହୀ, ଧର୍ମନିଷ୍ଠ ହୋଇ ନଥିବ, ସେ ବୀରରସର ସ୍ୱରୂପ ଗ୍ରହଣ କରିପାରେନା । ବୀରରସ-ଧର୍ମଅବଲମ୍ବୀ । ଉପରୋକ୍ତ ସଂଳାପରେ ଏହା ପ୍ରକଟିତ । ଧର୍ମର ଦ୍ୱାହିରେ ମୁସଲମାନ ବୀର ଅଜେୟ, ଅପରାଜେୟ ବୋଲି ନିଜକୁ ମନେକରନ୍ତି । ଯେ ପ୍ରକୃତ ବୀର ସେ ମରଣର ଆଲିଙ୍ଗନରେ ଥାଇ ମଧ୍ୟ କେବେହେଁ ଭୟାକୁଳିତ ହୁଏନା । ଯୁଦ୍ଧ ହିଁ ତାର ପୃଥିବୀ । ସେଇଠି ସେ ପାଏ ତୃପ୍ତି, ମରଣର ଆଲିଙ୍ଗନରେ ଥାଇ ସୁଦ୍ଧା ଆହତ ଓ ଅସୁସ୍ଥ ବଣପୁର ସାମନ୍ତଙ୍କ ସଂଳାପରେ ଏଇ ବୀରୋଚିତ ଭାବନା ରୂପପାଇଚି । ତୃତୀୟ ଅଙ୍କର ପଞ୍ଚମ ଦୃଶ୍ୟରେ କାଞ୍ଚନପ୍ରଭାଙ୍କ ନରସିଂହ ଦେବ ସ୍ୱ-ବିଜୟର ଗାଥା ବର୍ଣ୍ଣନା ଅତ୍ୟନ୍ତ ସୁନ୍ଦର ଓ ମୁଗ୍ଧକର । ମାନସିଂହଙ୍କ ପ୍ରତିଭାର ସାର୍ଥକତା ଏ ସଂଳାପ ସବୁରେ ପ୍ରମାଣିତ । ନରସିଂହଙ୍କ ବାରଙ୍ଗଲ ଦୁର୍ଗବିଜୟର ଅଭିଜ୍ଞତା ବର୍ଣ୍ଣନା, ସିରାଜଙ୍କ ପ୍ରଥମ ସେନାପତିର ଜଗନ୍ନାଥ ମନ୍ଦିର ଭାଙ୍ଗିବା ପ୍ରସଙ୍ଗ ଜନିତ ସଂଳାପ ବୀର ବୋଧକ ।

ଐତିହାସିକ ନାଟକରେ ପ୍ରାଚୀନ ପରିବେଶ ସର୍ଜନାଲାଗି ଉଦ୍ଦିଷ୍ଟ 'ସଦସ୍ୟ' ଚରିତ୍ରଟି ନାଟକର ହାସ୍ୟରସର ପ୍ରାଣକେନ୍ଦ୍ର । ସେ ରାଜାଙ୍କ ନର୍ମସଖା । ତାର ରୂପ, ଗୁଣ, କିମ୍ବା ସବୁ ଯେମିତ ହାସ୍ୟ ପାଇଁ ଉଦ୍ଦିଷ୍ଟ । ସମଗ୍ର ନାଟକରେ ଏ ଚରିତ୍ର ହାସ୍ୟ-ବୀଜ ରୂପେ ପ୍ରୋଥିତ । ପ୍ରଥମ ଅଙ୍କର ଦ୍ୱିତୀୟ ଦୃଶ୍ୟରେ ତାଙ୍କ ସମ୍ପର୍କରେ ସୂଚନା ଅଛି—ସଦସ୍ୟ ହେଉଛନ୍ତି, "ପୃଥୁଳକାୟ, ସଦାକ୍ଷୁଧିତ, ବ୍ରାହ୍ମଣ ଓ ଅନପକାରୀ," ରାଜା ବଙ୍ଗ ଦେଶରୁ ଆସିଥିବା ସମ୍ବାଦ ବା ସନ୍ଦେଶର ଉଲ୍ଲେଖ ବେଳେ ସେ କହନ୍ତି "ଏଁ ଏଁ ବଙ୍ଗ ଦେଶରୁ ସନ୍ଦେଶ ! ଆଜି ତେବେ ଭାଗ୍ୟର ଦିନ । ବଙ୍ଗ ଦେଶରୁ ସନ୍ଦେଶ । ମିଷ୍ଟାନ୍ନ ରଚନାରେ ବଙ୍ଗ ଦେଶୀର ସମାନ ନାହିଁ ।" ରାଜା ଓ ପଟ୍ଟଯୋଶୀଙ୍କ ତାଙ୍କସହ ଉକ୍ତି ପ୍ରଯୁକ୍ତ ହାସ୍ୟକର । ତୃତୀୟ ଦୃଶ୍ୟରେ ରେନା ତାଙ୍କ କାର୍ଯ୍ୟକଳାପର ସୂଚନା ଦେଉଛି—"ସମସ୍ତେ ତାଙ୍କ ପେଟ ଓ ପାଟିପାଇଁ କମା ହେଉଛନ୍ତି । ଲୋକ ଗହଳିରେ ସେ ବଡ଼ ଦାଣ୍ଡର ଷଣ୍ଢପରି ବୁଲୁଛନ୍ତି ।" ପ୍ରାଚୀନ କଥା ବସ୍ତୁର ସଙ୍କଳ ଚୟନ ପାଇଁ ହାସ୍ୟ ଅବତାରଣା ଆବଶ୍ୟକ । ଆଲୋଚ୍ୟ ନାଟକର ହାସ୍ୟରସର ପ୍ରଭାବ ପ୍ରଥମ ଅଙ୍କରେ ସୀମିତ । ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ଯୁଦ୍ଧର ଘନଘଟା ପାଇଁ ହାସ୍ୟରସର ବ୍ୟାପ୍ତି ଆଉ ସମ୍ଭବ ହୋଇନ ।

ଅନ୍ୟାନ୍ୟ ରସ ମଧ୍ୟରେ ବିଭିନ୍ନ ଘଟଣା ଓ ଚରିତ୍ରଙ୍କ ବିନ୍ୟାସରେ କରୁଣ ଖୁବ୍ କ୍ଷୀଣଭାବେ ଦୃଶ୍ୟମାନ, ତଥାପି ଭୂମିକା ଗୁରୁତ୍ୱପୂର୍ଣ୍ଣ । ପାଇକଟି ଦ୍ୱିତୀୟ ଅଙ୍କ ପଞ୍ଚମ ଦୃଶ୍ୟରେ ସ୍ୱ ଭାଇକୁ ହରାଇବା ଦୁଃଖରେ ଗାଉଥିବା ଗୀତଟି କରୁଣ ରସାଶ୍ରିତ । ଭ୍ରାତୃ ବିଚ୍ଛେଦର ଦୀର୍ଘଶ୍ୱାସ ଖୁବ୍ ମର୍ମସ୍ପର୍ଶୀ ଭାବେ ଏଠି ଅନୁଭୂତ । ସମସ୍ତ ନାଟ୍ୟ-ପରିବେଶରେ ଶୃଙ୍ଗାରନାଟ୍ୟକାର ଅନ୍ୟ କୌଣସି ରସପାଇଁ ସୁଯୋଗ ଦେଇନ ।

ବୁଦ୍ଧ :

ଏ ନାଟିକାର ପ୍ରଥମେ ହିଁ ମାନସିଂହଙ୍କ ସ୍ପଷ୍ଟୀକରଣ—ଏହା ବୁଦ୍ଧଙ୍କ ଜୀବନୀ । ପିତା ଶୁଦ୍ଧୋଦନ ଓ ମାତା ପ୍ରଜାବତୀଙ୍କ ମମତାସ୍ନିଗ୍ଧ ଭାବ ସମ୍ଭାରରେ ଏ ନାଟକ ପ୍ରାଣପୂର୍ଣ୍ଣ । ବାତ୍ସଲ୍ୟରସର କଲ୍ଲୋଳିତ ପ୍ରବାହରେ ବୁଦ୍ଧର ଦୀପ୍ତ କଥାବସ୍ତୁ ସିକ୍ତ । କେତେବେଳେ ଏ ବାତ୍ସଲ୍ୟ 'ସଂଯୋଗ-ବାତ୍ସଲ୍ୟ' ରୂପେ ମଧୁର ପୁଣି କେବେ 'ବିଯୋଗ-ବାତ୍ସଲ୍ୟ' ରୂପେ ବେଦନା ବିଧୁର । ମାତା ପ୍ରଜାବତୀ, ପିତା ଶୁଦ୍ଧୋଦନ, ପୁତ୍ରସ୍ନେହରେ ସିଦ୍ଧାର୍ଥର ମଙ୍ଗଳ ପାଇଁ ପରାମର୍ଶ କରନ୍ତି । ପିତାମାତା ପୁତ୍ରର ସାମାନ୍ୟ ବ୍ୟତିକ୍ରମରେ ହୁଅନ୍ତି ମର୍ମାହତ । ପ୍ରଥମ ଅଙ୍କର ଦ୍ୱିତୀୟ ଦୃଶ୍ୟରେ ତାହାହିଁ ଘଟିଛି । ସେଥିପାଇଁ ପ୍ରଜାବତୀ କୁହନ୍ତି—''ଦେବତାଙ୍କ ଇଚ୍ଛାରେ ମୋ ପିଲା କେମିତି ଭଲରେ ଭଲରେ ଘରେ ରହୁ । ମୁଁ ନାତି, ନାତୁଣୀଙ୍କି କୋଳରେ ଧରି ଯେମିତି ଆଖି ବୁଜେଁ,'' ସିଦ୍ଧାର୍ଥଙ୍କ ଜନ୍ମ ଦିନରେ ବୋହୂ ଗୋପାଙ୍କୁ ପ୍ରଜାବତୀଙ୍କ ଉକ୍ତି ବାତ୍ସଲ୍ୟରସ ଉପଯୁକ୍ତ । ପୁଅକୁ ମଧ୍ୟ ସେ ଅତ୍ୟନ୍ତ ସ୍ନେହରେ କୁହନ୍ତି—''ତୋର ସବୁ ଆଧି ବ୍ୟାଧି ମୋତେ ଦେଇଦେ ବାପା, ମୋର ଆୟୁଷ ନେଇ ବଞ୍ଚିବୁ, ଜଗତରେ ଯଶକୀର୍ତ୍ତି ରଖିବୁ ।'' ଜନନୀ ହୃଦୟର ସ୍ପଷ୍ଟ ଅବତାରଣା ଏଠି ଏକ ସ୍ନେହସିକ୍ତ ପରିବେଶ ସୃଷ୍ଟି କରିଚି । ସିଦ୍ଧାର୍ଥଙ୍କ ଅନ୍ୟମନସ୍କତା, ଗଭୀର ଚିନ୍ତା ଆଦିର ଦୂରୀକରଣ ଆଶା ଯେତେ କ୍ଷୀଣ ହେଉଚି ନାଟକରେ ଶୁଦ୍ଧୋଦନ ଓ ପ୍ରଜାବତୀଙ୍କ ବାତ୍ସଲ୍ୟ ସେତେ ରସଘନ ହୋଇ ଆସୁଛି । ପୁତ୍ରର ଏ ପରିବର୍ତ୍ତନ ତାଙ୍କ ମନରେ ଦେଇଛି ଗଭୀର ଆଘାତ । ଏ ସଂଯୋଗ ବାତ୍ସଲ୍ୟ ପୁଣି ସିଦ୍ଧାର୍ଥଙ୍କ ଗୃହତ୍ୟାଗ ପରେ ବିରହ ବାତ୍ସଲ୍ୟର ଭୂମିକା ନେଇଚି । ପୁନର୍ବାର ଦୀର୍ଘଦିନର ବିଚ୍ଛେଦପରେ ଶୁଦ୍ଧୋଦନଙ୍କ ବାତ୍ସଲ୍ୟ କୋହ ମାଧ୍ୟମରେ ପ୍ଲାବିତ । ସିଦ୍ଧାର୍ଥର ବୁଦ୍ଧରେ ରୂପାନ୍ତର ପୁଣି ଭିକ୍ଷାବୃତ୍ତି ତାଙ୍କୁ ହୋଇଚି ଅସହ୍ୟ । ସ୍ନେହସିକ୍ତ ତାଙ୍କ ସ୍ୱର—''ଏ କି କଥା ବାପା, ତମରି ରାଜ୍ୟ, ତମରି ଘର, ତମରି ନଗର, ତମେ ଆସୁଚ ଭିକମାଗି ?'' ସମସ୍ତ ନାଟକରେ ଏକ ଅମ୍ଳାନ ମମତାର କାହାଣୀ ପାଇଛୁ । ଏଇ ମମତାବୋଧର ଶକ୍ତି ନାହିଁ । ଏ ଚିର ସ୍ରୁବ୍ୟ । ବାତ୍ସଲ୍ୟର ସ୍ନେହ ଛଳ ଛଳ ଚରିତ୍ରମାନଙ୍କ ସଫଳ ରୂପାୟନରେ ନାଟ୍ୟକାର ମାନସିଂହଙ୍କ ପ୍ରତିଭା ସ୍ୱୀକୃତ ।

'ସିଦ୍ଧାର୍ଥର ଗୃହ' ରୂପାୟନର ମଧ୍ୟବର୍ତ୍ତୀ ସମୟରେ ନାଟକରେ ଶୃଙ୍ଗାର-ଚେତନାର ସ୍ପର୍ଶ ଲାଗିଛି । ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟର ଗୋପା ଓ ସିଦ୍ଧାର୍ଥଙ୍କ ପାରସ୍ପରିକ ଅନୁରାଗ ରଂଜିତ ବାର୍ତ୍ତାଳାପ ଦୃଶ୍ୟମାନ । ସିଦ୍ଧାର୍ଥଙ୍କ ଶୃଙ୍ଗାରବାଣୀ ତାଙ୍କ ପ୍ରେୟସୀ ମାନସର ପ୍ରତିଚ୍ଛବି ବହନ କରେ । "ମୁଁ ଫୁଲଗୁଚ୍ଛେ ନା, ମୁଁ କେବଳ ଗୁହେଁ ଭ୍ରମର ମଧୁର ସିଂଚ, ବଗିଚାର ପୁଷ୍ପରାଜ, ଆଉ ଏ ମାଳା ଗୁହେଁନା, ଗୁହେଁ ତମର କୋମଳ ଭୁଜମାଳାର ବନ୍ଧନ ।"

ଛନ୍ଦକ ଓ ଉପାଲୀର ସଂଳାପ ହାସ୍ୟକର । ଛନ୍ଦକର ପାରିବାରିକ ଜୀବନରେ ତା ସ୍ତ୍ରୀର ଆଧିପତ୍ୟ ଓ ତତ୍‌ଜନିତ ଛନ୍ଦକର ଦୁର୍ଦ୍ଦଶାକୁ ବ୍ୟଙ୍ଗକରି ଉପାଲୀ କୁହେ—"ବାହାରେ ଲଢ଼େଇ ନମିଳିବାରୁ ତୁ ମାଇପ ସଙ୍ଗେ ଲଢ଼େଇ କରୁଛୁ ? ଏପରି ବୀର ପୁରୁଷତ ଏ ରାଜ୍ୟରେ ନ ଥିବେ । ମହାରାଜାଙ୍କୁ କହିବା, ତୋତେ ଏଥର ସେନାପତି କରିବେ ତା ହେଲେ ।" ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ଛନ୍ଦକ ସ୍ତ୍ରୀର ଉଗ୍ର ବାକ୍ୟବାଣ ହାସ୍ୟରସ ସଂଚାର କରେ । ତା ଚରିତ୍ର ଚିତ୍ରଣ ସଙ୍ଗେ ଛନ୍ଦକର ଚରିତ୍ର ସାର୍ଥକ ହାସ୍ୟ ଚରିତ୍ରର ଭୂମିକା ନେଇଛି । 'ଗୃହ'—ଏକ ଚରିତ ନାଟକ । ଚରିତ୍ରର ବୈଶିଷ୍ଟ୍ୟ ପାଇଁ ଅନ୍ୟ ଚରିତ୍ର ମାନଙ୍କ ଚିତ୍ରଣରେ ବିଶେଷ ଲକ୍ଷ୍ୟ ଦିଆଯାଇଛି । ରସମାଧୁର୍ଯ୍ୟ ଦୃଷ୍ଟିରୁ ବାତ୍ସଲ୍ୟର ପ୍ରଭାବ ଅନସ୍ୱୀକାର୍ଯ୍ୟ । ସମଗ୍ର ନାଟ୍ୟ ପରିବେଶରେ ସ୍ନେହସିକ୍ତ ଦୁଇଟି ହୃଦୟର ମମତା ଛଳ ଛଳ ବାଣୀ ଅଭୂତପୂର୍ବ ସୌନ୍ଦର୍ଯ୍ୟ ପ୍ରକାଶ କରିପାରିଛି ।

**ଦୁର୍ଭିକ୍ଷ :**

'ନଅଙ୍କ'ର ଆତଙ୍କଘନ ପୃଷ୍ଠଭୂମିରେ ଜୀବନର ବସ୍ତୁସ୍ପର୍ଶୀ ସତ୍ୟକୁ ଏ ନାଟକରେ ନାଟ୍ୟକାର ରୂପ ଦେଇଛନ୍ତି । ପୃଷ୍ଠଭୂମିଗତ ରୂପାୟନକୁ ବାସ୍ତବ ଓ ଶିଳ୍ପ ମୁଖର କରିବା ପାଇଁ ମାନସିଂହଙ୍କ ଆନ୍ତରିକତା ଓ କାବ୍ୟ-ନାଟକକୁ ବହୁ ଭାବେ ସଫଳ କରାଇଛି । କଳାର ଧର୍ମ ବିଶ୍ୱପ୍ରକୃତିର କଳାତ୍ମକ ଅନୁସରଣ । ଦୁର୍ଭିକ୍ଷରେ ନଅଂକର ପୃଷ୍ଠଭୂମିର ବାସ୍ତବ ରୂପାୟନରେ ସଂଯମ ରକ୍ଷା କରାଯାଇଛି । ଅତିରଞ୍ଜନ ବା ବହୁବର୍ଣ୍ଣନ ନାହିଁ । ସୃଷ୍ଟି ପ୍ରକ୍ରିୟା ତେଣୁ ସୁନ୍ଦର ଓ ବୋଧ୍ୟ ।

ସନାତନର ପିତା ମୁଖରେ ଦୁର୍ଭିକ୍ଷର ବିଭୀଷିକାର ଆଶଂକା ମାଧ୍ୟମରେ ଇଶ୍ୱରଙ୍କ ଚେତନା ଏକ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିଛି । ତାଙ୍କ ଉକ୍ତି—

"ଜନ୍ମ ମୃତ୍ୟୁ । ଜୀବନର ଅବୋଧ୍ୟ ସୂଆଙ୍ଗ
ସୁଖ, ଦୁଃଖ, ସୌଭାଗ୍ୟର ବିଚିତ୍ରାଭିନୟ
ମନୁଷ୍ୟର ଅହମିକା ପରାଜିତ ତହିଁ
କରିକରାଉଛୁ ତହିଁ ମରିଜନ୍ମାଉଛୁ
ଆମେ ଖାଲି ଗୋପୀ ନାଟେ କ୍ରୀଡ଼ା ପୁତ୍ତଳିକା ।"

ରହସ୍ୟଘନ ତତ୍ତ୍ୱ ବ୍ୟାଖ୍ୟା ସହିତ ଆଧାତ୍ମିକ ଭାବାବେଗର ସଂଚରଣ— ପୃଷ୍ଠଭୂମିଗତ ଭୟାବହ ଦୁର୍ଭିକ୍ଷ ଆଶଂକା, ଏସବୁ ଫଳାପରେ ଶାନ୍ତରସଭାବ ବିଦ୍ୟମାନ ।

ଦୁର୍ଭିକ୍ଷର କରାଳ ଆଲିଙ୍ଗନରେ ସମସ୍ତ ଉତ୍କଳ ଆକ୍ରାନ୍ତ । ସନାତନ ପିତା ମାତା ଓ ସାନଭଉଣୀ ପାଇଁ ଅନ୍ନ ବ୍ୟବସ୍ଥା ପାଇଁ ଚାଲିଯାଇ ଫେରିନ । ପ୍ରିୟପୁତ୍ରର ଏମିତ ବିଚ୍ଛେଦରେ ସ୍ନେହାକୁଳିତା ମାତା ସନାତନ ପାଇଁ ଆକୁଳିତା । ବିଯୋଗ ବାତ୍ସଲ୍ୟ ଏଠି ତାଙ୍କ ମାତୃ ହୃଦୟର ପ୍ରତିଛବି ବହନ କରେ —

"ଦୁଇ ଖଣ୍ଡ ହାଡ଼ମାସ ବାକିଥିଲା ଦେହେ
ଫୁଲି ଆସିଥିଲା ମୁହଁ ହାତ
ଚାଲିବାକୁ ଲାଗୁଥିଲା କଷ୍ଟ
କହୁଥିଲା, ବାପା ମୋର ଲୋଡ଼ା ନାହିଁ ଆଉ
ମରିବାରେ ଏ ମାଟିରେ ଏକାଠି ସମସ୍ତେ ।"

ମାତାର ଏକ କରୁଣ ରୋଦନ, ଚକ୍ଷୁର ମଣି ପାଇଁ ତାଙ୍କର ଅସ୍ଥିର ମାନସିକତା, ବାତ୍ସଲ୍ୟର ଚମତ୍କାରିତାରେ ଉଦଭାସିତ । ଦୁର୍ଭିକ୍ଷର କରାଳତା ମୁଦ୍ଧା ସେ ବାତ୍ସଲ୍ୟକୁ ବିଚ୍ଛିନ୍ନ କରିପାରିନି । ଏକ ଅନାବିଲ ମମତାର ବାସ୍ନାରେ ବାତ୍ସଲ୍ୟ ଏଠି ମହକିତ ।

ଦୁର୍ଭିକ୍ଷର ଚିତ୍ର ଦେବା ବେଳେ ପରିବେଶର ବାସ୍ତବ ଚିତ୍ରଣ ପାଇଁ ଅନେକ ଭୟାବହ ବର୍ଣ୍ଣନା ରହିଛି । ଏ ସମସ୍ତ ବର୍ଣ୍ଣନା ଦୁର୍ଭିକ୍ଷର ବାସ୍ତବ ଚିତ୍ର ପାଇଁ ସହଯୋଗୀ । ସନ୍ନ୍ୟାସୀ ଜୀବାନନ୍ଦ ତା ଗୁରୁଙ୍କୁ ମଧ୍ୟ ଏ ଦୁର୍ଭିକ୍ଷର ଭୟାବହତାର ସ୍ୱରୂପ ଜଣାଏ । ଦୁର୍ଭିକ୍ଷ ସ୍ପର୍ଶରେ ଜନନୀ ବକ୍ଷ ଆଜି ଶୁଷ୍କ । ସେଇ ଶୁଷ୍କ ବକ୍ଷୋଦରେ ଲଟକିଥିବା ମୁମୂର୍ଷୁ ସନ୍ତାନକୁ ନିଜହସ୍ତ ପ୍ରସୁତ ବହ୍ନିରେ ପୋଡ଼ାଇ ମାଆ ତୃପ୍ତିରେ ଖାଏ । ଏ ଭୟାବହତାର ପୁନର୍ଦର୍ଶନ ମିଳେ ବହୁସ୍ଥାନରେ । ଦୁର୍ଭିକ୍ଷ ପୀଡ଼ିତ ଦୁଇଟି ଚରିତ୍ର କାଶୀ ଓ ନନ୍ଦଙ୍କ ମୁହଁରେ "ଏ ବର୍ଣ୍ଣନା ଆହୁରି ପ୍ରଶସ୍ତ—ଭୟାବହ—" ଦେଖୁଛିତ ଆଖିଆଗେ ନିଜେ/ମଣିଷ ମଣିଷ ମାଂସ ଖାଉଛି ଏକାଳେ" – ଏ ସମସ୍ତ ବର୍ଣ୍ଣନା ମାଧ୍ୟମରେ ଭୟାନକ ରସର ପ୍ରୟୋଗ ଘଟିଛି । ମଣିଷ ମାଂସ ମଣିଷ ଖାଇବା, ମଣିଷ ଗଛ, ଛେଲି, ଘାସ, ଫଳ ଖାଇବା—ଏସବୁ ଭିତରେ ସତେ ଯେମିତି ଏକ ଭୟାନକ ଆତଙ୍କ । ତା ପ୍ରାଣରେ ଏ ଆତଙ୍କ ଜନ୍ମିତ ବିସ୍ମୟର ଚିତ୍ର ଭୟର ମୃଦୁକମ୍ପନ ଦିଏ ।

ସନାତନ ଅପେକ୍ଷାରେ ଥିବା ପିତା ମାତା ଓ କନ୍ୟା କମଳୀ । ଦୁର୍ଭିକ୍ଷର ଅଦୃଶ୍ୟ ନାଗଫାଶରେ କମଳୀ ଅସୁସ୍ଥତାର ଆଲିଙ୍ଗନବଦ୍ଧ । ପୀଡ଼ିତ ନାରୀ

ମାନସିଂହଙ୍କ ଏକ ଅନବଦ୍ୟ ସୃଷ୍ଟି । କମଳୀକୁ ମୃତ ପ୍ରାୟ ଦେଖି ତା ଅଭିପ୍ରାୟ ଜଣାଇଛି—"ଶୋଇଛ କହୁଚ ତୁମେ ? ମଲଣି ନା କଣ !/ଆଉ କଣ ବଞ୍ଚିବ ସେ ?/ ଦିଅ ମତେ ଦିଅ.../ମୋ କାମରେ ଲଗୁ ହେଲେ..." କମଳୀକୁ ପୋଡ଼ି ଖାଇବାର ଘୃଣ୍ୟ ଲାଲସାର ବର୍ଣ୍ଣନା ବୀଭତ୍ସତାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଥାଏ । ଏ ସୌନ୍ଦର୍ଯ୍ୟ ବୋଧ ହିଁ ପରିବେଶର ସାର୍ଥକତା ।

ସନ୍ନ୍ୟାସୀ ଜୀବାନନ୍ଦ ଏ ମହାଦୁର୍ଭିକ୍ଷରେ ବେଦାନ୍ତ, ଯୋଗର ଅସାରତା ଓ ସେବାର ମହତ୍ତ୍ୱ ଦର୍ଶାଇଛନ୍ତି । ତା ଶୁଣି ଗୁରୁ ଶିବାନନ୍ଦଙ୍କ ପ୍ରବକ ଶିଷ୍ୟଙ୍କ ପ୍ରତି ଉକ୍ତି ବୀରତ୍ୱବ୍ୟଞ୍ଜକ । ଏ ଉକ୍ତିରେ ଜୀବାନନ୍ଦ 'ସେବାବୀର'ର ଭୂମିକା ନେଇଛି । "ଯାଅ ବତ୍ସ ଜୀବାନନ୍ଦ କର ଜୀବସେବା/ଦୁର୍ଭିକ୍ଷର ଦନ୍ତାଘାତୁଁ ରକ୍ଷା ଯାଇକର/ପାର ଯେତେ ହତଭାଗ୍ୟ ଶିଶୁ, ବୃଦ୍ଧ, କନ୍ୟା/ମୁମୂର୍ଷୁର ମୁଖେ ଦିଅ ଢାଳି ଶେଷ ଜଳ/ ଶାନ୍ତିରେ ମରୁ ସେ ହେଲେ ବନ୍ଧୁହୀନ ଯେହୁ" । ଏ ଉକ୍ତି ପାଠକ ପ୍ରାଣରେ ଗମ୍ଭୀର ଆଶା, ଉତ୍ସାହର ବୀଜପବନ କରୁଛି । ଦୁର୍ଭିକ୍ଷର ଆତଙ୍କଘନ କାଳରାତ୍ରିର ଦୂରୀକରଣ ପାଇଁ ଜୀବାନନ୍ଦ କ୍ଷୁଦ୍ର ଏକ ଉତ୍ସାହୀ ଖଦ୍ୟୋତ । 'ଦୁର୍ଭିକ୍ଷ'ରେ ଏ ବହୁରସ ସମାଗମ କଥାବସ୍ତୁର ପରିକଳ୍ପନା ଓ ତାର ସାର୍ଥକ ଉପସ୍ଥାପନା ପାଇଁ ସମ୍ଭବପର ହୋଇଛି ।

**ବୁଦ୍ଧଦୂତୀ :**

କଳିଙ୍ଗର ରାଜବାଳା ହେମମାଳାଙ୍କ 'ବୁଦ୍ଧଦନ୍ତ'କୁ ବ୍ରାହ୍ମଣମାନଙ୍କ ବିପ୍ଳାବରୁ ରକ୍ଷା କରି ନାରୀପଦରେ ସିଂହଳରେ ପହଞ୍ଚାଇବାର ସଂକ୍ଷିପ୍ତ ଭଙ୍ଗିରେ 'ବୁଦ୍ଧଦୂତୀ' ଦର୍ଶାଯାଇଛି । ଘଟଣା, ବୈଚିତ୍ର୍ୟ, କଥା ବିନ୍ୟାସ, ଚରିତ୍ରଗତ ସଂକ୍ଷିପ୍ତତା ଏହାକୁ ବହୁରସ ମଣ୍ଡନରୁ ବଞ୍ଚିତ କରିଛି । ତଥାପି ବ୍ରାହ୍ମଣର ଜିଜ୍ଞାସା ଖୁବ ବେଶ୍ ଜୀବନ୍ତ । ଦ୍ୱିତୀୟ ଦୃଶ୍ୟ ବୈଦିକମାନଙ୍କର ବୁଦ୍ଧଧର୍ମ ଓ ବୌଦ୍ଧମାନଙ୍କ ପ୍ରତି ଈର୍ଷା, ଅସୂୟାର ସ୍ୱରଳିପି । ଏ ଧର୍ମ ଚେତନା ବିରୁଦ୍ଧରେ ବିଦ୍ରୋହ ଉକ୍ତି ଦୃଶ୍ୟକୁ କରିଛୁ ବୀରରସାଶ୍ରିତ ।

"ଧ୍ୱଂସ ଆସୁ
ପ୍ରଳୟ ଆସୁ,
ଆସୁ ବିପଦ ବନ୍ୟା
ଶାସ୍ତ୍ର କେତନ,
ରହୁ ଉଡ୍ଡୀୟାନ,
ଧରଣୀ ହେଉ ଧନ୍ୟା ।"

ଚତୁର୍ଥ ଦୃଶ୍ୟରେ ଏ 'ପ୍ରତିଦ୍ୱନ୍ଦ୍ୱ'ର ବିକଟ ଦୃଶ୍ୟ ରୂପ ପାଇଛି ରକ୍ତପାତ, ହତ୍ୟା ମାଧ୍ୟମରେ । ମାନସିଂହଙ୍କ ଭାଷାରେ ଅହିଂସ-ଶ୍ରମଣ ମାନଙ୍କ ରକ୍ତରେ ଦନ୍ତପୁର

ପଥ ଲେହିତ ଓ କର୍ଦ୍ଦମାକ୍ତ ହୋଇ ଉଠିଲା । ଅସ୍ତ୍ରାଘାତରେ ଶ୍ରମଣମାନେ କେବଳ ବୁଦ୍ଧଂ ଶରଣଂ ଗଚ୍ଛାମି କହି ଘାତକକୁ ଆଶୀର୍ବାଦ କରନ୍ତି । "ଗୋଟିଏ ପଟେ ହିଂସାର ଜ୍ୱଳନ, ଅନ୍ୟ ପଟେ ଅହିଂସାର ଚୈତନ୍ୟ । ତାରି ଭିତରେ ବୀଭତ୍ସ ରସର ଉଦ୍ଭବ । ଧର୍ମର ବୈଷମ୍ୟରେ ଏ ରସର ବିକାଶ । 'ବୁଦ୍ଧଦୂତୀ' ସଂକ୍ଷିପ୍ତ ପୃଷ୍ଠଭୂମିର କାବ୍ୟ ନାଟିକା ଏଣୁ ରସ ବୈଚିତ୍ର୍ୟ ନାହିଁ । ଯେଉଁ ରସ ଦେଖାଦେଇଚି ତା କଥାବସ୍ତୁର ଚିତ୍ରଣକୁ ଅଧିକ ବଳିଷ୍ଠ କରିଚି ।

**ଶାସନ ଚକ୍ର :**

ଶାସନର ଦୁର୍ନୀତି ବିଚ୍ୟୁତି, ସାମାଜିକ ଜଟିଳତା, ଅର୍ଥନୈତିକ ବୈଷମ୍ୟ ଉପରେ ଆଧାରିତ ସାମାଜିକ ଏକାଙ୍କିକା 'ଶାସନଚକ୍ର' । ପ୍ରତି ପଦକ୍ଷେପରେ ଏଠି ଦୁଃଖ ଦୁର୍ଦ୍ଦଶାର ଶତ-ଊର୍ମି ସଙ୍ଗେ ଦେଖା ଦେଇଚି ଚକ୍ରାନ୍ତର ଗୁରୁଗମ୍ଭୀର ମେଘନାଦ । କାରୁଣ୍ୟ ହିଁ ଏକାଙ୍କିକାର ଏକମାତ୍ର ଅଙ୍ଗୀ ସୌନ୍ଦର୍ଯ୍ୟ । ଶାସନ ଚକ୍ରର ଅବସ୍ଥିତି ଓ ତାର ଫଳାଫଳରେ ଏ ରସବୋଧର ଉଦୟ ।

ଦୀନବନ୍ଧୁ କବି । ଦାରିଦ୍ର୍ୟ ତାଙ୍କର ସହଚର । ଦାରିଦ୍ର୍ୟର ପରିବେଶରେ ଭାରାକ୍ରାନ୍ତ ତୃତୀୟ ଦୃଶ୍ୟରେ କବିପତ୍ନୀ ସୁକାନ୍ତୀଙ୍କ ନିଜ ସନ୍ତାନ ବିୟୋଗର ଦୁଃଖ ଓ ତଜ୍ଜନିତ ହାହାକାର ପାଠକର ସମବେଦନା ଆଣେ । କବିପତ୍ନୀ ଶୋକଜର୍ଜରିତା ହୋଇ କୁହନ୍ତି—ଗୋଟିଏ ବୋଲି ଜୀବନ ବିଧାତା କୋଳରେ ଦେଇଥିଲେ ଯେ କେତେ ଆଦରରେ ବଢ଼େଇଥିଲି, ସେ ଚାଲିଗଲା । ତା ପାଟିରେ ଔଷଧ ଟିକିଏ, ତା ପେଟରେ ଭଲ ପଥ୍ୟ ଟିକିଏ ବି ଦେଇ ପାରିଲିନି । "ମାତୃ ମମତାର ଆର୍ତ୍ତନାଦ ଏଠି ଶୋକର ଗୁଞ୍ଜରଣ ସୃଷ୍ଟି କରିଚି । କବି ଜୀବନବନ୍ଧୁଙ୍କ ମୃତ୍ୟୁ ପୂର୍ବବର୍ତ୍ତୀ ସଂଳାପ ଓ ତାର ବର୍ତ୍ତନ ଭିତରେ ଶାସନର ଏକ ଗ୍ଲାନିକର ଚିତ୍ର ମିଳେ । ଏ ଗ୍ଲାନିବୋଧରେ ପାଠକ ଜର୍ଜରିତ । ତାର ଅନ୍ତରାତ୍ମାରେ କାରୁଣ୍ୟର ସଞ୍ଚାର ଘଟେ । କବିର ସ୍ୱପ୍ନ ଭଙ୍ଗ ତାର ସମସ୍ତ ବିକଳତାର କେନ୍ଦ୍ର । ସେଇ ସ୍ୱପ୍ନ ଭଙ୍ଗର ଦୁଃଖ, ସନ୍ତାନ ମୃତ୍ୟୁର ଧକ୍କା ଓ ତଜ୍ଜନୀତ ଭାବାବେଶ କ୍ରମଶଃ ଏକାଙ୍କିକାକୁ କରେ କରୁଣ ରସଘନ ।

**ପୁଷ୍ପାଭିନୟ :**

ଗୀତିକାରର କ୍ଷଣିକ ଆବେଗରେ ଆଗତ ଭାବଧାରାର ନିର୍ମିତିରେ ପୁଷ୍ପାଭିନୟର ସୃଷ୍ଟି । ଏହାର ସୃଷ୍ଟି କଳାରେ କବି ପୂର୍ଣ୍ଣରୂପେ ଜଣେ ମୁଗ୍ଧ ପ୍ରଣୟୀର ଦୃଷ୍ଟି ନେଇ ଗଢ଼ି ଛନ୍ତି । ଏହାକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ-ପାରେ । ପ୍ରଥମ ପର୍ଯ୍ୟାୟରେ ଚୈତ୍ର ଉପବନରେ କଳିକାର ପରିଚୟ ପରେ ଚରିତ୍ର

ରୂପେ ଦେଖା ଦିଅନ୍ତି ଚକୋର, ବାମ୍ଫୁ, ପ୍ରଜାପତି, ଭ୍ରମର । ପ୍ରତ୍ୟେକର କଣ୍ଠରେ କଳିକାପ୍ରତି ସ୍ଫୂର୍ତ୍ତି ଉଠିଛି ଏକ ମଧୁର ଭାବାବେଗର ସଂଳାପ । ପ୍ରତ୍ୟେକେ କଳିକାର ସୌନ୍ଦର୍ଯ୍ୟରେ ମୁଗ୍ଧ । ହୃଦୟରେ ସେମାନଙ୍କର ଗଭୀର ପ୍ରଣୟର ସଙ୍କେତ, ଓଠରେ ସଂଳାପ, ଶୃଙ୍ଗାର ଚେତନାରେ ଏ ପର୍ଯ୍ୟାୟ ରସ ନିବିଡ଼ । କଳିକାକୁ କବି କରି କୁହେ—"ଖୋଲ ଆସରୁ ଉଠିଣ ଭୂଶଚେ/ଦେଖ ଭୁବନ ।" କବି କରର ସୌନ୍ଦର୍ଯ୍ୟ ଦର୍ଶନେଚ୍ଛୁ ମନ ଏଠି ବ୍ୟଞ୍ଜିତ । ବାମ୍ଫୁ ଅନ୍ତରଙ୍ଗ ପ୍ରେମିକ ହୋଇ ଧରି ମନୋହାରିଣୀ ରୂପକୁମାରୀ ପଦବନ୍ଦନାରେ ଆଗ୍ରହୀ । ପ୍ରଜାପତି ପ୍ରିୟାକୁ ତାର ଆନନ୍ଦ ଦେବାର ଉତ୍ଫୁଲ୍ଲତାରେ ଅଧୀର । ଭ୍ରମର ଗୁଣ ମୁଗ୍ଧ ରସିକ । ଏ ସଭିଙ୍କ ସଂଳାପ ଚିତ୍ରଣରେ ଏକ ଅଭିନବ ମଧୁର ସୌନ୍ଦର୍ଯ୍ୟର ଅନୁଭବ ପାଠକକୁ ପୁଲକିତ କରେ । ରସ ତୀବ୍ରତା କେବଳ ଏହି ପର୍ଯ୍ୟାୟରେ ଅଧିଷ୍ଠିତ । ଦ୍ୱିତୀୟ ପର୍ଯ୍ୟାୟ ରୂପେ ଫୁଲ ଓ କୁମାରୀ ଗଣଙ୍କ ବାର୍ତ୍ତାଳାପକୁ ଗ୍ରହଣ କରିଯାଇପାରେ । ଯେଉଁଥିରେ ସ୍ନେହମମତାର ବନ୍ଧନରେ ଐହିକ କଲ୍ୟାଣର ମଙ୍ଗଳଧ୍ୱନି ନିହିତ । ସର୍ବୋପରି 'ପୁଷ୍ପଭିନୟ'ର ସୌନ୍ଦର୍ଯ୍ୟ ଚେତନା ଶୃଙ୍ଗାର ଘନ ନାଟ୍ୟ ରୂପରେ ସ୍ପଷ୍ଟ ପ୍ରତିଭାତ ।

ମାନସିଂହଙ୍କ ନାଟ୍ୟକୃତି ଅଧ୍ୟୟନ କଲେ ହାସ୍ୟର ପ୍ରାଚୁର୍ଯ୍ୟ ପାଠକକୁ ବିସ୍ମିତ କରେ । ତାଙ୍କର ପ୍ରାୟ ସମସ୍ତ ମୁଖ୍ୟ ନାଟକ, ଗୀତିନାଟ୍ୟ ଆଦିରେ ରହିଛି ଏ ରସର ସ୍ଥିତି । ଯେଉଁ ସବୁ ନାଟକରେ ହାସ୍ୟରସ ରହିଛି ତାହା ମୂଳତଃ ଐତିହାସିକ ବା ଇତିହାସ ସମ୍ପର୍କିତ । ଯଥା ରାଜକବି ଉପେନ୍ଦ୍ର, ବାରବାଟୀ, ବୁଦ୍ଧ । ପାରଂପରିକ ଦୃଷ୍ଟିକୋଣରୁ ତେଣୁ ଏ ହାସ୍ୟରସର ହୋଇଛି ସଂଯୋଜନ । ଐତିହାସିକ ନାଟକ ମାନଙ୍କରେ ପ୍ରାଚୀନକାଳରୁ କଥାବସ୍ତୁର ବାସ୍ତବ ଚିତ୍ରଣ ଓ ନାଟକକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଏହା ବ୍ୟବହୃତ ହେଉଥିଲା । ହାସ୍ୟରସ ସଂଯୋଜନାରେ ମଧ୍ୟ କେତେକ କୌଶଳ ଅବଲମ୍ବିତ । ପାରମ୍ପରିକ ଭାବେ ବିଦ୍ୟାର୍ଥୀର ମାଡ଼ ଭୟକୁ କେନ୍ଦ୍ର କରି ରାଜକବି ଉପେନ୍ଦ୍ର, ରାଜାଙ୍କ ନର୍ମ ସଖା ଭାବେ 'ସଦସ୍ୟ' ବା ବିଦୂଷକର ଅଶାନ୍ତ କ୍ଷୁଧା ଓ ବିକୃତ ରୂପ ମାଧ୍ୟମରେ 'ବାରବାଟୀ', ନିମ୍ନ ଶ୍ରେଣୀସ୍ଥ ଚରିତ୍ର ଉପାଳି ଓ ଛନ୍ଦକର କଥୋପକଥନ ମାଧ୍ୟମରେ 'ବୁଦ୍ଧ' ନାଟକରେ ହାସ୍ୟରସ ସମ୍ପୃକ୍ତ । ଅପର ପକ୍ଷେ ସାମାଜିକ ନାଟକ 'ନଷ୍ଟ ନୀଡ଼'ରେ ମଧ୍ୟ ହାସ୍ୟଧାରା ସଂଯୁକ୍ତ । 'ନଷ୍ଟ ନୀଡ଼' କରୁଣ ରସଘନ ନାଟକ । ଆଳଙ୍କାରିକ ମତରେ କରୁଣର ବିରୋଧୀ ରସ ହେଉଛି ହାସ୍ୟ । ମାତ୍ର 'ନଷ୍ଟନୀଡ଼'ରେ ହାସ୍ୟ ସଂଯୋଜନା ଏଭଳି ସ୍ୱତନ୍ତ୍ର ଓ ବୈଶିଷ୍ଟ୍ୟ ପୂର୍ଣ୍ଣ ଯେ କରୁଣ ରସ, ଯାହା ନାଟକର ଅଙ୍ଗୀରସ ତାକୁ ବ୍ୟାଘାତ କରିପାରିନି । ହାସ୍ୟରସର ପ୍ରତିଷ୍ଠାପାଇଁ ଚରିତ୍ରମାନେ ଏଠି ସ୍ୱତନ୍ତ୍ର ଭାବେ ଗୃହୀତ । ପ୍ରତ୍ୟେକେ ଗୌଣ ଚରିତ୍ର । କେବଳ ମଧୁବାବୁ ମୁଖ୍ୟ ଚରିତ୍ର ଓ କାରୁଣ୍ୟ ସର୍ଜନାର ଅନ୍ୟତମ ଉପାଦାନ ହେଲେ ବି, ତାଙ୍କ ମୁହଁରେ ସଦେମାତ୍ର ହାସ୍ୟକର

ସଲାପ ଥିବାରୁ କରୁଣ ଏଠି ବିଶୃଙ୍ଖଳିତ ନୁହେଁ । 'ପୂଜାରଣୀ' ସେଭଳି ବାତ୍ସଲ୍ୟ ରସଘନ ହୋଇଛି । ହାସ୍ୟର ବିଶେଷ ପରିପ୍ରକାଶ ପାଇଁ ଅବସର ନାହିଁ । ଏଣୁ ସାମାନ୍ୟ ମାତ୍ର ସୁଯୋଗରେ ବେଳେଶ୍ୱର ମହାପାତ୍ରଙ୍କ ଏକମାତ୍ର ହାସ୍ୟୋଦ୍ଦୀପକ ସଲାପ ଏଠି ପ୍ରଦତ୍ତ । 'ପୁଷ୍ପିତା' ଶୃଙ୍ଗାରାତ୍ମକ ଭାବନାର କାବ୍ୟ ନାଟିକା । ଶୃଙ୍ଗାର ପାଇଁ ହାସ୍ୟ ସହଯୋଗୀରସ । ଏଣୁ ଏଠି ହାସ୍ୟରସର ସଂଯୋଜନା ପୂର୍ଣ୍ଣତଃ ସ୍ୱାଭାବିକ ।

ପରବର୍ତ୍ତୀ ମୁଖ୍ୟ ରସଭାବେ କରୁଣ ପ୍ରଭାବ ବିସ୍ତାର କରିଛି । ଏହାର କାରଣ ମାନସିଂହ ଟ୍ରାଜେଡ଼ୀର ପକ୍ଷପାତୀ । ପ୍ରାଚ୍ୟ ଆଳଙ୍କାରିକମାନଙ୍କର ଦୁଃଖାନ୍ତ ନାଟକ ବିରୋଧରେ ସେ ସ୍ୱରୋତ୍ତୋଳନ କରିଛନ୍ତି । ଅପର ପକ୍ଷେ ଏଭଳି କଥାଭୂମି ସେ ବାଛି ନେଇଛନ୍ତି ଯେଉଁଥିରେ ଟ୍ରାଜେଡ଼ୀ ସଫଳ ଭାବେ ରୂପାୟିତ ହୋଇପାରିବ । 'ନଷ୍ଟନୀଡ଼'ର କେବଳମାତ୍ର ନାମକରଣ ନୁହେଁ ସମଗ୍ର କଥା ପ୍ରବାହରେ ରହିଛି କରୁଣ ଭାବବୋଧ । ଶାସନଚକ୍ର ମଧ୍ୟ ଏଇ ସମାନ ଚେତନାରେ ପ୍ରଭାବିତ । ଏ ଦୁଇଟି ନାଟକ ପୂର୍ଣ୍ଣ ରୂପେ କରୁଣ । କାରୁଣ୍ୟ ପ୍ରତି ମାନସିଂହଙ୍କ ଆନ୍ତରିକତା ଏ ନାଟକ ଦୁଇଟିକୁ ବଳିଷ୍ଠ କରିଛି ।

ଅନ୍ୟତମ ମୁଖ୍ୟ ରସ ଭାବେ ବାତ୍ସଲ୍ୟର ଭୂମିକା ସ୍ୱୀକାର୍ଯ୍ୟ । ପୂଜାରଣୀ କାବ୍ୟ ନାଟିକାରେ ବାତ୍ସଲ୍ୟ ମମତାର କେନ୍ଦ୍ରବିନ୍ଦୁ ଲକ୍ଷ୍ମୀ । ଅନ୍ଧ ଆପତ୍ୟରେ ପୂଜାରଣୀର ରିଦ ସବୁ ଉଜ୍ଜ୍ୱଳ । 'ବୁଦ୍ଧ' ନାଟକରେ ପିତା ଶୁଦ୍ଧୋଦନ ଓ ମାତା ପ୍ରଜାବତୀଙ୍କ ସିଦ୍ଧାର୍ଥ ପାଇଁ ଆକୁଳତା ପାଠକମନରେ ସମବେଦନା ଆଣେ । ଏଠି ବାତ୍ସଲ୍ୟ ଦ୍ୱିବିଧ । ସଂଯୋଗ ବାତ୍ସଲ୍ୟ ଓ ବିଯୋଗ ବାତ୍ସଲ୍ୟ । ଚିରନ୍ତନ ମା'ର ମମତା ଏଠି ଦକ୍ଷ ବର୍ଣ୍ଣରେ ବିଚିତ୍ର । 'ଦୁର୍ଭିକ୍ଷ'ରେ ମଧ୍ୟ ରହିଛି ବିଯୋଗ ବାତ୍ସଲ୍ୟ । ସନାତନ ପାଇଁ ତା ମା'ର ଆକୁଳତା କଥା ଭୂମିକୁ କରେ ସଜଳ । ବାତ୍ସଲ୍ୟ ରସ ପାଇଁ ଚରିତ୍ରମାନଙ୍କର ମାନସିକତା ସହଜଭାବେ ପ୍ରକାଶିତ । ଛନ୍ଦ ଧନୁରେ ସପ୍ତରଙ୍ଗ ଥିଲେହେଁ ମୁଖ୍ୟ ଦୁଇ ବା ତିନୋଟି ବର୍ଣ୍ଣ ସମଗ୍ର ଧନୁରେ ପ୍ରଭାବ ବିସ୍ତାର କରିଥାଏ । ମାନସିଂହଙ୍କ ନାଟକାବଳୀରେ ସେପରି ପ୍ରାୟ ସମସ୍ତ ରସ-ବୀଜ ରହିଥିଲେ ହେଁ ହାସ୍ୟ, କରୁଣ ଓ ବାତ୍ସଲ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ ଭାବେ ସଂଯୋଜିତ ଓ ପଲ୍ଲବିତ ।

ଓଡ଼ିଆ ବିଭାଗ—ବିଶ୍ୱଭାରତୀ
ଶାନ୍ତିନିକେତନ—୭୩୧୨୩୫

# ଜୀବନୀ ସାହିତ୍ୟ ଓ ଜୀବନୀକାର ମାନସିଂ

ଶ୍ରୀ ସଦାଶିବ ନନ୍ଦ

ଓଡ଼ିଆ ସାହିତ୍ୟରେ ଜୀବନୀ ସାହିତ୍ୟର ପରମ୍ପରା ସେତେ ପ୍ରତିଷ୍ଠିତ ନ ହେଲେ ମଧ୍ୟ ଉପେକ୍ଷଣୀୟ ନୁହେଁ । ଏହି ଜୀବନୀ ଲେଖା ପ୍ରଥମେ ପଦ୍ୟରେ ଆରମ୍ଭ ହୋଇଥିଲେ ହେଁ ବର୍ତ୍ତମାନ ଯୁଗରେ ଏହାର ଗଦ୍ୟରୂପ ଯେ କୌଣସି ସାହିତ୍ୟ ପାଠକକୁ ଆକୃଷ୍ଟ କରିବାରେ ସଫଳ । ଏହି ଜୀବନୀ ତିନିଗୋଟି ଶ୍ରେଣୀର ବ୍ୟକ୍ତିତ୍ୱ ମାନଙ୍କୁ ନେଇ ଲେଖାଯାଇଛି । (୧) ପୁରାଣର ପୁଣ୍ୟ ଶ୍ଳୋକ କେତେକ ଚରିତ୍ର ଓ ଧର୍ମ ଇତିହାସରେ ପ୍ରତିଷ୍ଠିତ କେତେକ ଧର୍ମାତ୍ମା । (୨) ଦେଶ ପାଇଁ ଜୀବନ ଉତ୍ସର୍ଗ କରିଥିବା ତ୍ୟାଗୀ ଦେଶପ୍ରେମୀ ଓ ସଂସ୍କାରକ । (୩) ବିଶିଷ୍ଟ ସାହିତ୍ୟ, ଦର୍ଶନ ଓ ବିଜ୍ଞାନ ସାଧକ । ଏଇମାନଙ୍କୁ ନେଇ ପୃଥିବୀର ବିଭିନ୍ନ ସାହିତ୍ୟରେ ଜୀବନୀ ବିଭାଗଟି ସମୃଦ୍ଧ । ଆମ ଓଡ଼ିଆ ସାହିତ୍ୟରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଜୀବନୀ ଗ୍ରନ୍ଥ ଅନେକ ଥିଲେ ହେଁ ତୃତୀୟ ଶ୍ରେଣୀର ଜୀବନୀ ଗ୍ରନ୍ଥର ଅପ୍ରାଚୁର୍ଯ୍ୟ ଯେ କେହି ସ୍ୱୀକାର କରିବେ । ଏଠାରେ ତୃତୀୟ ଶ୍ରେଣୀ ଅନ୍ତର୍ଗତ ଜଣେ ମହାନ୍ ବ୍ୟକ୍ତିଙ୍କ ଉପରେ ରଚିତ ଏକ ସାର୍ଥକ ଜୀବନୀ ଗ୍ରନ୍ଥର ଆଲୋଚନା ପରିସ୍ଥ କରାଯାଉଛି ।

ଜୀବନୀ ସାହିତ୍ୟର ଦୁଇଗୋଟି ଦିଗ ରହିଛି । ପ୍ରଥମଟି ଆତ୍ମଜୀବନୀ, ଦ୍ୱିତୀୟଟି ଜୀବନୀ । ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଲିଖିତ ନିଜ କଥାହିଁ ଆତ୍ମଜୀବନୀ, ମାତ୍ର କୌଣସି ଏକ ବ୍ୟକ୍ତିଙ୍କ ଜୀବନ ଚରିତ ଅନ୍ୟ ଦ୍ୱାରା ଲେଖା ଯିବାଠା ହେଲା ସେ ବ୍ୟକ୍ତିଙ୍କ ଜୀବନୀ । ସାହିତ୍ୟିକ ମର୍ଯ୍ୟାଦାରେ ମଣ୍ଡିତ କରିବାକୁ ହେଲେ ଉଭୟ ଜୀବନୀ ଏବଂ ଆତ୍ମଜୀବନୀର ଲେଖକଙ୍କୁ ବିଶେଷ ସାବଧାନ ହେବାକୁ ପଡ଼ିବ । କାରଣ ଏହା ଏପରି ହେବ ଯେପରି ପାଠକ ପଢ଼ିଲାମାତ୍ରେ ଏଥି ପ୍ରତି ଆକୃଷ୍ଟ ହେବ ଏବଂ ପାଠକଙ୍କୁ ତାହା କଳାତ୍ମକ ଆନନ୍ଦ ଦେଉଥିବ । ଏହା ସହିତ ନିୟମ ଦୃଷ୍ଟିରୁ ଅନ୍ୟ ଦୁଇଟି କଥା ମଧ୍ୟ ଲକ୍ଷ୍ୟ ରଖିବାକୁ ହେବ । ତା' ହେଲା ସମ୍ପୃକ୍ତ ବ୍ୟକ୍ତି ଏବଂ ଇତିହାସ । ରମ୍ୟ ଆନନ୍ଦ ଦେବା ପାଇଁ ଲେଖକ ଯଦି କଳ୍ପନାରେ ଭାସିଯାଇ ଉପରୋକ୍ତ ଦୁଇଟି କଥା ଭୁଲିଯାନ୍ତି ତାହାଲେ ସୃଷ୍ଟିଟି ଅକାରଣ ହୋଇଯିବ ।

ଉପରୋକ୍ତ କାରଣରୁ ଜୀବନୀ ଲେଖକଙ୍କୁ ଖୁବ୍ ସାବଧାନ ହେବାକୁ ପଡ଼ିଥାଏ । ଏକାଧାରରେ ତାଙ୍କୁ ଇତିହାସ, ସମ୍ପୃକ୍ତ ବ୍ୟକ୍ତି ତଥା ପାରିପାର୍ଶ୍ୱିକ ଅବସ୍ଥାକୁ ଆଖିରେ ରଖି ସମ୍ପର୍କିତ ବ୍ୟକ୍ତିଙ୍କ ଚରିତକୁ ଏଇ ଘଟଣାବଳୀର ତାତ୍ତ୍ୱିକ ଆଲୋଚନା ଦ୍ୱାରା ଚିତ୍ରଣ କରିବାକୁ ହୋଇଥାଏ । ଏହା ସହିତ ସାହିତ୍ୟର ମର୍ଯ୍ୟାଦା ପ୍ରତି ମଧ୍ୟ ଦୃଷ୍ଟି ରଖିବାକୁ ହୁଏ । ତା ନ ହେଲେ ଭାଷା ରୁକ୍ଷ ଓ କଠିନ ହୋଇ ପ୍ରାଣହୀନ ବିବରଣୀ ସମ୍ବଳିତ ଅସଫଳ ସାମ୍ବାଦିକତାରେ ପରିଣତ ହୋଇଯିବ । ଠିକ୍ ଏଇ କଥାକୁ ଆଖିରେ ରଖି ରାଧାନାଥଙ୍କ ଜୀବନୀ ସମ୍ପର୍କରେ ସମାଲୋଚକ ନାରାୟଣ ମୋହନ ଦେ କହିଥିଲେ ଯେ ଏହା ଏକ ବିଶ୍ୱକୋଷ ଗ୍ରନ୍ଥ ହୋଇପାରେ, ମାତ୍ର ସାହିତ୍ୟିକ ମର୍ଯ୍ୟାଦାରେ ମଣ୍ଡିତ ନୁହେଁ । ସେ ଏକ ଉଦାହରଣ ଦେଇ କହିଛନ୍ତି—"ଯେପରି ବହୁ ମୂଲ୍ୟର ପ୍ରସ୍ତର କେତେଖଣ୍ଡ ରାଶୀକୃତ କରିଦେଲେ କୋଣାର୍କ ହୋଇ ନପାରେ ଓ କେତେଖଣ୍ଡ ଶ୍ୱେତ, ପୀତ, ନୀଳ ପ୍ରଭୃତି ନାନା ରଙ୍ଗର ପ୍ରସ୍ତର ଥୋଇଦେଲେ ତାଜମହଲ ହୋଇ ନପାରେ । ସେହିପରି ଆଦର୍ଶ ପୁରୁଷଙ୍କର ଘଟଣା ବହୁଳ ଜୀବନର କେତୋଟି ବିଶିଷ୍ଟ ଘଟଣା ଉଲ୍ଲେଖ କଲେ ଜୀବନୀ ହୋଇ ନପାରେ ।"[୧] । ଏଥିରୁ ସ୍ପଷ୍ଟ ହୋଇଯାଏ ଜୀବନୀ ଲେଖନ ଏକ ଏକ ସ୍ୱତନ୍ତ୍ର ଶିଳ୍ପ, କର୍ମର ଅପେକ୍ଷା ରଖେ ଠିକ୍ କୋଣାର୍କ ଓ ତାଜମହଲ ପରି ।

ତେଣୁ ସ୍ୱତନ୍ତ୍ର ସତର୍କତା । ସୂକ୍ଷ୍ମ ବିଚାର, ବୁଦ୍ଧି ଓ ଯାଦୁକରୀ ସାହିତ୍ୟ ଶୈଳୀ ଜୀବନୀ ଗ୍ରନ୍ଥକୁ ସରସ ସୁନ୍ଦର କରିପାରିବ । ଏଥିରେ ଏକାଧାରରେ ବ୍ୟକ୍ତି ବିଶେଷଙ୍କ ଜୀବନର ଘଟଣାବଳୀକୁ ଐତିହାସିକ କ୍ରମରେ ଏବଂ ତାଙ୍କ ଜୀବନର ପ୍ରବାହ ଧାରାରେ ସେଗୁଡ଼ିକର ପ୍ରଭାବକୁ କ୍ରମାନୁଯାୟୀ ସଜାଡ଼ି ରଖିବା ସହିତ ସାହିତ୍ୟର ଚମତ୍କାରିତାକୁ ପ୍ରଦର୍ଶନ କରାଯାଇଥାଏ । ଜୀବନର ନିତିଦିନିଆ ଘଟଣାଗୁଡ଼ିକ ବର୍ଣ୍ଣନାର ଇନ୍ଦ୍ରଜାଲ ମଧ୍ୟରେ ମହତ୍ତ୍ୱ ହୋଇ ପାଠକର ମନକୁ ଗଭୀର ଭାବରେ ଆକୃଷ୍ଟ କରେ । ପାଠକ ବିହ୍ୱଳ ହୋଇଯାଏ । ଏଇଠାରେ ହିଁ ଲେଖକର ସମସ୍ତ ସଫଳତା ମୂର୍ତ୍ତିମନ୍ତ ।

ଏଇ ଦୃଷ୍ଟିରୁ ଓଡ଼ିଆ ଜୀବନୀ ସାହିତ୍ୟକୁ ଅନୁସନ୍ଧାନ କଲେ ପ୍ରାୟ ସପ୍ତମ ଦଶକର ଶେଷ ଆଡ଼କୁ ଏବଂ ଚଳିତ ଦଶକର ଆରମ୍ଭରେ କେତୋଟି ପ୍ରକାଶିତ ଜୀବନୀ ଗ୍ରନ୍ଥ ପାଠକ ସମାଜକୁ ଯଥେଷ୍ଟ ଉତ୍ସାହ ଦେଇ ପାରିବ । ଅବଶ୍ୟ ଏକ ସଫଳ ସୃଷ୍ଟି ଯେ ଏକାନ୍ତ ତ୍ରୁଟି ଶୂନ୍ୟ ହେବ ଏକଥା କୁହାଯାଇ ନପାରେ । ଗୋପବନ୍ଧୁଙ୍କ ଜୀବନ ଉପରେ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠିତ ସୁସମାଲୋଚକ ଅଧ୍ୟାପକ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ରଚିତ ଜୀବନୀ ଗ୍ରନ୍ଥ । "ହେ ସାଥି ! ହେ

୧ । ସାହିତ୍ୟ ଓ ସମାଲୋଚନା, ଦ୍ୱିତୀୟ ଭାଗ, ପୃ-୪,
ନାରାୟଣ ମୋହନ ଦେ ।

ସାରଥି !" ଓଡ଼ିଆ ଜୀବନୀ କ୍ଷେତ୍ରରେ ଏକ ସଫଳ ଦୃଷ୍ଟାନ୍ତ । ନାରାୟଣ ମୋହନ ଦେଙ୍କର ଷୋଭର ପ୍ରକୃତ ସାନ୍ତ୍ୱନା ବୋଧହୁଏ କଷ୍ଟସ୍ୱ ଏଇ "ହେ ସାଥି, ହେ ସାରଥି !" (୧୯୬୧) । ନାମକରଣ ଦୃଷ୍ଟିରୁ ଏହା ଯେପରି ଚମତ୍କାର ବର୍ଣ୍ଣନା ଦୃଷ୍ଟିରୁ ମଧ୍ୟ ସେହିପରି ଚିତ୍ତାକର୍ଷକ । ଲେଖକଙ୍କ ସମାଲୋଚକ ମନ ସମସ୍ତ ସତର୍କତା ନେଇ ଗ୍ରନ୍ଥଟିକୁ ମହାନ କରିଛି । ଘଟଣାଗୁଡ଼ିକର ସୁବିନ୍ୟାସ ଓ ଭାଷା ଶୈଳୀ ସତେ ଯେପରି ଏହାକୁ ଏକ ଗଦ୍ୟ କାବ୍ୟରେ ପରିଣତ କରିଛି ।

ଠିକ୍ ଏଇ ପରମ୍ପରାର ଅନ୍ୟ ଏକ ସଫଳ ଜୀବନୀ ଗ୍ରନ୍ଥ ହେଲା ସୁରେନ୍ଦ୍ର ମହାନ୍ତିଙ୍କ "ଶତାବ୍ଦୀର ସୂର୍ଯ୍ୟ" (୧୯୭୦) ଓ ପରେ ପ୍ରକାଶିତ "କୁଳବୃଦ୍ଧ" ଏହାର ଦ୍ୱିତୀୟ ଭାଗ ।

ଓଡ଼ିଆ ଜାତିର ଶ୍ରେଷ୍ଠ ଧୀମାନ୍ ଜନନାୟକ ଓ ଜାତ୍ୟାଭିମାନୀ ଦେଶସେବୀ ମଧୁସୂଦନ ଦାସଙ୍କ ଜୀବନ ଉପରେ ରଚିତ ଓ ଦୁଇଭାଗରେ ବିଭକ୍ତ ଏହି ଜୀବନୀ ଗ୍ରନ୍ଥ ଔପନ୍ୟାସିକ, ଗାଳ୍ପିକ ଓ ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଔପନ୍ୟାସିକ ମନ ନେଇ ତୀକ୍ଷ୍ଣ କଳ୍ପନା ଓ ଐତିହାସିକ ସଚେତନତାରେ ଏକ ସୁନ୍ଦର ଉପନ୍ୟାସରେ ପରିଣତ ହୋଇପାରିଛି । ଏହି ବିରାଟ ଗ୍ରନ୍ଥ ପାଠ କଲେ ପାଠକକୁ ଜଣାପଡ଼େ ଯେପରି ଅନେକ କିଛି ବାକି ରହିଗଲା । ଏହାହିଁ ତାଙ୍କ କୃତିର ସଫଳତା ।

ଏହି କ୍ରମରେ ଆମେ ପୁଣି ଏକ ଜୀବନୀ ଗ୍ରନ୍ଥର ସମ୍ମୁଖୀନ ହେବା, ତା' ହେଲା ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ କବି ସମାଲୋଚକ ପ୍ରାବନ୍ଧିକ ଓ ଶିକ୍ଷାବିତ୍ ଡକ୍ଟର ମାୟାଧର ମାନସିଂଙ୍କ ରଚିତ ଆଧୁନିକ ଓଡ଼ିଆ ସାହିତ୍ୟର ଆଦି ଉଦ୍‌ଗାତା ବ୍ୟାସକବି ଫକୀର ମୋହନଙ୍କ ଜୀବନ କଥା ନେଇ ରଚିତ ଜୀବନୀ "ସରସ୍ୱତୀ ଫକୀର ମୋହନ ।" ଉପଯୁକ୍ତ ବ୍ୟକ୍ତିଙ୍କ ହାତରେ ଯଥାର୍ଥ ବ୍ୟକ୍ତିତ୍ୱର ମୂଲ୍ୟାୟନ ଏ କ୍ଷେତ୍ରରେ ସମ୍ଭବ ହୋଇଛି । ଆଲୋଚନାର ଆଭିମୁଖ୍ୟ ଦୃଷ୍ଟିରୁ ବର୍ତ୍ତମାନ ମାନସିଂ କିପରି ଭାବରେ ଏହି ଜୀବନକୁ ରଚନା କରିଛନ୍ତି ତାହା ବିଗ୍ରହ କରି ଦେଖିବା ।

ଓଡ଼ିଆ ଭାଷାରେ ବିଭିନ୍ନ ସାହିତ୍ୟ ସ୍ରଷ୍ଟାମାନଙ୍କ ଜୀବନୀ ପରିଚୟ ପ୍ରାୟ ନାହିଁ କହିଲେ ଚଳେ । ଯାହା ଅଛି ସେ କେବଳ ବିଶ୍ୱବିଦ୍ୟାଳୟ ବା ମହା-ବିଦ୍ୟାଳୟର ସାହିତ୍ୟର ଗ୍ରନ୍ଥମାନଙ୍କ ପାଇଁ ସାମାନ୍ୟ ଲେଖକ ପରିଚୟ ପରି । ସେଗୁଡ଼ିକ ପୁଣି ଏପରି ପ୍ରମାଦ ଗ୍ରସ୍ତ ଯେ ତା' ଉଲ୍ଲେଖ ନ କରିବାହିଁ ଭଲ । ମାନେ (Meaning) କହି ଲେଖି ନିଜକୁ ସୁସମାଲୋଚକ ଭାବେ ପ୍ରତିଷ୍ଠିତ କରାଇବାରେ ପ୍ରୟାସୀ ବଂଶଧରଗଣ ସାହିତ୍ୟ ସ୍ରଷ୍ଟାଙ୍କର ଜୀବନର ମୂଲ୍ୟାୟନ କରିବାକୁ ତୀକ୍ଷ୍ଣ ବୁଦ୍ଧି ଓ ସମୟ ପା'ନ୍ତେ ବା କୁଆଡ଼ୁ ? ବ୍ୟବସାୟ ପାଇଁ ସେମାନଙ୍କର ଲେଖକ ପରିଚୟ

"Who's who"ର ସାଧାରଣ ଜ୍ଞାନ ପରି । ଅବଶ୍ୟ ଏଥିପାଇଁ ସେମାନେ ଲକ୍ଷ୍ମୀଙ୍କ ଦ୍ୱାରା ବେଶ ଅନୁଗୃହୀତ । ମାତ୍ର 'ସରସ୍ୱତୀ ଫକୀର ମୋହନ' ଲେଖିବାପାଇଁ ଏକ ସ୍ୱତନ୍ତ୍ର ଶ୍ରଦ୍ଧା ଓ ସାହିତ୍ୟିକର ମନ ଦରକାର, ଯାହାକୁ ଆମେ କେବଳ ମାନସିଂଙ୍କ-ଠାରେ ହିଁ ପାଇ ପାରିବା । "ସରସ୍ୱତୀ ଫକୀର ମୋହନ" ଗ୍ରନ୍ଥର ଭୂମିକାରୁ ଜଣାଯାଏ ପ୍ରଥମେ ଲେଖକ ଇଂରାଜୀରେ ଏହି ଗ୍ରନ୍ଥଟି ଲେଖିଥିଲେ । ମାତ୍ର ସାହିତ୍ୟ ଏକାଡେମୀ ତାକୁ ସଂକ୍ଷିପ୍ତ କରିଦେଲେ । ତା'ର କ୍ଷୋଭରେ ସେ ପ୍ରକାଶକଙ୍କ ଅନୁରୋଧ କ୍ରମେ ନିଜର ଦୁଇବାର, ସେନାପତି ସୁଲଭ ଉତ୍ସାହରୁ ସେ ଏହି ଗ୍ରନ୍ଥଟିକୁ ଲେଖିବାକୁ ପ୍ରୟାସୀ ହୋଇଛନ୍ତି ।

ଗ୍ରନ୍ଥଟିର ଆରମ୍ଭ ହୋଇଛି ଫକୀର ମୋହନଙ୍କ ପୂର୍ବ ପୁରୁଷମାନଙ୍କର ସଂକ୍ଷିପ୍ତ ଇତିହାସ ସହିତ ଏହି ପୂର୍ବ ପୁରୁଷର ରକ୍ତଗତ ପ୍ରଭାବ କିପରି ଭାବେ ତାଙ୍କ ପ୍ରତି ପ୍ରସାରିତ ହୋଇ ଆସିଛି ଏଇଠାରୁ; ତାର ବିଶ୍ଳେଷଣ ପାଇଁ ଲେଖକ ଯଥେଷ୍ଟ ଶ୍ରଦ୍ଧାଶୀଳ । ଠିକ୍ ଏହିପରି ମଧ୍ୟ କରିଛନ୍ତି 'ଶତାବ୍ଦୀର ସୂର୍ଯ୍ୟ'ରେ ସୁରେନ୍ଦ୍ର ମହାନ୍ତି । ମଧୁସୂଦନଙ୍କ ପୂର୍ବ ବଂଶଜ ମାନଙ୍କର ଭୀଷଣ ଆତ୍ମ ସମ୍ମାନ ଓ ସାହସର ପରିଚୟ ପ୍ରଦାନପରେ ମଧୁସୂଦନଙ୍କୁ ତାରି ସଫଳ ଦାୟାଦ ରୂପେ ବର୍ଣ୍ଣନା କରି ପାଠକଙ୍କ ମନରେ ମଧୁସୂଦନଙ୍କୁ ଏକ ଜନ୍ମସିଦ୍ଧ ସାହସୀ କର୍ମୀ ରୂପେ ଗଢ଼ି ପାରିଛନ୍ତି । କିନ୍ତୁ ଏ କ୍ଷେତ୍ରରେ "ହେ ସାଥି, ହେ ସାରଥି"ରେ ଡଃ ନିତ୍ୟାନନ୍ଦ ଶତପଥୀ ଏକ ସମ୍ପୂର୍ଣ୍ଣ ନୂତନ ଭଙ୍ଗୀର ପରିଚୟ ଦେଇ ସେଇ ଗୋପବନ୍ଧୁଙ୍କଠାରୁ ହିଁ ଗୋପବନ୍ଧୁଙ୍କୁ ଆରମ୍ଭ କରିଛନ୍ତି । ଖୁବ୍ ଅଳ୍ପ ପରିସର ମଧ୍ୟରେ (ପ୍ରାୟ ୧୨।୧୪ ପୃଷ୍ଠା) ସେ ଗୋପବନ୍ଧୁଙ୍କ ବାଲ୍ୟଜୀବନକୁ ଶେଷ କରିଚନ୍ତି । ଏହାହିଁ ତାଙ୍କର ମୌଳିକତା ।

କିନ୍ତୁ 'ସରସ୍ୱତୀ ଫକୀରମୋହନ'ରେ ମାନସିଂଙ୍କର ରଚନା ଶୈଳୀରେ ଫକୀର ମୋହନଙ୍କ ପୂର୍ବ ପୁରୁଷର ଅବସ୍ଥା ବର୍ଣ୍ଣନା ଏକ ସ୍ୱତନ୍ତ୍ର ଅର୍ଥ ବହନ କରିଛି । ଫକୀର ମୋହନ ଯେପରି ତାଙ୍କ ପୂର୍ବ ପୁରୁଷଙ୍କର ବଡ଼ମୁନାର ତୀବ୍ର ପ୍ରତିବାଦ, ତାହାହିଁ ମାନସିଂହଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ପରିଚୟ ବହନ କରେ । ଏକ ସୁପ୍ରତିଷ୍ଠିତ ମଲ୍ଲ ପରିବାର ହଠାତ୍ ଗୋଟିଏ ପୁରୁଷ ମଧ୍ୟରେ ଏବଂ ଶେଷରେ ଯାହାକିଛି ସମ୍ଭାବନା ଥିଲା ସେତକ ପୁଣ୍ୟା କୁଚଳା ଦେଈଙ୍କର ଅଯଥା ଆଶଙ୍କାରେ କିପରି ନିଃସ୍ୱ ହୋଇ ଦରିଦ୍ର ହୋଇଗଲା ତାର କରୁଣ ବର୍ଣ୍ଣନା ପ୍ରଥମ ଅଧ୍ୟାୟରେ ମାନସିଂ ଅତି ଆବେଗ ପ୍ରବଣ ଭାବରେ ସ୍ପଷ୍ଟବକ୍ତାର ସହିତ ଦେଖାଇଛନ୍ତି । ନିମ୍ନ ଉଦାହରଣରୁ ତାଙ୍କର ବର୍ଣ୍ଣନା ଶୈଳୀର ପରିଚୟ ପାଇ ହେବ ।

—"ନିରୀହା, ସରଳା କୁଚଳାଙ୍କର ସରଳ ଅଜ୍ଞତା ଓ ବାପ ଛେଉଣ୍ଡ ଶିଶୁ ଦୁଇଟି ପାଇଁ ଅକାରଣ, ଅଥଚ ଏକାନ୍ତ ସ୍ୱାଭାବିକ ଆଶଙ୍କା ଯୋଗୁ ହିଁ ମଲ୍ଲିକାଶ

ପୁରେ ମଲ୍ଲ ପରିବାର ଏକା ଧନୀଙ୍କ ସାଧାରଣ ଦରିଦ୍ର ନାଗରିକ ମାତ୍ର ହୋଇ ପଡ଼ିଲା ।" । ୨ ।

ଏହା ପାଠକଲେ ଯେ କୌଣସି ବିଚାରବନ୍ତ ପାଠକ ନିଶ୍ଚୟ ମାନସିଂଙ୍କ ସହିତ ଏକମତ ହେବ ଯେ କୁଚଳା ଦେଈଙ୍କର ଏଥିରେ କୌଣସି ଦୋଷ ନାହିଁ । କେବଳ ତା'ଙ୍କର ନିଷ୍ପାପ ନିର୍ବୋଧତା ଓ ସାଂସାରିକ ଅନଭିଜ୍ଞତା ଯୋଗୁଁ ଏପରି ହୋଇଗଲା ଏବଂ ଏହାହିଁ ସ୍ୱାଭାବିକ ।

ଏହା ପରେ ଫକୀର ମୋହନଙ୍କ ପିତୃ ଓ ପିତୃବ୍ୟଙ୍କ ଅବସ୍ଥା ବର୍ଣ୍ଣନା ପରେ ଫକୀରମୋହନଙ୍କ ଜନ୍ମ କଥା । ଏ ଗୁଡ଼ିକର ବର୍ଣ୍ଣନା ଯେପରି ଭାବେ ମାନସିଂ ଦେଇଛନ୍ତି ତା ପାଠକ ମାନେ ଜାଣିପାରିବେ ଯେତେବେଳେ ସେମାନେ ଗ୍ରନ୍ଥଟିର ଚଉଦ ଏବଂ ପନ୍ଦର ପୃଷ୍ଠା ପଢ଼ିବେ । ଏକ ଧ୍ୱସ୍ତ ପ୍ରାୟ କରୁଣ ପାରିବାରିକ ପରିବେଶରୁ ଅଳ୍ପ ବୟସରେ ପିତୃ ମାତୃ ହୀନ ହୋଇ ଫକୀରମୋହନ ଯେତେବେଳେ ଦୁଃଖ ନଈରେ ପହଁରି ଦିଶୁଥାଇ ବର୍ଷର ବାଳକ ହୁଅନ୍ତି, ସେତେବେଳେ ତାଙ୍କର ଶାନ୍ତ କୋମଳ ସ୍ୱଭାବକୁ ଗ୍ରହଣ କରି ମାରିଥିଲେ ତାଙ୍କ ଜେଜେଇ ଏବଂ ଖୁଡ଼ି । ଏ ସମୟରେ ଫକୀରମୋହନଙ୍କ ପାଇଁ ଏକମାତ୍ର ସାନ୍ତ୍ୱନା ଥିଲେ ମାତାମହୀ କୋଚିଲା ଦେଈ : ଠିକ୍ ମରୁଭୂମିରେ ପଥିକ ପାଇଁ ଓଏସିସ୍ ଭଳି । ପରିବେଶର ପ୍ରଚଣ୍ଡ ନିଷ୍ଠୁରତା ଏବଂ ଦାରିଦ୍ର୍ୟର ସମସ୍ତ କଷାଘାତର ତମସା ମଧ୍ୟରେ ଫକୀରମୋହନଙ୍କ ବଞ୍ଚିବାର ଏକମାତ୍ର ଭରସା ଥିଲେ ତାଙ୍କର ସେହି ଜେଜେମା । ଏହି ମହୀୟସୀ ନାରୀଙ୍କ ଚରିତ୍ର ତାଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର ପକାଇଛୁ ତାହା ମାନସିଂ ବଡ଼ ସୁନ୍ଦର ଭାବରେ ବିଶ୍ଳେଷଣ କରିଛନ୍ତି ।

ମାନସିଂ ଏହି ଜୀବନୀ ଗ୍ରନ୍ଥରେ ଫକୀର ମୋହନଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗକୁ ବିଚାର କରିଛନ୍ତି । ତତ୍କାଳୀନ ସମସ୍ତ ନିୟମରେ ଫକୀର ମୋହନ ବାନ୍ଧି ନ ହୋଇ ଜୀବନର ସମସ୍ତ ଉଚ୍ଚ ଆକାଂକ୍ଷାକୁ ସେ ଅତି ସହଜରେ ପୂରଣ କରି ପାରିଥିଲେ ନିଜର ବ୍ୟକ୍ତିତ୍ୱର ପ୍ରଭାବ ବଳରେ । ଖୁବ୍ ପିଲା ବେଳୁ ତାଙ୍କୁ ଜୀବିକାର୍ଜନ ପାଇଁ ବନ୍ଦରରେ କାମ କରିବାକୁ ପଡ଼ିଥିଲା ଏବଂ ନିଜର ଉପାର୍ଜନ ଧନତକ ତାଙ୍କ ଖୁଡ଼ି ସବୁ ନେଇ ଯାଉଥିଲେ । ବହୁ ଅବହେଳାରେ ତାଙ୍କର ପାଠ ପଢ଼ାର ଆରମ୍ଭ ହୋଇଥିଲା ନଅ ବର୍ଷ ବୟସ ସମୟରେ । ଏ ବିବରଣୀର ବ୍ୟାଖ୍ୟା ମାନସିଂ ବଡ଼ ଜୀବନ୍ତ ଭାବେ କରିଛନ୍ତି । ସ୍କୁଲ ଜୀବନରେ ତାଙ୍କର ଅଯଥା ବିଡ଼ମ୍ବିତ ଜୀବନ କାହାଣୀ ଏହିପରି । ଅବଧାନେ ବୈଷ୍ଣବ ମହାନ୍ତି ପୁତ୍ରମାତ୍ର ଫକୀର ମୋହନଙ୍କୁ ନ ବାଡ଼େଇବାକୁ ଫକୀର ମୋହନଙ୍କ ଖୁଡ଼ି ଅବଧାନଙ୍କୁ ଦରମା ଦେଲେନି । କାରଣ

।୨।—"ସରସ୍ୱତୀ ଫକୀରମୋହନ"-ପୃ-୯-ମାୟାଧର ମାନସିଂ ।

ଖୁଡ଼ିଙ୍କର ପ୍ରକୃତଥିଲା ପିଲା ଦେହରେ ବେତ ନ ବାଜିଲେ କି ପାଠ ହେବ ? (ଖୁଡ଼ିଙ୍କ ନିଜ ପୁଅ ମୂର୍ଖତା ହେତୁ ମାଡ଼ ଖାଉଥିଲେ ମାତ୍ର ଫକୀର ମୋହନ ସୁଶ୍ରୀତ ଥିବାରୁ ମାଡ଼ ଖାଉନଥିଲେ) । ଏଥିପାଇଁ ଅବଧାନେ ଫକୀର ମୋହନଙ୍କୁ ପ୍ରତି ମାସରେ ଅଯଥାରେ ପ୍ରହାର କରୁଥିଲେ ଦରମା ତକ ଠିକ୍ ପାଇବାକୁ । ଏହା ବର୍ଣ୍ଣନା କଲା-ବେଳେ ମାନସିଂ କ୍ଷୋଭର ସହ କହିଛନ୍ତି—"ହାୟ ବରେଣ୍ୟ ସେନାପତି, ତୁମକୁ ପିଲାଟି ଦିନୁ ଯାହା ସାରା ଜୀବନ ଯାକ ଏହିପରି ନିର୍ଣ୍ଣ ବହନ କରିବାକୁ ପଡ଼ିଥିଲା ।"(୩) ଲେଖକଙ୍କର ଏହିପରି ମନ୍ତବ୍ୟ ଗ୍ରନ୍ଥଟିର ବିଭିନ୍ନ ପରିବେଶରେ ଭିନ୍ନ ଭିନ୍ନ ।

ଏହାପରେ ମାନସିଂ ଫକୀର ମୋହନଙ୍କ ଜୀବନ ଘଟଣାକୁ ଦୁଇ ଭାଗରେ ବିଭକ୍ତ କରି ବର୍ଣ୍ଣନା କରିଛନ୍ତି । ପ୍ରଥମ ଭାଗରେ ତାଙ୍କର ଜୀବନର ଜୀବିକା ଉପାର୍ଜନର ବିଭିନ୍ନ କାର୍ଯ୍ୟ ମଧ୍ୟରେ ସ୍କୁଲର ଶିକ୍ଷକତା ଓ ବିଭିନ୍ନ ଗଡ଼ଜାତ ଶାସିତ ରାଜ୍ୟର ଦେଓ୍ୱାନପଣ । ଦ୍ୱିତୀୟ ଭାଗଟି ତାଙ୍କର ସାହିତ୍ୟିକ ଜୀବନ ଯାହାକି ତାଙ୍କୁ ଚିର କାଳ ସାହିତ୍ୟ ପାଗଳ ମନୀଷ ଗୋଷ୍ଠୀ ପାଖରେ ନମସ୍ୟ କରି ରଖିବ । ଜୀବନର ପ୍ରଥମ ଅଧିକରେ ସେ ବିଶ୍ୱସ୍ତ ଶିକ୍ଷକ, ଅଦ୍ଭୁତ ସଂଗଠକ ଓ ସଫଳ ପ୍ରଶାସକ । ଶେଷ ଅଧିକରେ ସେ ପୁରାଣ ପ୍ରୀତ ବାଲ୍ମୀକି ଓ ଯଥାର୍ଥରେ ସରସ୍ୱତୀ । ବାଲ୍ୟକାଳରେ ନିମକ ମହାଲର କାମରୁ ସେ ଆସି ପୁଣି କିଛି ପାଠ ପଢ଼ିଥିଲେ ଏବଂ ପରେ ଶିବ ଚନ୍ଦ୍ର ସୋମ ତାଙ୍କୁ ନିଜର ସ୍କୁଲରେ ମାଷ୍ଟର ଚାକିରିଟିଏ ଦେଲେ । ଏହାହିଁ ତାଙ୍କର ପ୍ରଥମ ଚାକିରି । ଏଇ ବାଲେଶ୍ୱରରେ ସେ ପ୍ରଥମେ ମଧୁସୂଦନ ଦାସ ଓ ପରେ ରାଓ ଏବଂ ରାଧାନାଥଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରିଥିଲେ । ତା'ପରେ ସେ ମିଶନ୍ ସ୍କୁଲର ହେଡ଼ମାଷ୍ଟର ହୋଇଥିଲେ ।

ଏଇଠାରୁହିଁ ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଅଦ୍ଭୁତ ମମତା ଆସିଥିଲା । ଭାଷା ବିଲୋପ ଆନ୍ଦୋଳନର ପ୍ରକୃତ ସେନାପତିତ୍ୱ କରିଥିଲେ ଫକୀର ମୋହନ । ଏତିକିବେଳେ ସେ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ 'ଜୀବନ ଚରିତ'ର ଓଡ଼ିଆ ଅନୁବାଦ କରିଥିଲେ ଓ 'ଭାରତବର୍ଷର ଇତିହାସ' ଲେଖିଥିଲେ । ଏଗୁଡ଼ିକ ସ୍କୁଲରେ ପାଠ୍ୟ ପୁସ୍ତକ ଭାବେ ଚଳୁଥିଲା । ପରେ ମଧୁସୂଦନ ରାଓ ଏ ଢଙ୍ଗର ଓଡ଼ିଆ ଭାଷାକୁ ଭୁକ୍ତିମନ୍ତ କରିଛନ୍ତି । ଶିକ୍ଷକତା କରିବା ଢଙ୍ଗରେ ସେ ବିଶେଷ କିଛି ସାର୍ଟିଫିକେଟ୍ ଗତ ଯୋଗ୍ୟତା ହାସଲ କରି ନ ଥିଲେ ହେଁ ନିଜର ଅର୍ଜିତ ଗୁଣ ଯୋଗୁଁ ସେ ସେ ସମୟର ଯେ କୌଣସି ଶିକ୍ଷିତ ଶିକ୍ଷକଙ୍କ ଠାରୁ ଉଚ୍ଚ ଥିଲେ । ଏକଥା ବର୍ଣ୍ଣନା କରିବାକୁ ଯାଇ ମାନସିଂ ଲେଖିଛନ୍ତି—ଅନୁଷ୍ଠାନିକ ପାଠରେ ରାଧାନାଥ ମଧୁସୂଦନଙ୍କ ପାଖରେ ଫକୀର ମୋହନ ସତ୍ୟରେ ଏକ ଫକୀର ସଦୃଶ

୩ । 'ସରସ୍ୱତୀ ଫକୀର ମୋହନ'—ପୃ-୨୦-ମାୟାଧର ମାନସିଂ ।

ହେଲେ ହେଁ ଦରପାଠୁଆ ଫକୀର ମୋହନ ସହଜାତ ବୁଦ୍ଧି ବିଚକ୍ଷଣତା ଫଳରେ ଶିକ୍ଷକ ଭାବରେ ଯେଉଁ ବିଷୟବସ୍ତୁକର ଔଜ୍ଜ୍ୱଲ୍ୟ ଓ ପାରଙ୍ଗମତା ଦେଖାଇ ପାରିଥିଲେ, ତାହା ସେପରି ବିଷୟବସ୍ତୁକର ଭାବରେ ଘଟିନଥିଲା ତାଙ୍କ ଅନ୍ୟତୁଇ ବନ୍ଧୁଙ୍କ ଭାଗ୍ୟରେ ।" (୪) ଏହାପରେ ଫକୀର ମୋହନ ତାଙ୍କର ଶିକ୍ଷକତା କାର୍ଯ୍ୟରୁ ଅବ୍ୟାହତି ନେଲେ ।

'ସରସ୍ୱତୀ ଫକୀର ମୋହନ' ଗ୍ରନ୍ଥର ଷଷ୍ଠ ଅଧ୍ୟାୟ ଏକ ଚମତ୍କାର ଘଟଣା । ଏଥିରେ ଓଡ଼ିଆ ଭାଷାର ଉନ୍ନତି ପାଇଁ ଛାପାଖାନା ପ୍ରତିଷ୍ଠା ତାଙ୍କର ଚରମ ଦୁଃସାହସ ଏବଂ ଭାଷା ପାଇଁ ଆକୁଳତାର ପ୍ରତୀକ; ଫକୀର ମୋହନଙ୍କ ପ୍ରତିଭା ଏହିଠାରେ ସ୍ୱୀକାର୍ଯ୍ୟ । ଲେଖକ କହିଛନ୍ତି—"ପ୍ରତିକୂଳ ଅବସ୍ଥାରେ ପ୍ରତିଭା ସମ୍ପନ୍ନ ଲୋକେ ଯାହା କରି ଯୋଗ ଦେଇପାରନ୍ତି, ଅନୁକୂଳ ପରିସ୍ଥିତିରେ ମଧ୍ୟ ଆମପରି ଅଧମ ତା' କରି ପାରିବେ ନାହିଁ । × × କାଳ ଆମକୁ ଗଢ଼େ ଓ ଧ୍ୱଂସ ଦେଇ ନିଶ୍ଚିହ୍ନ କରିଯାଏ । ପ୍ରତିଭା କିନ୍ତୁ ତାର କାଳକୁ ଗଢ଼େ ଓ ଦେଇଯାଏ ଆମରଣ ସ୍ୱର୍ଣ୍ଣ ମୁକୁଟ । ଫକୀରମୋହନ ହିଁ ଠିକ୍ ଏଇୟା" । ପୁଣି ସେ କହିଛନ୍ତି "ଗୋଟିଏ ଦରିଦ୍ର ଅଳ୍ପ ପାଠୁଆ ଘରେ ଅନାକାଙ୍କ୍ଷିତ ଅସହାୟ ଶ୍ରମିକ ବାଳକ ଆମ ଆଖି ଆଗେ ଯେପରି ଅଘଟଣରୁ ଘଟଣା ପ୍ରବାହ ସୃଷ୍ଟି କରିଚାଲିଛି । ତାହା କେବଳ ପ୍ରକୃତ ପ୍ରତିଭା ହିଁ ସମ୍ଭବ କରିପାରେ ବା ତାହାହିଁ ପ୍ରକୃତ ପ୍ରତିଭା ।"

ଫକୀରମୋହନଙ୍କ ପାରିବାରିକ ପରିସ୍ଥିତିର ଦୁଃସହତା ତାଙ୍କୁ ବାହାରର ବିଭିନ୍ନ କାର୍ଯ୍ୟରେ ବୁଡ଼ାଇ ରଖିବାକୁ ବାଧ୍ୟ କରିଥିଲା । ସେ ଏକାଧାରରେ ନିଜର ପ୍ରଥମ ସ୍ତ୍ରୀଙ୍କର ଦୁର୍ବ୍ୟବହାର ଓ ଝିଅଙ୍କର ଅସୁସ୍ଥ ପାଇଁ ଏକ ନିର୍ବନ୍ଧ ଗୃହୀ ଜୀବନ ନିର୍ବାହ କରୁଥିଲେ ପ୍ରାୟ ୧୯ ବର୍ଷ ବୟସଯାଏ ।

ଏହାପରେ ତାଙ୍କ ଜୀବନର ଅନ୍ୟ ଏକ ପର୍ଯ୍ୟାୟର ଆରମ୍ଭ । ନିଜ ଜେଜେମାଙ୍କ ପୁଣ୍ୟ ସ୍ରୋତରେ ଅନ୍ୟ ଏକ ଅଫୁରନ୍ତ କଲ୍ୟାଣମୟୀ ଉତ୍ସ ଯୋଗ ଦେଲେ ଫକୀର ମୋହନଙ୍କ ଦ୍ୱିତୀୟା ସ୍ତ୍ରୀ କୃଷ୍ଣା କୁମାରୀ । ଏହି ନାରୀଦ୍ୱୟ ଫକୀର ମୋହନଙ୍କୁ ମହାନ କରି ଗଢ଼ିଲେ ପରବର୍ତ୍ତୀ ଜୀବନରେ । ତାଙ୍କର ଦ୍ୱିତୀୟ ଦାର ପରିଗ୍ରହଣ ପୂର୍ବର ଜୀବନ ତାଙ୍କୁ ବାଧ୍ୟ କରିଥିଲା ମଦ୍ୟପାନ ପାଇଁ । ମାତ୍ର ସେ ଖୁବ୍ ଅସଂଯତ ନଥିଲେ । ନଜେ ଯଦି ନିଜର ଏହି ମଦ୍ୟପାନ କଥା ସେ ଲେଖି ଯାଇ ନଥାନ୍ତେ ତାହା ଅନ୍ୟ କେହି ଜାଣିବାର ଉପାୟ ନ ଥିଲା ।

ଫକୀର ମୋହନଙ୍କ ଦୀର୍ଘ ଦିନର ଦେୱାନ ଜୀବନର କାର୍ଯ୍ୟକଳାପ ତାଙ୍କୁ ତାଙ୍କର ଆଦର୍ଶର ବିଭିନ୍ନ ଲକ୍ଷ୍ୟ ପୂରଣ ଦିଗରେ ଯଥେଷ୍ଟ ସାହାଯ୍ୟ କରିଛି । ଦେୱାନ

୪ । ସରସ୍ୱତୀ ଫକୀର ମୋହନ—ପୃ-୫୩

ପଦପାଇଁ ସେକାଳରେ ଜର୍ଜ, ବାରିଷ୍ଟର ଓ ଅବସର ପ୍ରାପ୍ତ ଆଇ. ସି. ଏସ୍ ଶ୍ରେଣୀର ଲୋକମାନେ ବସ୍ତ୍ର ଯାଉଥିଲେ । ମାତ୍ର ସେପରି କିଛି ଯୋଗ୍ୟତା ନ ଥାଇ ଫକୀର ମୋହନ ନିଜର ବ୍ୟକ୍ତିତ୍ୱ ବଳରେ ମାଲଗିରି ଢେଙ୍କାନାଳ ଆଦିର ଦେୱାନ ରୂପେ ଯୋଗ ଦେଇଥିଲେ । ଏହି ପର୍ଯ୍ୟାୟରେ ହିଁ ତାଙ୍କ ଜୀବନର ସମସ୍ତ ସ୍ୱାଧୀନ ଆଦର୍ଶର, ପରିପୂର୍ତ୍ତି ଘଟିଛି । ଏଥିପାଇଁ ସେ ଅନେକ ରାଜ ବଂଶର ଶ୍ରଦ୍ଧା ହରାଇଛନ୍ତି । ଏହା ସତ୍ତ୍ୱେ ସେ କୌଣସି କ୍ଷେତ୍ରରେ ପ୍ରଜାକୁଳର କ୍ଷତି ଘଟାଇ ନାହାନ୍ତି । ଡମପଡ଼ା ଓ କେନ୍ଦୁଝରର ପ୍ରଜାମେଳି ଭାଙ୍ଗିବା ଘଟଣା ଫକୀର ମୋହନଙ୍କ ଜୀବନର ସେହିପରି ଏକ ବିଶିଷ୍ଟ ମୁହୂର୍ତ୍ତ । ପରବର୍ତ୍ତୀ କାଳରେ ଅନେକ ଆଲୋଚକ ଏହାକୁ ଫକୀର ମୋହନଙ୍କ ଦେଶଦ୍ରୋହୀ କାର୍ଯ୍ୟ ରୂପେ ରୂପାୟିତ କରିଥିଲେ ହେଁ ତତ୍କାଳୀନ ମୂଲ୍ୟ ବୋଧ ଦୃଷ୍ଟିରୁ ବିଚାର କଲେ ଏହା ଆଦୌ ସେପରି ନୁହେଁ । ଏହିସବୁ ଘଟଣାକୁ ବିଚାର କରି ମାନସିଂ ଫକୀର ମୋହନଙ୍କ ଜୀବନ କାର୍ଯ୍ୟର ମହତ୍ତ୍ୱ ପ୍ରତିପାଦନ ନିମନ୍ତେ ଯଥେଷ୍ଟ ବୌଦ୍ଧିକ ଓ ତାର୍କିକ ଧୀମତ୍ତାର ପରିଚୟ ଦେଇଛନ୍ତି । କେବଳ ଏତିକ ନୁହେଁ ତାଙ୍କର ଜୀବନ ଘଟଣା କିପରି ତାଙ୍କ ସାହିତ୍ୟକୁ ବିଶେଷ ଭାବରେ ପ୍ରଭାବିତ କରିଛି, ତା'ର ବିଶ୍ଳେଷଣ ମାନସିଂ ଯେପରି କରିଛନ୍ତି ତା ବୋଧହୁଏ ଅନ୍ୟ କୌଣସି ଫକୀର ମୋହନ ସାହିତ୍ୟ ସମାଲୋଚକ ସେତେ ସ୍ପଷ୍ଟ ଭାବରେ କରିପାରି ନାହାନ୍ତି ।

ମାନସିଂ ଫକୀରମୋହନଙ୍କ ସାହିତ୍ୟ ସାଧନାର ଉତ୍ସକୁ ତିନୋଟି ଦିଗରୁ ବିଚାର କରିଛନ୍ତି । ପ୍ରଥମଟି ତାଙ୍କର ଚରିତ୍ର ଉଦାରତା ଗୁଣ ଯାହାକୁ ସେ ନିଜ ଜେଜୀମା ଓ ବାପଙ୍କ ଠାରୁ ଗ୍ରହଣ କରିଥିଲେ । ଦ୍ୱିତୀୟଟି ଓଡ଼ିଆ ଭାଷାର ତତ୍କାଳୀନ ଦୁର୍ଦ୍ଦଶା ଓ ବଙ୍ଗାଳିମାନଙ୍କର ଓଡ଼ିଆ ଜାତି ପ୍ରତି ଭର୍ତ୍ସନା । ତୃତୀୟଟି ପତ୍ନୀ କୃଷ୍ଣାକୁମାରୀଙ୍କର ସ୍ୱର୍ଗୀୟ ପତି ଭକ୍ତି ଓ ଜୀବନର ବହୁମୂଲ୍ୟ ଅଭିଜ୍ଞତା ।

ମାନସିଂଙ୍କ ମତରେ; ଫକୀରମୋହନଙ୍କ ପିତାଙ୍କର ଧାର୍ମିକ ଉଦାରତା ଫକୀରମୋହନଙ୍କ ମନରେ ଛାପ ପକାଇଥିଲା । ତା' ଫଳରେ ସେ ସୃଷ୍ଟି କରି ଯାଇଛନ୍ତି ବୌଦ୍ଧାବତାର କାବ୍ୟ ଏବଂ ବହୁ ଆଧ୍ୟାତ୍ମିକ କବିତା । ଓଡ଼ିଆ ଭାଷାର ରକ୍ଷା ଆନ୍ଦୋଳନ ପାଇଁ ସେ ଅନେକ ପାଠ୍ୟ ପୁସ୍ତକ ରଚନା କରିଛନ୍ତି । ସେଥିରେ ଇତିହାସ, ଭୂଗୋଳ, ଗଣିତ, ବ୍ୟାକରଣ ଆଦି ଅନେକ ଗ୍ରନ୍ଥ ଅଛି । ସେନାପତି ବୋଧହୁଏ ପ୍ରଥମ ବ୍ୟକ୍ତି ଯେ ନିଜ ଜୀବନୀ ଲେଖାରେ ହାତ ଦେଇଛନ୍ତି । ତା'ପରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଆଦି କେତେକ ଜୀବନୀ ଚରିତ ଲେଖିଛନ୍ତି । ସେତେବେଳେ ଫକୀରମୋହନଙ୍କ ରଚିତ ଜୀବନୀ ଉପରେ ଏକ ସମାଲୋଚନା ପ୍ରକାଶ ପାଇଥିଲା । ତାହାହିଁ ଓଡ଼ିଆ ସାହିତ୍ୟରେ ଆଦି ସମାଲୋଚନା ହୋଇପାରେ । ତା' ପୂର୍ବରୁ

ଯାହା କିଛି ହୋଇଥିଲା ସେ ସବୁ ଟିକା ଟିପ୍ପଣୀ ସ୍ତରର । ମାତ୍ର ଫକୀରମୋହନଙ୍କ ଶ୍ରେଷ୍ଠ ସାହିତ୍ୟ ପ୍ରେରଣା ଥିଲେ ତାଙ୍କର ସ୍ତ୍ରୀ କୃଷ୍ଣାକୁମାରୀ । ଫକୀର ମୋହନଙ୍କ ଭାଷାରେ ।'' ''ମୁଁ ଯେ କବିତା ଲେଖୁଛି, ସେଥିରେ ଅନ୍ୟତମ କାରଣ ମୋର ସ୍ତ୍ରୀ, ସେ ମୋ କବିତା ଶୁଣିବାକୁ ଭଲ ପାଉଥିଲେ । ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖିଥିଲି । ତାଙ୍କର ମୃତ୍ୟୁରେ ମୋର ବ୍ୟାକୁଳତା ନିବାରଣ ନିମନ୍ତେ ହିଁ, ମୁଁ କବିତା ଲେଖେ'' । * ।

ରାମାୟଣ ଓ ମହାଭାରତର ଅନୁବାଦର କାରଣ ହିଁ ତାଙ୍କର ସେଇ ସ୍ତ୍ରୀ । ତା'ପରେ ତାଙ୍କର ସାହିତ୍ୟିକ ଜୀବନର ଶ୍ରେଷ୍ଠ ସଫଳତାର ପ୍ରେରଣା ହେଲା ତାଙ୍କର ଜୀବନର ଅଭିଜ୍ଞତା । ତାଙ୍କର ପ୍ରାୟ ବିଂଶାଧିକ ଗଳ୍ପ ଓ ଚାରୋଟି ଉପନ୍ୟାସ ମଧ୍ୟରେ ଆମେ ଫକୀରମୋହନଙ୍କୁ ଅନେକ ଭଙ୍ଗୀରେ ପାଇପାରିବା । ଏହା ଉଦ୍‌ଘାଟନ କରିବାର କୌଶଳକୁ ମାନସିଂ ଅତି ସହଜ କରିଯାଇଛନ୍ତି । ଫକୀରମୋହନ ରାଧାନାଥଙ୍କ ପରି ବିଶ୍ୱ ସାହିତ୍ୟ ଖୋଜି ନାହାନ୍ତି, ମାତ୍ର ତାଙ୍କର ଅଭିଜ୍ଞତା ବିଶ୍ୱ ମଣିଷର । ଅନେକ ବଗେଇ ବିଶାଳ, ରାଣ୍ଡି ପୁଅ ଅନନ୍ତା, ଡାକ ମୁନସି ଏବେ ବି ଏଇ ପୃଥିବୀରେ ଜୀବନ୍ତ ଠିକ୍ ଯେପରି ଚନ୍ଦ୍ରମଣିବାବୁ ମଧ୍ୟ ଅଛନ୍ତି । ବର୍ଣ୍ଣନାର ପ୍ରକାଶରେ ଫକୀରମୋହନ ଅତି ସ୍ୱାଭାବିକ ହୋଇଛନ୍ତି । ତାଙ୍କୁ ହଠାତ୍ କିଛି ବଦଳାଇ ଦେଇପାରିନି । ପାଶ୍ଚାତ୍ୟ ଶିକ୍ଷା ତାଙ୍କ ପାଇଁ ସ୍ୱାଗତ ଯୋଗ୍ୟ ହୋଇଛି । ମାତ୍ର ନିଜ ସାମାଜିକ ଜୀବନର ପରିବର୍ତ୍ତନ ଜନିତ ମର୍ମାନ୍ତିକ ପରିଣତି ତାଙ୍କୁ ଆହତ କରିଛି । 'ରେବତୀ' ଗଳ୍ପ ଫକୀରମୋହନଙ୍କ ଦ୍ୱନ୍ଦ୍ୱମାନସିକତାର ପରିଚାୟକ । ଯାହାପରେ ଅବଶ୍ୟ ସେ ଯଥେଷ୍ଟ ସମାଧାନ ଆଣିଛନ୍ତି, ତାଙ୍କ ନିଜ ଚିନ୍ତାରେ ଯାହା ପ୍ରକାଶିତ ହୋଇଛି ପରବର୍ତ୍ତୀ ଅନେକ ଗଳ୍ପ ଓ ଉପନ୍ୟାସରେ ।

ଏହିପରି 'ସରସ୍ୱତୀ ଫକୀରମୋହନ' ଗ୍ରନ୍ଥର ଦ୍ୱିତୀୟାର୍ଦ୍ଧ ତାଙ୍କର ସାହିତ୍ୟିକ ଜୀବନର ମୂଲ୍ୟାୟନରେ ମୁଖର । ମାନସିଂ ଅତି ମୌଳିକତାର ସହିତ ଫକୀରମୋହନଙ୍କୁ ବିଶ୍ୱର ଅନ୍ୟ ବିଭିନ୍ନ ସାହିତ୍ୟ ସ୍ରଷ୍ଟାଙ୍କ ସହିତ ତୁଳନା କରିଛନ୍ତି । ମୋଟ ଉପରେ ଫକୀରମୋହନଙ୍କ ଜୀବନର ବିଭିନ୍ନ ପର୍ଯ୍ୟାୟରେ ଏ ଗ୍ରନ୍ଥଟି ମଞ୍ଜୁଳ । ଏଥିପାଇଁ ମାନସିଂ ଫକୀରମୋହନଙ୍କ ଆତ୍ମ ଚରିତ, ଫକୀରମୋହନ ପରିକ୍ରମା ଓ 'ଫକୀର ମୋହନ ସମୀକ୍ଷା'ର ସାହାଯ୍ୟ ନେଇଛନ୍ତି । ଏ କ୍ଷେତ୍ରରେ ପ୍ରଶ୍ନ ଉଠିବ ଫକୀରମୋହନ ଆତ୍ମଜୀବନୀ ଥାଉଥାଉ ପୁଣି ତାଙ୍କର ଜୀବନୀ ଲେଖାଯିବାର ଆବଶ୍ୟକତା କଣ ? ଏ ପ୍ରଶ୍ନର ସଠିକ୍ ଉତ୍ତର ମାନସିଂ ଆରମ୍ଭରୁ ହିଁ ଦେଇଛନ୍ତି ।

* । ଫକୀରମୋହନଙ୍କ ଆତ୍ମ ଚରିତ-ପୃ-୩୨ ।

ସେ କହିଛନ୍ତି ଫକୀରମୋହନଙ୍କ ଆତ୍ମ ଜୀବନୀ ତାଙ୍କ ଜୀବନୀ ଲେଖା ପାଇଁ "ଏକ ପ୍ରବଳ ଓ ସ୍ୱାଭାବିକ ପ୍ରତିରୋଧ ରୂପେ ଦଣ୍ଡାୟମାନ ।"

( ଭୂମିକା—ପୃ-୨-ସରସ୍ୱତୀ ଫକୀରମୋହନ )

ଆତ୍ମ ଜୀବନୀ ଥାଇ ଜୀବନୀ ଲେଖିବାର ଆବଶ୍ୟକତା ରହିଛି କି ନାହିଁ ସେ କଥା ଉପରେ ପ୍ରଶ୍ନର ଉତ୍ତର ଦେଇ ସେ କହିଛନ୍ତି, "ସେନାପତି ଯାହା ନିଜେ ନିଜ ସମ୍ବନ୍ଧରେ କହିଗଲେ ସେ ସମସ୍ତ କଥା ଆମେ ମାନି ନେବାକୁ ବାଧ କି ?" ଆମେ ଏ ପର୍ଯ୍ୟନ୍ତ ବିନା ପ୍ରଶ୍ନରେ ସେ ସମସ୍ତଙ୍କୁ ମାନିନେଇଛୁ ଅର୍ଥ ଆମର ଚିନ୍ତାଶକ୍ତି ଏକାବେଳେକେ ଜଡ଼ ।" ଏଇତିକି ବକ୍ତବ୍ୟ ହିଁ ପ୍ରଶ୍ନର ଉତ୍ତର ପାଇଁ ଯଥେଷ୍ଟ । ଜୀବନୀରେ ସମ୍ପୃକ୍ତ ବ୍ୟକ୍ତି ଓ ତାଙ୍କ ସମ୍ପର୍କିତ ବ୍ୟକ୍ତି ମାନଙ୍କର ମୂଲ୍ୟାୟନ ହୋଇ ପାରିଥାଏ, ଲେଖକଙ୍କର ଚିନ୍ତାଶକ୍ତି ଓ ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା । ମାତ୍ର ଆତ୍ମ ଜୀବନୀ ସେହି ବ୍ୟକ୍ତିଙ୍କର କେବଳ ଏକ କ୍ୟାମେରାର ସ୍ୱପ୍ନ ଭଳି । କିନ୍ତୁ ଜୀବନୀ ହେଲା ଶିଳ୍ପୀ ଦ୍ୱାରା ଅଙ୍କିତ ତୈଳ ଚିତ୍ର । ଏଥିରେ ଜୀବନୀ ରଚିତ ହେଉଥିବା ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱର ସମସ୍ତ ଦିଗର ବିଚାର ହୋଇଥାଏ । ଦେଶ, ଜାତି, ଇତିହାସ ଓ ସଂସ୍କୃତିର ପରିପ୍ରେକ୍ଷୀରେ ଜୀବନୀକାର ସେହି ବ୍ୟକ୍ତିଙ୍କୁ ବିଚାର କରି ଏକ ପରମ ଆଶ୍ରୟ ପଦରେ ରଖିବାର କୃତିତ୍ୱ ହିଁ ହାସଲ କରିପାରନ୍ତି । ଏ ସବୁ କଥା କିନ୍ତୁ ଆତ୍ମ ଜୀବନୀରେ ସମ୍ଭବ ନୁହେଁ । ଠିକ୍ ଏଇ ଦୃଷ୍ଟିରେ ମାନସିଂ ଏହି 'ସରସ୍ୱତୀ ଫକୀରମୋହନ'ଙ୍କୁ ରଚନା କରିଛନ୍ତି । ଏହାକୁ ପାଠ କଲେ ସେନାପତିଙ୍କ ସମସାମୟିକ ଅନେକ ସାହିତ୍ୟ ସ୍ରଷ୍ଟା ଓ ଅନ୍ୟ ବ୍ୟକ୍ତିଙ୍କ ଅପେକ୍ଷା ସେ କେତେ ଧୁରୀଣ ଓ ମହାନ୍ ତାହା ପାଠକ ମାନେ ଜାଣିପାରିବେ । ଠିକ୍ ଏହି ଦୃଷ୍ଟିରୁ ବିଚାର କଲେ ଯୁଗ ସ୍ରଷ୍ଟା ରାଧାନାଥଙ୍କ ପ୍ରତିଭା ତାଙ୍କ ପାଖରେ ନ୍ୟୂନ ଜଣାପଡ଼ିବ । ଗଦ୍ୟ ସ୍ରଷ୍ଟା ହିସାବରେ ଫକୀରମୋହନ ଯେ ମୁକୁଟ ମଣ୍ଡିତ ସମ୍ରାଟ ତା' ଯେ କେହି ସ୍ୱୀକାର କରିବେ ।

"ସରସ୍ୱତୀ ଫକୀରମୋହନ" ଗ୍ରନ୍ଥରେ ଫକୀରମୋହନଙ୍କ ସମ୍ପର୍କିତ ଚରିତ୍ର କୁଚିଲା ଦେଈ, କୃଷ୍ଣାକୁମାରୀ ଯେପରି ଭାରତୀୟ ନାରୀ ମାନଙ୍କର ଆଦର୍ଶ ରୂପ ନେଇ ଠିଆ ହୁଅନ୍ତି । ତାହା ବର୍ଣ୍ଣନ ଯେ କୌଣସି ସାହିତ୍ୟ ପାଠକଙ୍କୁ ଅଭିଭୂତ କରିବ । ଠିକ ସେହିପରି ମହାମାନବ ବା ଜ୍ଞାନୀ ବାମସ, ରେଭେରେଣ୍ଡ ହାଲମ୍ ଆଜି ମଧ୍ୟ ସ୍ୱତନ୍ତ୍ର ସମ୍ମାନ ଦାବୀ କରନ୍ତି । ଏହା ସହିତ ତାଙ୍କର ପ୍ରଥମ ସ୍ତ୍ରୀ, କଳେଇ ଓ ଝିଅ ସେହି ପରିମାଣରେ ଘୃଣା ପାଠକମାନଙ୍କ ଠାରୁ ପାଇଥା'ନ୍ତି ।

ଏହି ଗ୍ରନ୍ଥଟିର ରଚନାରେ ମାନସିଂଙ୍କର ଭାଷା ବିନ୍ୟାସ ଓ ପରିବେଷଣ ଶୈଳୀ ଫକୀର ମୋହନଙ୍କ ଚାରିତ୍ରିକ ଦୁର୍ବଳତାକୁ ପାଠକମାନଙ୍କ ପାଖରେ ଉଦାରତାର ସହିତ ସାବ୍ୟସ୍ତ କରାଇ ନେଇଛି । 'ବିଦେଶିନୀ ବାଳିକାର ଗ୍ରନ୍ଥୀ ଚିତ୍ର'

କହିଛନ୍ତି କଥା କହିଲାବେଳେ ଫକୀରମୋହନଙ୍କ ଚରିତ୍ରର ଗୋଟିଏ ଦିଗକୁ ସେ ଯେପରି ବିଚାର କରିଛନ୍ତି ତାହା ଅତି ଚମତ୍କାର । ଏହା ଏପରି—"ତରୁଣ ଓ ପ୍ରୌଢ଼ ଫକୀରମୋହନଙ୍କର କେଉଁଠି କେଉଁ ଅନ୍ୟ ନାରୀଜନ ପ୍ରତି କେବେ ସାମାନ୍ୟ ଅସ୍ଥାୟୀ ଆକର୍ଷଣ ମଧ୍ୟ ଜାତ ହୋଇ ଆସିଥିଲା । ସୁନ୍ଦରୀ ଓ ଗୁଣବତୀ ନାରୀ ପ୍ରତି ପୁରୁଷ ଜନର ଓ ପ୍ରତିଭାର ଆକର୍ଷଣ ଏକ ପ୍ରାକୃତିକ ଘଟଣା ଏବଂ ଏହି ଧୂଳି କର୍ଦ୍ଦମାକ୍ତ ଧରାରେ ତାହାହିଁ କବିତା, ତାହାହିଁ ନାରୀତ୍ୱ ପ୍ରତି ଶ୍ରେଷ୍ଠ ପୂଜା ଓ ସମ୍ମାନ । ହୁଏତ ପତ୍ନୀବିରହ ବିଧୁର ପ୍ରୌଢ଼ ଫକୀରମୋହନ କୌଣସି ବିଦେଶିନୀ ଯୁବତୀ ପ୍ରତି କେବେ ଏହିପ୍ରକାର ସାମାନ୍ୟ ଆକର୍ଷଣ ଅନୁଭବ କରିଥିଲେ । ତାହା ପୁଣି ମୃତ୍ୟୁର ମାତ୍ର ଚାରିବର୍ଷ ପୂର୍ବେ; କିନ୍ତୁ ସେ ତାହାକୁ ଏକ ପାପ-କଳଙ୍କ ବୋଲି ରାଧାନାଥଙ୍କ ପରି ଧୋଇବାକୁ ଯାଇ ନାହାନ୍ତି । ହେ ଅକୁଣ୍ଠିତ ଭାବରେ ଘଟଣାଟି କେବଳ ରେକର୍ଡ଼ କରି ଯାଇଛନ୍ତି । ଏପ୍ରକାର ନିର୍ଦ୍ଦୋଷ ପ୍ରଣୟାକର୍ଷଣ ନାରୀ ଓ ପୁରୁଷ ଉଭୟ ବ୍ୟକ୍ତିତ୍ୱର ଉଚ୍ଚର ସରସତା ହିଁ ସୂଚନା କରେ ।" (ପୃ ୨୦୪।୨୦୫, ସରସ୍ୱତୀ ଫକୀରମୋହନ) ଗ୍ରନ୍ଥଟିର ଐତିହାସିକ କ୍ରମରେ ବେଶୀ ତ୍ରୁଟି ନରହିଲେ ମଧ୍ୟ ତ୍ରୁଟି ଯେ ରହିଛି ଏହା ମାନିବାକୁ ହେବ । ଅନେକ କଥା ମଧ୍ୟ ବାକି ରହି ଯାଇଛି ବର୍ଣ୍ଣନା କରିବାକୁ । ଏଥିପାଇଁ ସଫେଇ ଦେବାକୁ ଯାଇ ମାନସିଂ କହିଛନ୍ତି, "ଏକ ବିସ୍ତୀର୍ଣ୍ଣ ଆତ୍ମ ଚରିତ ସତ୍ତ୍ୱେ ଫକୀରମୋହନଙ୍କର ଏପରି ଏକ ଜୀବନୀ ଲେଖିବା ପାଇଁ ବହୁତ ଗବେଷଣା କରିବାର ଅଛି । ଏ ଗ୍ରନ୍ଥର ଲେଖକ କୌଣସି ଗବେଷଣା କରିପାରିନାହିଁ । ସେନାପତିଙ୍କ ଉପରେ ଓଡ଼ିଆ ଭାଷାରେ ଯେଉଁ ଉପାଦାନ ସବୁ ବର୍ତ୍ତମାନ ପ୍ରାପ୍ତବ୍ୟ କେବଳ ସେହିଗୁଡ଼ିକର ସାହାଯ୍ୟ ନେଇ ଏ ଜୀବନୀ ଲେଖିବାକୁ ଯାଇଛି ।" (ସ: ଫକୀରମୋହନ ଭୂମିକା ପୃ-୪) ଏ ଦୃଷ୍ଟିରୁ ବିଚାର କଲେ ଗ୍ରନ୍ଥଟିରେ କେତେକ କାଳଗତ ଭ୍ରାନ୍ତି ଦୃଷ୍ଟିଗୋଚର ହୁଏ । ତଥାପି ତାହା ସେତେ ଗୁରୁତର ନୁହେଁ, ଯେପରି ଅନ୍ୟ କେତେକ କ୍ଷେତ୍ରରେ ଘଟିଥାଏ । ମାତ୍ର ସାହିତ୍ୟ ସମାଲୋଚନା ବେଳେ ମାନସିଂ ଅତ୍ୟନ୍ତ ଏକଦେଶଦର୍ଶୀ ସ୍ଥଳ ବିଶେଷରେ ହୋଇ ଉଠିଛନ୍ତି । ତେଣୁ ଅନ୍ୟ କେତେକ ସ୍ରଷ୍ଟାଙ୍କ ସେ ତୀବ୍ରଭାବେ ସମାଲୋଚନା କରିଛନ୍ତି । ପ୍ରବନ୍ଧର କଳେବର ବୃଦ୍ଧି, ଆଶଙ୍କାରେ ସେ ସବୁକୁ ପୁଙ୍ଖାନୁପୁଙ୍ଖ ଆଲୋଚନା ଏଠି କରିବା ସମ୍ଭବ ହେଉନି ।

ଗ୍ରନ୍ଥଟିକୁ ଶୈଳୀ ଦୃଷ୍ଟିରୁ ବିଚାର କଲେ ଏହାର ଚମତ୍କାରିତା ପାଠକକୁ ମୁଗ୍ଧ କରେ । ଗ୍ରନ୍ଥର ବିଭିନ୍ନ ଅଧ୍ୟାୟର ନାମ କରଣ ପାଠକକୁ କୌତୂହଳ ସହିତ ଆକୃଷ୍ଟ କରେ । ଯଥା:—ଅନାକାଙ୍କ୍ଷିତ ଶିଶୁ, ବନ୍ଦରର ବାଲେଶ୍ୱରର ବାଳକ ଶ୍ରମିକ, ଫକୀର ପଣ୍ଡିତେ, ଉତ୍କଳ ପ୍ରେସ, ମଧ୍ୟଯୁଗୀୟ ପାଶ୍ଚାତ୍ୟପଟ ଆଦି ପରିଚ୍ଛେଦ ସେଗୁଡ଼ିକର ନାମକରଣକୁ ସାର୍ଥକ କରିଛି । ସେହିପରି ଗୁଷାଗ୍ନିଗର୍ଭ ପ୍ରତିଭା,

ଅନଭ୍ୟାସେ ବଷଂବଦ୍ୟା, ଦୁଇନାଗ୍ଧର ମଙ୍ଗଳ ସ୍ୱର୍ଣ, ଫକୀରମୋହନ ଅଭିଜ୍ଞତା ପାଠକକୁ ଏ ଜୀବନୀ ସମ୍ପର୍କରେ ଭାବିବାକୁ ବାଧ୍ୟ କରେ । ଶେଷ ତିନିଗୋଟି ଅଧ୍ୟାୟ ମଧ୍ୟ ଲେଖକଙ୍କର ବସ୍ତୁଧାରାର ଶେଷ ସଫଳତା । ଏହି ପରିଚ୍ଛେଦରେ ଲେଖକ ଫକୀରମୋହନଙ୍କ ଶେଷ ଅବସ୍ଥାର ଦୁଃଖରେ ମ୍ରିୟମାଣ ହୋଇ ତା'ର କାରଣ ସ୍ୱରୂପ ସେନାପତିଙ୍କ ପୁତ୍ରଙ୍କ ପ୍ରତି ସାମାନ୍ୟ ଅସ୍ୱଚ୍ଛ ହୋଇ ଉଠିଛନ୍ତି । ଏହା ଅବଶ୍ୟ ଖୁବ୍ ସତର୍କତାର ସହିତ । ଏକ ପ୍ରଚଣ୍ଡ ପ୍ରତିଭା ପ୍ରତି ଅନ ବ୍ୟାଳ ଆକର୍ଷଣ ଏହାର କାରଣ । ତେଣୁ କ୍ଷମଣୀୟ ।

ଗଦ୍ୟ ସମ୍ରାଟଙ୍କ ଜୀବନୀ ରଚନା କରିବାକୁ ଯାଇ ମାନସିଂ ଏକ ଅଭିନବ ଗଦ୍ୟ ଶୈଳୀର ଆଶ୍ରୟ ନେଇଛନ୍ତି । କେଉଁଠି ତାହା ଖୁବ୍ କାବ୍ୟମୟ ହୋଇଛି ତ (ଉପରେ ଦତ୍ତ ଉଦାହରଣକୁ ଲକ୍ଷ୍ୟ କରାଯାଇ ପାରେ) କେଉଁଠି ତାହା ଖୁବ୍ କଥିତ ଭାଷାରେ ବର୍ଣ୍ଣିତ ମଧ୍ୟ । ଏହି ଭାଷା ପୁଣି ଠାଏ ଠାଏ ଖୁବ୍ ନିର୍ଦ୍ଦେଶ ଭଳି ଜଣାଯାଏ । ଫକୀରମୋନଙ୍କ ବ୍ୟକ୍ତିତ୍ୱର କଳନା ସ୍ଥାନରେ ଏ ଫକୀରମୋହନ ଭାଷା ଖୁବ୍ ଜ୍ୟାମିତିକ ବା ଯୁକ୍ତିଯୁକ୍ତ । ଏଠି ଜଣାପଡ଼େ ସତେ ଯେମିତି ଫକୀର ମୋହନଙ୍କ ଗଦ୍ୟ କିଛି ଇଂରାଜୀ ପଢ଼ି ପୁଣି ଭାଙ୍ଗି ଭୁଙ୍ଗି ହୋଇ ତା'ର ସ୍ୱତନ୍ତ୍ର ଶୈଳୀ ପ୍ରଦର୍ଶନ କରୁଛି । ଗ୍ରନ୍ଥର ଯେ କୌଣସି ପୃଷ୍ଠାରେ ପାଠକ ଏହାର ସତ୍ୟାସତ୍ୟ ପରୀକ୍ଷା କରିପାରନ୍ତି ।

ଫକୀରମୋହନ ଓଡ଼ିଶାରେ ବ୍ୟାସକବି ରୂପେ ପରିଚିତ ହେଲେ ହେଁ ଏଠି ମାନସିଂ ତାଙ୍କୁ ବାମଣ୍ଡାରୁ ଦିଆ ଯାଇଥିବା (୧୯୧୭ ଖ୍ରୀଷ୍ଟାବ୍ଦରେ) "ସରସ୍ୱତୀ" ଉପାଧିକୁ ଗ୍ରହଣ କରିଛନ୍ତି । କାରଣ ଫକୀରମୋହନ କେବଳ କବି ନୁହନ୍ତି ସେ ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ, ଜୀବନୀକାର, ଭ୍ରମଣ କାହାଣୀ ଲେଖକ, ପାଠ୍ୟ ପୁସ୍ତକ ପ୍ରଣେତା । ଏସବୁ କ୍ଷେତ୍ରରେ ସେ ସଫଳ । ତେଣୁ ତାଙ୍କୁ ସରସ୍ୱତୀ ବୋଲି ଗ୍ରହଣ କରିବା ଅଧିକ ଯୁକ୍ତି ଯୁକ୍ତ । ଜୀବନକାଳରେ ଅନେକ ସମ୍ପଦ ଓ ସମ୍ମାନ କମାଇଥିଲେ ହେଁ ତାଙ୍କର ଶେଷ ଅମର ସମ୍ମାନ ହେଲା ଏହି 'ସରସ୍ୱତୀ' । ଏଇଥି-ପାଇଁ ହିଁ ସେ ଓଡ଼ିଆଙ୍କ ପ୍ରାଣରେ ସବୁଦିନ ପାଇଁ ପୂଜ୍ୟ ହୋଇ ରହିବେ, ଏହାହିଁ ମାନସିଂ 'ସରସ୍ୱତୀ ଫକୀରମୋହନ'ଗ୍ରନ୍ଥରେ ପ୍ରମାଣ କରିଛନ୍ତି । ଏ ଗ୍ରନ୍ଥ ସହିତ ଆଉ ଓଡ଼ିଆ ସାହିତ୍ୟର କୌଣସି ସାହିତ୍ୟ ସ୍ରଷ୍ଟାଙ୍କ ଜୀବନୀ ତୁଳନା କରିହେବାକୁ ଯାଉ ନାହିଁ । ହୁଏତ ଆସନ୍ତା କାଳ ଏହାର ଜବାବ ଦେବ । ଏହି ଜବାବ ହିଁ ହେବ ସାରସ୍ୱତ ମନ୍ଦିରର ଅନ୍ୟ ଏକ ଅମୂଲ୍ୟ ସମ୍ପଦ ।

ଗ୍ରନ୍ଥ-ଗବେଷକ
ବାଣୀବିହାର

●

# ସବୁଜ ସମସାମୟିକ ଏକକ କବି ଡକ୍ଟର ମାୟାଧର ମାନସିଂହ

**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ଚଳିତ ଶତକର ଓଡ଼ିଆ କବିତାରେ ସବୁଜ ସମସାମୟିକ କବି ମାୟାଧର ମାନସିଂହ ପ୍ରଣୟୋଜ୍ଜ୍ୱଳ ପ୍ରେମକବିତାର ଶ୍ରେଷ୍ଠ ଗୀତିକାରଭାବେ ପରିଚିତ ହେଲେ ମଧ୍ୟ ଏହି ପ୍ରଣୟଚେତନା ତାଙ୍କ କାବ୍ୟକବିତାର ଏକମାତ୍ର ପରିଚୟ ନୁହେଁ । ସ୍ୱଦେଶାନୁରକ୍ତିର ରୋମାଣ୍ଟିକ୍ ଦୃଷ୍ଟିବଳୟଠାରୁ ପଲ୍ଲୀଜୀବନର ଅସଂଖ୍ୟ ଭାବାନୁଭୂତି ଓ ରୂପରହସ୍ୟ ବାଣ୍ଟଦେଇ ଆର୍ତ୍ତ ମାନବାତ୍ମାର ସ୍ୱର ପ୍ରକାଶ ଓ ଆଧିଭୌତିକ ଉତ୍ତରଣରେ ତାଙ୍କ କବିତା ଦୀର୍ଘ ଚାଳିଶ ବର୍ଷ ଧରି ବହୁ ଭାବ ଓ ମାର୍ଗ ଅନୁସରଣ କରି ବିବିଧତାର ପରିଚୟ ଦେଇପାରିଛି । ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀରେ ରାଧାନାଥଙ୍କ କାବ୍ୟଚେତନା ସହିତ ମାନସିଂହଙ୍କ ଚେତନାରେ ଅନେକ ସାମ୍ୟ ଉପଲବ୍ଧି କରାଯିବ । କଳାସୃଷ୍ଟିର ଉଚ୍ଛ୍ୱସିତ ଆହ୍ୱାନରେ ରାଧାନାଥ ତାଙ୍କ ରୋମାଣ୍ଟିକ୍ ଦୃଷ୍ଟିବଳୟ ମଧ୍ୟରେ ଜାତିର ଗୌରବାବହ ଅତୀତକୁ ରୂପାୟିତ କରିବା ପରିବର୍ତ୍ତେ ବହୁ ବିଡ଼ମ୍ବିତ କାହାଣୀକୁ ଅବଲମ୍ବନ କରିଛନ୍ତି; କିନ୍ତୁ କବି ମାନସିଂହ ରାଧାନାଥୀ କାବ୍ୟଚେତନାର ଦୃପ୍ତ ପ୍ରତିବାଦଭାବେ ଆତ୍ମପ୍ରକାଶ କରିଥିବା ସତ୍ୟବାଦୀଯୁଗର କାବ୍ୟ ଆଭିମୁଖ୍ୟ ପ୍ରତି ଅତ୍ୟନ୍ତ ସଚେତନ ଥିବା ମନେହୁଏ । ତେଣୁ ପ୍ରଥମରୁ ହିଁ ତାଙ୍କ କାବ୍ୟଚେତନାରେ ରାଧାନାଥୀ ରୂପପ୍ରାଣତା ଓ ସତ୍ୟବାଦୀର ଉଗ୍ର ଜାତୀୟ-ଆଭିମୁଖ୍ୟ ସମନ୍ୱିତ ହୋଇ ଏକ ଚମତ୍କାର କଳାତ୍ମକ ରୂପ ଗ୍ରହଣକରିଛି । ତାଙ୍କ 'କୋଣାର୍କ' ସମ୍ପର୍କୀୟ ଏକାଧିକ କବିତାରେ ଏହି ଦୃଷ୍ଟିଭଙ୍ଗୀ ଖୁବ୍ କଳ୍ପନାପ୍ରବଣ ଓ ସୁଦୂରପ୍ରସାରୀ ହେଲେ ବି ଏହି ଜାତୀୟ ଚେତନାରୁ ହିଁ ଏହାର ଜନ୍ମ-ପରିକଳ୍ପନା ସମ୍ଭବ ହୋଇଛି [୧] । ସବୁଜ ସମସାମୟିକ କବିଭାବରେ ମାନସିଂହ-କାବ୍ୟଚେତନାର ଏହି ଭିନ୍ନ ଦିଗ

---

୧ । 'କୋଣାର୍କ'—'ବାରୁଣୀ' ଆଷାଢ଼ ୧୩୩୩ (ଜୁନ୍ ୧୯୨୬) ରେ ପ୍ରଥମେ ଲେଖକ 'ଶ୍ରୀ'—ଛଦ୍ମନାମରେ ପ୍ରକାଶିତ ।

ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ସମସାମୟିକ ସବୁଜ ସୁବଦ୍ଧଭୂମିରେ ସତ୍ୟବାଦୀ କାବ୍ୟ-ଅଭିମୁଖ୍ୟର ଏହି ବିଶିଷ୍ଟ ଦିଗଟିକୁ ସଚେତନଭାବେ ଉପେକ୍ଷା କରିଥିବାବେଳେ ମାନସିଂହଙ୍କ କାବ୍ୟମାନସରେ ଏହା 'କୋଣାର୍କ'ରେ ଜନ୍ମନେଇ କ୍ରମେ 'ବାରବାଟୀ' (୧୯୨୫), 'ସାଧବଝିଅ' (୧୯୨୦) 'ଉତ୍କଳବନ୍ଦନା' (୧୯୩୬) ଆଦିରେ ବିକଶିତ ହୋଇ 'କମଳାୟନ' (୧୯୪୭) ରେ ଏକ ପରିଣତ ବିଶ୍ୱତୋମୁଖୀ ରୂପ ଗ୍ରହଣ କରିପାରିଛି; କିନ୍ତୁ ଏହି ଜାତୀୟ ସ୍ୱାର୍ଥ ବା ଜାତୀୟ ଗୌରବାବହ ଅତୀତ କେବଳ ପୀଠିକାମାତ୍ର । ଏଥିରେ ରୂପପ୍ରାଣ ରୋମାଣ୍ଟିକ୍ ଚେତନାର ଦୂରଗାମୀ ପରିକଳ୍ପନାରେ ଚମତ୍କାର କାବ୍ୟହର୍ମ୍ୟ ନିର୍ମାଣ କରାଯାଇଛି । ଫଳରେ ତାଙ୍କର ପରିକଳ୍ପନାରେ ପ୍ରାଥମିକ ଅବଶୋଷର କ୍ଷତିପୂରଣ ରୂପେ ଅପ୍‌ସରାମାନେ ଆସି ଏକ ଚନ୍ଦ୍ରାୟିତ ରଜନୀରେ କୋଣାର୍କର ସେଇ ଭଗ୍ନବପ୍ରାର ପାଖରେ ନୃତ୍ୟଉଚ୍ଛଳ ହୋଇଛନ୍ତି । ତା'ପରେ 'କୋଣାର୍କ'ରେ ଆଉ ଜାତୀୟ ବେଦନାବୋଧର ଚିହ୍ନ ନାହିଁ; ଖାଲି ରୂପର ଉତ୍ସବ, ଖାଲି ଦେହର ପୂଜା ଓ ଯୌବନର କୌଳୁସ । ଏଇ ପର୍ଯ୍ୟାୟରେ ତାଙ୍କ ତରୁଣ କାବ୍ୟମାନସରେ ଉରୁ, ଉରଜ ଓ ଜଘନାଦିର ଆକର୍ଷଣ ଯେ ଅଧିକ ତାହା ଏହି ଚେତନାର ପରବର୍ତ୍ତୀ ରୂପ 'କୋଣାର୍କର ଲସ୍ୟଲୀଳା' (୧୯୩୫) ଓ 'ମୁମୂର୍ଷୁ କୋଣାର୍କ'ରୁ ପ୍ରତିପନ୍ନ ହୁଏ ।୨। କିନ୍ତୁ ଏହି ଅଭିଯୋଗରୁ ନିଷ୍କୃତି ପାଇଁ କବି ପରେ ପରେ ଏଇ 'କୋଣାର୍କ' ଗୀତିକାବ୍ୟରେ ଶିଳ୍ପୀବନ୍ଦନା ମଧ୍ୟ କରିଛନ୍ତି ଓ ଜଣେ ଜାତୀୟତାବାଦୀ କବିଭାବେ ଏଇ ଅତୀତ ରୂପଉତ୍ସବର କରୁଣ ପରିଣତିରେ ମ୍ରିୟମାଣ ହୋଇପଡ଼ିଛନ୍ତି ।୩। ତେଣୁ ରୋମାଣ୍ଟିକ୍ କଳ୍ପନାପ୍ରବଣତା ସହିତ ଜାତୀୟ ଚେତନାର ଏଇ ସମନ୍ୱୟରେ ତାଙ୍କ ରଚିତ ଏଇ ଶ୍ରେଷ୍ଠ ଗୀତିକାବ୍ୟର ଅଖଣ୍ଡ ଆବେଗ ନେଇ ଠିଆହୁଏ । ଏହି ଦୃଷ୍ଟିଭଙ୍ଗୀର ଏକ ସମ୍ପ୍ରସାରିତ ରୂପ 'ବାରବାଟୀ' କବିତାରେ ମଧ୍ୟ ଲକ୍ଷ୍ୟ କରାଯିବ ।୪। 'ବାରବାଟୀ' ଓଡ଼ିଶାର ଗୌରବଦୀପ୍ତ ଅତୀତ ଅଧ୍ୟାୟର ଧ୍ୱଂସାବଶେଷ ମାତ୍ର । ତେଣୁ ଇଂରେଜୀ ସାହିତ୍ୟର

---

୨। (କ) 'କୋଣାର୍କର ଲସ୍ୟଲୀଳା'— ସହକାର ୧୭ ଭାଗ, ଭାଦ୍ର-ଆଶ୍ୱିନ ୧୩୪୦। (ଅଗଷ୍ଟ-ସେପ୍‌ଟେମ୍ବର, ୧୯୩୫) ।

(ଖ) 'ମୁମୂର୍ଷୁ କୋଣାର୍କ'— ଝଙ୍କାର ୧୨।୧ ସଂଖ୍ୟା, ଏପ୍ରେଲ ୧୯୬୦ ।

୩। 'ମୁମୂର୍ଷୁ କୋଣାର୍କ' (କୋଣାର୍କ, ଗ୍ରନ୍ଥାବଳୀ—ପୃ ୨୫୫'—"ଆଜି ତମେ ନଥ ଯା ବଦାୟୁ/ଅଭିମାନ ସେ କି ଆପେ, ଏ ମାଟିରେ ଆର ନାହିଁ ଆଜି/ ହେ କି ଯୋଗ୍ୟ ତବ ପଦେ ଦେବାଲାଗି ଗୌରବର ଭେଟି/ତବ ରୂପ ପୂଜା ପାଇଁ କିଛି ମଧ୍ୟ ନାହାନ୍ତି ବା, ହାୟ !"

୪। 'ବାରବାଟୀ'—'ଉତ୍କଳ ସାହିତ୍ୟ' ୩୦/୮ ମାର୍ଗଶୀର ୧୩୩୪ (ନଭେମ୍ବର ୧୯୨୬) ପରେ 'ମାଟିବାଣୀ'—(ଗ୍ରନ୍ଥାବଳୀ ପୃ. ୩୧୭ରେ ସଯୋଜିତ ) ।

*

ରୋମାଣ୍ଟିକ୍ କବି ବାଇରନ୍ ସ୍କଟ୍ ଆଦିଙ୍କ କବିତାରେ ବିମୂର୍ତ୍ତି ହୋଇଥିବା ଜାତୀୟ ଅତୀତର କଥା ସହିତ ଚିତ୍ତପରି କବି ମାନସିଂହଙ୍କ ଚେତନାରେ ବାରବାଟୀ ଏକ ବିରାଟ ସ୍ୱପ୍ନର ସାର୍ଥକ ପ୍ରହରୀ ମେଲିଦେଇଛି । ବାରବାଟୀର ପତନ ସଙ୍ଗେ ସଙ୍ଗେ ଏ ମହାଜାତିର ଶୋଚନୀୟତା ଓ ଦୈନ୍ୟପାଇଁ କବି ସ୍ୱାଭାବିକ ଭାବେ ବେଦନାହତ ହୋଇଛନ୍ତି । ତେଣୁ ତାଙ୍କ କାବ୍ୟସ୍ୱରରେ ଏ ଜାତିର ଦୁର୍ଦ୍ଦଶା ପାଇଁ ପ୍ରଚ୍ଛନ୍ନ କାରୁଣ୍ୟ ଓ ଆହ୍ୱାନ ମିଶିରହିଛି । ଏଠାରେ ତାଙ୍କ ଦୃଷ୍ଟିଭଙ୍ଗୀ ତେଣୁ ଅତ୍ୟନ୍ତ ବିଷଣ୍ଣ ଓ ବିମର୍ଷ ।

ବୋଧହୁଏ ଏଇ ବିମର୍ଷ ଦୃଷ୍ଟିଭଙ୍ଗୀ ଶ୍ରୀ ମାନସିଂହଙ୍କୁ ଆଉ ଏକ ଜାତୀୟ ଗୌରବପୂର୍ଣ୍ଣ ଅତୀତର ପୃଷ୍ଠାଙ୍କ ଉନ୍ମୋଚନ କରିବା ପାଇଁ ବାଧ କରିଛି । ତେଣୁ ଏହି କାବ୍ୟ-ପ୍ରକ୍ରିୟାର ସ୍ୱାଭାବିକ ପରିଣତି ଭାବେ ସେ ବାଛିନେଇଛନ୍ତି ଓଡ଼ିଶାର ଅତୀତ ଗବ୍ୱୋଦ୍ଧୃତ ଏକ ନୌଯାତ୍ରାକାଳୀନ ପ୍ରସଙ୍ଗ—ବହୁପରିଚିତ 'ସାଧବଝିଅ' ।୫। ପୁନଶ୍ଚ ଲକ୍ଷ୍ୟ କରିବାର କଥା ଯେ ଏପରି ଏକ ବିଷୟବସ୍ତୁ ନିର୍ବାଚନରେ ତାଙ୍କ ପରିଚିତ ରୋମାଣ୍ଟିକ୍ କାବ୍ୟମାନସ କଳ୍ପନାର ମୁକ୍ତ ପକ୍ଷ ବିସ୍ତାର କରି ଉଡ଼ିଯିବାର ଅବାଧ ସୁଯୋଗ ଲାଭକରିଛି । ରୂପର ବିଳାସ ଓ ସୌନ୍ଦର୍ଯ୍ୟର ଉଚ୍ଛ୍ୱାସରେ କବି ବିଭୋର ହୋଇ ପଡ଼ିଛନ୍ତି; ଅଥଚ ସମସାମୟିକ କବିମାନଙ୍କ କାବ୍ୟଚିନ୍ତାଠାରୁ ଏ ଚିନ୍ତା କେତେ ତଫାତ୍ ? ସବୁଜ ଓ ମାନସିଂହ ଉଭୟେ ରୋମାଣ୍ଟିକ କଳ୍ପନା-ବିଳାସୀ ହେଲେ ମଧ୍ୟ ମାନସିଂହ ସବୁଜଙ୍କ ପରି 'ପଲ୍ଲୀମହଲ'ର ପରିକଳ୍ପନା କରି ଜାତୀୟ ଜୀବନର ସମସ୍ୟାକୁ ଉପେକ୍ଷା କରିନାହାନ୍ତି । ସେ ସବୁବେଳେ ଓଡ଼ିଶା ଓ ଓଡ଼ିଆଣୀଙ୍କ ମୁହଁକୁ ଆଖି ପକେଇଛନ୍ତି । ତେଣୁ ଏଇ ଆତ୍ମମୁଖ୍ୟରୁ ଜନ୍ମନେଇଛନ୍ତି ସାଧବଝିଅ ଓ କେମିତି ପରି କେତୋଟି ଚରିତ୍ର—ସେମାନେ ଏଇ ମାଟିର ବିମୂର୍ତ୍ତି ଚେତନା ଓ ଚରିତ୍ରପ୍ରତିମା; କାଳ୍ପନିକ ହେଲେ ବି ସେସ୍ତାନେ ଆମର ଅତି ଆପଣାର ଓ ନିକଟର ବୋଲି ମନେହୁଅନ୍ତି । ତେଣୁ ଏ ଚିନ୍ତା ପାଖରେ ଷୋଡ଼ଶୀ ସାଧବଝିଅ ତା'ର ପରିପୂର୍ଣ୍ଣ ହିଲ୍ଲୋଳ ଯୌବନ ଓ ପୂଜାପାଠ ଧରି ଠିଆହେବା ସ୍ୱାଭାବିକ । ଏହି କବିତାଟି ସହିତ ପରେ 'ସାଧବପୁଅ', 'ମାଲୁଣୀ', 'ମାଳାଗ୍ରହଣ' ଆଦି ଅଧ୍ୟାୟ-ଗୁଡ଼ିକ ବିଭିନ୍ନ ସମୟରେ କବିତାକାରରେ ଲିଖିତ ହୋଇ ମାନସିଂହଙ୍କ ଏହି ରୋମାଣ୍ଟିକ୍ ଦୃଷ୍ଟିବଳୟକୁ ପରିବ୍ୟାପ୍ତ କରିଅଛି ।୬। ପରେ ପରେ ଏହା ଏକ କାବ୍ୟ

୫ । 'ସାଧବଝିଅ'—'ଉତ୍କଳସାହିତ୍ୟ' ୩୩/୨, ଜ୍ୟେଷ୍ଠ ୧୩୩୬ (ମେ ୧୯୨୯)
['ସାଧବଝିଅ' କାବ୍ୟର ପ୍ରଥମ କବିତା । ]

୬ । 'ସାଧବପୁଅ'—'ସହକାର' ୧୨/୮, ମାର୍ଗଶିର ୧୩୩୯ ( ନଭେମ୍ବର ୧୯୩୧) ['ସାଧବଝିଅ' କାବ୍ୟର ୨ୟ କବିତା ]।
'ମାଲୁଣୀ'—ସହକାର' ୧୧/୭, କାର୍ତ୍ତିକ ୧୩୩୯
('ସାଧବଝିଅ'ର ୪ର୍ଥ କବିତା) ।

କାହିଁକାର ଅଂଶ ରୂପେ ସଂଯୋଜିତ ହେବାରୁ ପାଠକେ ଏହି ଖଣ୍ଡକବିତାଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ଚିନ୍ତାର ନିବିଡ଼ ଯୋଗସୂତ୍ର ରୂପେ ଦେଖିବାକୁ ପାଇଲେ । ୭ ।

ଏହି କାବ୍ୟମାନସରେ 'କୋଣାର୍କ'ଠାରୁ 'ସାଧବଝିଅ' ପର୍ଯ୍ୟନ୍ତ ରୋମାଣ୍ଟିକ୍ ଓ ଜାତୀୟତାବାଦୀ ଚେତନାର ଚମତ୍କାର ସହାବସ୍ଥାନ ଦେଖିବାକୁ ମିଳେ । ପ୍ରଥମ ଚେତନାଟି ତାଙ୍କ କାବ୍ୟର ଅଭିମୁଖ୍ୟ ହେଲେ ଅନ୍ୟଟି ଏହାର ପରିପ୍ରକାଶ ମାତ୍ର । କାରଣ ରୋମାଣ୍ଟିକ୍ କବି ମାତ୍ରେଇ ଅତୀତ-ଆମୁଖ୍ୟ । ତେଣୁ ଏଇ ସମନ୍ୱୟ ବା ସିନ୍ଥେସିସ୍ ଶ୍ରୀ ମାନସିଂହ କାବ୍ୟସମୀକ୍ଷା ପାଇଁ ଏକ ନିର୍ଦ୍ଦିଷ୍ଟ ଦିଗର ସନ୍ଧାନ ଦିଏ—ଯାହାର ଅନ୍ୟ ଏକ ପରିପ୍ରକାଶ ହୋଇପାରେ 'ମହାନଦୀରେ ଜ୍ୟୋସ୍ନାବିହାର' କବିତା । ୮ । ସୁଧାନାଥଙ୍କ ପରି ପ୍ରକୃତିର ରୂପ ଆସ୍ୱାଦନ କରୁ କରୁ ସେ ଜାତୀୟ ଅତୀତ ଆଡ଼କୁ ସତ୍ୟବାଦୀ ଯୁଗର କବିମାନଙ୍କପରି ଏକ ବ୍ୟଥିତ ଦୃଷ୍ଟି ନିକ୍ଷେପ କରିଛନ୍ତି । ଗଙ୍ଗବଂଶର କୀର୍ତ୍ତିରାଜି ତଥା ଖାରବେଳଙ୍କ ସାରସ୍ୱତ ଉତ୍ତରାଧିକାରୀ ଓଡ଼ିଶାର ସାମ୍ପ୍ରତିକ ଦୁରବସ୍ଥାରେ ସେ ସ୍ୱାଭାବିକ ଆହତ ହୋଇଛନ୍ତି । ସେଇ ବେଦନାର ସ୍ୱର ନିମ୍ନ ପଙ୍କ୍ତିରେ ରୂପନେଇଛି—

"ହାୟରେ ଉତ୍କଳଭୂମି ! ପ୍ରକୃତି ସୁନ୍ଦର/
ମହାନଦୀ ସମ ନଦୀ, ଶିବ ସମ ଗିରି,
କାନନେ କେଦାରେ ଲକ୍ଷ ଶୋଭାର ବିହାର/
ଥାଉଁ ତୋର କହ କମା ଏତେ ହତଶିରୀ ?

ଏ ସ୍ୱର୍ଗ ସୁଷମା ସାର, କରିବି ବିଶ୍ୱାସ/
କେମନ୍ତେ କହିଲେ ତା'ର ଅନ୍ତର ଅଭାବ ?
ସୁରସମ ମୁଗ୍ଧ କରେ ମୋରେ ଯା ନିଶ୍ୱାସ/
ତା ଦେହେ ସମ୍ଭବ କାହିଁ ଦୁର୍ଦ୍ଦିନ-ପ୍ରଭାବ ?"
( ମହାନଦୀରେ ଜ୍ୟୋସ୍ନା ବିହାର )

---

'ମାଲାଗ୍ରହଣ'—'ସହକାର' ୨୩ ୧୦, ଅକ୍ଟୋବର ୧୯୪୩
('ସାଧବଝିଅ'ର ୮ମ କବିତା ) ।

୭ । 'ସାଧବଝିଅ' କାବ୍ୟର ପ୍ରଥମ ପ୍ରକାଶନ ୧୯୪୭ ।

୮ । (କ) 'ମହାନଦୀରେ ଜ୍ୟୋସ୍ନାବିହାର'—'ଉତ୍କଳସାହିତ୍ୟ' ୩୩/୭, କାର୍ତ୍ତିକ ୧୩୩୭ (ନଭେମ୍ବର ୧୯୨୯)

(ଖ) 'ଉତ୍କଳ ବନ୍ଦନା'—'ବିଚ୍ଛିନ୍ନା' ୧/୧, ଭାଦ୍ର ୧୩୨୫ (ଅଗଷ୍ଟ ୧୯୩୭)ରେ ଏହି ଭାବଧାରା ମଧ୍ୟ ପ୍ରତିଫଳିତ ।

ଏ ପ୍ରଶ୍ନ ଯୁଗେ ଯୁଗେ ଜାତୀୟତାବାଦୀ କବିମାନେ ବହୁରୂପରେ ଓ ବହୁ-ଭାବରେ ପଚାରିଛନ୍ତି । ବର୍ତ୍ତମାନର ଦୁଃଖ-ଦୁର୍ଦ୍ଦଶାରେ ଅଶ୍ରୁମୋଚନ କରିବା ସଙ୍ଗେ ସଙ୍ଗେ ଉଦବୋଧନ ପାଇଁ ଆଶାନ୍ୱିତ ଆହ୍ୱାନ ମଧ୍ୟ ଶୁଣାଇଛନ୍ତି; କିନ୍ତୁ ସବୁଜ କବି-ମାନେ ଏପରି ଏକ ମାନସିକ ଆଲୋଡ଼ନରୁ ନିଶ୍ଚିତ ଦୂରତାରେ ଥାଇ କଳ୍ପନାର ହିନ୍ଦୋଳରେ ଦୋଳିଖେଳୁଥିଲାବେଳେ ରୋମାଣ୍ଟିକ୍ କବି ମାନସିଂହ ଯେ ଓଡ଼ିଶାର ଅତୀତ ଆଡ଼କୁ ସତର୍କ ଦୃଷ୍ଟି ନିକ୍ଷେପ କରିଛନ୍ତି ଏହା ବିସ୍ମୟଜନକ ବ୍ୟାପାର ନିଶ୍ଚୟ ।

ଓଡ଼ିଶା ପାଇଁ ଏଇ ବ୍ୟାକୁଳପ୍ରାଣ କବି ଅନ୍ତରରେ ତା'ର କାବ୍ୟଚେତନାର ସମସ୍ତ ବ୍ୟତିକ୍ରମ ଓ ବୈଷମ୍ୟ ସତ୍ତ୍ୱେ ଯେ ଗଭୀର ଦରଦ ଥିଲା, ଏହା 'ମା ଓଡ଼ିଶା', 'ହରିଷ୍ଟ ଉତ୍କଳ', 'ବନ୍ଦେ ଉତ୍କଳ ଜନନୀ', 'ବୋଇତବନ୍ଦାଣ', 'ତଅପୋଇ ବିଳାପ', 'ବାଲଲକ୍ଷ୍ମୀ' ଆଦି ବିଭିନ୍ନ ସମୟର ରଚନାବଳୀରେ ସ୍ପଷ୍ଟ ହୋଇ-ଯାଇଛି । ୯ । ପୁଣି ଏଇ ସଶ୍ରଦ୍ଧ କାବ୍ୟ-ଚେତନାରେ ଓଡ଼ିଶାର ବହୁ ବରିଷ୍ଠ ମନୀଷୀଙ୍କ ସମ୍ପର୍କରେ ତାଙ୍କର ଶ୍ରଦ୍ଧା ନିବେଦିତ—ଯନ୍ଧିରେ ଓଡ଼ିଶାର ସ୍ପର୍ଦ୍ଧାଶୀଳ ଅତୀତକୁ ଚହ୍ଲେଇଦେବା ପାଇଁ ଚେଷ୍ଟା କରାଯାଇଛି । ଏହି ବ୍ୟକ୍ତିନିର୍ଭରଜନ ପର୍ଯ୍ୟାୟରେ ଗୋପବନ୍ଧୁଙ୍କ ମୃତ୍ୟୁରେ ରଚିତ ଦୁଇଟି କାଳଜୟୀ କବିତା 'ଗୋପତର୍ପଣ' । ୧୦ । ଓ 'ଗୋପପ୍ରୟାଣ' । ୧୧ । ସମେତ ସ୍ୱଭାବକବି ଗୋପାଳକୃଷ୍ଣ, ଭଗବତୀଚରଣ ପାଣିଗ୍ରାହୀ, ରାଜକୁମାର ଶୁଭେନ୍ଦ୍ର, ରାଧାନାଥଙ୍କ ସମ୍ପର୍କରେ କେତୋଟି କବିତା 'ମାଟିବାଣୀ'ରେ ସଂଯୋଜିତ ହୋଇଛି । ଏଇ ମହାପୁରୁଷମାନେ ହିଁ ଏଇ ମାଟିର ବାଣୀକୁ ମୁଖର କରିଯାଇଛନ୍ତି ଓ କବିପ୍ରାଣରେ ଗ୍ରନ୍ଥିତ ହୋଇଯାଇଛନ୍ତି ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଶୀଳ ମମତ୍ୱବୋଧ । ଫଳରେ କବିର ସ୍ପର୍ଶକାତର ସ୍ୱଦେଶପ୍ରେମୀ ମନ ସେଇମାନଙ୍କ ଉଦ୍ଦେଶ୍ୟରେ ଉଚ୍ଛ୍ୱସିତ ହୋଇଉଠିଛି ।

ପୁଣି ଲକ୍ଷ୍ୟ କରିବାର କଥା ଯେ ଏଇ ଜାତୀୟଚେତନା ଅନ୍ତରାଳରେ ଏକ ଗଭୀର କାରୁଣ୍ୟ କବିଆତ୍ମାକୁ ସବୁବେଳେ ବିମଣ୍ଡିତ କରିପକାଇଛି; କିନ୍ତୁ ହାହୁତୋଷି ହୋଇ ସେ ସେଇ କାରୁଣ୍ୟରେ ନିଜର ସତ୍ତାକୁ ହରାଇ ବସିନାହାନ୍ତି କିମ୍ବା କବି ଚନ୍ଦ୍ରମଣିଙ୍କ ପରି ତରଳ ବିଳାପ କରିନାହାନ୍ତି । ତାଙ୍କ ମନରେ ସବୁବେଳେ ଆସିଛି ଏକ ସଂଶୟ—"ସତେ କି'ଣ ଆଉ ସେ ଅତୀତ ଫେରିବନି"—ଏଇ ଭାବରେ ସେ ସେପରି ମୁକ୍ତିକ ପାଇଁ ଅନ୍ତର୍ଲୀନ ହୋଇପଡ଼ିଛନ୍ତି ।

---

୯ । ବିଭିନ୍ନ ସମୟରେ ଏହି କବିତାଗୁଡ଼ିକ ରଚିତ ହୋଇ ପରେ 'ମାଟିବାଣୀ' ( ୧୯୪୭ ରେ ପ୍ରକାଶିତ ) ରେ ସ୍ଥାନ ପାଇଛି ।

୧୦ । 'ଉତ୍କଳସାହିତ୍ୟ' ୩୨/୩, ଆଷାଢ଼ ୧୩୩୫ (ଜୁଲାଇ ୧୯୨୮) ।

୧୧ । 'ସମାଜ'—ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା, ୩ୟ ଶ୍ରାଦ୍ଧ ସମ୍ବତ୍ସର ୧୫ । ୬ ।୧୯୩୧

"ଚିରନ୍ତନ ପାଇଁ ସେ କି ଯାଇଛନ୍ତି ଗୁଳି,
ନଫେରିବେ ରାଜରାଣୀ, ନଫେରିବେ ଘରେ ?
ବୋଇତ ବନ୍ଧାଣ ଲାଗି ଏ ତଟିନୀ ବାଲି
ନାଗରିକା ପଦପ୍ରାନ୍ତ ନଚୁମ୍ବିବ ଧୀରେ ?
ଦୁର୍ଗ ଆଉ ଉଠିବନି ?..............."

( ମହାନଦୀରେ ଜ୍ୟୋତ୍ସ୍ନା ବିହାର )

ମାନସିଂହଙ୍କ ଏଇ ଅତୀତଦୃଷ୍ଟି ସମ୍ପନ୍ନତା ଥିଲା ତାଙ୍କ କାବ୍ୟଚିନ୍ତାର ଏକାନ୍ତ ଅନ୍ତର୍ଦ୍ୱନ୍ଦ୍ୱମୁକ୍ତ ସରଳରୈଖିକ କଳ୍ପନା । ଏ ଦୃଷ୍ଟିରୁ ସେ ଶେଷ ପର୍ଯ୍ୟନ୍ତ ନିଷ୍କୃତି ପାଇପାରିନାହାନ୍ତି । ଫଳରେ ଓଡ଼ିଶା କବିତାରେ ଅତ୍ୟାଧୁନିକତାର ସମସ୍ତ ଆଟେଂପ ଓ ଆଙ୍ଗିକ ଆଡ଼ମ୍ବରଠାରୁ ସେ ନିରାପଦ ଦୂରତାରେ ଅବସ୍ଥାନ କରିଛନ୍ତି । ଏସବୁ ପରୀକ୍ଷା ଓ ପ୍ରୟୋଗର ବୃଦ୍ଧିବାଦୀ ଜାଲ ଭିତରେ ତାଙ୍କ କାବ୍ୟ ପ୍ରୟାସର ସରଳ ସ୍ୱଚ୍ଛ ଅଭିବ୍ୟକ୍ତି ଛନ୍ଦହୋଇଯାଇନାହିଁ । ମୋଟଉପରେ "ମାନସିଂହ ଥିଲେ ସେଇ ମୁହୂର୍ତ୍ତି ଯାହା ଏକ ଐଶ୍ୱର୍ଯ୍ୟମୟ ଅତୀତକୁ ଏକ ବିଚ୍ଛିନ୍ନ ଦୂରତ୍ୱରୁ ନିରୀକ୍ଷଣ କରିବାର ଆନନ୍ଦ ଓ ଅଭିମାନରେ ପୂର୍ଣ୍ଣ, ଅଥଚ ଯାହା ବର୍ତ୍ତମାନର ଯନ୍ତ୍ରଣା ଓ ଜଟିଳତାରୁ ଯଥାସମ୍ଭବ ବିଚ୍ଛିନ୍ନ ହୋଇ ରହିବାକୁ ନିଜର କାବ୍ୟଧର୍ମ ବୋଲି ମନେକରିଆସିଛି ।" ୧୨ ।

ଏ ଆତ୍ମମୁଖ୍ୟ ତାଙ୍କ କବିତାରେ ମଧ୍ୟ ସବୁଜର ପ୍ରତିବାଦ ଭାବରେ ଆସିଛି, ତାଙ୍କ ଲିଖିତ ପ୍ରବନ୍ଧର କିମ୍ଭ ପଙ୍କ୍ତିଗୁଡ଼ିକରେ ଏହା ସ୍ପଷ୍ଟ ହୁଏ । "ଏ ଦେଶରେ ଯେ କିଆ, ପୋଲଙ୍ଗ ଫୁଟି ଝଡ଼ିପଡ଼ୁଛି, ସେ ଖବର ନରଖି ଏମାନେ ଜୁମେଲି, ଗୋଲାପ, ବେଲଫୁଲ, ହାସ୍ନାହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧବଝିଅ ନଈରେ ଗାଧୋଇଲାବେଳେ ଛିଣ୍ଡିପଡ଼ିଥିବା ବାଉଁହାତ ଲମ୍ବ ବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇଦେଇ ଅନାଇ ରହିଛି । ସେ ଦୃଶ୍ୟ କବିମାନେ ଦେଖିପାରୁ ନାହାନ୍ତି; ସେମାନେ ସବୁଜପତ୍ର ଓ ଆସମାନ ପରୀର ନୃତ୍ୟ ଆମକୁ ଦେଖାଉ-ଅଛନ୍ତି ।" ୧୩ । ତେଣୁ ଏଇ କାବ୍ୟ ପ୍ରତିଜ୍ଞାରୁ ଶ୍ରୀ ମାନସିଂହ ଯେ ଓଡ଼ିଶାର ଗୌରବମୟ ପରମ୍ପରା ଓ ଐତିହ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । ଏହି ଆକର୍ଷଣର ଅନ୍ୟ ଏକ ଦିଗ ତାଙ୍କର ପଲ୍ଲୀକବିତାମାନଙ୍କରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି ।

---

୧୨ । "କବି ମାୟାଧର ମାନସିଂହ—ଏକ ସ୍ୱପ୍ନ ପ୍ରୟାଣ"—'ମାନସିଂହ ସ୍ମରଣିକା' —ପୃ ୧୪—ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ।

୧୩ । 'ପରଧର୍ମ'—("ଓଡ଼ିଆ ସାହିତ୍ୟ ଓ ସମାଜ'), 'ସହକାର' ୧୩/୧୧, ଫାଲ୍‌ଗୁନ ୧୩୪୦ (ମାର୍ଚ୍ଚ-୧୯୩୩) ।

**ପଲ୍ଲୀଜୀବନାଲେଖ୍ୟ :**

ଆଗରୁ ସୂଚିତ ହୋଇଚି ଯେ ସବୁଜର ପ୍ରତିଷ୍ଠାରେ ମାନସିଂହ-କାବ୍ୟମାନସ ସଙ୍ଗଠିତ । ସବୁଜ କବିମାନେ ପଲ୍ଲୀର ବିପୁଳ ଜୀବନଗାଥା ଓ ରୂପବିଭବକୁ ଭୁଲି ସୁଦୂରର ଆକର୍ଷଣରେ ଉଚ୍ଛ୍ୱସିତ ହୋଇଉଠିଥିଲେ । ମାନସିଂହ କିନ୍ତୁ ପ୍ରଥମରୁ ତାଙ୍କ ପରିଚିତ ପରିଧି ପଲ୍ଲୀର ଅଗଣିତ ସୁଖ-ଦୁଃଖର ସ୍ମୃତି ପ୍ରତି ଦୃଷ୍ଟିପାତ କରିଛନ୍ତି । 'ରେଙ୍ଗୁନ ଚିଠି', 'ବର୍ଷା ସନ୍ଧ୍ୟା', 'ଘରପଣା' (ଗୃହମାୟା), 'ବିଲଲକ୍ଷ୍ମୀ', 'କଣ୍ଟକାଚ', 'ବୋଇତବନ୍ଦାଣ', 'ନଷ୍ଟପଲ୍ଲୀ' ଆଦି "ମାଟିବାଣୀ"ର ପ୍ରକାଶିତ କବିତାଗୁଡ଼ିକରେ ଏଇ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ପ୍ରତିଫଳିତ ହୁଏ । 'ଜେମା' କାବ୍ୟ (୧୯୩୭ରେ ଲିଖିତ ଓ ୧୯୪୯ରେ ପ୍ରକାଶିତ) ସାମଗ୍ରିକ ଭାବେ ଏହି ଦୃଷ୍ଟିଭଙ୍ଗୀର ପ୍ରତିନିଧିତ୍ୱ କରେ । ଯେତେଦୂର ମନେହୁଏ ୧୯୨୮-୨୯ ଠାରୁ ୧୯୩୬-୩୭ ପର୍ଯ୍ୟନ୍ତ ଶ୍ରୀ ମାନସିଂହଙ୍କ କବିତାରେ ରୋମାଣ୍ଟିକ୍ ପ୍ରଣୟ-ମୁଖ୍ୟ-କାବ୍ୟଚେତନାର ସମାନ୍ତରାଳ ଭାବନା ରୂପେ ପଲ୍ଲୀଜୀବନର ବହୁ କରୁଣ ମଧୁର ଚିତ୍ର ଜୀବନ୍ୟାସ ନେଇଛି । କେଉଁଠି ରେଙ୍ଗୁନ ଯାତ୍ରୀ ରୁକ୍ମିଣୀରଞ୍ଜନ ପୁଅ ସ୍ୱାମୀକୁ ଗୁହାରି ଗୁହାରି ତା ମାଆ ଆଖିରୁ ଲୁହ ଶୁଖେ, କେତେ ଆଗ୍ରହ ଆକୁଳତା ନେଇ ସେ ଚିଠିପାଇଁ ଗୁହାରି ରହେ ତ କେଉଁଠି ଦରିଆ ପାରିହୋଇ ଜୀବିକା ଉଦ୍ଦେଶ୍ୟରେ ବିଦେଶ ଯାଉଥିବା ମାଆଛେଉଣ୍ଡ ଗୋକୁଳ ପାଇଁ ମାଆଠାରୁ ଅଧିକ ଖୁଡ଼ୀ ଦିଅଁଦେବତାଙ୍କ ପାଖେ ଅଶ୍ରୁଳ ନିବେଦନ ଡାଳି-ଦିଏ । ପଲ୍ଲୀଜୀବନର ଘରକେନ୍ଦ୍ରଯେ ଆର୍ଥନୀତିକ ଗୃହହେତୁ କ୍ରମେ ସହରାଭିମୁଖୀ ହେବାରେ ଲଗିଛି ତା'ର ବିଷାଦପୂର୍ଣ୍ଣ ଚିତ୍ର ଏସବୁ କବିତାରେ ପ୍ରକାଶିତ । ୧୪ । ପଲ୍ଲୀର ବର୍ଷାକାଳୀନ ଦୃଶ୍ୟ ବର୍ଣ୍ଣନାରେ, ସନ୍ଧ୍ୟାକାଳରେ ଗରିଆ ହାତରେ ଧରି କ୍ଷିପ୍ର ପଦପାତରେ ଘରକୁ ଫେରିଆସୁଥିବା ପଲ୍ଲୀ ତରୁଣୀର ରୂପ ଓ ଗତି ବର୍ଣ୍ଣନାରେ ତଥା ପଲ୍ଲୀର ଶ୍ୟାମଳ ପ୍ରାନ୍ତର ଓ ଧାନ୍ୟକ୍ଷେତ୍ର ତଥା ପ୍ରକୃତିର ବିପୁଳ ବିଭୂତିର ଚିତ୍ରରେ ସେ ଅଗ୍ରଜ କବି ନନ୍ଦକିଶୋର ବଳଙ୍କ ପଦାଙ୍କ ଅନୁସରଣ କରିଥିଲେ ମଧ୍ୟ ନନ୍ଦକିଶୋରଙ୍କ ପଲ୍ଲୀଚିତ୍ରର ପ୍ରାଣପ୍ରାଚୁର୍ଯ୍ୟ ତାଙ୍କ କବିତାରେ ପ୍ରକାଶ ପାଇନାହିଁ ।୧୫।

---

୧୪ । (କ) 'ରେଙ୍ଗୁନ୍ ଚିଠି'—('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୨୭)—ରେଭେନ୍ସାଭିଆନ, ଅକ୍ଟୋବର ୧୯୨୯ ।

(ଖ) 'ଘରପଣା'—('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୫୫)—'ସହକାର' ୧୩/୭, କାର୍ତ୍ତିକ ୧୩୪୦, ଅକ୍ଟୋବର ୧୯୩୨ରେ ଏହି କବିତାଟି 'ଗୃହମାୟା' ନାମରେ ପ୍ରକାଶିତ ।

୧୫ । (କ) 'ବର୍ଷା ସନ୍ଧ୍ୟା'('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୨୩)—'ସହକାର' ୧୨/୧୨, ଚୈତ୍ର ୧୩୩୯ (ମାର୍ଚ୍ଚ ୧୯୩୨) ।

(ଖ) 'ପଲ୍ଲୀ ସନ୍ଧ୍ୟା'—('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୨୦)—'ଭକ୍ତପ୍ରଦୀପ' ଏପ୍ରିଲ, ୧୯୪୨ ।

ଅବଶ୍ୟ ସେ ପଲ୍ଲୀର ଅଗଣିତ ସମସ୍ୟା ପ୍ରତି ସଚେତନ ହୋଇଉଠିଛନ୍ତି ଓ ଏହି ସଚେତନତା ତାଙ୍କ କବିତାର ସ୍ୱରକୁ ବେଦନାବ୍ୟଥିତ କରିଅଛି । ଫଳରେ ସାହୁକାରର ଶୋଷଣ ଓ ସେଥିରୁ ଆତ୍ମରକ୍ଷା କରିବାକୁ ପଲ୍ଲୀ କୃଷକ ଓ ଦରିଦ୍ର ଜନତାର ବିଷାଦପୂର୍ଣ୍ଣ ମୁହୂର୍ତ୍ତର ଚିତ୍ରରେ ତଥା ଓଡ଼ିଶାର ଚିର ଦାରିଦ୍ର୍ୟ-ପ୍ରପୀଡ଼ିତ ପଲ୍ଲୀଜୀବନର କରୁଣ ଚିତ୍ରରେ ତାଙ୍କ କବିତାର ମାନବବାଦୀ ସ୍ୱର ଅତ୍ୟନ୍ତ ସ୍ପଷ୍ଟ ଓ ମୁଖର । ତେଣୁ କେତେ ଗୋକୁଳ ନାଏକ, ଧାନା ପଧାନଙ୍କ କାତର ଆଖି କବିର ସମମର୍ମୀ ଅନ୍ତରକୁ ଅଗାଇଦିଏ । ପୁଣି ସେଇ ଶୋଷଣପିଷ୍ଟ ଜୀବନରେ କେତେ ଶ୍ୟାମଳ ଧାନକ୍ଷେତ ଓ ପକ୍ୱ ଶସ୍ୟର ମୋହ ପଲ୍ଲୀମଣିଷର ସମସ୍ତ ଦୁଃଖ-କଷ୍ଟକୁ ମୁହୂର୍ତ୍ତକ ପାଇଁ ଭୁଲାଇଦିଏ ମଧ୍ୟ । ୧୬ । ସେଇଠି କେତେ ପୁନେଇଁ ପର୍ବ, କେତେ ବୋଇତ ବନ୍ଦାଣର ସାଙ୍ଗ ଢୋଲ ଚହଲ, କେତେ ଆନନ୍ଦ ଉତ୍ସବର କଳରବ, ପୁଣି ସେଇ ପଲ୍ଲୀ କେତେବେଳେ କୁଟିଳ ପ୍ରକୃତିର କ୍ରୋଧରେ ଭଗ୍ନପକ୍ଷ ମୈନାକ ବା ବାତ୍ୟାବିଧ୍ୱସ୍ତ ଶ୍ମଶାନ ମଧ୍ୟ । ସେଠି ଗ୍ରାମଦାଣ୍ଡର ଶିଶୁର କ୍ରୀଡ଼ା, ଗ୍ରାମ୍ୟ ନାରୀର ନଣନ୍ଦନିଆ ଝଗଡ଼ା, ମାଟି ସଙ୍ଗେ ମାଟି ହେଉଥିବା କୃଷକର ଚିରନ୍ତନ ଜୀବନ-ସଂଗ୍ରାମ, ଭୋଜଭାତ, ଗୀତ ଓ ଭାଗବତ ସବୁ ନିସ୍ତବ୍ଧ ହୋଇଯାଏ । ପଲ୍ଲୀର ନିରୀହ ମଣିଷଟି ବିଚାରି ପ୍ରକୃତିର ଏଇ ତାଣ୍ଡବଲୀଳା ଦେଖି ଜଡ଼ସଡ଼ ଭାବରେ ଭଗବାନଙ୍କୁ ହିଁ ସ୍ମରଣ କରେ ।୧୭। ଚିଲିକାର ଜଳାବର୍ତ୍ତ ମଧ୍ୟରେ ଅବସ୍ଥିତ ଦ୍ୱୀପପୁଞ୍ଜରେ ବାଲ୍ୟ, କୈଶୋର ଓ ଯୌବନର ବହୁ ଅଂଶ ଅତିବାହିତ କରି କବି ମାନସିଂହଙ୍କ ପାଇଁ ଏ ଅନୁଭୂତି ଦୁର୍ଲ୍ଲଭ ନଥିଲା । ପୁଣି ଏହି କୈଶୋରର ସ୍ମୃତି ଉପରେ ଆଧାରିତ ତାଙ୍କ ଗ୍ରାମର ସମାଜ-ପରିତ୍ୟକ୍ତା କାଞ୍ଚନ ଅପାର ଜୀବନର କରୁଣ ପରିଣତି ଓ ସ୍ନେହାସ୍ପଦା ନିଜ ଅପାର 'କଣ୍ଟକାଚ' ସବୁ କାଳ ପାଇଁ ଦୁଇଟି ଅମଳିନ ସୃଷ୍ଟିର ସ୍ୱାକ୍ଷର ବହନ କରିବ । ୧୮ ।

ଏହି ଦୃଷ୍ଟିଭଙ୍ଗୀର ବ୍ୟାପକ ବିସ୍ଫୋରଣ ଘଟିଛି ପଲ୍ଲୀଲଳନା ଜେମା ଜୀବନର କରୁଣ ପରିଣତିକୁ ଅବଲମ୍ବନ କରି ପଡ଼ିଉଠିଥିବା 'ଜେମା' କାବ୍ୟରେ ।୧୯। ଏ

---

୧୬ । 'ବାଲି ଲକ୍ଷ୍ମୀ'—('ମାଟିବାଣୀ' ଗ୍ରନ୍ଥାବଳୀ ପୃ ୩୩୫) –'ଆଧୁନିକ' ୧/୫ ସେପ୍‌ଟେମ୍ବର ୧୯୩୬ ।

୧୭ । 'ନଷ୍ଟ ପଲ୍ଲୀ'—୧୯୪୩ର ବାତ୍ୟା ପରେ ଲିଖିତ—(ଗ୍ରନ୍ଥାବଳୀ ପୃ. ୩୫୫) ।

୧୮ । (କ) 'ଅନୂଢ଼ା'—('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୫୬) ।
(ଖ) 'କଣ୍ଟକାଚ'—('ମାଟିବାଣୀ'—ଗ୍ରନ୍ଥାବଳୀ ପୃ. ୩୫୯) ।

୧୯ । 'ଜେମା'—ପ୍ରକାଶନ ସମୟ ୧୯୪୭; କିନ୍ତୁ ଦଶବର୍ଷ ତଳର ରଚନା ବୋଲି କବି ମୁଖବନ୍ଧରେ ଦାବୀ କରିଛନ୍ତି । ଏ କବିତାର ୧ମ ସର୍ଗର କେତେକ ଅଂଶ ପ୍ରଥମେ 'ବୁଢ଼ା ଦଲେଇ' ନାମରେ 'ନବଭାରତ' ୪/୨ ମିଥୁନ ୧୩୪୪ (ଜୁନ୍ ୧୯୩୭)ରେ ପ୍ରକାଶ ପାଇଥିଲା ।

କାବ୍ୟରେ ମାନସିଂହଙ୍କ ରୋମାଣ୍ଟିକ୍ ପ୍ରେମସୂଚେତନାର ପର୍ଯ୍ୟାପ୍ତତା ଉପଲବ୍ଧ ହେଲେହେଁ ଏହାର ଉପସଂହାରରେ ପ୍ରେମର ଉଚ୍ଛ୍ୱସିତ ରୂପ ମିଳେନାହିଁ; ବରଂ ତା' ପରିବର୍ତ୍ତେ ଏକ ଦୁଃଖ ଭାରର ବାସ୍ତବବାଦୀ ସ୍ୱରର କାରୁଣ୍ୟ ଶୁଣାଯାଏ । 'ଧୂପ' ପରି ଏ କାବ୍ୟ ଭୋଗର ଉତ୍ସ ନୁହେଁ; ବରଂ ଭାରତୀୟ ନାରୀର ତ୍ୟାଗରେ ଦୀପ୍ତିମନ୍ତ । କବି ମାନସିଂହଙ୍କ ଭାଷାରେ ଏ ପ୍ରେମର ରୂପ ନିମ୍ନମତେ ପ୍ରକାଶିତ—

> "ପ୍ରେମ ନୁହେଁ ଦେହ, ଦେହୁଁ ଭୋଗ ଅନ୍ୱେଷଣ
> ପ୍ରେମ ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ ।
> ପ୍ରେମ ପୂର୍ଣ୍ଣ-ସମର୍ପଣ ଏକ ଅନ୍ୟ ପାଇଁ
> ପ୍ରେମ ଆନପାଇଁ ଦେବା ନିଜକୁ ହଜାଇ ।"

ହେମା ଜୀବନରେ ପ୍ରେମର ଏହି ତ୍ୟାଗପୂତ ଅଭିଜ୍ଞାନ ତାର କୁମାରୀ ଜୀବନର ସମସ୍ତ ସ୍ୱପ୍ନ ଓ ସମ୍ଭାବନାକୁ ଲୁଣ୍ଠିତ କରି କଠୋର ପରୀକ୍ଷାର ସମ୍ମୁଖୀନ ହୋଇଛି । ସେ ପଲ୍ଲୀର ଏକ ପରିତ୍ୟକ୍ତା ନାରୀ; ଅଥଚ ସେଥିପାଇଁ ସେ ନିଜେ ଦାୟୀ ନୁହେଁ । ଗୁରୁଜନଙ୍କ ଇଚ୍ଛାର ସ୍ୱୀକୃତିରେ ସେ ମୃତା ଭଗ୍ନୀର ସ୍ୱାମୀଙ୍କୁ ବିବାହ କରିଥିଲି, କିନ୍ତୁ ହେମା ତାରୁଣ୍ୟର ସୋହାଗ-ସ୍ନିଗ୍ଧ ସ୍ୱପ୍ନିଳ ପରିବେଶରେ ଉପନୀତ ହେବା ପୂର୍ବରୁ ଏ ସ୍ୱାମୀ ହେଲେ ପଳାତକ । ସେ ଆଉ ଫେରିଲେନି । ପୁନଶ୍ଚ ଭାଉଜଙ୍କ ଭାଇ ହେମାପ୍ରତି ମମତାପ୍ରବଣ ହୋଇଉଠନ୍ତି; କିନ୍ତୁ ଦୃଢ଼ଚିତ୍ତା ପଲ୍ଲୀ ତରୁଣୀ ଲକ୍ଷ୍ୟ କରେ ଯେ ଏପରି ଆସକ୍ତିରେ ପ୍ରେମ ଅପେକ୍ଷା ଇନ୍ଦ୍ରିୟ-ଭୋଗ-ଲିପ୍ସା ଅଧିକ । ତେଣୁ ଜୀବନରେ ସେ ସମସ୍ତ ତାରୁଣ୍ୟସୁଲଭ ଆକର୍ଷଣକୁ ବିସର୍ଜନଦେଇ ମୃତା ଭଗ୍ନୀର ସନ୍ତାନ ଓ ଶାଶୁଙ୍କ ସେବାରେ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାଣ ଓ ମନ ଢାଳିଦିଏ । ଏହି ଘଟଣା ପଛରେ ଜଣେ ଭାରତୀୟ ମହିଳାର କଠୋର ଆତ୍ମ-ତ୍ୟାଗର ଆଦର୍ଶ ଚିତ୍ର ଲକ୍ଷ୍ୟ କରାଯିବ । ଉଚ୍ଛ୍ୱସିତ ଇନ୍ଦ୍ରିୟସର୍ବସ୍ୱ ପ୍ରେମର ରୂପକାର ମାନସିଂହଙ୍କ କବିତାରେ ଏହା ଯେ ଏକ ଭିନ୍ନ ମାନଚିତ୍ର ଉପସ୍ଥାପିତ କରେ ଏଥିରେ ସନ୍ଦେହ ନାହିଁ । କାବ୍ୟ-କଳା ଦୃଷ୍ଟିରୁ ଏ କାବ୍ୟରେ ବହୁ ବିଲକ୍ଷଣ ଓ ବିଶୃଙ୍ଖଳତା ସ୍ପଷ୍ଟ ପ୍ରତିଭାତ ହେଲେ ବି ତାଙ୍କ ଚେତନାରେ ପୂର୍ବରୁ ରୂପ ନେଇଥିବା ଛତରଖାଇ ଗ୍ରାମବାଳିକା କାଞ୍ଚନ ଅପାର ସ୍ମୃତି ଯେ ବଳବତ୍ତର ଥିଲି ଏହା ନିଃସନ୍ଦେହ । 'ହେମା' ଅସଂଖ୍ୟ ଗ୍ରାମ୍ୟନାରୀଙ୍କ ଅନୁରୂପ ଦୁର୍ଭାଗ୍ୟ-ପ୍ରପୀଡ଼ିତ ଜୀବନଚିତ୍ରର ପ୍ରତିନିଧିତ୍ୱ କରେ । ସେମାନେ ଅସମୟରେ ସମାଜର ତାଡ଼ନାରେ କିମ୍ବା ଭାଗ୍ୟର ବିଦ୍ରୁପରେ ଏହିପରି ଜୀବନର ସମସ୍ତ ସମ୍ଭାବନା ହରେଇବସନ୍ତି । ଯୌବନାବସ୍ଥାରେ ରଚିତ ତାଙ୍କର ଅନେକ କବିତାରେ ଏହି ଚିତ୍ର ବହୁବିଧ ଚିନ୍ତା ଓ ଚେତନାକୁ ଅବଲମ୍ବନ କରି କ୍ରମେ ଏକ ବାସ୍ତବବାଦୀ ଦୃଷ୍ଟି-ଭଙ୍ଗୀର ପରିଚୟ ବହନ କରିଥିବା ଲକ୍ଷ୍ୟ କରାଯିବ ।

## ସେଦିନର କବିତା ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ :

ପ୍ରାୟ ୧୯୨୬ ଠାରୁ ୧୯୩୫ ମଧ୍ୟରେ ତାଙ୍କ ରଚିତ କେତେକ କବିତା 'ସେଦିନର କବିତା' ନାମରେ ସଂକଳିତ ହୋଇଅଛି । ଏହି କବିତାଗୁଡ଼ିକର ଭାବଧାରାରେ ବିବିଧତା ଓ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । କେଉଁଠି ତରୁଣସୁଲଭ ପ୍ରେମ, ପ୍ରଣୟ ଓ ଯୌବନର ଚିନ୍ତା ତ କେଉଁଠି ସାମାଜିକ ଅନ୍ୟାୟ ଓ ଅସଙ୍ଗତି ବିରୁଦ୍ଧରେ ପ୍ରତିକ୍ରିୟା; କେଉଁଠି ଜାତୀୟଚେତନାର ଭାବ ସଂପ୍ରସାରିତ ତ କେଉଁଠି ବିଶ୍ୱଚିନ୍ତାରେ କାବ୍ୟସ୍ୱର ଏକାନ୍ତ ଅନ୍ତର୍ମଗ୍ନ । ଏହି ପର୍ଯ୍ୟାୟରେ ଏକ କବିତା 'ମାଟିର ସତ୍ତ୍ୱ'ରେ ମାନସିଂହ କାବ୍ୟଚେତନାର ଉତ୍କୃଷ୍ଟ କଳ୍ପନାପ୍ରିୟତା ବେଶ୍ ବାରିହୁଏ । ସ୍ୱଜ ଅତ୍ୟାଚାରରେ ପ୍ରପୀଡ଼ିତ କୌଣସି ଗରିବ କୃଷୀ ଗ୍ରାମ ଓ କ୍ଷେତ ଛାଡ଼ି ଚାଲିଯାଇଛି । ଅନେକଦିନ ପରେ ଭିଟାମାଟି ଓ ଜନ୍ମଭୂମିର ମମତା ମୋହରେ ଫେରିଆସି ଦେଖେତ ପ୍ରଚୁର ଫସଲରେ ତା' କ୍ଷେତ ଫାଟିପଡ଼ୁଛି । ରଜାର ସୃଷ୍ଟି ପ୍ରଚୁର ସାର ଦେଇ ତା'ଠାରୁ ଅଧିକ ଫଳେଇପାରୁଛି । କୃଷୀର ମନେହେଲା—''ଏ ବସୁଧା ଗୋଟିଏ ଗଣିକା । ସେ ନିର୍ବିଚାରରେ ସମସ୍ତଙ୍କୁ ତା ଦେହ ଦାନ କରିପାରେ । ଯେ ରଖିଲା ସେ ତାଆର । ପୁରାତନ ପ୍ରିୟ ମଣିଷକୁ ବିବାକ୍ ପାଶୋର ପକାଏ । ୨୦ । ଏହି ଭାବଧାରା ନିଶ୍ଚିତଭାବେ ଏକ ସାମାଜିକ ପ୍ରତିକ୍ରିୟାରୁ ହିଁ ଜନ୍ମନେଇଛି । ଏହା ପରେ ପରେ ଲେଖକ ସମାଜର ସେଇ ଅଧଃପତିତ ଅବହେଳିତ ଶ୍ରେଣୀ ପ୍ରତି ଆକୃଷ୍ଟ ହୋଇଛନ୍ତି । ରିକ୍ସାବାଲା, ମଜଦୁର, କୃଷକ, ବଢ଼େଇ, କାରୀଗରୀ, କଳାସେବକ, ସ୍କୁଲ ମାଷ୍ଟର ପ୍ରଭୃତିଙ୍କ ପରି ସମାଜ-ଆର୍ଥନୀତିକ ନିର୍ମମ ପେଷଣ ତଳେ ନିତ୍ୟପେଷିତ ସମାଜର ଏଇ ତଳିଆ ଜୀବମାନେ ତାଙ୍କ କବିତାରେ ଜୀବନ୍ୟାସ ନେଇଛନ୍ତି । ସେମାନଙ୍କ ପ୍ରତି କବିକଣ୍ଠର ଦରଦ ଓ ଆତ୍ମୀୟତା ପ୍ରକୃତରେ ଏକ ବିସ୍ମୟର ବ୍ୟାପାର । ଏ କବିତାଗୁଡ଼ିକ ପାଠକଲେ ହଠାତ୍ ଯେପରି ମନେହୁଏ ଏ ରଚନା 'ଧୂପ' ବା 'ସାଧବଝିଅ' ପ୍ରଣେତା କବିଙ୍କର ସ୍ୱରନୁହେଁ, ଆଉ କୌଣସି ବାସ୍ତବବାଦୀ କମ୍ବା ସାମ୍ୟବାଦୀର ଏ ସ୍ୱର । ଏପରି କାବ୍ୟଚେତନା ସମୟର ସ୍ପନ୍ଦନ ତଥା ତାଙ୍କ ପ୍ରଣୟମୂଳକ କବିତାର ବାହ୍ୟ ପ୍ରତିକ୍ରିୟାରେ ସଙ୍ଗଠିତ ହୋଇଥିବା ଅନୁମିତ ହୁଏ । ତେଣୁ ଏକ ସାମୟିକ ଉଚ୍ଛ୍ୱାସ ଭାବରେ ରୋମାଣ୍ଟିକ୍ କବି ମାନସିଂହଙ୍କ ଯୁବସୁଲଭ ଚେତନାରେ ଅଳକପାଇଁ ମାତ୍ର ଏ ଭାବଧାରା ଜନ୍ମନେଇ ପୁଣି ସବୁଦିନ ପାଇଁ ଲିଭି ଯାଇଥିବା ଅତ୍ୟନ୍ତ ତାତ୍ପର୍ଯ୍ୟର ବିଷୟ । ସତେ ଯେପରି ଏ ସ୍ୱର ଓ ସମାଜର ଏଇ ଶ୍ରେଣୀର ଲୋକମାନଙ୍କ ସମସ୍ୟା ସହିତ ଏକନିଷ୍ଠ ହେବା ତାଙ୍କ ସୁସ୍ଥମନର ଚେତନା ନଥିଲା, କାରଣ ଏ କବି ବିପ୍ଳବୀ ନୁହେଁ, ସାମ୍ୟବାଦ ତା' କବିତାର ମନ୍ତ୍ର ବା ସାଧନ

୨୦ । 'ମାଟିର ସତ୍ତ୍ୱ' (ରଚନା ସମୟ ୧୯୩୦-୩୧)—'ସେଦିନର କବିତା' (ଗ୍ରନ୍ଥାବଳୀ ପୃ. ୧ )

ନୁହେଁ । ରୂପ ଓ ରୂପାନ୍ତରର ବର୍ଣ୍ଣିଳ ବିଶ୍ୱରେ ତାର କବିତା ମୁଖ୍ୟତଃ ରମଣୀୟ ଓ ଉପଭୋଗ୍ୟ । ତେଣୁ 'ତଳିଆ ଜୀବର ବିଳାପ'ରେ ପ୍ରକଟିତ ସାମାଜିକ ଅନୁଜ୍ଞା ଆଉ ତାଙ୍କ କାବ୍ୟଚେତନାର ପରିଧି ମଧ୍ୟରେ କୁହାପି ଧରାଦେଇନାହିଁ—ଏହା ଅତ୍ୟନ୍ତ ପରିତାପର ବିଷୟ । ୨୧ । ଏଠାରେ କିନ୍ତୁ ଏ ସ୍ୱର ପ୍ରଚ୍ଛନ୍ନ ବିଦ୍ରୋହମୁଖର । କୃଷକର ମିହନ୍ତରେ ଯେଉଁ ଶସ୍ୟ ଉତ୍ପନ୍ନ ହୁଏ ତାକୁ ଲୁଣ୍ଠନ କରେ ମଧ୍ୟସତ୍ତ୍ୱାଧିକାରୀ । ଖରାବର୍ଷା ଭିତରରେ ପଲପଲକରି ରକ୍ତ ଢାଳି ଯେ ଉତ୍ପାଦନ କରେ ସେ ତା'ର ଉପଭୋକ୍ତା ନୁହେଁ । ସେହିପରି ଶ୍ରମିକ ଓ ମଜଦୁର୍ ଉତ୍କଟ ଆର୍ଥନୀତିକ ଶୋଷଣ ଓ ବୈଷମ୍ୟରେ ପ୍ରପୀଡ଼ିତ । ସମାଜର ଏଇ ଉତ୍କଟ ବିଷମ ବ୍ୟବସ୍ଥା ବିରୁଦ୍ଧରେ ମାନସିଂହଙ୍କ ସ୍ୱରରେ ଆଗ୍ନେୟ ଆହ୍ୱାନ ନଥିଲେ ବି ରହିଛି ଗଭୀର ମାନବିକ ଅନ୍ତର୍ଦାହ । ତେଣୁ ଚିରଦିନ ଅଭାବରେ ସଢ଼ୁଥିବା କିରାଣୀ, ସ୍କୁଲ ଶିକ୍ଷକ, କଳାକାର ଆଦିଙ୍କ ପାଇଁ ତାଙ୍କ ସ୍ୱରରେ ଦରଦ ପୂରି ରହିଛି । ମାନବିକତାର ଅମ୍ଳାନ ଚିରନ୍ତନତାରେ ଏ ସ୍ୱର ଅତିମାତ୍ରାରେ ସାର୍ବଜନୀନ । ଏହା ଝଡ଼ର ଝଙ୍କାର ବା ବାତ୍ୟାର ବିକ୍ଷୋଭ ନ ହୋଇପାରେ, କିନ୍ତୁ ଏକ କାବ୍ୟପୁରୁଷର ଏହି ଅଭିବ୍ୟକ୍ତିରେ ଯେ ଭରିରହିଛି ଏହି ଅପାଙ୍‌କ୍ତେୟ ମଣିଷମାନଙ୍କ ପାଇଁ ଆନ୍ତରିକ ସମ୍ବେଦନା—ଏହା ଭୁଲିବାର ନୁହେଁ ।

କିନ୍ତୁ ଅତି ଦୁଃଖର କଥା, ମାନସିଂହ କାବ୍ୟଚେତନାର ଏହି ସାମୟିକ ଝଲକ ତାଙ୍କ ପରବର୍ତ୍ତୀ ସୃଷ୍ଟିରେ ଅଗ୍ରାଧିକୃତ ନୁହେଁ ବା ବିପ୍ଳବର ଏକ ନାନ୍ଦୀମୁଖ ନୁହେଁ; ବରଂ ଏହା ଏକ ସାମୟିକ ଖିଆଲମାତ୍ର । କାରଣ ସମଗ୍ର ମାନସିଂହ କାବ୍ୟ-କବିତାରେ ଅପେକ୍ଷାକୃତ କଞ୍ଚାବୟସର ଏହି ପ୍ରତିଚ୍ଛବି ଯୋଗସୂତ୍ର ରକ୍ଷା କରି ପାରିନାହିଁ । ବରଂ ଏ କାବ୍ୟଚେତନାକୁ ସ୍ୱାଭାବିକ ଭାବେ ରୋମାଣ୍ଟିକ୍ ଭାବବିଳାସ ଓ ପ୍ରଣୟ ସୁଲଭ ଅନୁଚିନ୍ତା ଅଧିକାର କରିବସିଛି ଓ ଧୀରେ ଧୀରେ ଏହାକୁ ଇନ୍ଦ୍ରିୟଗ୍ରାହ୍ୟ ଜଗତରୁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଆଗେଇ ନେଇଛି । ତେଣୁ ଓଡ଼ିଆ ସାହିତ୍ୟର ଇତିହାସ ତାଙ୍କୁ ସାମ୍ୟବାଦୀ ଆଖ୍ୟା ଦେଇନାହିଁ, ବରଂ ପ୍ରେମିକକବି

୨୧ । 'ତଳିଆ ଜୀବର ବିଳାପ'—ମାନସିଂହଙ୍କ ସୂଚନା ଅନୁଯାୟୀ ଏ କବିତା ଗୁଡ଼ିକ ୧୯୩୪-୩୫ ମଧ୍ୟରେ ରଚିତ ('ସେଦିନର କବିତା'—ଗ୍ରନ୍ଥାବଳୀ ପୃ: ୫୬)—କିନ୍ତୁ ଏହା ଧାରାବାହିକ ଭାବେ 'ସହକାର' ୨୩/୬, ୭, ୮, ୯, ସଂଖ୍ୟାରେ ପ୍ରକାଶିତ—ନଭେମ୍ବର ୧୯୪୨ ଠାରୁ ଜାନୁୟାରୀ ୧୯୪୩ ।
“ଜଣେ ଲୋକର ଏତେ ଯେ ଧନ, ଶୂନ୍ୟ କୋଟି ଲୋକ/ଜଣେ ଲୋକର ଭୋଗବିଳାସ ଆଉସବୁର ଭୋକ/ଏକ ବଗିର ଲୋକ ହଜାର ଖଟିଖଟିକା ମରେ/କୋଟିଏ ଲୋକ ବସି ବସି ତା' ବାକ୍ସ ଭର୍ତ୍ତିକରେ ।”
'ମଜଦୁର୍'—(ଡ: ଜା: ବି) ଗ୍ରନ୍ଥାବଳୀ ପୃ: ୫୮

ମାନସିଂହ ହିସାବରେ ପରିଚିତ କରାଇଛୁ । କାରଣ ତାଙ୍କ କାବ୍ୟ ସାଧନାର ଏକ ମୁଖ୍ୟ ଅଂଶ ପରକୀୟା ପ୍ରେମଭାବନାରେ ଅତ୍ୟନ୍ତ ଉଚ୍ଛ୍ୱସିତ ଓ ଆସକ୍ତ । ବୋଧହୁଏ ତାହାହିଁ ମାନସିଂହ କବିତାର ସର୍ବଶ୍ରେଷ୍ଠ ପରିଚୟ ମଧ୍ୟ ।

## ମାନସିଂହ ପ୍ରେମକବିତାର ସ୍ୱରୂପ :

ମାନସିଂହଙ୍କ ଗୁଣି ଗୁଣି କବିତାରେ ପ୍ରେମର ବିଳାସ ଓ ବିକାଶ ଏକ ବିଚିତ୍ର ଧାରାରେ ଚିତ୍ରିତ । ପରକୀୟାରୁ ସ୍ୱକୀୟା ବାଟ ଦେଇ କ୍ରମେ ଏକ ଇନ୍ଦ୍ରିୟାତୀତର ଅନୁଚିନ୍ତାରେ ଏହା ଯେତିକି ଦୈହିକ ସେତିକି ଊର୍ଦ୍ଧ୍ୱଗ । ଯେପରି ମନେହୁଏ ସବୁଜର ପ୍ରତିକ୍ରିୟାରେ ହିଁ ଏହି ପ୍ରେମାନୁଚିନ୍ତା ସଂଗଠିତ । କାରଣ ସବୁଜ ମାଟିର ମୋହକୁ ତ୍ୟାଗକରି ପ୍ରେମପାଇଁ ପରୀରାଜ୍ୟକୁ ହିଁ ପଳାୟନ କରିଥିଲେ । ତାର ପ୍ରେମିକା ଏଇ ପରିଚିତ ମାଟିର ନଥିଲେ, ଥିଲେ କଳ୍ପଲୋକର । କବି ମାନସିଂହଙ୍କ କବିତାରେ ଯୌବନସୁଲଭ ଏଇ ସବୁଜ କାବ୍ୟଚିନ୍ତା ବିରୁଦ୍ଧରେ ଉଗ୍ର ପ୍ରତିବାଦ ନିମ୍ନ ପଙ୍କ୍ତିରୁ ସ୍ପଷ୍ଟ ହେବ—

> "ଉଦ୍ଭରଳ ଯୌବନ କେତେକାଳ ଥିବ ଉଦ୍ଭରଳ,
> ପରୀରାଣୀ ଦେଉଥିବ କେତେକାଳ ଚୁମ୍ବନ କୋମଳ,
> କେତେଦିନ କ୍ରୀଡ଼ାକରି ସ୍ୱପ୍ନ ସଙ୍ଗେ ତେଜି ବାସ୍ତବତା/ଲଘୁ ମଧୁରତା
> ପାଉଥିବ ଜ୍ୟୋତ୍ସ୍ନା ସଙ୍ଗେ ରତିକ୍ରୀଡ଼ା ନୀରବ-ତରଳ ?" ୨୨ ।

ତେଣୁ ସମ୍ଭବତଃ କୌଣସି ଦୈହିକ ଅନୁଭୂତିକୁ ନେଇ ପରିପୁଷ୍ଟ ତାଙ୍କର ପରବର୍ତ୍ତୀ କବିତାଗୁଡ଼ିକ 'ଧୂପ' (୧୯୩୧) ନାମରେ ସଂକଳିତ ହୋଇ ମାନସିଂହ କାବ୍ୟପ୍ରତିଭାର ଚୂଡ଼ାନ୍ତ ସ୍ୱାକ୍ଷର ବହନ କରିଛି । ଓଡ଼ିଆ କାବ୍ୟକବିତାର ଇତିହାସରେ ମାନସିଂହ ଥିଲେ ରୋମାଣ୍ଟିକ୍ ଭାବଶୈଳୀର ଅଭ୍ୟୁତ୍ଥାନପନ୍ଥୀ । ଇଂରେଜୀ ସାହିତ୍ୟର ରୋମାଣ୍ଟିକ୍ ଯୁଗର କବିତା ସମ୍ପର୍କରେ ଆସି ରାଧାନାଥଙ୍କ ଦୃଷ୍ଟିଭଙ୍ଗୀ ଯେପରି ଭିନ୍ନ ବାଟରେ ପରିଚାଳିତ ହୋଇଥିଲା, କବି ମାନସିଂହଙ୍କ କାବ୍ୟାନୁଭୂତିରେ ତାହା ସୁସ୍ପଷ୍ଟ । ସେ ତେଣୁ କହିଛନ୍ତି—"କାବ୍ୟଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ, ଇଂରେଜ କବିମାନଙ୍କ ସଙ୍ଗେ ପରିଚୟ ଘଟିନଥିଲେ ସେ ଅନୁଭୂତି ଏ ପ୍ରକାର ଆତ୍ମପ୍ରକାଶ କରିନଥାନ୍ତା । ଆମ ସାହିତ୍ୟରେ ପ୍ରେମ-କବିତାର ଅରଣ୍ୟ ରହିଛି; କିନ୍ତୁ ସେଥିରେ ବିଚିତ୍ରତା ନାହିଁ । ସେ ଜଙ୍ଗଲ ଯେପରି ଗୋଟିଏ ଜଙ୍ଗଲ । କିନ୍ତୁ ଇଂରେଜୀ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ

---

୨୨ । 'ଉଦ୍ଭରଳ ଯୌବନ' ('ସେଦିନର କବିତା'—ଗ୍ରନ୍ଥାବଳୀ, ପୃ. ୪୮)—୧୯୩୦-୩୧ ରେ ରଚିତ ।

ଅଭିଜ୍ଞତାରେ ଶବଳିତ ।" ୨୩ । ତେଣୁ ଇଂରେଜୀ ସାହିତ୍ୟର ତତ୍କାଳୀନ କଲେଜଛାତ୍ର ମାନସିଂହ କିଟସ୍, ବାଇରନ୍, ଓ୍ୱାର୍ଡସ୍ୱାର୍ଥ ପ୍ରମୁଖ କବିଙ୍କ ପରି ନିଜର ବ୍ୟକ୍ତିଗତ ପ୍ରେମ, ପ୍ରଣୟ, ବିରହର ଉଚ୍ଛ୍ୱାସପୂର୍ଣ୍ଣ ଭାବନାଗୁଡ଼ିକୁ ଏକ ଉପଯୋଗୀ ଆନ୍ତରିକ ଶୈଳୀରେ ପ୍ରକାଶ କରିବାରେ କୁଣ୍ଠା ରଖିନାହାନ୍ତି । ତାଙ୍କ କବିତାର ପଙ୍କ୍ତିମାନଙ୍କରୁ ସ୍ପଷ୍ଟ ହୁଏ ଯେ କୌଣସି ବିବାହିତା (ଗୃହିଣୀ) ପରକୀୟା ବଧୂର ପ୍ରେମରେ ସେ ଅତି ଇନ୍ଦ୍ରିୟାଚ୍ଛନ୍ନ ଭାବେ ଆସକ୍ତ ଥିଲେ । ତେଣୁ ତାଙ୍କ କବିତାରେ ଇନ୍ଦ୍ରିୟଲବ୍ଧ ଅନୁଭୂତିର ବିପୁଳ ପ୍ରକାଶ ଘଟିଯାଇଛି । ୨୪ ।

"ଦୂରବାସୀ ପ୍ରିୟ ଭରେ ନିତି ବ୍ୟଥା ତୁମ ପାଇଁ ବନ୍ଦିନୀ !
ଉପାୟ କି ଅଛି ନେଇଛି ତ ଆନ ଶରୀର ତୁମର କିଣି ।
ରୂପ ତା'ରେ ଦିଅ, ସ୍ନେହ ମାଗେ ପ୍ରିୟ ଲକ୍ଷ ଯୋଜନ ଦୂରୁ,
ଦିନେ ଦିନେ ଖାଲି ମଙ୍ଗଳ-ଧୂପ ମୋ ନାମେ ଉଠୁ ସେ ପୁରୁ ।"

ତେଣୁ ଏହି ପରକୀୟାହିଁ 'ଧୂପ' କବିତାର ପ୍ରେରଣାଉତ୍ସ । କିନ୍ତୁ କେବଳ କ'ଣ ଏଇ ପ୍ରେରଣା ? ମାନସିଂହ ନିଜେ ସ୍ୱୀକାର କରିଛନ୍ତି—"କୌଣସି ନିର୍ଦ୍ଦିଷ୍ଟ ନାରୀ ବା ପୁରୁଷ ଯେ ମୋର ସାହିତ୍ୟିକ ଜୀବନର ମୂଳଉତ୍ସ—ଏକଥା ସ୍ୱୀକାର କରିବାର କୌଣସି କାରଣ ମୁଁ ଦେଖୁନାହିଁ । ଜୀବନପଥର ବହୁ ଅଭିଜ୍ଞତା ମଧ୍ୟରେ ସେମାନଙ୍କ ସହିତ ଦେଖା ଦେଖି ଓ ଚିହ୍ନାଚିହ୍ନି । ସେହି ସ୍ଥାନ ଓ ସେହି କାଳରେ, ସେହି ଅବସ୍ଥାରେ ଅନ୍ୟ କେହି ଆସିଥିଲେ ମଧ୍ୟ ହୁଏତ ସେଇ ଆତ୍ମିକ ଆଲୋଡ଼ନ ଘଟିଥାନ୍ତା । ଗୋଲାପ ଓ ପଦ୍ମ ତୋଳିବାକୁ ଗଲେ, ରୂପ ଓ ସୌରଭ ଭୋଗ ସଙ୍ଗେ କିଛି ପଙ୍କଲେପନ ଓ କଣ୍ଟକାଘାତ ଯେପରି ସହିବାରହିଁ କଥା, ମୋ ଭାଗ୍ୟରେ ତାହାହିଁ ଘଟିଥିବାରୁ ଜଗତର ପ୍ରତ୍ୟେକ ଜିନିଷକୁ ଆଲୋକ ଅନ୍ଧକାରର ମିଶ୍ରଣ ବୋଲି ମୁଁ ଦେଖିବାକୁ ଶିଖିଛି । କବିର ମଧ୍ୟ ଜ୍ଞାନଦନ୍ତ ଦିନେ ଉଠେ ।" ୨୫ ।

ମାନସିଂହଙ୍କ ଏହି ଅଭିବ୍ୟକ୍ତିର ବୈଶିଷ୍ଟ୍ୟ 'ଧୂପ'ର ପ୍ରଥମ କବିତା 'ତରୁଣ କବିର ଆଶା'ରୁ ସ୍ପଷ୍ଟ ପ୍ରତିପନ୍ନ ହେବ । ଏଠାରେ ହେଉଁ ସ୍ମୃତିର କ୍ଷତଚିହ୍ନ ପ୍ରକାଶିତ, କୈଶୋରର କୌଣସି ସାଥୀ ବାଳିକା ଉଦ୍ଦେଶ୍ୟରେ ତାହା ନିବେଦିତ । ୨୬ ।

---

୨୩ । 'ଧୂପ'ର ମୁଖବନ୍ଧରେ ମାନସିଂହ—'ମାନସିଂହ ଗ୍ରନ୍ଥାବଳୀ', ପୃ. ୬୦ ।
୨୪ । 'ବନ୍ଦିନୀପ୍ରିୟା' ('ଧୂପ' -ଗ୍ରନ୍ଥାବଳୀ ପୃ ୮୮ ।
୨୫ । 'ମୁଁ କାହିଁକି ଲେଖେ'—ମାନସିଂହ—'ଡଗର' '୪/୧ମ ସଂଖ୍ୟା, ତା ୧।୭।୫୦
୨୬ । 'ତରୁଣ କବିର ଆଶା,—'ଉତ୍କଳ ସାହିତ୍ୟ', ୩୨/୧, ବୈଶାଖ ୧୩୩୫ (ଏପ୍ରିଲ ୧୯୨୮) —ଗ୍ରନ୍ଥାବଳୀ ପୃ. ୬୧ ।

ସମ୍ଭବତଃ ଏହି ପର୍ଯ୍ୟାୟରେ ଧୂପନାୟିକା ପରୀକ୍ଷାୟା ସହିତ କବିଙ୍କର ସାକ୍ଷାତ ହୋଇନଥିଲା । ତେଣୁ ଆଦ୍ୟଯୌବନର ଅନୁଚିନ୍ତାରେ ଥିଲା କିଶୋରସୁଲଭ ପରିଚୟର ସ୍ମୃତି । ଏହି ପର୍ଯ୍ୟାୟରେ ଓମରଖାୟାମ୍ ହିଁ ଥିଲେ ପ୍ରେମିକ କବିଙ୍କ କାବ୍ୟଚିନ୍ତାର ପ୍ରେରଣା । କିନ୍ତୁ ପରେ ପରେ ପରୀକ୍ଷାୟାର ପ୍ରୀତି କବିଙ୍କ ଦୃଷ୍ଟିକୁ ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟ ପ୍ରତି ଅଧିକ ଆକୃଷ୍ଟ କରିଛି । ଏହି ପର୍ଯ୍ୟାୟରେ ତେଣୁ 'ବିଦଗ୍ଧ ଚିନ୍ତାମଣି'ର କୃଷ୍ଣ ବା ରାଧାବିରହ ବ୍ୟଥା ତାଙ୍କ ଭାବନାକୁ ଅନୁପ୍ରେରିତ କରିଥିବା ନିମ୍ନପଙ୍କ୍ତିମାନଙ୍କରୁ ସ୍ପଷ୍ଟ ହେବ ।

"ଧନ୍ୟ ମୁଁ ହେବି/ପ୍ରିୟ ଯହିଁ ଅଛୁ/ହେଲେ ତହିଁ ଶିଳାତଳ
ତା' ପଦ ପରଶେ/ପାଷାଣ ମୋ ହିୟା/ଚମକିବ ଥରଥର ।"

କିମ୍ବା କୌଣସି ପ୍ରେମଦୂତଙ୍କୁ ମଧ୍ୟଯୁଗୀୟ ରୋମାଣ୍ଟିକ୍ କବି ପରି ସେ ସମ୍ବୋଧନ କରି ବାର୍ତ୍ତା ପଠାଇଛନ୍ତି—

"କହିବ ହେ ପୁଣି/ତୋର ଗୁଣ ଗୁଣି/ନସରଇ ତାର ଦିନ,
ଯହିଁ ବସେ ଶାଳ/ତୋର ନାମ ଲେଖି/ଶୋକ କରେ ତାର କ୍ଷୀଣ ।
ତୋର ପରିଧେୟ/ଦେହେ ଯାକିଧରି/ଅସୀମ ସେ ସୁଖ ପାଏ,
ତୋର ନାମ ପୁଣି/ଖୋଳି ଦେଇଅଛୁ/ଶରୀରର ଠାଏ ଠାଏ ।"
'ବନ୍ଦିନୀ ପ୍ରିୟା' ('ଧୂପ'—ଗ୍ରନ୍ଥାବଳୀ, ପୃ. ୮୮)

ବନ୍ଦିନୀ ପ୍ରିୟା ପାଖକୁ ମଳୟ ହୋଇ ଲଘୁପକ୍ଷ ବିସ୍ତାରକରି ଉଡ଼ିଯିବାକୁ କବି କାମନା କରିଛନ୍ତି । ଏ ଚିନ୍ତା ଯେ କେତେ କଳ୍ପନା ପ୍ରବଣ ଓ ରୋମାଣ୍ଟିକ୍, ତାହା ଉପଲବ୍ଧି କରିହେବ । ସମ୍ଭବତଃ ତରୁଣ ବୟସରେ ତାଙ୍କ ଚିନ୍ତାରେ ଆସିଥିବା ଅନେକ ଅପ୍ରତିହତ ପ୍ରଭାବ ତାଙ୍କ କାବ୍ୟରେ ପ୍ରତିଫଳିତ ହୋଇଛି । ଏପରିକି ତାଙ୍କ ଆସକ୍ତ-ପ୍ରେମ (passionate love) ଚେତନା ଭିତରେ ଏକାଧିକ ନାୟିକାଙ୍କର ଯେ ଅଭ୍ୟୁଦୟ ଘଟିଛି ତାହା ତାଙ୍କ କବିତାରୁ ସ୍ପଷ୍ଟ । ଏପରିକି ତାଙ୍କ ରୋମାଣ୍ଟିକ୍ ଦୃଷ୍ଟି-ବଳୟ ମଧ୍ୟରୁ ଅନୁପମା ସୁନ୍ଦରୀ ଏକ 'ଇରାନୀ କିଶୋରୀ'

---

(କ) "ବାଲ୍ୟତର ସାଥୀ ନାହିଁ ତା ପାଶେ/ବାଳିକା ସେ ଗଲା ଆନର ଆଶେ,
କାହା ଗଳେ ସୁଖେ ଛନ୍ଦିବ ବାହୁ/କହ ସେ ଆଜି ।"

(ଖ) "ପାଖରେ ଥାଆନ୍ତା ରସ କବିତା/ଚିର-ଯଉବନ ପ୍ରଣୟ ଗୀତା, ପ୍ରେୟସୀ
ଥାଆନ୍ତା ଚୁମ୍ବନ୍ତ ମୁଖ/ପୂରନ୍ତା ବୁକ ।"

ମଧ୍ୟ ବାଦ୍ ଯାଇ ନାହିଁ । ୨୭ । ତେଣୁ ମଧ୍ୟଯୁଗୀୟ ବୈଷ୍ଣବ ପ୍ରେମକବିତା ପରି ତାଙ୍କ ପ୍ରେମକବିତା ବିରହ ମିଳନରେ, ଅଶ୍ରୁ ଉଚ୍ଛ୍ୱାସରେ, କାମନା ଓ ଆସକ୍ତିରେ ରସସିକ୍ତ । ନାରୀ ରୂପର ଆକର୍ଷଣ ଉପଭୋଗର ପ୍ରଲୁବ୍ଧତା ସହିତ କାମନା ନିବୃତ୍ତିଜନିତ ବିତୃଷ୍ଣା ମୈଥିକ ଚିନ୍ତା ତାଙ୍କ କବିତାରେ ଦ୍ୱୈତ ସ୍ୱର ସୃଷ୍ଟି କରିଛି । କେତେବେଳେ ସେ ପ୍ରବାହରେ ଭାସିଯାଇଛନ୍ତି, କେତେବେଳେ ସଚେତନ ହୋଇ ଆପଣାକୁ ସନ୍ଧାନ କରିଛନ୍ତି । ପୁଣି ସ୍ୱକୀୟ ବାର୍ଦ୍ଧକ୍ୟର ଆଗମନରେ ତାଙ୍କ କାବ୍ୟଚିନ୍ତା ଯେଉଁ ଐନ୍ଦ୍ରିକ ଭିନ୍ନଗତି ଧାରଣ କରିଛି ସେଥିରେ ଏକଦା ଉଚ୍ଛଳ ପ୍ରଣୟାନୁଚିନ୍ତା ପ୍ରତି ଆଉ ସ୍ୱୀକୃତି ନାହିଁ, ବରଂ ତା' ପରିବର୍ତ୍ତେ ଏକ ବିରୋଧାଭାସାମୂଳକ କାବ୍ୟସ୍ୱର ଯେ ପ୍ରକଟିତ ହୋଇଛି ତାହା 'ହିସାବ ନିକାଶ' କବିତାରୁ ସ୍ପଷ୍ଟ ଜଣାଯାଏ । ୨୮ । ପୁଣି ଏ କବିତାଟି 'ସହକାର'ରେ ପ୍ରକାଶ ପାଇବା ପରେ ପରେ ଶ୍ରୀ ବୈକୁଣ୍ଠନାଥ ଦାସ ସେହିବର୍ଷ ସହକାରର ୩ୟ ସଂଖ୍ୟାରେ 'ହିସାବ ନିକାଶ—ନିଶାପ' ନାମକ ଏକ କବିତା ଲେଖି ମାନସିଂହଙ୍କ କାବ୍ୟସ୍ୱର ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଏହା ଏକ ଐତିହାସିକ ଦଲିଲ୍ ପରି ସେତେବେଳେ କାବ୍ୟାମୋଦୀଙ୍କ ମଧ୍ୟରେ ଯେ ଖୁବ୍ ଚହଳ ସୃଷ୍ଟି କରିଥିଲା ତାହା 'ସହକାର'ର ପୃଷ୍ଠାରୁ ଅନୁମିତ ହୁଏ ।

---

୨୭ । 'ପ୍ରେମର ପରିମାପ'—(ଧୂପ-ଗ୍ରନ୍ଥାବଳୀ ପୃ. ୧୨୦)—ଉତ୍କଳ ସାହିତ୍ୟ, ୩୨/୧, ବୈଶାଖ ୧୩୩୫ (ଖ୍ରୀ. ୧୯୨୮) ରେ ଏହା 'ପ୍ରେମର ପରିମାଣ' ନାମରେ ପ୍ରକାଶିତ ।

"କେତେ ଗୋ ଏହିପରି ପ୍ରଣୟ ଭିକାରିଣୀ/ଭିକ୍ଷାକରି ମୋରେ
ପ୍ରାଣକୁ ନେଲେ କିଣି ।
ସବୁରି ଦାବୀ ଅଛି କେଉଁଗୋ ଯିବେ କହ ? / ପ୍ରଣୟ ବିପଣୀରେ ସବୁରେଜ
କିଣାବିକା ?"

(ଖ) 'ଇରାନୀ କିଶୋରୀ'—('ହେମପୁଷ୍ପ'—ଗ୍ରନ୍ଥାବଳୀ ପୃ. ୧୩୩) ।

"ଇରାନୀ କିଶୋରୀ ! /ଗୁଲାବଦନ ତବ ନହୁଏ ପାଶୋରି ।
ଭୁଲିବି କିପରି ମୁଁ ରୂପ କି ହୁଏ ଭୁଲ/ଅଲିଭ ରେଖା ରଚେ ବୁକୁରେ
ତାରି ଭୁଲ ।"

୨୮ । 'ହିସାବ ନିକାଶ'—'ସହକାର', ୨୩/୧ମ, ବୈଶାଖ ୧୩୪୯ (ଏପ୍ରିଲ୍ ୧୯୪୨) ।

"ଗତ ଅଭିମାନ କରୁଛ କାହିଁକି ?—ହେ ପୁରାତନୀ/
ତୁମ ପାଇଁ ଖାଲି ଘୃଣାରେ ଚମକେ ମୋର ଧମନୀ,
ମିଥ୍ୟାଗୃହିଣୀ, ପାପ ବିଳାସିନୀ,/
ତବ ଭୂଷଣରେ ପୂଜାହୋଇଲା ଯାହା କବି ଲେଖନୀ ।" ଇତ୍ୟାଦି...

'ଧୂପ'ରୁ 'ହେମ ଶସ୍ୟ' (୧୯୩୩)କୁ ଯାତ୍ରା କାଳରେ ଏକ ସ୍ୱାଭାବିକ ଭାବ୍ୟ-ଆନ୍ଦୋଳନ ତାଙ୍କର ବହୁ କବିତାରେ ପ୍ରତିଫଳିତ । କାରଣ ଏ ଯାତ୍ରା ବସ୍ତୁତଃ ପରକୀୟା ଚେତନାରୁ ସ୍ୱକୀୟାର ପ୍ରଣୟମୁଗ୍ଧ ନିରୂପିତ ପରିସର ମଧ୍ୟକୁ ଏକ ଗତାନୁଗତିକ ଯାତ୍ରା ମାତ୍ର । 'ନିନ୍ଦିତ ଭଗବାନ' କବିତାଟି ସତେ ଯେପରି ଏଇ ପ୍ରତିକ୍ରିୟାର ଆତ୍ମବାଣୀ ବହନ କରେ । ୨୧ । ଏହି ନୂତନ ଯାତ୍ରାର ସ୍ୱର 'ବଧୂ-ପ୍ରବେଶ' 'ଯୁଗଳଜୀବନ', 'ପ୍ରେମ ସ୍ୱର୍ଗ', 'ଦେହ ଓ ସ୍ନେହ' ଆଦି 'ହେମଶସ୍ୟ'ର ବଂଶାଧିକ ସନେଟ୍ ମଧ୍ୟରେ ପ୍ରମୂର୍ତ୍ତ । ପୁଣି ତାରୁଣ୍ୟର ତରଳ ଇନ୍ଦ୍ରିୟପର ପ୍ରେମ, ମିଳନ ଓ ବିରହର ଉତ୍ତାପରେ ପରିପକ୍ୱ ହୋଇ କ୍ରମେ ରୂପୋତ୍ତର ଓ ଇନ୍ଦ୍ରିୟାତୀତ ହୋଇଉଠିଛି ।

''ପାଇଲି ମୁଁ ସ୍ନେହ ରତ୍ନ ଦେହେ ଅବଗାହି/ମୁକ୍ତାପାଇ ଫେରିଛି ମୁଁ ଗୁମ୍ଫା ଖୋଜି ଯାଇ ।
ପ୍ରିୟାର ସରସ ସ୍ନେହ ଦେହ ଅବସାନ/କରିଛି ଶେଷେ ମୋର × × ×
× × ପ୍ରଣୟ ଆମର/ରୂପ-ପର ଥିଲି ହେଲେ ଆଜି ରୂପୋତ୍ତର ।''

'ଦେହ ଓ ସ୍ନେହ' ('ହେମଶସ୍ୟ')

ଏଥିପାଇଁ ମାନସିଂହଙ୍କ 'ଧୂପ' କବିତା ସଙ୍କଳନରେ ଯେଉଁ ପୂର୍ବପ୍ରସ୍ତୁତି ଓ ମାନସିକ ସଙ୍ଘର୍ଷ ସୃଷ୍ଟି ହୋଇଛି ତାହା ଏକାନ୍ତ ଅବଧାରଣୀୟ । ତାଙ୍କ ମତରେ ପ୍ରେମ ଜୀବନରେ ଥରେ ନୁହେଁ, ଅନେକ ଥର ଆସିପାରେ—ଏଥିରେ କୌଣସି ଯୁକ୍ତି ସିଆ ନାହିଁ, ଅଛି ସ୍ୱାଭାବିକ ଏକ ମାନବୀୟ ଅନୁଭୂତିର ଚେତନା ଓ ପ୍ରଣୟ ସୁଲଭ ଦୁର୍ବଳତା ।

''ପ୍ରେମ କି ଥରେ ଆସି ଥରକେ ହୁଏ ଶେଷ
ଜଣକୁ ଦେଲେ ସଁପି, ନରହେ ଅବଶେଷ ?''

'ପ୍ରେମର ପରିମାପ' (ଧୂପ)

ଏହି ସଂଶୟ ଏକ ବାସ୍ତବ ଅନୁଭୂତିର ଚେତନା ମାତ୍ର । ତେଣୁ, ଏହାକୁ ମାନସିଂହଙ୍କ ଇନ୍ଦ୍ରିୟଲବ୍ଧ ପ୍ରେମଚନ୍ତାର ଏକ ଚୂଡ଼ାନ୍ତ ଦୃଷ୍ଟିଭଙ୍ଗୀ ରୂପେ ଧରି ନିଆଯାଇ ପାରେ । ଏଇ କବିର ପ୍ରେମଚିନ୍ତା 'ଧୂପ'ରେ ଯେପରି ଉଦ୍ଦାମ ଓ ଉଦ୍‌ବେଳ; 'ହେମଶସ୍ୟ'ରେ ସେହିପରି ଶାନ୍ତ ଓ ସମାହିତ । ତେଣୁ ତାଙ୍କ ପ୍ରଣୟ ଚେତନାର ପୃଷ୍ଠଭୂମିରେ ପରିବର୍ତ୍ତନର କୌଣସି ବିପର୍ଯ୍ୟୟ ଆସି ନାହିଁ । ସତେ

---

୨୧ । 'ନିନ୍ଦିତ ଭଗବାନ'—'ଉତ୍କଳ ସାହିତ୍ୟ', ମାର୍ଗଶିର ୧୩୩୬ (ନଭେମ୍ବର ୧୯୨୮) – (ଜୀବନଚିତା'—ଗ୍ରନ୍ଥାବଳୀ ପୃ. ୩୮୪)
ଦେବ ଶିଶୁ ଚଳେ ନରକର ଅଭିସାରେ/
ଭଗବାନ ତୁମେ ନିନ୍ଦିତ କେଉଁଠାରେ ?''

ଯେପରି ଏକଇ କଣ୍ଠରୁ 'ଧୂପ' ଓ 'ହେମଶସ୍ୟ'ର ସଙ୍ଗୀତ ସମାନ ଆବେଗ, ଯତି ଓ ସମତାଳରେ ନିସୃତ ହୋଇ ଆସିଛୁ । ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତକୁ ଏତେ ସାର୍ଥକ ଭାବରେ ଓ ସମାନ ଭାବରେ ଧରି ରଖି ପାରିଥିବା କାବ୍ୟାନୁଚିନ୍ତା ଓଡ଼ିଆ ସାହିତ୍ୟରେ ବିରଳ । ତେଣୁ ଏହା ନିଃସନ୍ଦେହ ଭାବେ କୁହାଯାଇ ପାରିବ ଯେ ମାନସିଂହ ଆଗେ ପ୍ରେମିକ, ପରେ କବି । ତେଣୁ ପ୍ରେମହିଁ ତାଙ୍କ କବିତାର ଅନ୍ତର୍ନିହିତ ଉତ୍ସ । ନାରୀଠାରୁହିଁ ସେ ପ୍ରେମସାଧନା ଆରମ୍ଭ କରିଛନ୍ତି । "ଭଲ ପାଇଛନ୍ତି ରୂପବତୀ ଓ ରସବତୀ ନାରୀର ସାକାର ରୂପ ଓ ନିରାକାର ରସମାଧୁର୍ଯ୍ୟକୁ, ସେଇ ନାରୀହିଁ ତାଙ୍କ ଦେହଜ ପ୍ରେମକୁ ମୁକ୍ତି ଦେଇଛି ଓ ମାନସିକ ଅବଚେତନକୁ ଦେଇଛି ଶକ୍ତି ଓ ଗତି ।" ୩୦ । ମାନସିଂହଙ୍କ ବହୁ କବିତାରେ ତେଣୁ ପରିଣିତା ବଧୂଙ୍କ ପ୍ରତି ଗଭୀର କୃତଜ୍ଞତା ଓ ସମ୍ମାନବୋଧ ଜ୍ଞାପିତ ହୋଇଅଛି । ଏଠାରେ ତାଙ୍କ କାବ୍ୟଚିନ୍ତାରେ ଆଉ ବିଚ୍ୟୁତି ନାହିଁ, ବରଂ ପ୍ରାକ୍-ବିଚ୍ୟୁତି ପ୍ରତି ରହିଛି ଗଭୀର ଅନୁଶୋଚନା । ତେଣୁ ଏହି ପର୍ଯ୍ୟାୟର ପ୍ରେମକବିତାରେ ଅଛି ସମାହିତ ଅନୁପାତିକତା । ପୁନଶ୍ଚ ଏହି ପରିବର୍ତ୍ତିତ ଭାବରାଜିକୁ ପ୍ରକାଶ କରିବା ପାଇଁ କବି ସନେଟ୍‌ର ଆଙ୍ଗିକକୁ ଗ୍ରହଣ କରିଛନ୍ତି । ଏହା ସନେଟ୍ ନୁହେଁ ବୋଲି ମୁଖବନ୍ଧରେ କବି ଯେତେ ଦାବୀ କଲେ ମଧ୍ୟ, ଓଡ଼ିଆ ସାହିତ୍ୟରେ ଏଗୁଡ଼ିକ ବେଶ୍ ମୂଲ୍ୟବାନ୍ ସନେଟ୍ ଭାବେ ଗୃହୀତ, ଯେହେତୁ ପ୍ରତ୍ୟେକ କବିତାରେ ରହିଛି ଏକ ନିର୍ଦ୍ଦିଷ୍ଟ ଏକକ ଭାବସମୃଦ୍ଧି । ପୁଣି ପ୍ରେମ ଓ ପ୍ରଣୟ ପରି ଏକ ବ୍ୟକ୍ତିଗତ ଚେତନାକୁ ନେଇ ଏଗୁଡ଼ିକ ରଚିତ । ଯୁଗେ ଯୁଗେ କବିମାନେ ନିଜର ବ୍ୟକ୍ତିଗତ ପ୍ରଣୟାନୁଚିନ୍ତାକୁ ସନେଟ୍‌ର ଆଙ୍ଗିକ ମଧ୍ୟରେ ପ୍ରକାଶ କରିଛନ୍ତି । ପ୍ରଣୟିନୀ Laura ଙ୍କ ଉଦ୍ଦେଶ୍ୟରେ ରଚିତ ପେଟ୍ରାର୍କଙ୍କ ସନେଟ୍‌ଠାରୁ ସାର ଫିଲିପ୍ ସିଡ଼ନୀଙ୍କ 'Astrophel and Stella' ବାଦଦେଇ କବି ଓ୍ୱାର୍ଡ଼ସ୍‌ୱର୍ଥଙ୍କ ସନେଟ୍ ପର୍ଯ୍ୟନ୍ତ ଇଂରାଜୀ ସାହିତ୍ୟରେ ଯେଉଁ ଗତିଶୀଳତା ପରିଲକ୍ଷିତ ହୁଏ, ଓଡ଼ିଆ କବିତାରେ ଶ୍ରୀ ମାନସିଂହ ହିଁ ଯଥାର୍ଥରେ ତାହାର ଯୋଗସୂତ୍ର ରକ୍ଷା କରି ପାରିଛନ୍ତି । ଇହ ଜୀବନର ସୁଖଦୁଃଖର ଭୋକ୍ତା ଭାବରେ ଅନ୍ତରର ଅନନ୍ତ ଆକୁଳତାକୁ ଆମ ଆଗରେ ପ୍ରକାଶ କରିବା ପାଇଁ ଏ ସନେଟଗୁଡ଼ିକର ରହିଛି ଜାଗ୍ରତ ବ୍ୟାକୁଳତା । ବେଳେବେଳେ ପୁଣି ଏକ ଶାଶ୍ୱତ ଅଦୃଶ୍ୟ ସତ୍ତା ନିକଟରେ ସେହି ବେଦନାର୍ତ୍ତ ହୃଦୟର ଆକୁତି ନିବେଦିତ ରହସ୍ୟମୟ ହୋଇଛି । 'ଅକ୍ଷତ'ର ୮ଟି ସନେଟ୍ ଓ 'ଜୀବନ ଚିତା' (୧୯୪୭)ର ୨ଟି ସନେଟ୍‌ରେ ଏହି ଈଶ୍ୱରାନୁରକ୍ତ ପ୍ରେମର ଭାବ ପ୍ରକଟିତ । ମୋଟ ଉପରେ ପ୍ରେମହିଁ ମାନସିଂହଙ୍କ ସନେଟ୍‌ରେ ମୂଳ ଉତ୍ସ ଯଦିଓ ଇଂରେଜ କବି ଦାଂତେ ଗେସେଟିଙ୍କ ସନେଟ୍‌ମାଳା ପରି ପ୍ରେମ ଓ ଆଧିଭୌତିକ ଭାବଧାରାର ଏକ ମଧୁର ସମନ୍ୱୟ ମାନସିଂହଙ୍କ ସନେଟ୍‌ଗୁଡ଼ିକରେ ସଙ୍ଗଠିତ ହୋଇଥିବା ଲକ୍ଷ୍ୟ କରାଯିବ । ୩୧ ।

---

୩୦ । 'ଭୁଲ ସୁମର ହୁଅନ୍ତି ବିକଳ'—ମାନସିଂହ ସ୍ମରଣିକା, ପୃ. ୬୪, ମହାପାତ୍ର ନୀଳମଣି ସାହୁ ।

୩୧ । (କ) 'ସୋହାଗ' (ହେମଶସ୍ୟ, ଗ୍ରନ୍ଥାବଳୀ ପୃ. ୧୮୫)

'ହେମଶସ୍ୟ'ର ସନେଟଗୁଡ଼ିକ ଏକ ଦାମ୍ପତ୍ୟ ଜୀବନର ଆନନ୍ଦ ଉଲ୍ଲାସ, ବ୍ୟଥା ବେଦନା, ସାମୟିକ ମାନ ଅଭିମାନର ବର୍ଣ୍ଣିକତାକୁ ରକ୍ଷାକରି ଯଥାର୍ଥତଃ ଏକ କାବ୍ୟ ଆବେଗରେ ସମୃଦ୍ଧ । ପ୍ରଣୟୀର ଶାନ୍ତ ସ୍ନିଗ୍ଧ ବାଣୀଧାରାରେ ଏ କାବ୍ୟଚେତନା ପରିପୁଷ୍ଟ, ମାର୍ଜିତ ଓ ରୁଚିଶୀଳ । ଧୂପର ପ୍ରେମ ସ୍ରୋତ ଯଦି ହୁଏ ବର୍ଷାକାଳୀନ ନଦୀପ୍ରବାହ ପରି ଉଦ୍‌ବେଳ ଓ ଖରସ୍ରୋତା, 'ହେମ ଶସ୍ୟ'ର ଶରତ୍‌କାଳୀନ ନଦୀପ୍ରବାହ ପରି ନିର୍ମଳ ଓ ମୃଦୁ ପ୍ରବାହିନୀ । କିନ୍ତୁ ଭାବ, ଭାଷା ଓ ଛନ୍ଦ ଦୃଷ୍ଟିରୁ 'ହେମଶସ୍ୟ' ପରମ ଗୌରବ ଅର୍ଜନ କରିଥିଲେହେଁ, 'ଧୂପ'ର ସରସ ଶିଳ୍ପ ଗୌରବ ଏଥିରେ ସନ୍ଧାନ କରିହୁଏ ନାହିଁ । ସମାଲୋଚକ ଅଧ୍ୟାପକ ଚନ୍ଦ୍ରାମଣି ବେହେରାଙ୍କ ଭାଷାରେ—"ପ୍ରଣୟୀର ସରସ ପୀୟୁଷ ରନ୍ଧ୍ର ଏଇ ଯେ କବି ହରାଇ ବସିଲେ ତାର କ୍ଷତିପୂରଣ ପରବର୍ତ୍ତୀ ସୃଷ୍ଟିରେ ବହୁ ଉଦାରୁ କରିଥିଲେହେଁ, ପ୍ରେମାମୃତର ସ୍ୱାଦୁ ଲାଭ କରିବାକୁ ଏହି ରୂପପ୍ରାଣ କବି ଆଉ ସମର୍ଥ ହୋଇପାରି ନାହାନ୍ତି । ଏହାର ଏକ ମୁଖ୍ୟ କାରଣ ରୂପକ ପ୍ରେମ ପ୍ରତି କବିଙ୍କ ଶିଳ୍ପଚେତନାର ସଚେତନ ବିଦ୍ରୋହ ।" ୩୨ । ତେଣୁ ପରେ ନାରୀକୁ କବି କେବଳ ପୁରୁଷର ପ୍ରଣୟିନୀ ବୋଲି ପରିକଳ୍ପନା ନକରି ସମଗ୍ର ମାନବଜାତିର ଜନୟିତ୍ରୀ, ପୁରୁଷର ନିତ୍ୟସଞ୍ଜୀବନୀ ଓ କଲ୍ୟାଣମୟୀ ସର୍ବଂସହା ଧରିତ୍ରୀ ରୂପିଣୀ ବୋଲି କଳ୍ପନା କରି ତା'ର ପାଦଦେଶରେ ପ୍ରଣତି ବାଢ଼ିଛନ୍ତି—

"ଜନୟିତ୍ରୀ ମାନବଜାତିର,
ହେ ନାରି ! କରଇ ନମସ୍କାର ।"

'ନବଜନନୀ'(ହେମଶସ୍ୟ)

---

"ଶେଷେ ଯେବେ ମୁଖ ମୋର ଊର୍ଦ୍ଧ୍ୱ କେଇ ତୋଳି/
ଦିଅ ଓଷ୍ଠେ ତବ ପ୍ରିୟ ସେ ଚୁମ୍ବନ ବୋଳି,
ସହସା ଭୁଲଇ ମୁହିଁ କଠିନ ସଂସାର ଲାଞ୍ଛନା ଓ ଦୁର୍ଭାଗ୍ୟର ନିଷ୍ଠୁର ପ୍ରହାର ।
ଦେବତାର ମହାପ୍ରାଣ ପଶେ ଏ ଶରୀର/ଚେତନା ମୋ ଅତୀନ୍ଦ୍ରିୟ ହୁଏ ଧୀରେ ଧୀରେ ।"

(ଖ) 'ସୁରା ଓ ସୁଧା' (ହେମଶସ୍ୟ-ଗ୍ରନ୍ଥାବଳୀ ପୃ. ୧୯୧) ।
"ଆସିଛୁ ମନ୍ଦିରେ ମମ, ସେହି ସୁଧା ପାନେ/ଶାନ୍ତ ମୋ ନିଖିଳ କ୍ଷୁଧା; ମୋହ-ଅବସାନେ ଘଟିଛୁ ମୋ ଜନ୍ମାନ୍ତର, ସୁରାପାନ ପରେ/ପ୍ରେମ ତବ ସୁଧା ସମପ୍ରାଣେ କାର୍ଯ୍ୟକରେ ।"

୩୨ । 'ମାନସିଂହଙ୍କ କାବ୍ୟ ପ୍ରତିଭା'—'ଉଗର', ଅଗଷ୍ଟ ୧୯୫୭—ଅଧ୍ୟାପକ ଚନ୍ଦ୍ରାମଣି ବେହେରା ।

ଏହି ପର୍ଯ୍ୟାୟରେ ତେଣୁ କବି ଦେହର ସୌନ୍ଦର୍ଯ୍ୟ ଅପେକ୍ଷା ଆତ୍ମାର ସୌନ୍ଦର୍ଯ୍ୟପାଇଁ ଅଧିକ ଧ୍ୟାନନିବିଷ୍ଟ ହୋଇଥିବା ଲକ୍ଷ୍ୟ କରାଯିବ । ୩୩ । ଏହାରି ମଧ୍ୟରେ ପାଠକ ଏକ ଆତ୍ମାନୁସନ୍ଧାନୀ ତଟସ୍ଥ ମନର ସନ୍ଧାନ ପାଇପାରେ- ଯାହା 'ଧୂପ'ର ମୋହ ମୁକ୍ତି ପରେ 'ହେମଶସ୍ୟ'ର ଶୃଙ୍ଖଳିତ ଅଭିସାର ଭିତରେ 'ନିତ୍ୟ ସ୍ୱୟମ୍ବର'ର ମୁହୂର୍ତ୍ତ ଲୋଡ଼ିଛି । ମାନସିଂହ ନିଜେ ସ୍ୱୀକାର କରିଛନ୍ତି—'' ପ୍ରୀତିର ଆଦି ଅଛି, କିନ୍ତୁ ଶେଷ ନାହିଁ । ପ୍ରତ୍ୟେକ ଦିନର ଉଷା ପରି ପ୍ରୀତି ନିତ୍ୟନୂତନ । ବନ୍ଧନରେ ତାର ମୁକ୍ତି ଏବଂ ଏହି ବନ୍ଧନ ବା ସ୍ୱକୀୟାହିଁ ପ୍ରୀତିପ୍ରଦ ପ୍ରତି ସ୍ୱର୍ଗର ଅନୁଭୂତି ତାଳିଦିଏ ।'' ୩୪ । ଏଇଥିପାଇଁ ଯୁଗେ ଯୁଗେ ରୂପପ୍ରିୟ କବି ଗୃହେଁ ଧରିବତରଣ । ଧନ, ମାନ, ପରିବାର ଓ ଜୀବନର ସମସ୍ତ ବିଜୟ ସ୍ମୃତି ପରେ କେବଳ ସେଇ ପ୍ରଣୟାନୁଭୂତିହିଁ ଯେପରି ତା' ପାଇଁ ଅତି ମୂଲ୍ୟବାନ ଐଶ୍ୱର୍ଯ୍ୟ ଭାବରେ ସ୍ମୃତିକୋଷରେ ସଞ୍ଚିତ ରହିଯାଏ । ପ୍ରକୃତରେ ଏ ସ୍ୱର ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ । ୩୫ ।

କବି ପ୍ରେମାନୁଚିନ୍ତାରେ ରବୀନ୍ଦ୍ରନାଥଙ୍କ ପରି ଦ୍ୱୈତବାଦୀ । ନାରୀ ପୁରୁଷର ପ୍ରେମ ଓ ମିଳନ ମଧ୍ୟରେ କବି ରବୀନ୍ଦ୍ରନାଥ ଅନୁଭବ କରିଛନ୍ତି ନିଖିଳର ସ୍ପନ୍ଦନ, ଅନନ୍ତର ଅନୁଭୂତି । ବିଚ୍ଛେଦରେ ତାର ଅବସାନ ନାହିଁ । ଅନାଦିକାଳର ହୃଦୟଉତ୍ସରେ ସେହି ଯୁଗଳ ପ୍ରେମର ପ୍ରଣୟସ୍ରୋତ ଚିରଚଞ୍ଚଳ । ଜନ୍ମଜନ୍ମାନ୍ତର ପ୍ରିୟ ତା'ର ପ୍ରିୟାକୁ ବିଭିନ୍ନ ରୂପରେ ଭଲପାଇଆସିଛି । ପୁରାତନ ନୂତନ ରୂପରେ ଆତ୍ମପ୍ରକାଶ କରିଛି । ସେ ଭଲପାଇବାର ମୃତ୍ୟୁ ନାହିଁ । ତାହା ରୂପଗାନସ୍ପର୍ଶଲୁବ୍ଧ ମରଣଶୀଳ ସ୍ତରରୁ ମରଣାତୀତ ହୋଇପାରିଛି । ନିଖିଳର ବେଦନାରେ ହୋଇଛି କାଳଜୟୀ ଓ ସମୟନିର୍ବିଶେଷ ।୩୬। ରବୀନ୍ଦ୍ରନାଥ ଜଣେ ପ୍ରକୃତ ବୈଷ୍ଣବ ଭାବରେ ପ୍ରେମର ବ୍ୟାପକତାକୁ ସ୍ୱୀକାର କରିଯାଇଛନ୍ତି—''ଯାହାକୁ ଆମେ ଭଲପାଉ, କେବଳ ତାଆରି ମଧ୍ୟରେ ଆମେମାନେ ଅନନ୍ତର ପରିଚୟ ପାଉ, ଏପରିକି

---

୩୩ । 'ଆତ୍ମାର ସୌନ୍ଦର୍ଯ୍ୟ'—('ହେମଶସ୍ୟ'—ଗ୍ରନ୍ଥାବଳୀ ପୃ. ୧୧୧) ।

୩୪ । 'ନିତ୍ୟସ୍ୱୟଂବର'—(ହେମଶସ୍ୟ—ଗ୍ରନ୍ଥାବଳୀ ପୃ. ୨୧୭) ।

୩୫ । 'ଧରିବତରଣ'—ହେମଶସ୍ୟ, ଗ୍ରନ୍ଥାବଳୀ ପୃ. ୨୩୫ ।

୩୬ । 'ଅନନ୍ତପ୍ରେମ'—

''ଆମରା ଦୁଜନେ ଭାସିୟା ଏସେଛି ଯୁଗଲ ପ୍ରେମେର ସ୍ରୋତେ
ଅନାଦି କାଲେର ହୃଦୟ ଉତ୍ସ ହତେ ।
ଆମରା ଦୁଜନେ କରିଅଛି ଖେଲା କୋଟି ପ୍ରେମିକେର ମାଝେ
ବିରହ ବିଧୁର ନୟନ ସଲିଲେ, ମିଲନ ମଧୁର ଲାଜେ
ପୁରାତନ ପ୍ରେମ ନିତ୍ୟନୂତନ ସାଜେ ।''

ଜୀବନମଧ୍ୟରେ ଏହି ଅନନ୍ତକୁ ଅନୁଭବ କରିବାର ଅନ୍ୟ ନାମ ହେଉଛି ପ୍ରେମ । ପ୍ରକୃତି ମଧ୍ୟରେ ଅନୁଭବ କରିବାର ନାମ ସୌନ୍ଦର୍ଯ୍ୟ-ମନ୍ତ୍ରେ ଗ । ସମସ୍ତ ବୈଷ୍ଣବଧର୍ମ ମଧ୍ୟରେ ପଛ ଗଭୀର ତତ୍ତ୍ୱଟି ନିହିତ ରହିଅଛି । ପ୍ରେମର ଚିରନ୍ତନତା ଓ ସନାତନୀ ସ୍ଥିତିକୁ କବି ମାନସିଂହ ବହୁ ପଙ୍‌କ୍ତିରେ ସ୍ୱୀକାର କରିଯାଇଛନ୍ତି ।

"ଅଯୁତ ଅଯୁତ ଜନମ ବିତାଇ ପୁଣି ଗୋ ପୁରୁଣା ଧରଣୀତଳେ
ଜନମ କି ଆମେ ଯୁଗଳ ପରିଣ ମାନବ ଶରୀରେ ମାନବ ଘରେ ?"
"ତୁମେଇ ମୋହର ସଖୀ ସନାତନୀ ଜନମେ ଜନମେ ସାନ୍ତ୍ୱନା ।"

(ବିରହୀଗାଥା-ହେମଶସ୍ୟ)

ମୃତ୍ୟୁରେ ଏ ପ୍ରେମର ଅବସାନ ହୁଏନାହିଁ । ତାହା ଅମର ଓ ଅବିନଶ୍ୱର । ମୃତ୍ୟୁର ଧ୍ୱଂସାସନକୁ ଭେଦକରି ଦୁର୍ଭେଦ୍ୟ ଏକ ସ୍ଥିତିର ସଂଗ୍ରାମରେ ଏ ପ୍ରେମ ଚିରଚଞ୍ଚଳ ଓ ସ୍ୱତଃଉଚ୍ଛଳ ହୋଇଉଠେ । ୩୭ ।

କବି ମାନସିଂହଙ୍କ ପ୍ରେମଚିନ୍ତାକୁ ଏହିପରି ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟ, ଇଂରାଜୀ ରୋମାଣ୍ଟିକ୍ ଯୁଗର ସାହିତ୍ୟ ଓ ବିଂଶଶତାବ୍ଦୀର ପ୍ରଥମ ତିନିଦଶକ ମଧ୍ୟରେ ପରିପୁଷ୍ଟ ରବୀନ୍ଦ୍ରନାଥଙ୍କ ଚିନ୍ତା-ସ୍ରୋତ ବହୁଭାବରେ ପ୍ରଭାବିତ କରିଥିବା ସ୍ପଷ୍ଟହେବ । ତାଙ୍କ କାବ୍ୟଚେତନା ପରମ୍ପରାରେ ପରିପୁଷ୍ଟ ହୋଇଥିଲେହେଁ ସେଥିରେ ସବୁବେଳେ ବାରିହୋଇ ପଡ଼ୁଥିଲା ଏକ ନୂତନ ଉଚ୍ଛ୍ୱାସର ଆବହବାର୍ତ୍ତା । ଅଭିମନ୍ୟୁ, ବାଇରନ୍, କୀଟସ ବା ରବୀନ୍ଦ୍ରନାଥହିଁ ସମଭାବରେ କେବଳ ଏପରି ଏକ ସମନ୍ୱୟକ୍ଷମ ମାନସରେ ପୁନର୍ଜନ୍ମ ନେଇପାରନ୍ତି । ମାନସିଂହଙ୍କ ପ୍ରେମକବିତାର ଏହି ଅପୂର୍ବ ଦ୍ୱିଜତ୍ୱ ବାସ୍ତବରେ ବିସ୍ମୟର ବିଷୟ । ଇରାନୀ କିଶୋରୀର ଗୁଲ୍‌ବଦନଠାରୁ ପରକୀୟା ପ୍ରିୟାର କରକଙ୍କଣର ରୁଣ୍ଣୁଝୁଣ୍ଣୁ ଶବ୍ଦର ଆସକ୍ତ ଇନ୍ଦ୍ରିୟାଚ୍ଛନ୍ନତା ବାଟଦେଇ ସ୍ୱକୀୟାର ଧୀର ଗମ୍ଭୀର ଓ ମଧୁର ଆଳାପ ପର୍ଯ୍ୟନ୍ତ ଏ କବିତାରେ ଇନ୍ଦ୍ରିୟାନୁଭୂତିର ଯେଉଁ ମଧୁର ଆସକ୍ତି ମାନସିଂହ ପ୍ରକାଶ କରିଛନ୍ତି, ତାହା ଯେ କିପରି ଓ କେଉଁ ପରିବେଶରେ ଏକ ମହାନ୍ ଆଧିଭୌତିକ ଅନୁଭୂତି ଆଡ଼କୁ ମୁହାଁଇଯାଇଛି, ତାହା ନିର୍ଣ୍ଣୟ କରିବାକୁଗଲେ ବିସ୍ମିତ ହେବାକୁ ହୁଏ । ଏହି ପଳାୟନର ସ୍ୱର ତାଙ୍କର

---

୩୭ । 'ବିରହୀଗାଥା' (ହେମଶସ୍ୟ—ଗ୍ରନ୍ଥାବଳୀ ପୃ ୨୧୧)
"ମରଣ କପାଟ ପଡ଼ିବ ଯେବେ ଗୋ ଏହି ଜନମର ସରଣୀ ଶେଷେ,
ନୂତନ ପଥରେ ଯାହା କି ହେବ ପୁଣି ଗୋ ନୂତନ ଯୁଗଳ ବେଶେ ।
ତାରାରେ ତାରାରେ ଝିବାକି ମଣି ଗୋ ବିପୁଳ ବ୍ୟୋମର ଧଙ୍ଗତେ,
ଭ୍ରମିବା ଯୁଗଳ ଜ୍ୟୋତିର୍ମନ୍ତ ଅଗଣ ତାରକା ସଙ୍ଗତେ ?"

ପୂର୍ବରଚିତ ଦୁଇଟି କବିତା 'ସମରବିମୁଖ' ଓ 'ଦକ୍ଷିଣାପ୍ରିତି'ରେ ସ୍ପଷ୍ଟ ହୋଇଯାଇଛି । ୩୮ । ସବୁଜର ପଳାୟନ ସ୍ୱରଠାରୁ ଏ ପଳାୟନ ଚିନ୍ତାରେ ନିଶ୍ଚୟ କିଛି ମୌଳିକ ଭିନ୍ନତାଅଛି । ଗୋଟିଏ ସ୍ୱର ପୃଥିବୀର ଓ ସଂସାରର କୌଣସି ଜଟିଳ ଅନୁଭୂତି ସହିତ ପରିଚିତ ନ ହୋଇଥିବା ପଳାୟନମାନ; ଆଉ ଗୋଟିଏ ସ୍ୱର ପରିଚୟର ପ୍ରତିଫଳନରେ ଏକ ବୃହତ୍ତମ ଶକ୍ତି ପାଖରେ କ୍ଷମାଭିକ୍ଷୁ । ସିନ୍ଧୁକୂଳ, ନୀଳଆକାଶର ଚକ୍ରବାଳସ୍ଥ ଆଦି ପରିକଳ୍ପନା (concept) ସେହି ପଳାୟନର ଆଧିଭୌତିକ ବେଦନା ବହନକରି ଏ କାବ୍ୟସ୍ୱରକୁ ଏକ ନୂତନ ପର୍ଯ୍ୟାୟରେ ପହଞ୍ଚେଇ ଦେଇଛି ।

## ଆଧିଭୌତିକ ଚେତନା :

ମାନସିଂହଙ୍କ କବିତାର ଅଗଣିତ ମର୍ତ୍ତ୍ୟାନୁଭୂତି କ୍ରମେ ଏକ ଆଧିଭୌତିକ ଚେତନା ପାଖରେ ଅନ୍ତର୍ଲୀନ ହୋଇଯାଇଥିବା ଆଗରୁ ସୂଚିତ ହୋଇଛି, କିନ୍ତୁ ତାରୁଣ୍ୟର ଉଚ୍ଛଳ ପ୍ରଣୟ ମଧ୍ୟରେ ବି କବି ମାନସିଂହ ପାରମାର୍ଥିକ ସ୍ଥିତି ସମ୍ପର୍କରେ ଯେ ସଂଶୟ ପ୍ରକାଶ କରିଥିଲେ, ଏହା 'ହେମଶସ୍ୟ'ର ବହୁ ସଙ୍କେତରେ

---

୩୮ । (କ) 'ସମରବିମୁଖ'—('ଜୀବନଚିତା'—ଗ୍ରନ୍ଥାବଳୀ ପୃ. ୪୧୨) 'ନବଭାରତ' —ମକର ୧୩୪୭ (ଜାନୁୟାରୀ ୧୯୪୦) ।

"ଜଗତର ଅଜାଣତେ ଆପଣା ସ୍ୱପନେ/
କୁଟୀର ତୋଳିବି ଆଶା ପୋଷିଥିଲି ମନେ,

× × × ×

ଯାଏଁ ଚାଲି ସେହି ସ୍ଥାନେ ପାଇବି ନିସ୍ତାର/
ନଥିବ ଯେଉଁଠି ଜୀବନର ଅତ୍ୟାଚାର ।

× × × ×

ବିସ୍ମରିବି ନୁହେଁ ମୁହିଁ ଜୀବ ସଂସାରର/
ମୁଁ ଏକ ମଳୟ ଧରି ଧ୍ୱନି କୋକିଳର ।"

(ଖ) 'ଦକ୍ଷିଣାପ୍ରିତି'—('ଜୀବନଚିତା'—ଗ୍ରନ୍ଥାବଳୀ ପୃ. ୩୯୪)—ଉତ୍କଳ-ସାହିତ୍ୟ ୩୩/୫ ଭାଦ୍ର ୧୩୩୬ (ଅଗଷ୍ଟ ୧୯୨୯) ।

"ସେହି ଦେଶେ ନିଅ ମୋତେ, ଭୁଜପାଶ ଧରି ମତେ ଧରି/
ସନାତନ ସ୍ୱପ୍ନେ ଯିବି ଏ ଜଞ୍ଜାଳ ତେଜି ସଂସାରର ।
× × × ବିଦ୍ରୋହେ ଉଠୁଛି ମନ ହେ ଦକ୍ଷିଣେ, ଇଚ୍ଛା ତେଜି ଦୂରେ/
ଏ ସମାଜ, ଏ ଅତୀତ, ଯାଏ୍ନ ଚାଲି ତବ ସିନ୍ଧୁକୂଳେ ?"

ସ୍ପଷ୍ଟ । ୩୯ । କଠୋର ଜୀବନଯୁଦ୍ଧରେ ନିତ୍ୟପରାହତ, ଦୁର୍ବଳ, ଦରିଦ୍ର, ପୀଡ଼ିତଙ୍କ ପ୍ରତି ବିଧାତାର କୌଣସି ଅନୁଗ୍ରହ ଲଭିବାରୁ ବଞ୍ଚିତ ହୋଇ ସେଦିନ ନିଜକୁ ନାସ୍ତିକ ବୋଲି ଘୋଷଣା କରିଥିଲେ । ପୁଣି ଚତୁର୍ଦ୍ଦିଗରେ ଉଠୁଥିବା ନିତ୍ୟହାହାକାର ମଧ୍ୟରେ ଶିବ-ଶୁଭଙ୍କର ଦେବତାର କେଉଁ ବିଶ୍ୱାସ ବା ମଣିଷକୁ ଆଶ୍ୱସ୍ତ କରିପାରିଥା'ନ୍ତା ?—ଏହା ଥିଲା ସେଦିନ କବିର ପରିସ୍ଥିତି । ପୁଣି ଏଇ ତରୁଣ-ସୁଲଭ ସଂଶୟ ମଧ୍ୟରେ ବି କବି ଭଗବାନଙ୍କ ପ୍ରତି ଆସ୍ଥାବାଦୀ ହୋଇଥିବା ଲକ୍ଷ୍ୟ କରାଯିବ ।

"ସନ୍ଧାନ ମିଳଇ ଏକ ବିରାଟ ସ୍ରଷ୍ଟାର

ସ୍ତବ୍ଧ ଚିତ୍ତବୃତ୍ତି କରେ ମହିମା ଯାହାର ।" 'ବିରାଟସ୍ରଷ୍ଟା' (ହେମଶସ୍ୟ)

ଏସବୁ ଚିନ୍ତାଧାରାରୁ ସ୍ପଷ୍ଟ ପ୍ରତୀତ ହେବ ଯେ କବି ମାନସିଂହ ସମନ୍ୱୟବାଦୀ । ଈଶ୍ୱରଙ୍କ ସ୍ଥିତି ସମ୍ପର୍କରେ ତାଙ୍କର କୌଣସି ଏକମୁଖୀ ନିର୍ଦ୍ଦିଷ୍ଟ ମତାମତ ନାହିଁ, ଯଦିଓ ବେଳେବେଳେ କାବ୍ୟପ୍ରତିନିଧିସ୍ୱ ପ୍ରକାଶପାଇଛି; କିନ୍ତୁ ଏହି ସମୟରେ ସବୁଜ କବିମାନେ ରବୀନ୍ଦ୍ରନାଥଙ୍କ କାବ୍ୟ ସମ୍ପର୍କରେ ଆସି ନିଜ ଚିନ୍ତାରେ ପ୍ରତିଫଳିତ କରିଥିବା ଉପାଦାନଗୁଡ଼ିକ ପ୍ରତି କବି ମାନସିଂହ ଖୁବ୍ ସଚେତନ ହୋଇଛନ୍ତି । ତେଣୁ "ଦେହର ଜଡ଼ ଅନୁଭୂତିରୁ ଆତ୍ମାର ଚେତନାଲୋକକୁ, ରୂପର ପୁଷ୍ପିତ ପ୍ରାଙ୍ଗଣରୁ ଅରୂପର ଅଳକାପୁରୀକୁ ଏବଂ ସୀମାର ସଙ୍କୀର୍ଣ୍ଣ ନିଗଡ଼ରୁ ବୃହତ୍ତର ଭୂମାପରିସରକୁ, ଅନ୍ତରର କବି ମନୁଷ୍ୟଟି କ୍ରମଶଃ ଗତିଶୀଳ ହୋଇଛି ଓ ପ୍ରଣୟିନୀର ରୂପାଲୋକରେ ମଧ୍ୟ ଅରୂପର ସନ୍ଧାନ କରିଛି । କବିପ୍ରାଣର ପ୍ରେମ୍ୟାଭିସାର ଦେହକାରାଗାରର ଇନ୍ଦ୍ରିୟବନ୍ଧନୀ ମଧ୍ୟରେ ଆରମ୍ଭ ହୋଇଥିଲେହେଁ ପରିଣତିରେ ଏକ ସିଦ୍ଧିଧାମରେ ଆସି ପହଞ୍ଚିଛି; ଯେଉଁ ଧାମ କି ମୁକ୍ତି, ସୌନ୍ଦର୍ଯ୍ୟ ଓ ନିତ୍ୟ ଆନନ୍ଦର ଗୋଲୋକ" । ୪୦ । ଏଇ ନୂତନ ପ୍ରଣୟର ଆସ୍ୱାଦ୍ୟ ଚିତ୍ର ତାଙ୍କ ରଚିତ 'କୃଷ୍ଣ'ର (୧୯୫୬)

୩୯ । (କ) 'ଜିଜ୍ଞାସା' (ହେମଶସ୍ୟ— ଗ୍ରନ୍ଥାବଳୀ ପୃ. ୧୯୬ ।

"ସେଦିନ ବିଶ୍ୱାସେ କରି ସ୍ନିଗ୍ଧ ପରିହାସ/

ବହୁଦୂରେ ରଖିଅଛି ସେଦିନ ଈଶ୍ୱରେ

କବିର କଳ୍ପନା ବୋଲି ଆଜ ମୁଁ ଚିତ୍ତରେ/

ଖାଲେ ଖାଲି ଦୁଇ ମଧ୍ୟେ ସତ୍ୟ, କୁ' ପଥରେ,—।"

(ଖ) 'ଶିଶୁଙ୍କ ସନ୍ଦେହ'—(ହେମଶସ୍ୟ—ଗ୍ରନ୍ଥାବଳୀ ପୃ. ୧୯୮ ) ।

"ମାନବର ଦୁଃଖକଷ୍ଟ, ଜଗତର ତ୍ରାସ/

କ୍ରମେ କ୍ରମେ ନିଏ ମୋର ଈଶ୍ୱରବିଶ୍ୱାସ ।

ଗଭୀର ନିରାଶାମୟ ଏ ଜୀବ ସଂସାରେ/

ଏକମାତ୍ର ଆଶା ଖାଲି ମାନବ ଆତ୍ମାରେ ।"

୪୦ । 'ମାନସିଂହଙ୍କ କାବ୍ୟପ୍ରତିଭା'—'ଡଗର', ଅଗଷ୍ଟ ୧୯୫୭—ଅଧ୍ୟାପକ ଚିନ୍ତାମଣି ବେହେରା ।

ସନେଟ୍‌ଗୁଡ଼ିକରେ ସ୍ପଷ୍ଟ । ଏହି ପ୍ରଣୟରେ ଆଉ ରୂପର ମୋହ ବା ଦୈହିକ ଲାଳସାର ଚିହ୍ନ ନାହିଁ; ଅଛି ଏକ ଅବର୍ଣ୍ଣନୀୟ, ଅନନୁଭୂତ ଆତ୍ମାସ୍ଥିତିର ସ୍ୱପ୍ନ, ଯେଉଁଥିରେ କି ସମସ୍ତ ମାନବସତ୍ତା ଉଚ୍ଚ ଓ ମହାନ୍ ହୋଇଉଠେ । କବିଙ୍କ ପାର୍ଥିବ ଅପ୍ରାପ୍ତିରେ ନୁହେଁ, ଅପାର୍ଥିବ କାମନାରେ ଅଶ୍ରୁବର୍ଷଣ କରେ । ଜୀବନର ବହୁ ସୁଖଦୁଃଖରୁ ଅନୁଭୂତିକୁ ସେଇ କଳ୍ପିତ ଈଶ୍ୱରଙ୍କ ନିକଟରେ ସମର୍ପଣ କରିଦେବାକୁ କବି ବ୍ୟାକୁଳ ହୋଇଉଠନ୍ତି । ୪୧ । ମାନସିଂହଙ୍କ କାବ୍ୟ-ଜୀବନର ଉତ୍ତରକାଳରେ ମୁଖ୍ୟତଃ ଉତ୍ତରପର୍ବ୍ୱଶରେ ରଚିତ 'ଝଡ଼ ପରେ'ର ସନେଟ୍‌ଗୁଡ଼ିକରେ ଏହି ଭାବଧାରା ସୁପ୍ରକାଶିତ ହୋଇପାରିଛି ।

ଶ୍ରୀ ମାନସିଂହ ନିଜ ଭାଷାରେ କହିଛନ୍ତି—"ନିଜ ଜୀବନର ଓ ସହଯାତ୍ରୀ ଜୀବଗ୍ରାମର ଦୁଃଖଦୁର୍ଦ୍ଦଶାର କଥା ଭାବି ଭାବି ଲେଖକ ବେଳେବେଳେ ଗୌତମ ବୁଦ୍ଧଙ୍କ ସଙ୍ଗେ ନିରୀଶ୍ୱର ହେଲବେଳକୁ ତେଣେ ରାମକୃଷ୍ଣ ପରମହଂସଙ୍କର ଈଶ୍ୱର କୁଟମ୍ବିତା ଦେଖି ସ୍ତବ୍ଧ ହୁଏ । ଏ ରହସ୍ୟର ଠିକ୍ ଉତ୍ତର କିଏ ଦେବ ? × × × ବୁଦ୍ଧ ଏଥିପାଇଁ ସୃଷ୍ଟି ଓ ସ୍ରଷ୍ଟାର ତତ୍ତ୍ୱ ନେଇ ସମୟ ବୃଥା ନଷ୍ଟ ନକରି ଆତ୍ମକର୍ଷଣ ଦ୍ୱାରା ସଂସାରଦୁଃଖରୁ ନିର୍ବାଣ ଲାଭକରିବାକୁ ଉପଦେଶ ଦେଇଥିଲେ; କିନ୍ତୁ ମନୁଷ୍ୟର ଚିତ୍ତ ସବୁବେଳେ ଏକ ଅଦୃଶ୍ୟ ଶକ୍ତି ସଙ୍ଗେ ନିଜକୁ ସମ୍ପର୍କିତ ରଖି ଏକପ୍ରକାର ମାନସିକ ସୁଖ ଆସ୍ୱାଦନ କରିବାକୁ ଚାହେଁ । × × × ଆଗେ ତ କହିଛି ଲେଖକ ଭକ୍ତ ବା ସାଧକ ନୁହେଁ; ସେ ଇହଜୀବନର ସୁଖଦୁଃଖର ଏକ ଭୋକ୍ତା ମାତ୍ର । ମନୁଷ୍ୟ ଲଜ ଅନ୍ତରର ଦୁଃଖ ଅନ୍ୟ ଆଗରେ କହି ସୁଖପାଏ । ଲେଖକ ଅନ୍ୟଗତି ନଦେଖି, ଈଶ୍ୱରନାମକ ହେଉ ଶାଶ୍ୱତ ରହସ୍ୟମୟ ଅଦୃଷ୍ଟପୁରୁଷ ନିକଟରେ ଛାହାନ୍ତି କରିବାକୁ ଯାଉଛି" । ୪୨ । ଏହି ଭାବଧାରା 'ଅକ୍ଷତ'ର ବହୁ କବିତାରେ ଉଚ୍ଚାରିତ—

"ନାନା ଧର୍ମ, ନାନା ଶାସ୍ତ୍ର, ନାନା ଦରଶନ
ପଢ଼ି ମାତ୍ର ଭାରାକ୍ରାନ୍ତ କଲି ମୋର ଶିରେ
କସ୍ତୁରିକା ମୃଗସମ ଭ୍ରାନ୍ତ ଅନ୍ୱେଷଣ
କରି ମୁଁ ଫେରିଛି ଶେଷେ ତବ ସନ୍ନିଧିରେ ।"

'ଏକ ଓ ବହୁ' ( ଅକ୍ଷତ )

---

୪୧ । 'ନୂତନପ୍ରଣୟ' (ତା ୧୮-୧୧-୫୫—'ଝଡ଼ପରେ'—ପୃ. ୩) ।
"ଆଜି ଦେହେ ଖୋଜେ ଏକ ଦୁର୍ଲ୍ଲଭ ବଦେହୀ/
ଚିତ୍ତ ଖୋଜେ ଏକ ଚେତ୍ରା ବିରାଟ ନିଖିଳେ ।
ଖୋଜେ ଅରୂପରେ ରୂପକାନ୍ତି ନେଇଦୁଇ ହୃଦୟ ହୋଇଉଠେ ଗର୍ବ ଅନାସକ୍ତ ଜୀରେ ।"

୪୨ । ଅକ୍ଷତ—ମୁଖବନ୍ଧ—ଡକ୍ଟର ମାୟାଧର ମାନସିଂହ ।

ମୋଟଉପରେ କବି ମାନସିଂହଙ୍କ ପରିଣତ କାବ୍ୟସ୍ତରରେ ଈଶ୍ୱରାନୁଭୂତି ଓ ଆଧିଭୌତିକ ଭାବବିଳାସ ଅନୁଧ୍ୟାନକଲେ ପାଠକମାନେହିଁ ବିସ୍ମୟରେ ଅଭିଭୂତ ହେବ । ଉଦ୍ଦାମ ଦେହଜ ପ୍ରଣୟରୁ ଏହି ଅଧ୍ୟାତ୍ମ ଅନୁଚିନ୍ତା ଆଡ଼କୁ ଦ୍ରୁତପଳାୟନ ବୋଧହୁଏ ଥିଲା ତାଙ୍କ ପାଇଁ ଏକମାତ୍ର ସମାଧାନ । ତେଣୁ ପରବର୍ତ୍ତୀ କାବ୍ୟସ୍ତରରେ ଏଇ ଯେ ଉଲ୍ଲମ୍ଫନ ଓଡ଼ିଆ ସାହିତ୍ୟକୁ 'ଧୂପ'ର ଧୂନା ଓ ଅଗୁରୁଗନ୍ଧରେ ନୁହେଁ, ଯଜ୍ଞର ପରମ ପବିତ୍ର ହବିଃଗନ୍ଧରେ ଆମୋଦିତ କରିପାରିଛି । କବି ମାନସିଂହ ଏହି ପର୍ଯ୍ୟାୟରେ ଜଣେ ଯାଜ୍ଞିକ ଋଷିରେ ଆତ୍ମପ୍ରକାଶ କରିଛନ୍ତି । ସେହି ପରମହୋତାର ବାଣୀ 'ଅକ୍ଷତ', 'ଜୀବନଚିତା' (୧୯୪୭) ଓ 'କୃଷ୍ଣ' (୧୯୪୪ ରୁ ୧୯୫୭ ପର୍ଯ୍ୟନ୍ତ ରଚିତ କବିତା)ର ସନେଟ୍ ଶତକମଧ୍ୟରେ ଏକ ପୋଖତ ଓ ପରିପକ୍ୱ କାବ୍ୟମାନସର ପରିଚୟ ବହନ କରିପାରିଛି । ପୁଣି ଅଧ୍ୟାତ୍ମ ଜଗତର ନିବିଡ଼ ରହସ୍ୟାନୁଭୂତି ଓ ଆଧିଭୌତିକ ଭାବବିଳାସ ଭିତରେ ସେ ଜୀବନ ଓ ଜଗତ ପ୍ରତି ଶିଳ୍ପୀପ୍ରାଣର ମୌଳିକ ସମ୍ବେଦନଶୀଳତାକୁ କେଉଁଠି କ୍ଷୁଣ୍ଣ ହେବାକୁ ଦେଇନାହାନ୍ତି । ସାଧାରଣ ମଣିଷ ପ୍ରତି କବିଗୁରୁ ରବୀନ୍ଦ୍ରନାଥଙ୍କ ପରି ତାଙ୍କ କବିତାରେ ସବଂଶ ସହାନୁଭୂତିର ସ୍ୱର ପ୍ରକଟିତ ହୋଇଅଛି । ଆତ୍ମଶକ୍ତିରେ ଗରୀୟାନ୍ ହେବାକୁ କବି ସ୍ରଷ୍ଟାଙ୍କ ନିକଟରେ ନିବେଦନ ଜଣାଇଛନ୍ତି ।

କବି ମାନସିଂହଙ୍କ କାବ୍ୟସ୍ତରରେ ଏ ଯେ ପରିବର୍ତ୍ତନ, ତାହା ବହୁମାତ୍ରାରେ ରବୀନ୍ଦ୍ରନାଥଙ୍କ ଚିନ୍ତାଧାରାଦ୍ୱାରା ପରିପୁଷ୍ଟ ହୋଇଛି—ଏକଥା ସ୍ୱୀକାର ନକଲେ ସତ୍ୟର ଅପଲାପ ହେବ । ରବୀନ୍ଦ୍ରନାଥଙ୍କ ଅଧ୍ୟାତ୍ମ୍ୟଚିନ୍ତାରେ ଯେଉଁ ରହସ୍ୟବାଦୀ ଉପାଦାନ ପରିଲକ୍ଷିତ ହୁଏ, ବାସ୍ତବଜୀବନର ପ୍ରାତ୍ୟହିକ ପ୍ରସଙ୍ଗରେ ତା'ର ଯାଥାର୍ଥ୍ୟ ସୁସ୍ପଷ୍ଟ । ତେଣୁ ତାଙ୍କ ମତରେ ବ୍ୟକ୍ତି ବା ଜାତିର ମୁକ୍ତିମାର୍ଗ ସରଳ, ସୁଖଦୁଃଖସମ୍ବଳିତ ଆମର ପ୍ରାତ୍ୟହିକ ଜୀବନ ମଧ୍ୟରେ ହିଁ ଉପଲବ୍ଧି କରାଯାଇପାରିବ । ତେଣୁ ଆମ ଦୈନନ୍ଦିନ ଜୀବନରେ ଅଭିବ୍ୟକ୍ତ ଲଭିକରୁଥିବା ମମତା, ଆତ୍ମପ୍ରକାଶ, ପ୍ରତିବେଶୀ ପ୍ରୀତି ଓ ଦରିଦ୍ର ଜନତାର ସେବାହିଁ ତାଙ୍କ ନିକଟରେ ଏକ ବଳିଷ୍ଠ ମୁକ୍ତିମାର୍ଗୀ ମାନବଧର୍ମ ରୂପେ ଗୃହୀତ । ଏହି ଧର୍ମଧାରଣା ତାଙ୍କ ପ୍ରାଣସତ୍ତାର ଏକ ଅପରିହାର୍ଯ୍ୟ ଅଂଶବିଶେଷ ଏବଂ ତାଙ୍କ ଜୀବନର ଏହି ବିଭବ ଧର୍ମଦ୍ୱାରା ଅନୁରଞ୍ଜିତ । ରବୀନ୍ଦ୍ରନାଥଙ୍କ 'ମୁକ୍ତି' (ନୈବେଦ୍ୟ) ର ଭାବଧାରାକୁ ତେଣୁ ଶ୍ରୀ ମାନସିଂହ ତାଙ୍କର ବହୁ କବିତାରେ ଆତ୍ମସାତ୍ କରିଛନ୍ତି । ଏହିପରି ଅନେକ କବିତା ମଧ୍ୟରୁ 'ଆକାଙ୍କ୍ଷିତ ଶୂନ୍ୟତା', 'ମୁକ୍ତିନାହିଁ-ମାଗେ', 'ଧରଣୀ-ବାସ', 'ବିରହୀଗାଥା' ଆଦି କବିତାକୁ ଉଲ୍ଲେଖ କରାଯାଇପାରେ । । ୪୩ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ପ୍ରେମ-ପ୍ରଣୟ-ଦେହସର୍ବସ୍ୱ

୪୩ । ଅନ୍ୟତ୍ର ଆଲୋଚିତ— 'ସମସାମୟିକ ଓଡ଼ିଆ କବିତାରେ ରବୀନ୍ଦ୍ର କାବ୍ୟମାନସର ପ୍ରତିଫଳନ' ଶୀର୍ଷକ ଦେଖନ୍ତୁ । ସବୁଜରୁ ସାଂପ୍ରତିକ'—ପୃ ୨୩୦

ଚିନ୍ତାଧାରାର ଏ ପରିବର୍ତ୍ତନ କ'ଣ ସ୍ୱାଭାବିକ ନା ଏକ ବାହ୍ୟଶକ୍ତିର ପ୍ରବଳ ପ୍ରତିଘାତ ଜନିତ ପରିଣତି ? ମାନସିଂହଙ୍କ କାବ୍ୟକବିତାର ଉଚ୍ଛଳ ପ୍ରଣୟମୂଳକ ଚେତନା ଓ ଅନୁଷଙ୍ଗଠାରୁ 'ଅକ୍ଷତ', 'ଜୀବନଚିନ୍ତା' ଓ 'କୃଷ୍ଣ'ର ଆଧ୍ୟାତ୍ମିକ ଓ ଅତୀନ୍ଦ୍ରିୟ ଚିନ୍ତାରାଜି ମଧ୍ୟରେ ମସ୍ତିଷ୍କ-ସ୍ଖଳନ। କଳ୍ପିବେଲେ ନିରପେକ୍ଷ ସମାଲୋଚକ ମାନସିଂହଙ୍କ ଚିନ୍ତାଧାରାର ଏହି ପର୍ଯ୍ୟାୟରେ ରବୀନ୍ଦ୍ରଚେତନାର ସଂକ୍ରମଣକୁ ନିଶ୍ଚିତଭାବେ ସ୍ୱୀକାର କରିବେ । କାରଣ ଏଇ ତିନୋଟି ପୁସ୍ତକର ଶତାଧିକ ସନେଟ୍ ଓ ଅନ୍ୟାନ୍ୟ ଆଧି-ଭୌତିକ ଅନୁଚିନ୍ତା ମଧ୍ୟରେ କବି ମାନସିଂହଙ୍କ ମୌଳିକତା ବହୁଭାବରେ କ୍ଷୁଣ୍ଣ ହୋଇଛି । ଲକ୍ଷ୍ୟ କରିବାର କଥା ଯେ ଏ ସଂକ୍ରମଣରୁ ୧୯୨୫-୪୭ ଓଡ଼ିଆ କବିତା ଆଦୌ ମୁକ୍ତ ନୁହେଁ । ଏହାହିଁ ଇତିହାସର ନିରପେକ୍ଷତା ଦୃଷ୍ଟିରୁ ସ୍ପଷ୍ଟ ବୁଝାଯାଇ ପାରେ । ପୁନଶ୍ଚ ଏହି ପରିଣତି-ପ୍ରତିଭା ମହାତ୍ମା ଗାନ୍ଧି, ସ୍ୱରାଜ୍ୟସଂଗ୍ରାମ ଆଦିକୁ ନେଇ ସଂସିତକାଳରେ ଗୁଣି ଗୁଣି କବିତା ରଚନା କରିଥିଲେ ହେଁ, ସେ ସବୁ କବିତାରେ ତାଙ୍କ ଚିନ୍ତାର ଅବକ୍ଷୟହିଁ ପ୍ରକଟିତ ହୋଇଛି । ଏହି ଅବକ୍ଷୟ ପରେ ବୁଦ୍ଧଙ୍କୁ ନେଇ ରଚିତ ତାଙ୍କର ଉତ୍ତରପର୍ବ୍ବର କବିତାଗୁଡ଼ିକରେ ମଧ୍ୟ ସ୍ପଷ୍ଟ ବାରିହୁଏ । ଅବଶ୍ୟ ଏ ପର୍ଯ୍ୟାୟରେ କବି ମାନସିଂହ ନିଜକୁ ନିରୀଶ୍ୱରବାଦୀ ବୋଲି ପ୍ରମାଣ କରିବାକୁ ଉଦ୍ୟମ କରିଛନ୍ତି; କିନ୍ତୁ ତାଙ୍କ କାବ୍ୟକଳାର ସେଇ ସୁକୁମାର ଭାବତରଳ ଆବେଦନଶୀଳତା ଅତି ଦ୍ରୁତଗତିରେ ହୋଇପଡ଼ିଛି କେନ୍ଦ୍ରଚ୍ୟୁତ ।୪୪। ବୌଦ୍ଧିକତାର ବ୍ୟାପକ ବିଚ୍ଛୁରଣ ମଧ୍ୟ ତାଙ୍କୁ ତାଙ୍କର ପୂର୍ବଗୌରବ ଫେରାଇଦେଇ ପାରିନାହିଁ । ୧୯୫୭ ଠାରୁ ୧୯୬୦ ମଧ୍ୟରେ ରଚିତ ଓ ସମସାମୟିକ ପତ୍ରିକା-ମାନଙ୍କରେ ପ୍ରକାଶିତ କେତେକ କବିତା 'ବିନ୍ଦୁ ଓ ସିନ୍ଧୁ' (୧୯୬୨) ନାମରେ ଗ୍ରନ୍ଥାବଳୀରେ ସଙ୍କଳିତ ହୋଇଛି । ଏସବୁ କବିତାରେ ଦାର୍ଶନିକ ମନନଶୀଳତା ଓ ପ୍ରଜ୍ଞାବାଦ ଅଧିକ ପରିଲକ୍ଷିତହେଲେ ବି ପୂର୍ବର ପ୍ରାଣପ୍ରାଚୁର୍ଯ୍ୟ ନାହିଁ । ତଥାପି ତାଙ୍କ

---

୪୪ । (କ) 'ମୁଁ କାହିଁକି ଲେଖେ'—'ଡଗର' ୧୪/୧ମ ସଂଖ୍ୟା, ତା ୧-୭-୭୫
''ଏବେ ମୁଁ ବହୁକାଳଧରି ଅପୌତ୍ତଳିକ । ହିନ୍ଦୁ ଦେବଦେବୀଙ୍କର ପ୍ରତିମାକୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନର ଦୃଢ଼ ଧାରଣା ଯେ ଏଇ ଅପୌତ୍ତଳିକତା ଓ ବ୍ରାହ୍ମଣବର୍ଣ୍ଣର ସାମାଜିକ ଜୀବନ ପରିତ୍ୟାଗ ନକଲେ ସାମାଜିକ ଭାବରେ ହିନ୍ଦୁ-ସମାଜ କେବେହେଲେ ସଭ୍ୟ ବା ଉନ୍ନତ ହୋଇପାରିବ ନାହିଁ ।''

(ଖ) 'ବୁଦ୍ଧଂ ଶରଣଂ ଗଚ୍ଛାମି'—ଝଙ୍କାର, ୨/୫ମ ସଂଖ୍ୟା, ଅଗଷ୍ଟ ୧୯୫୦ ।
(ଗ) 'ମାୟାବାଦ'—'ଝଙ୍କାର', ୩/୮ ସଂଖ୍ୟା, ନଭେମ୍ବର ୧୯୫୧ ।
(ଘ) 'ପତିତପାବନ ବୁଦ୍ଧ'—ଝଙ୍କାର ୯/୧ମ ସଂଖ୍ୟା, ଏପ୍ରିଲ୍ ୧୯୫୦ ।

ପରିଣତ କାବ୍ୟ-ମାନସର ଏଇ ବିଚ୍ଛିନ୍ନତା ଓ ଅବକ୍ଷୟ ସତ୍ତ୍ୱେ କାବ୍ୟ-ରଚନା କ୍ଷେତ୍ରରେ ତାଙ୍କ ଲେଖନୀ ଏ ସାହିତ୍ୟର ଏକ ସ୍ୱତନ୍ତ୍ର ଅଭାବକୁ ପୂର୍ଣ୍ଣକରିବା ଉପରେ ଯେ ନିୟତ ଚେଷ୍ଟାଶୀଳ ହୋଇପାରିଛି ଏହା ଏକାନ୍ତ ପ୍ରଣିଧାନର ବିଷୟ ।

**ମାନସିଂହଙ୍କ କାବ୍ୟ :**

ତାଙ୍କ କବିତା ରଚନାର ପରିସରପରି କାବ୍ୟରଚନାର କ୍ଷେତ୍ର ମଧ୍ୟ ବ୍ୟାପ୍ତି ଭିତ୍ତିକ । ଏଥିରେ ପୁରାଣୋରୁ ସାଧାରଣ ମଣିଷ ପର୍ଯ୍ୟନ୍ତ ବହୁ ଚରିତ୍ର ଓ ଦୈନନ୍ଦିନ ବ୍ୟାପାରଠାରୁ ଆଧିଭୌତିକ ଚେତନା ପର୍ଯ୍ୟନ୍ତ ବହୁ ବିଷୟ ଅନ୍ତର୍ନିହିତ । 'ଉପେକ୍ଷିତା' (୧୯'୮) କାବ୍ୟରେ ସେ ପୁରାଣର ଏକ ଉପେକ୍ଷିତା ଚରିତ୍ର ରାକ୍ଷକୁମାରୀ ସୂର୍ପଣଖାକୁ ହିଁ ଚରିତ୍ରିତ କରିଛନ୍ତି ଓ ତା' ପ୍ରତି କବିପ୍ରାଣର ସମସ୍ତ ସମ୍ବେଦନା ଓ ଦରଦ ଢାଳି ଦେଇଛନ୍ତି । ଏପରି ଚରିତ୍ର ନିର୍ମାଣରେ ସେ ରବୀନ୍ଦ୍ରନାଥଙ୍କ 'କାବ୍ୟେ ଉପେକ୍ଷିତା'ର ଭାବଧାରାଦ୍ୱାରା ଯେ ଅନୁପ୍ରାଣିତ ହୋଇଛନ୍ତି—ଏଥିରେ ସନ୍ଦେହ ନାହିଁ । ତେଣୁ ଏଠାରେ ରାମାୟଣର ବର୍ଣ୍ଣନା ଅନୁସାରେ ସୂର୍ପଣଖା ଭୟଙ୍କର ଓ କଦାକାର ରାକ୍ଷସୀ ନୁହେଁ; ବରଂ ଏକ ରୂପ-ଯୌବନ-ସମ୍ପନ୍ନା ସାଧାରଣ ନାରୀମାନ । ପୁନଶ୍ଚ ଏହି କାବ୍ୟର ବିକାଶରେ ରବୀନ୍ଦ୍ରନାଥଙ୍କ 'ବିଦାୟ ଅଭିଶାପ' ଖଣ୍ଡକାବ୍ୟର ପ୍ରଭାବ ପରିଲକ୍ଷିତ ହୁଏ । ରାମ ଓ ସୂର୍ପଣଖାର ବିଶ୍ରବା ଋଷିଙ୍କ ଆଶ୍ରମରେ ବିଦ୍ୟାଭ୍ୟାସ ଓ କୈଶୋର ପ୍ରୀତି ସମ୍ପର୍କରେ ପୁରାଣ ସମ୍ପୂର୍ଣ୍ଣ ନୀରବ । ତେଣୁ କଚ-ଦେବଯାନୀ ଉପାଖ୍ୟାନ ଅବଲମ୍ବନରେ ଗଠିତ ରବୀନ୍ଦ୍ରନାଥଙ୍କ 'ବିଦାୟ ଅଭିଶାପ'ର ରୋମାଣ୍ଟିକ ପୁଣି ଅଶ୍ରୁକରୁଣ ପ୍ରେମ ଓ ବିରହାନୁଚିନ୍ତା ଦ୍ୱାରା କବି ମାନସିଂହ ଅନୁପ୍ରାଣିତ ହୋଇ ଏ କାବ୍ୟଟିର ପରିକଳ୍ପନା କରିଥିବା ନିଶ୍ଚିତ । ରବୀନ୍ଦ୍ରନାଥ ଯେପରି ପରିଚୟ ଓ ପ୍ରେମର ଦୁଇଟି ପର୍ଯ୍ୟାୟ ସୃଷ୍ଟି କରିଛନ୍ତି, କବି ମାନସିଂହ ମଧ୍ୟ ଦୁଇଟି ପର୍ଯ୍ୟାୟର ଚିତ୍ର ଦେଇଛନ୍ତି । କିଶୋରକାଳରେ ଉଭୟଙ୍କ ପରିଚୟ ଓ ପ୍ରେମର ବିକାଶ; ଯୌବନରେ ପ୍ରେମର ନିବେଦନ, କର୍ତ୍ତବ୍ୟର ଦ୍ୱାହିରେ ପୁରୁଷର ଏପରି ପ୍ରେମକୁ ପ୍ରତ୍ୟାଖ୍ୟାନ; ପୁଣି କର୍ତ୍ତବ୍ୟର ଅନୁରୋଧରେ କଚ ସ୍ୱର୍ଗକୁ ଯିବାକୁ ବାଧ୍ୟ; କାରଣ ଦେବତାମାନେ ମୃତସଞ୍ଜୀବନୀ ମନ୍ତ୍ର ପାଇଁ ଅପେକ୍ଷା କରିରହିଛନ୍ତି; କିନ୍ତୁ ସୂର୍ପଣଖା ପାଖରେ ରାମଚନ୍ଦ୍ରଙ୍କର ସେପରି କୌଣସି ଯୁକ୍ତି ନାହିଁ । ତେଣୁ ସେ କହୁଛନ୍ତି—

> "ପିତା ମୋର ବାଲ୍ୟକାଳେ ଦେଇଛନ୍ତି କରି
> ଆରେକ ବାଳିକା ସହ ପରିଣୀତ ମତେ ।" —( ଉପେକ୍ଷିତା )

ତେଣୁ 'ବିଦାୟ ଅଭିଶାପ'ର ଉପାଖ୍ୟାନକୁ ଆରୋପ କରିବାପାଇଁ ମାନସିଂହ ଆବଶ୍ୟକମତେ ପୌରାଣିକ ଅସତ୍ୟତାର ଆଶ୍ରୟ ନେଇଛନ୍ତି । କିନ୍ତୁ

ପରିକଳ୍ପନାର ଅଭିନ୍ନତା ବହୁସ୍ଥାନରେ ପ୍ରତ୍ୟକ୍ଷୀଭୂତ ହୁଏ । ୪୫ । ସମସାମୟିକ ଆଉ ଏକ କ୍ଷୁଦ୍ର କାବ୍ୟ 'ଶୁଭଦୃଷ୍ଟି' (୧୯୩୦) ରେ ନାଗେନ୍ଦ୍ର କେମା ଉଲୁପୀ ଓ ଅର୍ଜ୍ଜୁନଙ୍କ ପ୍ରଣୟ କାହାଣୀ ରୂପାୟିତ ହୋଇଛି ।୪୬। ଏହି କାବ୍ୟରେ କବି ମାନସିଂହଙ୍କ ପ୍ରେମ ଓ ପ୍ରଣୟର ଉଚ୍ଛ୍ୱସିତ ଚେତନା ପୁରାଣକୁ ଅବଲମ୍ବନ କଲେ ମଧ୍ୟ ଲୌକିକ ସତ୍ତା ହରାଇନାହିଁ । ତେଣୁ ଅର୍ଜ୍ଜୁନଙ୍କ ଘାଘ ବିଚ୍ଛେଦରେ ଉଲୁପୀର ବିରହ ଖେଦ ତଥା ସଖୀମାନଙ୍କ ଆଗରେ ସେଇ ବେଦନାବିଦ୍ଧ ହୃଦୟର ପ୍ରକାଶରେ ବେଶ୍ ଆନୁପାତିକତା ରକ୍ଷାକରାଯାଇ ପାରିଛି । ଏଇ ପ୍ରଣୟଚେତନାର ପରବର୍ତ୍ତୀ ରୂପ ତାଙ୍କ 'ପୂଜାରିଣୀ' (୧୯୩୨) କାବ୍ୟ ନାଟିକାରେ ଏକ ଅତି-ଭୌତିକ ଉପାଦାନକୁ ଅବଲମ୍ବନକରି ଗଢ଼ିଉଠିଛି । ସତ୍ୟବାଦୀର ସାକ୍ଷୀଗୋପାଳ ଓ ସେଇ ଗ୍ରାମର ବ୍ରାହ୍ମଣ କନ୍ୟା ଲକ୍ଷ୍ମୀର କାଳ୍ପନିକ ଲୋକପ୍ରଚଳିତ ପ୍ରେମକାହାଣୀହିଁ ଏହାର ପୃଷ୍ଠଭୂମି । କବିବର ରାଧାନାଥ ତାଙ୍କ 'ଚିଲିକା' କାବ୍ୟରେ ଏହାର ସୂଚନା ଦେଇଛନ୍ତି । ୦୭ । କବି ମାନସିଂହ ଏଇ ଅତିଲୌକିକ ପ୍ରେମକାହାଣୀକୁ ଏକ ରୋମାଣ୍ଟିକ୍ ପ୍ରଣୟର ପରିଧି ମଧ୍ୟରେ ରସବନ୍ତ କରି ପାରିଛନ୍ତି ।

---

୪୫ । 'ଉପେକ୍ଷିତା—'ସହକାର' ୮/୧୨, ୯/୧, ୯/୨ (ଅଗଷ୍ଟ—ଅକ୍ଟୋବର ୧୯୨୮) ।

'ବିଦାୟ ଅଭିଶାପ' (ରବୀନ୍ଦ୍ରନାଥ)—"ଯେ ଥା ତୁମି ପ୍ରତି ଦିବସେର/ ଗୋଧନ ଚରାତେ ଏସେ ପଡ଼ିତେ ଘୁମାଇ / ମଧ୍ୟାହ୍ନର ଖରତାପେ କ୍ଲାନ୍ତ ତବ କାୟେ / ଅତିଥିବତ୍ସଲ ତରୁ ଦୀର୍ଘ ଛାୟା ଖାନି / ଦିତ ବିଛାଇୟା ସୁଖ ସୁପ୍ତି ଦିତ ଆନି ।"

'ଉପେକ୍ଷିତା' (ମାନସିଂହ)—"ମଧ୍ୟାହ୍ନ ଆଗମେ / ତପଭୂମି ପ୍ରାନ୍ତେ ଯାଇ ଚରାଇ ଗୋଧନ / ବକୁଳ ଉଦୁମ୍ବର ସହକାର ଗୁଲ୍ମେ / ବସି ମୁଖେ ବଂଶୀ ବାଇ ପାଗଳ ପବନ / ରନ୍ଧ୍ରେ ରନ୍ଧ୍ରେ କରେ କ୍ରୀଡ଼ା..."

'ବିଦାୟ ଅଭିଶାପ'—ତୁମି କେନ ଛଳ୍ପ ରାଖି ଉଠିୟା ଆସିତେ / ପ୍ରଫୁଲ୍ଲ ଶିଶିରସିକ୍ତ କୁସୁମ ରାଶିତେ, କରିତେ ଆମାର ପୂଜା ? ...... ।"

'ଉପେକ୍ଷିତା'—..."ଅବା କେତେବେଳେ / କାନନ ପଲ୍ଲୀରୁ ତୋଳି ଅରବିନ୍ଦରାଜି / ମାଳା ଗୁନ୍ଥି ମୋ ଗଳାରେ ଦିଅନ୍ତ ଲମ୍ବାଇ ।"ଇତ୍ୟାଦି ।...

୪୬ । 'ଶୁଭ ଦୃଷ୍ଟି—'ସହକାର'—୧୧ / ୮, ୯ ସଂଖ୍ୟା, ମାର୍ଗଶିର, ପୌଷ ୧୩୩୮ (ନଭେମ୍ବର, ଡିସେମ୍ବର ୧୯୩୦)

୪୭ । (କ) 'ପୂଜାରିଣୀ'—'ସବୁଜ ସାହିତ୍ୟ ସମିତି' ଦ୍ୱାରା ୧୯୩୨ରେ ପ୍ରଥମେ ପ୍ରକାଶିତ । ପରବର୍ତ୍ତୀ ୪ର୍ଥ ସଂକଳନରେ ଏହାକୁ ଗୀତିନାଟ୍ୟରୂପେ ରୂପାୟିତ କରିବାରେ କେତେକ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇଛି ।

ଅନ୍ୟ ଏକ କାବ୍ୟ 'ନନ୍ଦୁଣ'ରେ ଏହି ପ୍ରେମଚେତନା ରାଜକନ୍ୟା ଓ ଦରିଦ୍ର କବିର ପ୍ରଣୟକୁ ନେଇ ସଂଗଠିତ । ଦରିଦ୍ର କବିପ୍ରତି ରାଜକନ୍ୟାର ଆସକ୍ତି କେବଳ ଗୁଣର ପୂଜା ମାତ୍ର । ତେଣୁ ଏଠାରେ ରାଜଉଆସର ବିଳାସ ଓ ଆଟୋପ ଟଳି ପଡ଼େ । ହୁଏତ ଏଇ କାବ୍ୟରେ କବି ଏକ ଅଦୂର ଭବିଷ୍ୟତର ସୂଚନା ଦେଇଛନ୍ତି, ଯେଉଁଠିକି ସମାଜରେ ଏଇ ବଂଶ ଓ ଜନ୍ମଗତ ଚେତନା ଓ ଆଭିଜାତ୍ୟ ରହିବନି; ମଣିଷକୁ ମଣିଷ ତାର ଗୁଣ ଓ ମାନବିକତା ନେଇ ଚହ୍ନିବ । ରାଜକୁମାରୀର ପ୍ରେମ ନିବେଦନରେ ଏହି ବୈପ୍ଳବିକ ଚିନ୍ତାଧାରା ସୂଚିତ ହୋଇଛି । ନାରୀପ୍ରଣୟର ଏଇ ମର୍ଯ୍ୟାଦା ଦୀପ୍ତ ଚିତ୍ର ତାଙ୍କ 'ଜେମା' କାବ୍ୟର ଗ୍ରାମ୍ୟ-ବାଳିକା ଜେମା ଚରିତ୍ରରେ ଆହୁରି ମହତ୍ତ୍ୱପୂର୍ଣ୍ଣ । ସେଠାରେ ଭୋଗ ଅପେକ୍ଷା ତ୍ୟାଗ ଓ ନିଷ୍ଠାର ଚିତ୍ର ଅଧିକ ପ୍ରତିପନ୍ନ ହୁଏ । ସେହିପରି 'ସାଧବଝିଅ' କାବ୍ୟରେ (୧୯୪୭) ତାଙ୍କ ଦୃଷ୍ଟିଭଙ୍ଗୀ ଓଡ଼ିଶାର ଅତୀତ ଐତିହ୍ୟର ଗୌରବପୂର୍ଣ୍ଣ କାହାଣୀକୁ ଅବଲମ୍ବନ କରି ସଙ୍ଗଠିତ । ଏ କାବ୍ୟର ଘଟଣା ସମୟ ବହୁ ପ୍ରାଚୀନ ହେଲେ ବି ଗଳ୍ପ ପରିକଳ୍ପନାରେ ମାନସିଂହ କାବ୍ୟ-ମାନସର ଅଭିନବତ୍ୱ ଲକ୍ଷ୍ୟ କରାଯିବ । ବିଭିନ୍ନ ସମୟରେ ଏଇ କାବ୍ୟର ବିଭିନ୍ନ ଅଧ୍ୟାୟ ଭିନ୍ନ ଭିନ୍ନ ଶୀର୍ଷକରେ ରଚିତ ହୋଇଥିଲେ ମଧ୍ୟ ଏହାକୁ ଏକ ଅଖଣ୍ଡ କାବ୍ୟାବେଗ ପ୍ରଦାନ କରିବାରେ ମାନସିଂହଙ୍କ ମୌଳିକ କୌଶଳ ଲକ୍ଷ୍ୟ କରାଯାଇପାରେ । ପୁନଶ୍ଚ ସବୁଜ କାବ୍ୟଚେତନାର ପ୍ରତିବାଦସ୍ୱରେ ଓଡ଼ିଶାର ସଂସ୍କୃତି ଓ ଐତିହ୍ୟ ଚେତନାକୁ କାବ୍ୟାକାରରେ ପୁନରୁଜ୍ଜୀବିତ କରିବାରେ ତାଙ୍କ କାବ୍ୟ-ମାନସର ନିଷ୍ଠା ଓ ଉଦ୍ଦେଶ୍ୟମୂଳକତା ବାରି ହୋଇ ପଡ଼େ – ଏକଥା ଆଗରୁ ସୂଚିତ ହୋଇଛି । ଏହି ପ୍ରତିବାଦର ସ୍ୱର ତାଙ୍କର ଦୀର୍ଘ କାବ୍ୟ 'କମଳାୟନ' (୧୯୪୭)ରେ ଆହୁରି ବ୍ୟାପ୍ତି ଭିତ୍ତିକ । ଏଠାରେ କାବ୍ୟଚେତନାର ସଞ୍ଚାରପଥ ଆଉ ଦୂର ଅତୀତ ବା ଲୋକକଥା ନୁହେଁ; ବରଂ ନିଜ ସମୟର ଓ ଯୁଗର ଜାତୀୟ ସଂଗ୍ରାମର ପୃଷ୍ଠଭୂମିରେ ସେ କେତୋଟି ବାସ୍ତବ ଓ କାଳ୍ପନିକ ଚରିତ୍ରର ସମାହାରରେ ଏ କାବ୍ୟଟି ପରିକଳ୍ପନା କରିଛନ୍ତି । ଏ ସମ୍ପର୍କରେ ତାଙ୍କର କୈଫିୟତ୍— "ଜୀବନରେ ଯାହା ମହତ୍, ଯାହା ସୁନ୍ଦର, ଯାହା ସତ୍ୟ ମୁଁ କେବଳ ତାହାର ହିଁ ଉପାସକ ଓ ଭକ୍ତ । କୌଣସି ଗୋଷ୍ଠୀ, ଦଳ ବା ଇଜମ୍‌ର ପ୍ରଚାରକ ରୂପେ ଠିଆ ହେବା ମୋର ସ୍ୱଭାବବିରୁଦ୍ଧ । ମୁଁ ମୋର 'କମଳାୟନ' କାବ୍ୟରେ ତାହାହିଁ ଦେଖାଇବାକୁ ଯାଇଛି ଯେ ଦଳ ଓ ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ । ସେଥିପାଇଁ କମଳ ତା'ର ରାଜନୀତିକ ଦଳ ଛାଡ଼ି ବିରାଟ ମାନବଜାତିର ସେବାରେ

(ଖ) 'ଚିଲିକା'—ଗ୍ରନ୍ଥାବଳୀ ପୃ ୫୪—"ମନ୍ତ୍ରମୁଗ୍ଧଅନା-କୁଞ୍ଜ-ବିହାରିଣୀ, ସାକ୍ଷୀ ଗୋପୀନାଥ-ହୃଦୟହାରିଣୀ / ଦ୍ୱିଜକନ୍ୟା ଲକ୍ଷ୍ମୀ ସ୍ନାନେ ପୁଣ୍ୟ ନୀର......" ଇତ୍ୟାଦି ।

ବାହାରି ପଡ଼ୁଛି । କୌଣସି ସ୍ଲୋଗାନ୍ ମନୁଷ୍ୟର କଲ୍ୟାଣ ଆଣିପାରିବ ନାହିଁ, ଯେପରି ଆଣିବ ବ୍ୟକ୍ତିର ଗୁରିର୍ତ୍ତିକ ଶୁଦ୍ଧତା, ନିଃସ୍ୱାର୍ଥପରତା, ସତ୍ୟ ପ୍ରତି ବିଶ୍ୱାସ ଅନୁରାଗ । ୪୮ । ଏପରି ଏକ ସାଧାରଣ ଓ ଦୈନନ୍ଦିନ ଜୀବନର ବିଷୟବସ୍ତୁ ନେଇ ଗଳ୍ପରେ କବି ମାନସିଂହ ଓଡ଼ିଆ ସାହିତ୍ୟର ଚିରାଚରିତ ଅନୁସୃତ କାବ୍ୟପଦ୍ଧତିକୁ ଭାଙ୍ଗି ଦେଇଛନ୍ତି । ଏହାର ନାୟକ ନାୟିକା କମଳ ଓ କରୁଣା ଆମ ପରିଚିତ ସମାଜର ତରୁଣ ତରୁଣୀ । ସେମାନେ ତେଣୁ ଅଲୌକିକ ଶକ୍ତିସମ୍ପନ୍ନ ଦେବଦେବୀ ଶାପଗ୍ରସ୍ତ ଯକ୍ଷ ବା ଗନ୍ଧର୍ବ ନୁହନ୍ତି । ସେମାନେ ଆମରି ପରି ଦୁଃଖକଷ୍ଟଭୋଗୀ ସାମାଜିକ ମନୁଷ୍ୟ । କଠୋର ଜୀବନସଂଗ୍ରାମ, ବାଧା, ବିଘ୍ନ ଭିତରଦେଇ ସେମାନଙ୍କ ମଧ୍ୟରେ ଦେଶସେବା କରୁ କରୁ ପରସ୍ପରପ୍ରତି ସଖ୍ୟ ଓ ପ୍ରୀତି ଗଢ଼ିଉଠିଛି । ଏହା ସ୍ୱାଭାବିକ ମଧ୍ୟ । ସମସ୍ତ ଘାତପ୍ରତିଘାତ ଓ ସମସାମୟିକ ସମସ୍ୟା ଭିତରେ ସେମାନେ ଯାହା ସତ୍ୟ ବୋଲି ବିଚାରିଛନ୍ତି, ତାହାହିଁ ନିଜନିଜର ଜୀବନରେ କାର୍ଯ୍ୟକାରୀ କରିଛନ୍ତି । ତେଣୁ ତାଙ୍କ ସମସ୍ୟା ସହିତ ବର୍ତ୍ତମାନ ଯୁଗର ତରୁଣ-ତରୁଣୀଙ୍କ ସମସ୍ୟାର ଯୋଗସୂତ୍ର ପ୍ରତିଷ୍ଠା ହୋଇପାରିଛି । ପୁନଶ୍ଚ ଉତ୍କଳ ତଥା ସ୍ୱରାଜ୍ୟ ଆନ୍ଦୋଳନର ପୃଷ୍ଠଭୂମିରେ ଦେଶପ୍ରାଣ ଗୋପବନ୍ଧୁଙ୍କ କାବ୍ୟରେ ଚରିତ୍ରିତ କରାଯିବାରେ ଏହା ବେଶ୍ ସମୟୋପଯୋଗୀ ହୋଇପାରିଛି ମଧ୍ୟ । ପୁଣି ଏ ଚରିତ୍ର କେବଳ ଓଡ଼ିଶା ବା ଭାରତରେ ଆବଦ୍ଧ ରହିନାହିଁ; ବରଂ ବିଶ୍ୱପରିକ୍ରମାରେ ତା'ର ବ୍ୟକ୍ତିତ୍ୱର ବିକଚ ବିକାଶ ଲକ୍ଷ୍ୟ କରାଯିବ ।

କିନ୍ତୁ ଏହି କାବ୍ୟର ପ୍ରାରମ୍ଭ, ବିକାଶ ଓ ପରିଣତିରେ ଭାରସାମ୍ୟ ରକ୍ଷା କରାଯାଇ ପାରିନି । ନାୟକ-ନାୟିକାଙ୍କୁ ବ୍ୟାପକ ପରିବେଶ ମଧ୍ୟରେ ପରିକ୍ରମା କରାଇବାରେ କାବ୍ୟର ଆବେଗ ଅତି ମାତ୍ରାରେ ଅନିୟନ୍ତ୍ରିତ ହୋଇପଡ଼ିଛି ଓ ଉତ୍ତର ଖଣ୍ଡରେ ଏହା କଷ୍ଟକଳ୍ପିତ ପରି ମନେହେଉଛି । ତଥାପି ଏ କାବ୍ୟର ସ୍ଥାନେ ସ୍ଥାନେ ପ୍ରଣୟର ଯେଉଁ ପ୍ରାଣସ୍ପର୍ଶୀ ଅନୁଭୂତି ବର୍ଣ୍ଣିତ ହୋଇଛି ତାହା ମାନସିଂହଙ୍କ ପୂର୍ବ କାବ୍ୟଚେତନାର ଫଳକରୂପେ ଅବଧାରିତ ହୋଇପାରେ । ଏ କାବ୍ୟରେ ତେଣୁ ଯେଉଁଠାରେ ସେ କମଳ ଓ କରୁଣାର ପ୍ରସ୍ୟେରଚନ ଉପସ୍ଥାପନ କରିଛନ୍ତି, ସେଠାରେ ବହୁ ପୂର୍ବର 'ଧୂପ' କବିତାର ଆବେଗ ସହିତ ଯୋଗସୂତ୍ର ସ୍ଥାପିତ ହୋଇଥିବା ଲକ୍ଷ୍ୟ କରାଯିବ । ତେଣୁ କାବ୍ୟ ଚେତନାର ସମସ୍ତ ବିଲକ୍ଷଣ ଓ ବିବିଧତା ସତ୍ତ୍ୱେ ତାଙ୍କ ପ୍ରଣୟର ଏକାନ୍ତ ଚିତ୍ରକାର ରୂପେ ଅବିସମ୍ବାଦିତଭାବେ ଚିହ୍ନିତ କରାଯାଇ ପାରିବ—ବୋଧହୁଏ ଏହାହିଁ ହେବ ତାଙ୍କ ବାକ୍ୟ ଚେତନାର ଶ୍ରେଷ୍ଠ ପରିଚୟ ।

୪୮ । 'ମୁଁ କାହିଁକି ଲେଖେ'—ମାନସିଂହ, ଉତ୍କଳ ୧୪ ବର୍ଷ / ୧ମ ସଂଖ୍ୟା

# ମାନସିଂହଙ୍କ ଜୀବନୀ ଓ ଜୀବନ

ଡକ୍ଟର କୁଞ୍ଜବିହାରୀ ଦାଶ

ମୋ ମନର ଜଣେ ଆପଣାର ମଣିଷ ଥିଲେ ମାୟାଧର ମାନସିଂହ । ଯେମିତି କବି ଦିଶିବାର କଥା ସେ ଦିଶୁଥିଲେ । ତାଙ୍କର ଛଳ ବା ଛଦ୍ମ ରୂପ ବୋଲି କିଛି ନ ଥିଲା । ଭିତର ବାହାର ସମାନ । ଶତ୍ରୁ ଲାଗି ଯୋଉ ରୂପ ମିତ୍ର ଲାଗି ଅବିକଳ ସେଇ ରୂପ । ବିଲାତି ଆଦବ୍ କାଇଦା ସେ କିଛି ଶିଖିଥିଲେ, କିନ୍ତୁ ଜଣେ ସରକାରି କର୍ମଚାରୀ ଭାବରେ ଚଳିବାର ସାଧାରଣ କୌଶଳ ସେ ଆଦୌ ହାସଲ କରିପାରି ନ ଥିଲେ । ଫଳରେ ଭୁଲ ବୁଝାମଣାର ସୃଷ୍ଟି-ବିରୋଧ-ବିଭ୍ରାଟ । ସେଥିରେ କ୍ଷତି ହୋଇଥିଲା ତାଙ୍କ ନିଜର । ପ୍ରକୃତ ପକ୍ଷେ ଶତ୍ରୁ ତାଙ୍କର କ୍ଷତି ଘଟାଇନାହାନ୍ତି; ନିଜର କ୍ଷତି ବହୁଳାଂଶେ ଘଟାଇଛନ୍ତି ସେ ନିଜେ । ତାଙ୍କ ବିରୁଦ୍ଧରେ ଅଭିଯୋଗ ବହୁତ, ସେ କୈଫିୟତ୍ ଦେଇଛନ୍ତି ବହୁତ । ଆଜି ସେ ସବୁ କାଳର ଭ୍ରୂକୁଟିରେ ପ୍ରାୟ ଅପ୍ରାସଙ୍ଗିକ ହୋଇ ଯାଇଛି । ମାନସିଂହଙ୍କୁ ସେ ସବୁର ବାହାରେ ଦେଖିହୁଏ, ହସରେ କାନ୍ଦରେ ଜଣେ ଉଚ୍ଛ୍ୱସିତ କିଶୋର ପରି ବୋହିଯିବାର ସ୍ୱାଭାବିକତାରେ କମଧଡ଼ି ଗ୍ୱଦରପଙ୍କା ରୋମାଣ୍ଟିକ୍ ବେଶରେ ଯାହା ଶେଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିଲା ।

ମାୟାଧରଙ୍କ ଜନ୍ମ ୧୩ । ୧୧ । ୧୯୦୫ ଖ୍ରୀଷ୍ଟାବ୍ଦରେ । ତାଙ୍କ ଜନ୍ମ ଗ୍ରାମର ନାମ ନନ୍ଦଳା, ଚିଲିକା ପାରି ହୋଇ ଗଲେ ପାରିକୁଦରେ ପଡ଼େ । ତାଙ୍କ ଦ୍ୱୀପ ଗ୍ରାମ ପ୍ରତି ମୋର ଆକର୍ଷଣ ଭକ୍ତିର ନୁହେଁ, ପ୍ରକୃତି ପ୍ରୀତିର । ଚିଲିକା ମୋର ମୋର ସ୍ୱପ୍ନର, ସେଥିରେ ଦ୍ୱୀପ, ପୁଣି ଗ୍ରାମ ଉପକୂଳ ବାସୀ ବ୍ୟକ୍ତିର ପ୍ରକୃତିରେ କଳ୍ପନାର ବାହାରେ । ଆଇ. ଏ ପଢ଼ିଲା ବେଳେ ଏଇ ଦମ୍ପତି ସହ ରମ୍ଭା ବାଟେ ଗୋଟିଏ ଦେଶୀ ନୌକାରେ ପାରିକୁଦ ଯାଇଥିଲି । ପଛରେ ବାଲେରି, ଡାହାଣରେ ରମ୍ଭାନାସୀ, ସାମ୍ନାରେ ପାରିକୁଦ, ବାଆଁ ପଟେ ସୋଲରି, କାଳିଜାଇ ଚିଲିକାର ତରଙ୍ଗ ଡେଇଁ ଡେଇଁ ଆମର ଯାତ୍ରା । ମାନସିଂହଙ୍କ ମୁହଁରୁ ଛୁଟୁଥାଏ 'ହେମପୁଷ୍ପ'ର କବିତା । ଏସବୁର ଶ୍ରୋତା ହେବାକୁ ଅପାତ୍ର ମୁଁ; କିନ୍ତୁ କବିତା ଶୁଣିବା ଲୋଭରେ ଢେଉଗୁଡ଼ାକ ନୌକା ଭିତରକୁ ଲମ୍ଫ ଦେଉଥାନ୍ତି । ହଂସଗୁଳ ଦଳ ବି ଗୋଟାଏ, ଗୋଟାଏ ଚକ୍କର ଦେଇ ଚାଲି ଯାଉଥାନ୍ତି ।

ଚଲିକା ପାର ହୋଇ କିଛୁ ବାଟ କେଉଁଟ ବସ୍ତି ଭିତରେ, ଶିଉଳିଲଗା ଘାସ ମସ୍ ମସ୍ ବାଲିରେ, ଚପ୍‌ଚପ୍ ପାଣିରେ, ତାପରେ ଉସ୍‌ଉସ୍ ଘୁଙ୍ଗା ବାଲିରେ ଚାଲି ଚାଲି ପହଞ୍ଚିଲୁ କନ୍ଦଲା ଗ୍ରାମରେ । ଗ୍ରେଟ ପଟାଟିଏ ।

କବିଙ୍କର ଗାଆଁ ଏ, ଏଠି ଯାହା କିଛି ସବୁ ମୋର ଶ୍ରଦ୍ଧାର ଏ ପାଖେ ଚଲିକା, ସେ ପାଖେ ସମୁଦ୍ର । କିଛି ଦୂରରେ ଯେଉଁଠି ମିଳିଛନ୍ତି ଖୋଲା ଆକାଶ ତଳେ ଦୁହେଁ କଥା ହେଉଥିବା ପରି ଲାଗେ । ସେଇ ସମୁଦ୍ର କୂଳେ ଗୋଟିଏ ଦୁଇଟି ସନ୍ଧ୍ୟା କଟାଇବାର ସୌଭାଗ୍ୟ ମୋର ହୋଇଥିଲା । ଉଚ୍ଛ୍ୱସିତ ଢେଉ, ଦୀର୍ଘ କିଆକୁଞ୍ଜ ଓ ଝାଉଁ ବଣ ଉପରେ ଅବାଧ ଆସ୍ତରଣ । ତା ମଧ୍ୟରେ ଢେଉ ଛୁଇଁ ନ ଛୁଇଁ ଗୁଡ଼ିକଙ୍କୁ ଖେଳାଇ ଦଉଡ଼ାଇ ପାଦ ଗ୍ଳୁଥାନ୍ତି କବି; ଚନ୍ଦ୍ରିତ, ସ୍ୱପ୍ନର ରାଜ କୁମାର ପରି ସ୍ୱପ୍ନିଳ । ଏଇ ଶୋଭାମୟ ସ୍ଥାନରେ କବିଙ୍କର ବାସଗୃହ ନିର୍ମାଣ କଳ୍ପନା କରିଥିଆ ମୂଳରେ କବିବର ରାଧାନାଥଙ୍କ କୁଟୀର ନିର୍ମାଣ ପରି ଏକ କଳ୍ପନାରେ ହିଁ ରହିଗଲା ।

ମାନସିଂହଙ୍କ ପିତାଙ୍କ ନାମ ପଦ୍ମଚରଣ ମାନସିଂହ, ମାଆଙ୍କ ନାମ ସୁଭଦ୍ରା ଦେବୀ । ସେ ପିଲାଦିନରେ ହିଁ ପିତୃ ମାତୃ ସ୍ନେହରୁ ବଞ୍ଚିତ ହୋଇଥିଲେ । ମାତ୍ର ଚାରି ବର୍ଷ ବୟସ୍କ ହୋଇଥିବା ବେଳେ ପିତା ସଂସାର ତ୍ୟାଗ କଲେ, ସେଇ ଦୁଃଖରେ ମାଆ ବି ଶୁଣାଯାଏ ଆତ୍ମହତ୍ୟା କଲେ । ଯେତେ ଭୁଆଣିଆ ଦିଶିଲେ ବି ତାଙ୍କ ହାସ୍ୟ ମଧ୍ୟରେ ସାରା ଜୀବନ ସେ କାରୁଣ୍ୟର ଦାଗ ଲିଭି ପାରି ନ ଥିଲା ।

ମାନସିଂହଙ୍କର ଦୁଇଟି ଭଉଣୀ, ତାଙ୍କ ବଡ଼ ଭଉଣୀ ସୁନା ଅପା; ସେ କଟକରେ ପଢ଼ିଲାବେଳେ ସୁନା କାଚ କିଣି ଆଣିବା ଲାଗି ମାନସିଂହଙ୍କୁ କହି ଦେଇଥିଲା; ଦାରିଦ୍ର୍ୟ ହେତୁ ସେ ଅପାକୁ ତ ତୁଷ୍ଟ କରି ପାରିଲେ ନାହିଁ, ସ୍ୱୟଂ ବିଧାତା ମଧ୍ୟ ବାମ ହେଲା । ବିବାହର ମାତ୍ର ଦଶଦିନ ପରେ ତାଙ୍କ ସ୍ୱାମୀ ଫେରାର ହୋଇଥିଲେ, ସେ ପାରିକୁଦ ରାଜାଙ୍କର ହିସାବ ସମୀକ୍ଷକ ଥିଲେ । ଅର୍ଥ ତୋଷରପ ଅପରାଧରେ ଅଭିଯୁକ୍ତ ହେଲା ପରେ ସେ ଅନ୍ତର୍ଦ୍ଧାନ ହୋଇଗଲେ; ଆଉ ଫେରିଲେ ନାହିଁ, କିଛି ସମ୍ବାଦ ବି ମିଳିଲା ନାହିଁ । ସିନ୍ଦୂର କପାଳକୁ ଭାର ହେଉଥିବା ବେଳେ ସ୍ୱାମୀ ବିରହିତା ଅପାର କାଚ ପିନ୍ଧିବାର ସକ୍ ଆଉ କେଉଁଠି ରହିଲା ? ମାନସିଂହ ସୁନା କାଚ କିଣି ଆଣି ଦେଇଥିଲେ ମଧ୍ୟ ଏହା ଅଧିକ କାରୁଣ୍ୟ ସୃଷ୍ଟି କରିଥାନ୍ତା ।

ମାନସିଂଙ୍କ ଦ୍ୱିତୀୟ ଭଉଣୀର ନାଁ ଥିଲା ଧୋବଣୀ; ପିଲାଦିନେ ଦେହ ଖରାପ ହୋଇଥିଲା । ବଞ୍ଚିବାର କିଛି ଆଶା ନ ଦେଖିବାରୁ ସୁଭଦ୍ରା ଦେଈ

ଧୋବଣୀକୁ ଛ'କଡ଼ା କଉଡ଼ିରେ ବିକି ନ' କଡ଼ାରେ କିଣିଥିଲେ । ଯମ ଛୁଆଁ ହେବା ଡରରେ ନେଲା ନାହିଁ । ନାଆଁ ରହିଗଲା ଧୋବଣୀ ।

ମାନସିଂହଙ୍କ ପିଲାଦିନର ନାମ ଥିଲା ଘୃଷୁରିଆ । ଜଣେ ଘୃଷୁରିଆ ପିଲାଦିନେ ତାଙ୍କୁ ଦୁଃସାଧ୍ୟ ରୋଗରୁ ଆରୋଗ୍ୟ କରିଥିଲା । ଏହି ନାମ ଦେଇ ଯମକୁ ବିରିଡ଼ା ମୋଡ଼ା ପକେଇ ଦିଆହେଲା—ସେ ଆଉ ମାନସିଂହଙ୍କୁ ଛୁଇଁବାକୁ ସାହସ କରିଲା ନାହିଁ । ସିଂହ ବଂଶର ଏଇ ଘୃଷୁରିଆ ନାମ ହାସ୍ୟକର ବୋଧ ହୋଇପାରେ, କିନ୍ତୁ ବିଶ୍ୱାସ ବା ସମସ୍ତର ପ୍ରୟୋଜନକୁ ଏଡ଼େଇ ଦିଆଯାଇ ନ ପାରେ ।

ମାନସିଂହଙ୍କ ସ୍ୱାଆନ୍ତ ବାପା ଅଗାଧୂ ନାୟକ ପାରିକୁଦ ରାଜାଙ୍କର ଦେବାନ ଥିଲେ । ସେ ତାଙ୍କ ଶିକ୍ଷାର ସମସ୍ତ ବ୍ୟୟ ବହନ କରିଥିଲେ । ସେ ପାରିକୁଦର ଗ୍ରାମ୍ୟ ପାଠଶାଳାରୁ ପାସ୍ କଲାପରେ ଖୋର୍ଦ୍ଧା ମାଇନର ଓ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ସେ ୧୯୨୬ ସାଲରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍, ୧୯୨୮ ରେ ରେଭେନ୍ସା କଲେଜରୁ ଆଇ. ଏ, ୧୯୩୦ରେ ଇଂରାଜୀରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ସହିତ ବି ଏ, ୧୯୩୨ରେ ଇଂରାଜୀରେ ଦ୍ୱିତୀୟ ଶ୍ରେଣୀରେ ଏମ୍. ଏ ପାସ୍ କରିଥିଲେ ।

୧୯୩୨ ମଇ ମାସ ୮ ତାରିଖରେ ଶ୍ରୀମତୀ ହେମଲତାଙ୍କ ସହିତ ମାୟାଧରଙ୍କର ବିବାହ ହୋଇଥିଲା । ସେ ସୁଗୃହିଣୀ; ଗଳ୍ପ ଲେଖିକା ଭାବରେ ସୁପ୍ରସିଦ୍ଧା ଥିଲେ ।

ଓଡ଼ିଶାରେ ସେତେବେଳେ ଗୋଟିଏ ଦୁଇଟି କଲେଜ ମାତ୍ର । ମାନସିଂହ ଛାତ୍ର ଭାବରେ କୃତିତ୍ୱ ଅର୍ଜନ କଲେ ମଧ୍ୟ ତାଙ୍କୁ ଅଧ୍ୟାପକ ବୃତ୍ତିଟିଏ ମିଳିଲା ନାହିଁ । ସେ ଘରୋଇ ହାଇସ୍କୁଲମାନଙ୍କରେ ନିଜ ଭାଗ୍ୟ ଅନୁସରଣ କରି ବୁଲିଲେ । ବାଣପୁର ପାରିକୁଦର ପଡ଼ୋଶୀ ଗ୍ରାମ ଚିଲିକା ଏ ପାରି ସେ ପାରି । ଭାଲେରି ପାହାଡ଼ର ଯେପରି ଚୋଦାବଣିଶ ବ୍ୟକ୍ତିତ୍ୱର ସେହିପରି ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । ସେ ତ୍ୟାଗପୂତ ତୁଙ୍ଗ ଶିଖରୀ ଚୂଳ । କାଳିଜାଇର କାରୁଣ୍ୟ ସେତେବେଳକୁ ଚିଲିକା ଢେଉର ଚୂଳେ ଚୂଳେ ସାଲିଆ କୂଳେ କୂଳେ ଖେଳି ବୁଲୁଥିଲା । ମନରେ ବହୁ ଆଶାପୋଷଣ କରି ମାନସିଂହ ସ୍କୁଲରେ ଯୋଗ ଦେଲେ, କିନ୍ତୁ ଦୀର୍ଘକାଳ ତିଷ୍ଠି ପାରିଲେ ନାହିଁ । ମାନସିଂହଙ୍କ ସ୍ୱାଧୀନ ମନୋଭାବ, ଛାତ୍ରମାନଙ୍କ ସହିତ ଏକାତ୍ମ ହେବାର ଗାଢ ସ୍ୱଚ୍ଛନ୍ଦ ଗତି ରକ୍ଷଣଶୀଳ ଶିକ୍ଷକ ମହଲରେ ତାଙ୍କୁ ଅପ୍ରିୟ କରିଦେଲା । ପୁଷ୍କରିଣୀର ଏକା ତୁଠରେ ସ୍ତ୍ରୀଙ୍କ ସହିତ ସ୍ନାନ ଏକାନ୍ତ ଦୃଷ୍ଟି କଟୁବୋଧ ହୋଇଥିଲା । କାନକୁହା ଗୋଦାବରୀଶଙ୍କୁ ଲଗେଇ ଲୁଟେଇ କହିଲେ ତାର ମର୍ମ—ମାନସିଂହ ସ୍କୁଲର ଶୃଙ୍ଖଳା ଭଙ୍ଗ କରୁଛନ୍ତି । ମାନସିଂହଙ୍କ ପରି ଲୋକ କେବେ ଶୃଙ୍ଖଳା ଭଙ୍ଗ କରି ନ ପାରନ୍ତି । ଏଇ ଅଭିଯୋଗ ତାଙ୍କୁ ଉତ୍ପୀଡ଼ିତ କରିଥିଲା ।

ସେ ଚରମ ଭାବେ ଆହତ ହୋଇଥିଲେ, ଯେତେବେଳେ ଗୋଦାବରୀଶ କୌଣସି କୈଫିୟତ୍ ନ ଶୁଣି ତାଙ୍କୁ କହିଲେ—କବିତା ଲେଖୁଚ ବୋଲି ନିଜକୁ ବଡ଼ ମନେକରନା ।

କବିଙ୍କ ହୃଦୟର କୋମଳତମ ସ୍ଥାନରେ କଠୋରତମ ଆଘାତ; କବି ସେହି ମୁହୂର୍ତ୍ତରେ ହିଁ ବିଦାୟ ନେବାକୁ ଚାହିଁଲେ; ଆଉ ସେ ସେତେ ବୁଝାଇଲେ ନ ହେଲା । ମୁଁ ଶିକ୍ଷକ ଭାବେ ୧୯୩୭ରେ ବାଣପୁର ହାଇସ୍କୁଲରେ ଯୋଗ ଦେଲା ପରେ ଏସବୁ ଶୁଣିଲି ।

ବାଣପୁର ଛାଡ଼ି ସେ ନିମାପଡ଼ା ନୂଆ ହାଇସ୍କୁଲରେ ଯୋଗ ଦେଲେ, ୧୯୩୪ ସାଲର ଶେଷ ଭାଗରେ । ସେତେବେଳେ ନିମାପଡ଼ାର ଛାତ୍ର ମୁଁ । ଆମ ବାର୍ଷିକ ପରୀକ୍ଷା ଶେଷ ହୋଇଯାଇଛି । ଆଉ ଆମକୁ ଯିବାକୁ ହେଉନାହିଁ । ମାନସିଂହଙ୍କ କବିତା ପ୍ରତି ମୋର ଏକ ସ୍ୱାଭାବିକ ଆକର୍ଷଣ ଥିଲା । ତାଙ୍କ ସହିତ ମୋର ପହିଲେ ଦେଖା ହେଲା ପାଟପୁରର ହାଟସାହି ଗାଁରେ । ସେତେବେଳେ ସେ ନବ ବିବାହିତ । ଗୋଟିଏ ଚାଳ ଘର ଭଡ଼ା ନେଇ ସସ୍ତ୍ରୀକ ରହୁଥାନ୍ତି ।

ସେତେବେଳେ ଗୋଟି ପଣେ କବି ସେ, ଭାବରେ ବୁଦ୍ଧିବୁଦ୍ଧ । କଥା କେ କଥାକେ କବିତ୍ୱ ଛୁଟିକି ଆସୁଥିଲା । ପଦ୍ମାରେ କ୍ଷୀର ଅଛି କି ନାହିଁ, ଗଉଡ଼ ଠଉରାଇଲା ପରି, ମୋଠି କିଛି କବିତ୍ୱର ସ୍ରାବ ଅଛି କି ନାହିଁ ସେ ଠଉରାଉଥିଲେ—କାରଣ ତାଙ୍କ ରସସିକ୍ତ କଥାସବୁ ଅନାଡ଼ି ଅପାତ୍ରରେ ଢାଳିବ ।

'ନବଭାରତ'ରେ ସଦ୍ୟ ପ୍ରକାଶିତ ତାଙ୍କ କବିତାରୁ ପଦେ ମୁଁ ଆବୃତ୍ତି କଲି—

"ପୁରୋହିତେ ଶୁଦ୍ଧପୂତ ହୋଇ
ଦେଉଳରେ କା ପୂଜା କର ହେ
ସୃଷ୍ଟି ଯା'ର ଉଦାର ଆଲୋକ
ସେ ବନ୍ଦୀ କି ଅନ୍ଧକାରେ ରହେ ?"

ତାଙ୍କର ମୋଠାରେ ବିଶ୍ୱାସ ଜନ୍ମିଲା । ସେ ରବୀନ୍ଦ୍ର କବିତା ଆବୃତ୍ତି କଲେ—

"ସନ୍ନ୍ୟାସୀ ଉପଗୁପ୍ତ
ମଥୁରା ପୁରୀର ପ୍ରାଚୀରେର ତଲେ ଏକଦା ଛିଲେନ୍ ସୁପ୍ତ"

ମାଆ ବାଙ୍ଗୁଡ଼ ପୁଅକୁ ପହିଲେ ଉଡ଼ନ ନଚାଇଲା ପରି ସେ ମୋ ହୃଦୟକୁ ରବୀନ୍ଦ୍ର ଛନ୍ଦ ତରଙ୍ଗର ତାଳେ ତାଳେ ନଚାଇଲେ । ଆରେ ଏକ ଅଦ୍ଭୁତ କବିତା । ତା ଭିତରେ ରସରେ ଲଟପଟ ହୋଇ ଯାଉଚ ଆବୃତ୍ତିକାରୀ ।

ମୋ ମନର ମଙ୍ଗଳକୁ ପଢ଼ିଲେ ଗୋଟାଏ ନୂଆ ମୋଡ଼ ଦେଲେ ସେ । ସେ ମୋର ପ୍ରତ୍ୟକ୍ଷ ଶିକ୍ଷକ ନୁହଁନ୍ତି, ଶିକ୍ଷକ ସ୍ଥାନୀୟ; ପୁଣି ଶିକ୍ଷକ ପଦବୀରୁ ଯାହାଠେ ଉପରକୁ ଉଠି ଗୁରୁ ପଦବାଚ୍ୟ ସେ ଅନ୍ୟ ଶିକ୍ଷକମାନଙ୍କ ପରି ପାଠ ପଢ଼ାଇନାହାନ୍ତି, କିନ୍ତୁ ଦୃଷ୍ଟି ଖୋଲିଛନ୍ତି ।

ମାନସିଂହ ନିମାପଡ଼ାରୁ କୋଣାର୍କ ଯାତ୍ରା କରିଥିଲେ । କୋଣାର୍କର ଲସ୍ୟଲୀଳା କବିତା କଳ୍ପନା ସେତିକି ବେଳର ।

ଭଗବାନ୍ ଅଛନ୍ତିକି ନାହିଁ ତାଙ୍କ ସହିତ ମୋର ଯୁକ୍ତି ହୁଏ । ସେ ନାସ୍ତିକ ବୋଲି ନିଜକୁ ପ୍ରତିପାଦିତ କରୁଥାନ୍ତି ।

ନିମାପଡ଼ାର ଅଧିକ ବେତନର ଆକର୍ଷଣରେ ସେ ଭବାନୀପାଟଣା ଗଲେ । ସେତେବେଳେ ସେଠି ଚାଉଳ ଟଙ୍କାକୁ ୩୦ ସେର, ଦୁଧ ସେର ଚାରିଅଣା ମାତ୍ର । ବେତନର ଅଳ୍ପ ସାମାନ୍ୟ ଖର୍ଚ୍ଚ ହେଉଥିଲା । ସେତେବେଳେ ସେ ବିଲାତ ଯାତ୍ରାର ଯୋଜନା କଲେ । ଜାହାଜ ଟିକେଟ ଦାମ୍ ମାତ୍ର ଟ ୨୫୦ ଙ୍କା ହାତରେ ଧରି ସେ ବିଲାତ ଯିବାର ଦୁଃସାହସ କରିଥିଲେ । ଗୋଟିଏ ମାତ୍ର ସୁଟ୍, ତାକୁ ଧୋଇ ଶୁଖେଇ ସେ ପିନ୍ଧିଥିଲେ, ହାତରେ ସେଫେଇ କରି ଖାଇଥିଲେ । ମାନସିଂହ ଓଡ଼ିଶାର ପ୍ରଥମ ପି.ଏଚ୍. ଡି. ଡିଗ୍ରୀଧାରୀ, ସେ କାଳିଦାସ ଓ ସେକ୍ସପିଅର—ଏଇ ଉଭୟ ନାଟ୍ୟକାରଙ୍କ ମଧ୍ୟରେ ଏକ ତୁଳନାତ୍ମକ ଅଧ୍ୟୟନ କରି ଡରହାମ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଥିଲେ । ସେତେବେଳେ ଏଇ ଭଳି ଡିଗ୍ରୀ ପ୍ରାପ୍ତ ବ୍ୟକ୍ତିଙ୍କୁ ୬ଟି ଇନ୍‌କ୍ରିମେଣ୍ଟ ଦିଆ ହେଉଥିଲା । କିନ୍ତୁ ମାନସିଂହଙ୍କ ପ୍ରତି ଭିନ୍ନ ବିବେଚନା କରାଗଲା । ସେ ଦୁଃଖରେ ଲେଖିଛନ୍ତି—"କାଳେ ଆମ ପରି ଅଯୋଗ୍ୟ ଏ ସୁବିଧା ପାଇଯିବେ, ଏଥିପାଇଁ କର୍ତ୍ତୃପକ୍ଷ ସେହି ବର୍ଷଠାରୁ ଏହି ନିୟମ କାଏମ୍ କଲା ହେବ ବୋଲି ସ୍ଥିର କରିଥିଲେ, ଯେଉଁଥିରେ କି ଭାଗ୍ୟବାନଙ୍କ ପଂକ୍ତିରେ ଆମେ ନ ଥିବୁ । ପ୍ରତିଭାବାନ୍, ଭାଗ୍ୟବାନ୍, ଜ୍ଞାନବାନ୍ ତରୁଣର ଦଳ ଉତ୍କଳ ମାତାକୁ ଜ୍ଞାନ ରତ୍ନର ମାଳାସବୁ ପିନ୍ଧାଇବାର ପୁରସ୍କାର ରୂପେ ଛ' ଛ' ଇନ୍‌କ୍ରିମେଣ୍ଟ ତେଣୁ ପାଇଗଲେ । ଆମ ପରି ଗୋଷ୍ଠୀହୀନ, ମୁରବୀହୀନ ଅଧମକୁ କିଏ କାହିଁକି ଲେଖାରେ ଆଣିବ ?"

(ଶିକ୍ଷାବିତ୍ଙ୍କର ଗାଥା ପୃ ୩୧ )

ଜୀବନର ନାନା ବ୍ୟର୍ଥତା ଓ ବୈଫଲ୍ୟରେ ସେ ନିଜକୁ ଏହିପରି ଭାବରେ ଆଶ୍ୱାସନା ଦେଇଛନ୍ତି—

"ବିଧାତାର ଚତୁର ସୃଜନ ବିଧିରେ ମୋ ଜୀବନରେ ନ ମିଳିବା ହିଁ ହୋଇଛି ପରେ ବହୁ ମିଳିବାର ମୂଳ ହେତୁ । ଲୋକେ କହି ତେଣୁ କ୍ରମେ କ୍ରମେ ନିଜ କୃତିତ୍ୱରେ

ବିଶ୍ୱାସ ହ୍ରାନ ଓ ଅଜ୍ଞାତ ଜୀବନର ପରିଚାଳନାରେ ଗଭୀରରୁ ଗଭୀରତର ବିଶ୍ୱାସ ବଢ଼ି ଚାଲିଛି ।"

(ଶିକ୍ଷାବିତ୍‌ର ଗାଥା ପୃ ୮୫)

ମାନସିଂହ ପୂର୍ବ ଭାରତୀୟ ଗଡ଼ଜାତ ପୁଞ୍ଜର ଶିକ୍ଷା ପରାମର୍ଶଦାତା ରୂପେ ନିଯୁକ୍ତ ହୋଇଥିଲେ । ସେତେବେଳେ ସମ୍ବଲପୁରରେ ପାହାଡ଼ ଉପରର ସେଇ ସରକିଟ୍ ହାଉସ୍‌ରେ କବି ରହୁଥିଲେ । ପରିବେଶ କବିତାର ଅନୁକୂଳ । ଗଡ଼ଜାତ ପ୍ରକୃତିର ନିବିଡ଼ ସମ୍ପର୍କରେ ଆସିବା ଫଳରେ ତାଙ୍କ ମନ ମଧ୍ୟ ସର୍ବତୋଭାବେ ଅନୁକୂଳ କ୍ଷେତ୍ର ଲାଭ କରିଥିଲା । କିନ୍ତୁ ପ୍ରକୃତି ଦର୍ଶନରେ ସୌନ୍ଦର୍ଯ୍ୟ ନନ୍ଦ ଅପେକ୍ଷା ଜାତୀୟ ଭାବ ତାଙ୍କ ମର୍ମେ ମର୍ମେ ଫୁଟି ଉଠୁଥିଲା । ମଧ୍ୟ ପ୍ରଦେଶରେ ମହାନଦୀର କ୍ଷୀଣ ରୂପ ଦେଖି ସେ ଲେଖିଥିଲେ –"ସେଠି ମହାନଦୀ କ୍ଷୀଣ ଶରୀର । ତାର ସହସ୍ର ସହସ୍ର କ୍ଷୁଦ୍ର ଉପନଦୀ ମଧ୍ୟରୁ ଗୋଟିଏ ଯେପରି, ଅତି ଦରିଦ୍ରା ସ୍ତ୍ରୀ ପରି ବେଶଭୂଷଣ ହୀନା । କିନ୍ତୁ ତାକୁଇ ଦେଖି ପ୍ରାଣ ନାଚି ଉଠିଲା । କାରଣ ସେ ଆମରି ମହାନଦୀ, ଅତି ପରିଚିତା, ଅତି ଆତ୍ମୀୟା, ଅତି ନିକଟର, ଅତି ଆପଣାର ଜୀବନର ଧାରା ।"

(ଶିକ୍ଷାବିତ୍‌ର ଗାଥା ପୃ ୭୬,)

ମାନସିଂହ ପ୍ରତି ଗଡ଼ଜାତ ରାଜ୍ୟରେ ସମଜାତୀୟ ଅନୁଷ୍ଠାନ ସ୍ଥାପନ ନ କରି କେଉଁଠି କୃଷି ସ୍କୁଲ, କେଉଁଠି ଶିଳ୍ପ ସ୍କୁଲ, କେଉଁଠି କଳା ସ୍କୁଲ ସ୍ଥାପନ କରିବା ଲାଗି ଚେଷ୍ଟିତ ହେଲେ । ତାଙ୍କର ଏଇ ମୌଳିକ ଯୋଜନା ହିଁ ତାଙ୍କ ପକ୍ଷେ ହେଲା କାଳ, ସାର୍ବଭୌମତ୍ୱ ବିନଷ୍ଟିର ଏ ଏକ ଗୂଢ଼ ପ୍ରୟାସ ବୋଲି କ୍ଷୀଣ ଦୃଷ୍ଟି ସମ୍ପନ୍ନ ଗଡ଼ଜାତ ରାଜାମାନେ ବୁଝିଲେ ଓ ଶିକ୍ଷା ପରାମର୍ଶଦାତା ଗାଦିଟି ଉଠାଇ ଦେଲେ । ମାନସିଂହଙ୍କୁ କିଛି କାଳ ବେକାର ଜୀବନ ଯାପନ କରିବାକୁ ପଡ଼ିଲା ।

ସେ କିଛି କାଳ ରେଭେନ୍‌ସା କଲେଜରେ ଓଡ଼ିଆ ଅଧ୍ୟାପକ ହୋଇଥିଲେ ଓ ସଦ୍ୟ ଉନ୍ନୋଚିତ ଓଡ଼ିଆ ଏମ୍. ଏ. ଶ୍ରେଣୀରେ ପଢ଼ାଇଥିଲେ । ଓଡ଼ିଆରେ ଏମ୍. ଏ ପାସ ଯୋଗ୍ୟତା ନ ଥିଲେ ବି ଓଡ଼ିଆ ପଢ଼ାଇବାକୁ କହିବା ଶିକ୍ଷା କର୍ତ୍ତୃପକ୍ଷଙ୍କର ନିଶ୍ଚିତ ଭାବେ ଓଡ଼ିଆ ସାହିତ୍ୟ ପ୍ରତି ଏକ ଅବଜ୍ଞାର ଓ ଅବମାନନା । ଦର୍ଶନ, ଇତିହାସ, ସଂସ୍କୃତରେ ଯୋଗ୍ୟତା ଅର୍ଜିଥିବା ବ୍ୟକ୍ତି କ୍ୱଚିତ କେହି ସାର୍ଥକ ଓଡ଼ିଆ ଅଧ୍ୟାପକ ହୋଇପାରିଥିଲେ । ଓଡ଼ିଆ କ୍ଲାସରେ ଇଂରାଜୀରେ ସମାଲୋଚନା ନୋଟ୍ ଡାକିବା ମାନସିଂହଙ୍କର ଏକ ଅପରାଧ ରୂପେ ବିବେଚିତ ହୋଇଥିଲା । ସେ ପଦଚ୍ୟୁତ ହୋଇଥିଲେ ।

ତାପରେ ସେ କିଛି କାଳ ଦକ୍ଷିଣ ଓଡ଼ିଶାର ଇନସ୍‌ପେକ୍ଟର ହୋଇଥିଲେ । ୧୯୪୮ ରେ ସେ ମୌଳିକ ଶିକ୍ଷା ବିଷୟରେ ପ୍ରତିକୂଳ ମତ ପ୍ରକାଶ କରିବାରୁ କଂଗ୍ରେସ ନେତାମାନେ ତାଙ୍କ ଉପରେ ଖଡ୍‌ଗହସ୍ତ ହୋଇଥିଲେ । ମାନସିଂହଙ୍କର ଏଇ ଗୋଟିଏ ଗୁଣ—ଯାହା ସତ୍ୟ ବୋଲି ବୁଝନ୍ତି, ଖାଲରେ ପଡ଼ୁ ବା ଢିପରେ ପଡ଼ୁ ଗ୍ରେକ୍ ଠୋକ୍ ଭାବେ ତାକୁ ପ୍ରକାଶ କରିଦିଅନ୍ତି । ଏହା ତାଙ୍କ ବ୍ୟକ୍ତି ସ୍ୱାର୍ଥର ପ୍ରତିକୂଳ ବା ଅନୁକୂଳ ହେବ ସେ ବିବେଚନା ନ ଥାଏ । ମୌଳିକ ଶିକ୍ଷା ସେତେବେଳେ ଉଠିଲା ନାହିଁ, ପରେ ଉଠିଲା । ମାନସିଂହଙ୍କ କଥା ବି ଠିକ୍ ହେଲା । କିନ୍ତୁ ସେତେବେଳକୁ ତାଙ୍କର ଯାହା କ୍ଷତି ହେବାର ହୋଇ ସାରିଥିଲା, ସେ ପଦଚ୍ୟୁତ ହୋଇଥିଲେ ।

ଅପର ପ୍ରାଇମେରି ସ୍କୁଲକୁ ଯୋଗ୍ୟ ନଥିବା ଏକ ତଥା କଥିତ ହାଇସ୍କୁଲ ବିଷୟରେ ପ୍ରତିକୂଳ ମତ ପ୍ରଦାନ ଫଳରେ ଜଣେ କଂଗ୍ରେସ କର୍ମୀଙ୍କ ଅନଶନ ମାନସିଂହଙ୍କ ପଦଚ୍ୟୁତକୁ ତ୍ୱରାନ୍ୱିତ କରିଥିଲା ୧୯୪୦ ରୁ ୧୦୪୯ ଦୀର୍ଘ ୯ ବର୍ଷ କାଳ ଝଡ଼ ଝଞ୍ଜାର ବର୍ଷା କେତେବେଳେ ସ୍କୁଲର ସହକାରୀ ଶିକ୍ଷକ କେତେବେଳେ ପ୍ରଧାନ ଶିକ୍ଷକ, ଶିକ୍ଷାପରାମର୍ଶଦାତା ବା ପରିଦର୍ଶକ—ଏସବୁ ବାହାରକୁ ଖଣ୍ଡ ଖଣ୍ଡ ଦେଖାଗଲେ ବି ସମଗ୍ର ଭାବରେ ଏକ ଅଖଣ୍ଡ ଆତ୍ମିକ ଅଭିଜ୍ଞତା । କେବେ ସେ କୌଣସି ସ୍ଥାନରେ ସ୍ଥିର ହୋଇ ରହିପାରି ନାହାନ୍ତି ।

ତାପରେ ମେହେର କଲେଜରେ ଅଧ୍ୟକ୍ଷ ଭାବରେ ସାତବର୍ଷ ଅବସ୍ଥାନ ମାନସିଂହଙ୍କ ଜୀବନର ଏକ ସୁବର୍ଣ୍ଣ ଯୁଗ । ମାନସିଂହ ସେ ସମ୍ପର୍କରେ ଜୀ. ଗାଥାରେ ସେ ଲେଖିଛନ୍ତି "ମେହେର କଲେଜକୁ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ସୁନ୍ଦର, ସମ୍ମାନିତ ବିଦ୍ୟାନୁଷ୍ଠାନ କରି ଗଢ଼ିବା ହିଁ ମୋର ଲକ୍ଷ୍ୟ ଥିଲା । ମୋର ଏଇ ସ୍ୱପ୍ନ ଅନେକ ପରିମାଣରେ ସାଧିତ ହୋଇଥିଲା । କୋଅପରେଟିଭ ଷ୍ଟୋରରେ ପିଲାଏ ତାଙ୍କର ଯାବତୀୟ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ପାଉଥିଲେ—ବାହାରକୁ ଯିବା ଦରକାର ନ ଥିଲା । ମେସ୍ ଓ କାଣ୍ଟିନ୍ ବସାଇ ଓ ସେସବୁକୁ ସୁପରିଚାଳିତ କରାଇ ପିଲାଙ୍କ ଭୋଜନ ଓ ଜଳଖିଆର ଅତି ଉତ୍ତମ ବ୍ୟବସ୍ଥା ସେଇ କମ୍ପାଉଣ୍ଡ ଭିତରେହିଁ କରାଯାଇ ପାରିଥିଲା । ଏସବୁ ଏପରି ଚାଲିଥିଲା ଯେ ବାହାରର ଲୋକେ ବି କଲେଜ ମେସ୍ ଓ କାଣ୍ଟିନର ସୁବିଧା ନେଲେ । କାରଣ ଏତେ ଶସ୍ତାରେ ଏତେ ଉତ୍କୃଷ୍ଟ ଖାଦ୍ୟ ସହରରେ ଅନ୍ୟତ୍ର ମିଳିବା ଅସମ୍ଭବ ଥିଲା । ଗୋଶାଳା ପ୍ରତିଷ୍ଠା କରି ପିଲାଙ୍କୁ ଦୁଧ ଯୋଗାଇ ଦିଆହେଲା । କଲେଜ ବଗିଚାକୁ ବଢ଼େଇ ବର୍ଷା ଓ ଶୀତ ଦିନରେ ପ୍ରଚୁର ପରିବା ଉତ୍ପାଦନ କରାଗଲା । କଲେଜରେ ବିଦ୍ୟାର ସମ୍ମାନ ଉପରକୁ ଉଠିଲା ଓ କଲେଜ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କରେ ନାମ ରଖିଲା । କଲେଜ ନିଜର ଗୋଟିଏ ଉଚ୍ଚାଙ୍ଗ ମାସିକ ପତ୍ରିକା (ମେହେର ପ୍ରଦୀପ) ପ୍ରକାଶ କଲା । କଲେଜର ବାର୍ଷିକ ଡ୍ରାମାକୁ ଲୋକେ ଚାହିଁ ରହୁଥିଲେ, ଟିକଟ କିଣି ଦେଖିବାକୁ ଧାଇଁଲେ ।

ଏଥିରୁ ଗୋଟିଏ ହେଲେ ଘଟଣା ଅତିରଞ୍ଜିତ ନୁହେଁ । ମୁଁ ମାନସିଂହଙ୍କ ଆୟୋଜିତ ଓଡ଼ିଆ ସାହିତ୍ୟ ସମ୍ମିଳନୀରେ ଯୋଗ ଦେଇ ଅବସ୍ଥା ଲକ୍ଷ୍ୟ କରି ଆସିଛି । କାର୍ଣ୍ଣିନ୍ ଓ ମେସ୍‌ରେ ଖାଇଛି, ସମ୍ବଲପୁରୀ ଭାଷାରେ ଲିଖିତ ମେହେରଙ୍କ ଜୀବନ କାହାଣୀ ସମ୍ବଳିତ ନାଟକ ଦେଖିଛି । ମାନସିଂହଙ୍କ ଛାତ୍ର ହେଲେ ଆଉ ସମସାମୟିକ ପ୍ରାୟ ସମସ୍ତ ଅଧ୍ୟକ୍ଷଙ୍କ କଲେଜ ପରିଚାଳନା ରୀତି ଗତାନୁଗତିକ ଥିଲା । ମାନସିଂହ ଜଣେ ସଂଗଠନଶୀଳ ଅକ୍ଳାନ୍ତ କର୍ମୀ; ଉପଯୁକ୍ତ କ୍ଷେତ୍ର ପାଇଲେ ସେ ଅସାଧ ସାଧନ କରି ନିଜ ମୌଳିକତାର ପରିଚୟ ଦେଇପାରନ୍ତି । ଗତାନୁଗତିକ ଭାବରେ ଅର୍ଥାର୍ଜନ ମାନସିଂହଙ୍କ ଲକ୍ଷ୍ୟ ନୁହେଁ । ତାଙ୍କ ଦେଶ-ପ୍ରେମ ମୌଖିକ ନୁହେଁ, ହାର୍ଦ୍ଦିକ; ଏହା ତାଙ୍କ ଅନୁଷ୍ଠାନର ସୁପରିଚାଳନା ଓ ଛାତ୍ରସେବାରୁ ଜଣାଯାଏ । ଭବିଷ୍ୟତ ବଂଶଧରଙ୍କ ଉନ୍ନତ ଚରିତ୍ର ଗଠନ ଲାଗି ପ୍ରାଣପାତ ପରିଶ୍ରମ କରିଥିଲେ । ଆଜି କଣ୍ଟ୍ରୋଲ ଅଛନ୍ତି, ମଙ୍ଗ ଆଲ ନାହାନ୍ତି, ବୃତ୍ତିଜୀବୀ ଅଛନ୍ତି, ଜୀବନଜୀବୀ ନାହାନ୍ତି, ଛାତ୍ରପାଳ ଅଛନ୍ତି, ଦିଗ୍‌ଦର୍ଶକ ନାହାନ୍ତି । ତେଣୁ ଏତେ ବିଭ୍ରାଟ, ଏତେ ବିଶୃଙ୍ଖଳା ।

ଓଡ଼ିଆକୁ ଏକ ସ୍ୱତନ୍ତ୍ର ବିଷୟ ଭାବେ ନେବା ଲାଗି ମାନସିଂହ ମେହେର କଲେଜର ଛାତ୍ରମାନଙ୍କୁ ମନା କରିଥିଲେ—

"ଦେଖ, ଓଡ଼ିଆରେ ତମେ ଯାହା ଏଠି ପଢ଼ିବ ତାକୁ ତମେ ନିଜେ ନିଜ ଗାଁରେ ବସି ତ ପଢ଼ି ପାରିଥାନ୍ତ । ତମ ଗ୍ରାମରେ ଅପରପ୍ରାଇମେରୀ ପାସ୍ କରିଥିବା ଜଣେ ବାଳିକା ମଧ୍ୟ ଘରେ ରହି ଏସବୁ କାବ୍ୟ, ଉପନ୍ୟାସ, ଅକ୍ଲେଶରେ ପଢ଼ି ପାରିବ । ତମେ ବାପମାଆଙ୍କ ଟଙ୍କା ଖର୍ଚ୍ଚ କରି କଲେଜରେ ନାଁ ଲେଖାଇଛ କ'ଣ ଏଇ ଶସ୍ତା ପାଠ ପଢ଼ିବାକୁ ? ଟଙ୍କା ଖର୍ଚ୍ଚ କରୁଛ ଓ ସମୟ ନଷ୍ଟ କରୁଛ । ତେଣୁ କିଛି ନୂଆ କଥା ଶିଖିଯାଅ ଯାହା ଘରେ ବସି ପଢ଼ିପାରିବ ନାହିଁ, କିନ୍ତୁ ଯାହା ଭଲ କରି ଶିଖିଥିଲେ ଜୀବନରେ ଦିନେ ଭଲ କାମ ଦେବ । ପଢ଼ ଏକନମିକ୍‌ସ, ପଢ଼ ପଲିଟିକ୍‌ସ୍, ହିଷ୍ଟ୍ରି ବା ସାଇନ୍ସ୍ । ପଢ଼ ଭଲ କରି ଇଂରେଜୀ ଭାଷା, ସାହିତ୍ୟ । ନୂଆ ଜ୍ଞାନ, ନୂଆ ବିଦ୍ୟା ଅର୍ଜନ କରିବାର ଯଦି ଇଚ୍ଛା ନ ଥିଲା, ତେବେ ଏଠିକି 'ରାମବନ' ପଢ଼ିବାକୁ ଆସିଲ ଏତେ ଟଙ୍କା ଖର୍ଚ୍ଚ କରି ?" ସମ୍ବଲପୁର ଲୋକେ ଓଡ଼ିଆ ଭାଷା, ସାହିତ୍ୟରେ ସେତେବେଳେ ଦୁର୍ବଳ । କଥାକେ କଥାକେ ହିନ୍ଦୀ ବାହାରିପଡ଼େ । ୧୯୦୫ ରେ ମାତ୍ର ସମ୍ବଲପୁର ଓଡ଼ିଶାରେ ମିଶିଛି । ଓଡ଼ିଆ ଭାଷାକୁ ସବଳ କରିବା ଲାଗି ସେଠି ବହୁ ଶକ୍ତି ନିୟୋଗ ଆବଶ୍ୟକ । ତେଣୁ ଜାତି କଲ୍ୟାଣ ନାମରେ ମାନସିଂହ ଉକ୍ତ ଉପଦେଶ ଦେଇ ଓଡ଼ିଆଭାଷାର ହିଁ ଅକଲ୍ୟାଣ କରିଛନ୍ତି ।

ଓଡ଼ିଆ ଏମ୍. ଏ. ମାନଙ୍କ ପ୍ରତି ମଧ୍ୟ ସେ ଆଜୀବନ କଟୂକ୍ତି କରି ଆସିଛନ୍ତି । ତାଙ୍କ ମତରେ ଓଡ଼ିଆ ସାହିତ୍ୟ ଯେପରି ଭାବରେ ଅଧ୍ୟାପିତ ହୁଏ, ତାର ପାଠ୍ୟକ୍ରମ ଯେପରି ଭାବେ ନିର୍ଦ୍ଧାରିତ ହୋଇଅଛି ତାହା ଓଡ଼ିଆ ଭାଷା ପ୍ରତି ଅପମାନ—

"ମୁଁ ଗୃହିବି କି ମୋ ଭାଷା ଓ ସାହିତ୍ୟ କେବଳ ମୁଷ୍ଟିମେୟ ଲୋକର ଜୀବିକାର ସୁବିଧା ପାଇଁ, ଉପହାସର ପାତ୍ର ହୋଇ ଜଗତ ଆଗରେ ଠିଆ ହେବ ? ମୁଁ ଗୃହିବି ନହିଁ କି ଓଡ଼ିଆରେ ଫାଷ୍ଟକ୍ଲାସ୍ ଇଂରାଜୀ ଫାଷ୍ଟକ୍ଲାସ୍ ସହିତ ସମାନ ବୌଦ୍ଧିକ ମୂଲ୍ୟବାନ୍ ବୋଲି ବିବେଚିତ ହେବ ? ଗୃହିବି କି ମୋର ପରମ ନମସ୍ୟ ଭଞ୍ଜ, ମେହେର, ଗୋପାଳକୃଷ୍ଣ, ଭୀମ ଭୋଇ ପ୍ରଭୃତି ମୋ ସାହିତ୍ୟର ପରମ ସ୍ରଷ୍ଟା ବର୍ଗ ଅନିପୁଣ ଅଯୋଗ୍ୟମାନଙ୍କ ଶସ୍ତା ଡିଗ୍ରୀ ଓ ଜୀବିକା ପାଇଁ ସହଜ ମାର୍ଗ ରୂପେ ବ୍ୟବହୃତ ହେବେ ଓ ସେଥିପାଇଁ ଉପହସିତ ହେବେ ?"

(ଶିକ୍ଷାବିତ୍ର ଗାଥା, ପୃ: ୨୦୮ )

ଜୀବିକାର ସୁବିଧା ପାଇଁ କେବଳ ଓଡ଼ିଆ ଉପହାସର ପାତ୍ର ହୋଇଛି ନା ଅନ୍ୟ ନ୍ୟ ବିଷୟ ବି ହୋଇଛି ' ଭଞ୍ଜ, ମେହେର ପ୍ରଭୃତି ଅଯୋଗ୍ୟ ହାତରେ ପଡ଼ି ପାଉଥିଆନ୍ତି, ସେହିପରି ସେକସ୍ପିଅର, କାଳିଦାସ ବି ନ ପଡ଼ିଛନ୍ତି କାହିଁକି ? ଓଡ଼ିଆ ଅଧ୍ୟାପକଙ୍କ କଥା ଭାବିବା ବେଳେ ସେ ଓଡ଼ିଶାର ଇଂରାଜୀ ଅଧ୍ୟାପକମାନଙ୍କ କଥା ସ୍ମରଣରେ ଆଣିଛନ୍ତି କି ? ପ୍ରକୃତ କଥା, ଅଧିକାଂଶ ଅଧ୍ୟାପକ କିଛି ଲେଖନ୍ତି ନାହିଁ ବା ପଢ଼ନ୍ତି ନାହିଁ । କେବଳ ଜୀବିକା ଅର୍ଜନ ହିଁ କରନ୍ତି । ଏ ଅବସ୍ଥାରେ ଓଡ଼ିଆ ଅଧ୍ୟାପକମାନଙ୍କୁ ଦୋଷିବା ବୃଥା । ବରଂ ଅନ୍ୟାନ୍ୟ ବିଭାଗ ତୁଳନାରେ ସେମାନେ ଅଧିକ କାର୍ଯ୍ୟ କରିଛନ୍ତି । ଓଡ଼ିଆ ସମାଲୋଚନା ଓ ଗବେଷଣାକୁ ଏକ ନିର୍ଦ୍ଦିଷ୍ଟ ଧାରା ଦେଇଛନ୍ତି ।

ସମସ୍ତ ସତ୍‌କର୍ମ ସତ୍ତ୍ୱେ ୧୯୫୭ ର ସୀମା ଆନ୍ଦୋଳନ ବେଳେ ମାନସିଂହଙ୍କୁ ପ୍ରୌଢ଼ ଶିକ୍ଷା ଅଫିସର ଭାବେ କଟକ ବଦଳି କରାଗଲା । ମାନସିଂହ ଏହି ବିଭାଗରେ କିଛି ବୈପ୍ଳବିକ କାର୍ଯ୍ୟ କରି ସାହିତ୍ୟିକ ଓ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ସମର୍ଥ ହୋଇଥିଲେ ।

ନବସାକ୍ଷର ଜନତା ପାଇଁ ନୂତନ ସାହିତ୍ୟ କିପରି ସୃଷ୍ଟି ହେବ ସେଥିଲାଗି ଦୁଇମାସ ବ୍ୟାପୀ ଏକ ସାହିତ୍ୟିକ କର୍ମମନ୍ଦିର ପରିଚାଳିତ କରାଯାଇଥିଲା । କେତେ ଉପାଦେୟ ସାମାଜିକ ଶିକ୍ଷା ପୁସ୍ତକ ସବୁ ପ୍ରକାଶ କରାଯାଇଥିଲା—ଜାପାନର କୃଷି ଓ ଶିଳ୍ପ, ଗାନ୍ଧି ତର୍ପଣ, ପଲ୍ଲୀକବିତା, ସରସ ଗୀତ, ସରସ ଗଳ୍ପ, ଜ୍ଞାନ କୋଷ, ଗଣତନ୍ତ୍ରର ଆଦର୍ଶ, ସୁଇଜରଲାଣ୍ଡ, ବସିବା ଠଉଁ ଜାଣିବା ଭଲ, ଯିଏ ଯାଉ ଜମି ତାର, କନ୍ଧ ପରଜା ସ୍ତୋତ୍ର ଓ ସଙ୍ଗୀତ, ଓଡ଼ିଶାର ଶିଳ୍ପକଳା । ନବ ସାକ୍ଷରଙ୍କ ଜରିଆରେ ଦେଶର ଉନ୍ନୟନ ଲାଗି ତାଙ୍କର ଏକ ଉତ୍କୃଷ୍ଟ କର୍ମଯୋଜନା ଥିଲା ଓ ତାକୁ କାର୍ଯ୍ୟକାରୀ କରିବା ପାଇଁ ପୂର୍ଣ୍ଣ ପ୍ରାଣରେ ସେ ଲାଗିଥିଲେ । କିନ୍ତୁ ଏଠି ମଧ୍ୟ ତାଙ୍କୁ ଏକ ଷଡ଼ଯନ୍ତ୍ରର ଶିକାର ହେବାକୁ ହେଲା । ଦୁର୍ନୀତି ଅଭିଯୋଗରେ ସରକାର ତାଙ୍କୁ ବାରିପଦାର ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ଜଣେ ଲେକ୍‌ଚରର ଭାବେ ବଦଳି

କଲେ । ଏ ଅଧୋନକ୍ଷେପ ନିଶ୍ଚିତ ଭାବେ ଏକ ଅପମାନ, ମାନସିଂହଙ୍କ ପୂର୍ବ ଦୂପରି- ଚାଳନା ଓ ପ୍ରତିଭାକୁ କର୍ତ୍ତା ତାଙ୍କ ଭ୍ରୂକ୍ଷେପ କଲେନାହିଁ, ଦୁଃଖର ବିଷୟ ।

ସ୍ପଷ୍ଟବାଦିତା ମାନସିଂହଙ୍କ ଅଧୋଗତିର ଗୋଟିଏ ମୁଖ୍ୟ କାରଣ । ତାଙ୍କର ଏଇ ଗତି ଦେଖି ନୟାପଡ଼ା ସ୍କୁଲର ହେଡ୍‌ମାଷ୍ଟର ମନମୋହନ ଘୋଷ ଥରେ କହିଥିଲେ "ଆପଣ ଯେପରି ସ୍ପଷ୍ଟ ମତବ୍ୟକ୍ତ କରୁଛନ୍ତି ସେପରି କରି ଆପଣଙ୍କର କ୍ୟାରିଅରଟାକୁ ନଷ୍ଟ କରିଦିଅନ୍ତୁନି ।"

ଡି. ପି. ଆଇ. ଡଃ ବଳଭଦ୍ର ପ୍ରସାଦଙ୍କ ଚେତାବନୀ ମଧ୍ୟ ଏହିପରି "ତୁମେ ଯଦି ତୁମ କଲମ ଓ ବଚନକୁ ରୋକିବାର ଜାଣିଥାନ୍ତ, ତେବେ ଏଥିରେ ସନ୍ଦେହ ନାହିଁ ଯେ ଏ ଷ୍ଟେଟରେ ତୁମେ ଟପ୍‌ରେ ବସିଥା'ନ୍ତ ।"

ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଜ୍ଞାନକୋଷ ସଙ୍କଳନ ତାଙ୍କ ଜୀବନର ଶେଷ ବୃତ୍ତି । ତାଙ୍କ ସହକର୍ମୀ ଥିଲେ କବି ବୈକୁଣ୍ଠନାଥ ପଟ୍ଟନାୟକ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଚକ୍ରଧର ମହାପାତ୍ର ପ୍ରଭୃତି । ସଙ୍କଳନ କାର୍ଯ୍ୟ ସୁରୁଖୁରୁରେ ଚାଲିଥିଲା । ହଠାତ୍ କିଣ ହେଲା କାର୍ଯ୍ୟ ବନ୍ଦ ହୋଇଗଲା । ମାନସିଂହ ବୃତ୍ତିଚ୍ୟୁତ ହେଲେ ।

ବହୁ ଶ୍ରମ ଓ ଅର୍ଥରେ ନିର୍ମିତ ବୃହତ୍ ଓଡ଼ିଆ ଜ୍ଞାନ କୋଷ ଏବେ ଧ୍ୱଂସ ହେବା ଉପରେ । ଯେଉଁ ସଂକ୍ଷିପ୍ତ ଜ୍ଞାନକୋଷ ପ୍ରକାଶିତ ହୋଇଥିଲା ତାହା ମଧ୍ୟ ବିକ୍ରୟ ପ୍ରୟାସ ଅଭାବରୁ ଏବେ ଗୋଦାମରନ୍ଧି ହେବା ଅବସ୍ଥାରେ ପହଞ୍ଚିଲାଣି । ସଂକଳିତ ଜ୍ଞାନ ସମ୍ଭାରକୁ ସମ୍ଭାଳି ଉପଯୁକ୍ତ କାରବାର କରିପାରୁ ନ ଥିବା ବିଶ୍ୱବିଦ୍ୟାଳୟର ସାର୍ଥକତା କେଉଁଠି ?

ମାନସିଂହ 'ସମର ବିମୁଖ' କବିତା ଲେଖିଛନ୍ତି । କିନ୍ତୁ ଭାଙ୍ଗି ପଡ଼ିବାର ବହୁତ କାରଣ ଥିଲେ ବି ସେ ସମରବିମୁଖ ହୋଇ ଭାଙ୍ଗି ପଡ଼ି ନାହାନ୍ତି । ଏହା ଓଡ଼ିଶାର ସୌଭାଗ୍ୟ । ଯେଉଁଠି ତାଙ୍କ ଜୀବନରେ କିଛି ଭଙ୍ଗ ପ୍ରବଣତା ଦେଖାଦେଇଛି, ସେଠୁଁ ଇକ୍ଷୁରସ ହିଁ ନିଃସରିଛି ।

ତାଙ୍କ କାନ୍ତ କବିତ୍ୱ ରଙ୍ଗୀନ୍ ପ୍ରଜାପତି ପକ୍ଷରେ ପରାଗପରି କୋମଳରୁ କୋମଳତର । ତାଙ୍କ କୋମଳ ଭାଷା ପ୍ରୀତିର ଉପଯୁକ୍ତ ଆଧାର, ମଧୁର ଆଧାର ଯେପରି ଫୁଲ ।

ମାନସିଂହ ଲେଖନୀ ଅଜସ୍ରସ୍ରାବୀ; ଏକ ଧାରାଶ୍ରାବଣରେ । ଜୀବନସାରା ଲେଖିଛନ୍ତି, ହେଲେହେଁ ମୁଖ୍ୟତଃ ସେ କବି । ତାପରେ ନାଟ୍ୟକାର, ପ୍ରାବନ୍ଧିକ ବା ସମାଲୋଚକ । 'ଅନ୍ୱେଷଣ' ନାମକ ଖଣ୍ଡିଏ ମାତ୍ର ଉପନ୍ୟାସ ସେ ଲେଖିଛନ୍ତି । ତାହା ପାଠ କଲେ ତାଙ୍କ ଭାଷା ଯେ ଉପନ୍ୟାସର ଭାଷା ନୁହେଁ, ସ୍ପଷ୍ଟ ଜଣାଯାଏ ।

ମୁଖ୍ୟତଃ ପ୍ରେମ, ପ୍ରଣୟକୁ ଘେନି ତାଙ୍କ କବିତା । ଏସବୁ କବିତା ବହୁ ପଠିତ, ସମଗ୍ର ଉତ୍କଳରେ ଦିନେ ଚହଳ ପକାଇଥିଲା, ବାସ୍ତବ ଜୀବନରେ ଖୁବ୍ ଝଡ଼ ବି ଉଠାଇଥିଲା । ପରିଣତି ଦ୍ୱନ୍ଦ୍ୱ, ଅନ୍ତର୍ଦ୍ୱନ୍ଦ୍ୱ, ଶେଷରେ ସ୍ୱଭାବ ନିକାଶ, ସ୍ୱଭାବ ନିକାଶ ନିଶାପ । ଏଇ ଦ୍ୱନ୍ଦ୍ୱରେ ହିଁ ମାନସିଂହଙ୍କ କବିତ୍ୱର ଅକାଳ ମୃତ୍ୟୁ ଘଟିଲା । ସେ ହୋଇଗଲେ ଗଦ୍ୟ—ଅବଶ୍ୟ ଏ ତାଙ୍କର ଏକ ସ୍ୱତନ୍ତ୍ର ଓ ଚମତ୍କାର ସ୍ୱଭାବ ।

ସେ ହେଲେ ଜଣେ ଜ୍ଞାନତପସ୍ୱୀ, ଗବେଷକ ଓ ବିଶ୍ୱକୋଷକାର । ଯୋଉ ସ୍ୱଭାବରେ ବ୍ୟକ୍ତି ହୁଅନ୍ତୁ, ମାନସିଂହ ଅନବଦ୍ୟ, ସ୍ୱକୀୟତାରେ ଅପୂର୍ବ ।

ଜୀବନରେ ବହୁ ଶୃଙ୍ଗାର ମୁହୂର୍ତ୍ତ ଆସିଛି । ତାଙ୍କ କବିତାକୁ ଓ ତାଙ୍କୁ ପ୍ରାଣ ଭରି ଭଲ ପାଇଛି । ମୋତେ ଲାଗେ ମୋ ପ୍ରୀତି ଏକ ପାଖିଆ ହୋଇଗଲା । ଆଉ କେତେଜଣଙ୍କ ବି ସେହିପରି ଲାଗୁଥିବ । ହୃଦୟ ଜୟ କରିବାର କୌଶଳ ତାଙ୍କୁ ଜଣା ଥିଲା, ଆମକୁ ଜଣା ନ ଥିଲା; ଆମେ ହାରିଗଲୁ । ତାପରେ ବିରୋଧ, ବିରୋଧର ବିଶ୍ରାନ୍ତି ନାହିଁ; ବିରୋଧର ବିରୋଧ ଜୀବନରେ ଥରେ ମାତ୍ର କରିଥିଲି—ମୁହୂର୍ତ୍ତିକ ମର୍ଯ୍ୟାଦାରେ । ତାପରେ ବିରୋଧର ବିଶ୍ରାନ୍ତି । ସେ ଏହାକୁ ଜୀବନର ଏକ କ୍ରୀଡ଼ା ପରି ମନେକରି ଲେଖିଥିଲେ—"ସାହିତ୍ୟିକ ସଂଗ୍ରାମରେ ଥିଲାଇଁ ବିଦ୍ୱେଷଭାବ ନ ଥାଏ; ଖେଳୁଆଡ଼ ସ୍ପିରିଟ୍‌ରେ ଏସବୁ ନେବା ଦରକାର ।"

ମୃତ୍ୟୁର କିଛି କାଳ ପୂର୍ବରୁ କବିତାରେ ପାର୍ଥିକ ଆଲାପ ହୋଇଥିଲା । ଆମ ପ୍ରଥମ ମିଳନ କବିତାରେ, ଶେଷ ମିଳନ ବି ସେଇ କବିତାରେ । ମୋ 'ପ୍ରୀତିର ତଥାପି' କବିତାଟି ତାଙ୍କ ମୃତ୍ୟୁ ପରେ ରଚିତ; ପରଲୋକ ସଙ୍ଗେ ଇହଲୋକର ଏହା ପ୍ରେମାଳାପ ।

୧୧ । ୧୦ । ୧୯୭୩ରେ ହଠାତ୍ ମାନସିଂହଙ୍କ ପ୍ରୟାଣ । ଏତେ ବଡ଼ କବି ଏପରି ନୀରବ ଭାବେ ଚାଲିଯିବା କଳ୍ପନା କରିହୁଏ ନାହିଁ । ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଦଶଦିନ ତଳେ ଡାକ୍ତରଖାନାକୁ ଯିବା, ତାଙ୍କ ଅସୁସ୍ଥତାର ସମ୍ବାଦ କୌଣସି ସମ୍ବାଦପତ୍ରରେ ପ୍ରକାଶିତ ନ ହେବା, ଅଜଣା ଅଶୁଣା ଭାବେ ଜିପ୍‌ରେ ତାଙ୍କୁ ଖାନ୍‌ନଗରକୁ କଢ଼ାଯିବା ଘଟଣା ଅତି ଶୋଚନୀୟ । ପରଦିନ ସମ୍ବାଦ ପାଇ ଆଞ୍ଜୁଳାଏ ଫୁଲ୍ ଶବାଧାରରେ ଦେବା ଲାଗି ନେଇ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ତାଙ୍କ ଗୃହରୁ ମୁଁ ଫେରି ଆସିଲି । ସମସ୍ତଙ୍କ ଲାଗି ସାରାଜୀବନ ଗାଇ ଗାଇ ଶେଷରେ ଅଗୀତ ହୋଇ ଚାଲିଗଲେ ମାନସିଂହ । ଝଞ୍ଜା ଉପରେ ତାଙ୍କୁ ହଠାତ୍ ଦାହ କରିଗଲା ଉତ୍କଳୀୟ ଅନ୍ତରରେ ଆଉ ଏକ ମହା ଝଞ୍ଜା ସୃଷ୍ଟି କରିବା ଲାଗି ।

ସେ କେବଳ ଦେଇ ଯାଇଛନ୍ତି କିଛି ପାଇନାହାନ୍ତି—କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ଜ୍ଞାନପୀଠ ପୁରସ୍କାର, କୌଣସି ଅଭିନନ୍ଦନ ଗ୍ରନ୍ଥ କିମ୍ବା ଜାତୀୟ ସମ୍ବର୍ଦ୍ଧନା । ପାଇଥିଲେ କେବଳ 'ପଦ୍ମଶ୍ରୀ' ଉପାଧିଟିଏ ସୂର୍ଯ୍ୟାସ୍ତ ସଙ୍ଗେ ସେ ବି ମଉଳି ଯାଇଛି ।

ଯୋଉ ଶଙ୍କରାବାଲା ମାନସିଂହଙ୍କୁ ନାନା ନାଆଁରେ ଡାକୁଥିଲା, ଶବକୁ ଏକ ସାଧାରଣ ପଟୁଆରରେ ବି ନିଆ ନ ଯିବାର ଦେଖି କାନ୍ଦି କାନ୍ଦି କହିଲା— 'ଦଶରଥ ମହାରାଜାଙ୍କ ଶବକୁ ଏତେକାଳ ତେଲ କାପଡ଼ାରେ ରଖା ଯାଇଥିଲା ଆମ ବାବୁଙ୍କୁ ଗୋଟିଏ ରାତି ରଖିନାହାଁନ୍ତି କାହିଁକି ?"

ମୃତ୍ୟୁ ତାଙ୍କର କୁମାର ପୂର୍ଣ୍ଣିମାର ଜ୍ୟୋତ୍ସ୍ନାମୟ ରଜନୀକୁ ଏକ ଝଡ଼ଝଞ୍ଜା ଭରା ଅନ୍ଧକାର ରାତିରେ ପରିଣତ କରିଥିଲା । ସେଥିଲାଗି ଗଡ଼ନାୟକ ଲେଖିଛନ୍ତି—

'ଝଡ଼ ଝଞ୍ଜା ଅନ୍ଧକାର ମୃତ୍ୟୁ ବିଭୀଷିକା!
ପ୍ରକୃତି କି ତାର ବୁକେ
ତୁମ ପାଇଁ ରଚିଥିଲା ମୃତ୍ୟୁର ଭୂମିକା ?'

ସଚ୍ଚି ରାଉତରାଙ୍କ ମତରେ 'ତାଙ୍କ ମୃତ୍ୟୁରେ ଆମେ ସମସ୍ତେ ଦରିଦ୍ରତର ହୋଇଛେ' ।

'ଏହିପରି ଚୁପ୍ ଚୁପ୍ ଚାଲିଯିବା ଭଲ
କାହାକୁ ନ କହି କଥା
ଯେଉଁପରି ତୁମେ ଚାଲିଗଲ ।'

କାଳିନ୍ଦୀ ଚରଣ ପାଣି ପସନ୍ଦ କରୁଥିଲେ ତାଙ୍କ ସାଂସ୍କୃତିକ ବ୍ୟକ୍ତିତ୍ୱକୁ— "ଓଡ଼ିଆ ସାହିତ୍ୟ, ସଂସ୍କୃତି କ୍ଷେତ୍ରରୁ ଏକ ବଳିଷ୍ଠ ନେତୃତ୍ୱର ସ୍ଥାନ ଆଜି ଖାଲି ପଡ଼ିଗଲା ।"

ଅଧ୍ୟାପକ ଗୋଲକ ବିହାରୀଙ୍କ ଉକ୍ତି ମାନସିଂହ ଚରିତ୍ରର ଏକ ଯଥାର୍ଥ ରୂପାୟନ "ସବୁଠୁ ବଡ଼ କଥା ତାଙ୍କ ସ୍ୱାଧୀନ ଚେତନା—ଶିକ୍ଷା, ସମାଜ, ସଂସ୍କୃତି ଯେ କୌଣସି ବିଷୟରେ ।"

ଏସବୁ ମାନସିଂହ ଚରିତ୍ରର ଆଂଶିକ ରୂପାୟନ; ମାନସିଂହଙ୍କ ପୂରା ରୂପ ତାଙ୍କ ରଚନା ମଧ୍ୟରେ ବ୍ୟାପ୍ତ ହୋଇ ରହିଅଛି, ଯେପରି ସୂର୍ଯ୍ୟ ବ୍ୟାପ୍ତ ହୁଅନ୍ତି ଚତୁର୍ଦ୍ଦିଗରେ ନିକ୍ଷିପ୍ତ ରଶ୍ମି ମଧ୍ୟରେ । ସେ କେତେବେଳେ ପ୍ରେମିକ। କେତେବେଳେ ପ୍ରଣୟୀ, କେତେବେଳେ ସ୍ୱଦେଶବତ୍ସଳ, ପ୍ରତିଷ୍ଠା ପୂଜାରୀ, କେତେବେଳେ ଦାର୍ଶନିକ, ଭକ୍ତ, କେତେବେଳେ ପ୍ରକୃତି ରସିକ, ଯୌବନ ପୂଜାରୀ, କେତେବେଳେ ସୌନ୍ଦର୍ଯ୍ୟ ବାଦୀ, ମାନବ ପ୍ରେମୀ, ସଂସ୍କାରକ, କେତେବେଳେ ସ୍ୱାଧୀନଚେତା, ସ୍ୱଚ୍ଛନ୍ଦ ବିହାରୀ କେତେବେଳେ ଖିଆଲୀ ଆତ୍ମନିଷ୍ଠ । ବସ୍ତୁ ବାସ୍ତବରେ ତାଙ୍କ ଆତ୍ମାର ବିସ୍ତୃତ ରୂପ ଦିଶେ । ପ୍ରକୃତି, ଧର୍ମ ଓ ସମାଜର ପ୍ରତିଟି ସ୍ତରରେ ସେ ଯାହା ହୋଇଛନ୍ତି, ନିଜକୁ ଢାଳି ଦେଇ ଯାଇଛନ୍ତି । ଏବେ ବି ସେ ଆଚ୍ଛନ୍ନ କରି ରହିଛନ୍ତି ସାହିତ୍ୟର ଅନେକ ବିଗ୍‌ବଳୟ, ସଂସାରରୁ ତାଙ୍କ ରକ୍ତମାଂସର ଶରୀର ଅପସରି ଗଲେ ବି ।

●

